ଅନ୍ତର୍ଭାରତୀୟ ପୁସ୍ତକମାଳା

# ଗୃହଭଙ୍ଗ

ଏସ୍.ଏଲ୍.ଭୈରପ୍ପା

ଅନୁବାଦ

ଉମାକାନ୍ତ ମିଶ୍ର



ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

*Digitized by srujanika@gmail.com*

ISBN-81-237--0735-5

1994 (ଶକାବ୍ଦ 1915)

ମୂଳ ରଚନା © ଲେଖକାଧୀନ

ଓଡ଼ିଆ ଅନୁବାଦ © ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, 1994

ପ୍ରଚ୍ଛଦ ଆଧାର : ଶ୍ରୀ ଧୀରଜ ଚୌଧୁରୀଙ୍କ ଅଙ୍କିତ ଚିତ୍ର

ଟ 54.00

Original Title : Grihabhanga *(Kannada)*

Oriya Translation : Gruhabhanga

ନିର୍ଦ୍ଦେଶକ, ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ, ଏ-5, ଗ୍ରୀନ୍ ପାର୍କ, ନୂଆ ଦିଲ୍ଲୀ - 110 016 କର୍ତ୍ତୃକ ପ୍ରକାଶିତ ।

*Digitized by srujanika@gmail.com*

# ଭୂମିକା

ସଂକ୍ଷେପରେ କହିବାକୁ ଗଲେ କନ୍ନଡ ପରମ୍ପରା ଗଢି ଉଠେ ଏହି ଶତାବ୍ଦୀର ପ୍ରାରମ୍ଭରେ । ତତ୍ କାଳୀନ ଉପନ୍ୟାସକାରମାନଙ୍କ ମଧ୍ୟରୁ କେବଳ ସ୍ୱ: ଗଳଗନାଥ ଏହି ପ୍ରାରମ୍ଭ ବିନ୍ଦୁର ଅବଶେଷ ହୋଇ ରହିଛନ୍ତି । ସେ ଐତିହାସିକ ବିଷୟବସ୍ତୁକୁ ଆଜିର ବିସ୍ତୃତ ସନ୍ଦର୍ଭରେ ଉପନ୍ୟାସ ରୂପରେ ପ୍ରସ୍ତୁତ କରିଛନ୍ତି । ସେ କନ୍ନଡ ଉପନ୍ୟାସ ପରମ୍ପରାର ସମସ୍ତ ମୂଳଦୁଆ ପକାଇବା ସଙ୍ଗେ ସଙ୍ଗେ ବିଭିନ୍ନ ଭାଷାର ଉପନ୍ୟାସ ପଢି ତୃପ୍ତିଲାଭ କରୁଥିବା ଏବଂ କନ୍ନଡ ଭାଷା ପ୍ରତି ଅଭିରୁଚି ରଖୁଥିବା ଗୋଷ୍ଠୀମାନଙ୍କ ପାଇଁ ଆଶାର କିରଣ ହୋଇ ଉଦୟ ହୋଇଥିଲେ । ସେଇ ପରମ୍ପରା ଗଳଗନାଥଙ୍କ ପରେ ବୃଦ୍ଧିପାଇବା ସଙ୍ଗେ ସଙ୍ଗେ ପ୍ରଗତିଶୀଳ, ନବଉଦୟ, ରମ୍ୟ, ନବ୍ୟ, ଆବିଗୋଷ୍ଠୀଙ୍କ ଭଳି ଶାଖା, ପ୍ରଶାଖାରେ ପଲ୍ଲବିତ ହୋଇ ଉଠିଲା । କିନ୍ତୁ ଏଠାରେ ଦୁଇଟି ମହତ୍ତ୍ୱପୂର୍ଣ୍ଣ ବିଷୟ ଜାଣି ରଖିବା ଉଚିତ୍ ହେବ । ପ୍ରଥମଟି ହେଲା, ନବ୍ୟ ସାହିତ୍ୟ ଛଡା ଅନ୍ୟ ସମସ୍ତ ଗୋଷ୍ଠୀ, ଯେଉଁମାନେ କି ସଂପ୍ରଦାୟ ବଦ୍ଧ ନିରୂପଣ-ବିଧାନରେ ସନ୍ତୁଷ୍ଟ ହୋଇ ରହିଲେ; ଏବଂ ଦ୍ୱିତୀୟଟି, ଏଇ ଗୋଷ୍ଠୀମାନଙ୍କରେ ବିଶ୍ୱାସ ରଖୁନଥିବା ପ୍ରମୁଖ ଉପନ୍ୟାସକାର, ଏହି ଦ୍ୱିତୀୟ ବିଷୟଟି ହିଁ ଆଜିକାଲି କନ୍ନଡ ସାହିତ୍ୟ ସମ୍ବନ୍ଧରେ କରାଯାଉଥିବା ବ୍ୟାଖ୍ୟାର ସ୍ୱରୂପ ବୋଲି ମନେ ହୁଏ । ଡା: ଭୈରପପାଙ୍କ ଉପନ୍ୟାସମାନଙ୍କ ସମ୍ବନ୍ଧରେ ଚର୍ଚ୍ଚା କରିବା ସମୟରେ ଏହାର ମହତ୍ତ୍ୱ ଆହୁରି ବଢିଯାଏ । କାହିଁକି ନା, କନ୍ନଡ ଭାଷାରେ ଦୁଇଜଣ ମହାନ୍ ଉପନ୍ୟାସକାର, ଡା: ଶିବରାମ କରନ୍ତୁ ଏବଂ ଡା: ଏସ୍. ଏଲ୍. ଭୈରପପା ସର୍ବଦା ଗୋଷ୍ଠୀବାଦରୁ ଦୂରରେ ରହି ଉପନ୍ୟାସ ଦୃଷ୍ଟିରେ ଜୀବନକୁ ନିରେଖି, ସାହିତ୍ୟ ସୃଷ୍ଟିର ଦାୟିତ୍ୱ ତୁଲାଇବାରେ ଅନବରତ ଲାଗି ରହିଛନ୍ତି । ମାର୍ଗ, ପନ୍ଥା, ଅବା ବିଚାର, ଏବଂ ଆଦର୍ଶ ଦ୍ୱାରା ଆବଦ୍ଧ ହୋଇ ସାହିତ୍ୟ ସୃଷ୍ଟିରେ ରତଥିବା ନବ୍ୟପନ୍ଥାର ଅନୁଭୂତିର ବ୍ୟାପ୍ତି ଅତ୍ୟନ୍ତ ସଂକୀର୍ଣ୍ଣ ଦେଖାଯାଉନଥିଲେ ମଧ୍ୟ, ଏସବୁକୁ ତ୍ୟାଗ କରି ଉପନ୍ୟାସକୁ ଜୀବନର ସଂକୀର୍ଣ୍ଣତାର ପ୍ରତିଫଳନ କରୁଥିବା ମାର୍ଗ ବୋଲି ଭାବି ପ୍ରୟୋଗ କରିବା ପାଇଁ ମଧ୍ୟ ଅନେକ ଲୋକ ଅଛନ୍ତି ।

କନ୍ନଡ ଭାଷାର ପ୍ରସିଦ୍ଧ ନାଟ୍ୟକାର 'ଶ୍ରୀରଙ୍ଗ' କନ୍ନଡ ସାହିତ୍ୟର ପ୍ରଥମ ମନୋବୈଜ୍ଞାନିକ ଉପନ୍ୟାସ ରଚନା କରିଛନ୍ତି । ଏ ଉପନ୍ୟାସ ହେଲା 'ଦେବୁଡୁ'; ଯେଉଁଥିରେ କି ସେ ନିଜର ଅନୁଭୂତିକୁ ପ୍ରାଣବନ୍ତ କରି ଚିତ୍ରଣ କରିବାରେ ସଫଳ ହୋଇଛନ୍ତି । 'ଶ୍ରୀ ଚଦୁରଙ୍ଗ ' ତାଙ୍କ ଉପନ୍ୟାସ

Digitized by srujanika@gmail.com

'ସର୍ବମଙ୍ଗଳା'ରେ ଉପନ୍ୟାସ ଜଗତକୁ ଏକ ଦୁଃଖାନ୍ତ ଦୃଷ୍ଟି ପ୍ରଦାନ କଲେ; 'ଶ୍ରୀ ବିନାୟକ ଗୋକାକ୍' ତାଙ୍କର 'ସମରସଓ୍ୱେ ଜୀବନ' (ସମରସ ହିଁ ଜୀବନ) ମାଧ୍ୟମରେ ବଂଶାନୁକ୍ରମର ବୃତ୍ତାନ୍ତ ବର୍ଣ୍ଣନା କରିବାରେ କୌଶଳ ଦେଖାଇଛନ୍ତି ଏବଂ ସମସ୍ତଙ୍କ ମଉଡମଣି ସଦୃଶ ଶ୍ରୀ କେ. ଭି ପୁଟପଘ (କୁବେମ୍ପୁ) ତାଙ୍କର ଉପନ୍ୟାସ 'କାନୁର ସୁବ୍ବକ୍କାହେଗଡ଼ତୀ' ଏବଂ 'ମଲେଗଳଲ୍ଲୀମଦୁମଗଳୁ' (ପାହାଡୀ ବଧୂ) ଉପନ୍ୟାସ ମାଧ୍ୟମରେ ଦେଖାଇ ଦେଇଛନ୍ତି ଯେ ସେ ଗ୍ରାମ୍ୟ ଜୀବନରେ ମହାକାବ୍ୟର ବିସ୍ତାରକୁ ଚିହ୍ନି ପାରିଛନ୍ତି । "ଗ୍ରାମାୟଣ' ମାଧ୍ୟମରେ ଲେଖକ 'ରାଓ ବାହାଦୁର', ଆମ ଗାଁ ଗହଳର ଗୋଟିଏ ଚରିତ୍ର ଗଢି, ବ୍ୟକ୍ତିର ଦୁଃଖ ଅପେକ୍ଷା ସାମାଜିକ ଦୁର୍ଦ୍ଦଶାକୁ ଯେପରି ଗୁରୁତ୍ୱ ଆରୋପ କରିଛନ୍ତି ତାହା ପାଠକଙ୍କୁ ଅଭିଭୂତ କରିଦିଏ । ଏଭଳି ଲେଖକଙ୍କର ତାଲିକା ଏତିକିରେ ଶେଷ ନୁହେଁ । କିନ୍ତୁ ମର୍ମର ବିଷୟ ହେଲା ଯେ ଉପରୋକ୍ତ ସବୁ ଉପନ୍ୟାସମାନଙ୍କରେ ଜୀବନର ଜଟିଳ କ୍ଷଣରେ ଲେଖକଙ୍କର ଭାବନାରାଜିର ଚିତ୍ରଣ ହୋଇଛି । ଏହି ସବୁ ଲେଖକମାନେ ଜୀବନକୁ ନା'ତ ଉପନ୍ୟାସର ଦୃଷ୍ଟିରେ ଦେଖିଛନ୍ତି ନା ନିଜର ଭାବନାର ପ୍ରକାଶ ପାଇଁ ଉପନ୍ୟାସର ମାଧ୍ୟମ ନେଇଛନ୍ତି । ଏମାନଙ୍କ ମଧ୍ୟରୁ ଅଧିକାଂଶ, ସାହିତ୍ୟର ଅନ୍ୟ ବିଭାଗରେ ନିଜର ପ୍ରତିଭାର ପରିଚୟ ମଧ୍ୟ ଦେଇଛନ୍ତି । ଏଠାରେ ଉଲ୍ଲେଖ ଯୋଗ୍ୟ ଯେ ଡାଃ ଶଙ୍କର ମୋକାଶୀ ପୁଣେକରଙ୍କ ରଚିତ ବହୁ ଚର୍ଚ୍ଚିତ ଉପନ୍ୟାସ 'ଗଙ୍ଗଓ୍ୱ ଗଙ୍ଗାମାୟୀ' (ତାଙ୍କର ଏକମାତ୍ର ଉପନ୍ୟାସ) ଏବଂ ଡାଃ ଯୁ. ଆର୍. ଅନନ୍ତମୂର୍ତ୍ତିଙ୍କର 'ସଂସ୍କାର' ଉପନ୍ୟାସରେ ମଧ୍ୟ ଏଭଳି ଉତ୍କଟ ମୁହୂର୍ତ୍ତମାନଙ୍କର ସମାବେଶ ହୋଇଛି ।

କନ୍ନଡ ଉପନ୍ୟାସର ଏହି ପୃଷ୍ଠଭୂମିରେ ଭୈରପପାଙ୍କ ସାହିତ୍ୟ ସାଧନାକୁ ବିଚାର କଲେ ଦେଖାଯିବ ଯେ ନିଜର ମୂଲ୍ୟବୋଧ, ବିଚାରଧାରା ଏବଂ ଅନୁଭୂତିକୁ କେବଳ ଉପନ୍ୟାସ ଜଗତରେ ବଢାଇବା ପାଇଁ, ସମାଜରେ ସମସ୍ତ ସ୍ତରର ଲୋକଙ୍କର ଅନୁଭୂତିରେ ତାହା ପ୍ରତିଫଳିତ କରାଇ ସେ ସବୁକୁ, ନିଜେ ଅଙ୍ଗେ ଲିଭାଇଲା ଭଳି ବର୍ଣ୍ଣନା କରିବା ଦିଗରେ ଡାଃ ଶିବରାମ କରନ୍ତଙ୍କ ପରେ ଏହାଙ୍କର ନାମ ଗଣାଯାଏ । ବର୍ତ୍ତମାନ କନ୍ନଡ ଉପନ୍ୟାସର ସଂଖ୍ୟା ବୃଦ୍ଧି ପାଇଥିଲେ ମଧ୍ୟ ଭୈରପପାଙ୍କ ଭଳି, ସମାଜର ପ୍ରତ୍ୟେକ ସ୍ତରକୁ ପ୍ରତିଫଳିତ କରି ପାରିଲା ଭଳି ଆଉ କୌଣସି ଉପନ୍ୟାସକାର ଦୃଷ୍ଟିକୁ ଆସନ୍ତି ନାହିଁ ।

ପରିବର୍ତ୍ତନଶୀଳ ଭାରତୀୟ ସମାଜର ସମସ୍ତ ସମସ୍ୟା ଗୁଡ଼ିକୁ ରୂପରେଖ ଦେଲାଭଳି ଶକ୍ତି, କେବଳ ଉପନ୍ୟାସ ମାଧ୍ୟମରେ ହିଁ ସମ୍ଭବ ଥିବାରୁ, ଉପନ୍ୟାସକାରର ଦାୟିତ୍ୱ ମଧ୍ୟ ବଢିଯାଇଥାଏ । ଡାଃ ଭୈରପପା ଜଣେ ପ୍ରାଣବନ୍ତ ଏବଂ ସମ୍ବେଦନଶୀଳ ବ୍ୟକ୍ତି ହୋଇଥିବାରୁ ପୁରାତନରୁ ନୂତନକୁ ହେଉଥିବା ପରିବର୍ତ୍ତନ ସମୟରେ ତଜ୍ଜନୀତ ସମସ୍ୟା, ମାନସିକ ସ୍ଥିତି ଏବଂ ସଂଘର୍ଷ ଆଦି, ତାଙ୍କର ଉପନ୍ୟାସର କଥାବସ୍ତୁ । ତାଙ୍କର ପ୍ରଥମ ଉପନ୍ୟାସ ହେଲା 'ଧର୍ମଶ୍ରୀ' । ଏଥିର କଥାବସ୍ତୁ ହେଲା, ପ୍ରେମ ବନ୍ଧନରେ ପଡି ହିନ୍ଦୁ ଯୁବକର ଖ୍ରୀଷ୍ଟ ଧର୍ମ ଗ୍ରହଣ ଏବଂ ତଜ୍ଜନୀତ ମାନସିକ ଦ୍ୱନ୍ଦ୍ୱ । ବିବେକ ଏବଂ ଭାବାବେଶର ଏହି ଦ୍ୱନ୍ଦ୍ୱ ତାଙ୍କର ପରବର୍ତ୍ତୀ ମହତ୍ତ୍ୱପୂର୍ଣ୍ଣ ଉପନ୍ୟାସ ମାନଙ୍କରେ ଆହୁରି ସୁନ୍ଦର ଭାବେ ଉପସ୍ଥାପିତ ହୋଇଛି । ଏ ଉପନ୍ୟାସ , ଏକ ପକ୍ଷରେ ଗୋଟିଏ ହିନ୍ଦୁ ଯୁବକର ଧର୍ମାନ୍ତର ଗ୍ରହଣ ପୂର୍ବରୁ ଭାବନାରାଜିର ଚିତ୍ରଣ କରେ ଏବଂ ଅନ୍ୟ ପକ୍ଷରେ ଏହା ସାବ୍ୟସ୍ତ କରିବାକୁ ଚେଷ୍ଟା

Digitized by srujanika@gmail.com

କରେ ଯେ ଜାତି ଏବଂ ଧର୍ମକୁ ତ୍ୟାଗ କରିବା ପାଇଁ ମଧ୍ୟ ଗୋଟିଏ ନିର୍ଦ୍ଦିଷ୍ଟ ପନ୍ଥା ଆବଶ୍ୟକ । ଏହାପରେ ପ୍ରକାଶିତ 'ଦୂରସରିଦରୁ' (ଦୂରଗତ) ରେ ବୌଦ୍ଧିକ ଅସମାନତାରୁ ଉତ୍ପନ୍ନ ସ୍ଥିତିର ବିବରଣୀ, ଉପନ୍ୟାସର ଦୁଇ ଚରିତ୍ରଙ୍କ ମଧ୍ୟରେ ସଂଳାପ ଓ ତର୍କ ରୂପରେ ଉପନ୍ୟାସର ଅଧିକାଂଶ ଭାଗ ମାଡି ବସିଛି । ଅବଶ୍ୟ ଏହା ସେତେ ପ୍ରାଣବନ୍ତ ହୋଇ ପାରିନାହିଁ ।

'ବଂଶବୃକ୍ଷ' ଭୈରପ୍ପାଙ୍କର ପ୍ରଥମ ମହତ୍ତ୍ୱପୂର୍ଣ୍ଣ ଉପନ୍ୟାସ । ସାମାଜିକ ପରିବର୍ତ୍ତନର ଅନୁସାଙ୍ଗିକ ସମସ୍ୟା ଗୁଡିକର ଏକ ଦର୍ପଣ ଭଳି, ଏହି ଉପନ୍ୟାସରେ 'କାତ୍ୟାୟନୀ' ଚରିତ୍ରର କ୍ଳେଶର କାହାଣୀ ଅଦ୍ଭୁତ ଭାବରେ ବର୍ଣ୍ଣିତ ହୋଇଛି । 'ଶ୍ରୋତ୍ରୀ ଚରିତ୍ରକୁ ସାତ୍ତ୍ୱିକତାର ସ୍ୱରୂପ ଏବଂ କାତ୍ୟାୟନୀକୁ ଆଧୁନିକତାର ସ୍ପର୍ଶରେ ପୁର୍ନବିବାହ କରିଥିବା ଏକ ବିଧବା ନାରୀର ରୂପ ଦିଆଯାଇଛି । କନ୍ନଡ ଭାଷାର ଅନ୍ୟ କୌଣସି ଉପନ୍ୟାସରେ ଦ୍ୱନ୍ଦ୍ୱର ଚିତ୍ରଣ ବିନା ସନାତନ ଧର୍ମ ଏବଂ ଆଧୁନିକତାର ସମାନ୍ତରତା ଏଭଳି ବଳିଷ୍ଠ ଭାବରେ ଉପସ୍ଥାପିତ କରାଯାଇ ପାରିନାହିଁ । ଉଭୟ ଲକ୍ଷ୍ୟ ଏବଂ ବିଶ୍ୱାସକୁ ମହତ୍ତ୍ୱ ଦେଇ ଚରିତ୍ରମାନଙ୍କର ମାନସିକ ବ୍ୟଥାର ମାଧ୍ୟମରେ ବର୍ଣ୍ଣିତ, ଏହା ପ୍ରକୃତରେ ମହତ୍ତ୍ୱପୂର୍ଣ୍ଣ ସାହିତ୍ୟ କୃତୀ । ଏ ଉପନ୍ୟାସ ହିଁ ଭୈରପ୍ପାଙ୍କୁ ଖ୍ୟାତିର ଚରମ ସୀମାରେ ପହଞ୍ଚାଇଥିଲା । ଏହି ଜନପ୍ରିୟ ଉପନ୍ୟାସ ଉପରେ ଆଧାରିତ ଏକ ଚଳଚିତ୍ର ରାଷ୍ଟ୍ରପତି ପୁରସ୍କାର ମଧ୍ୟ ପାଇଥିଲା ।

'ଜଳପାତ' ଦାମ୍ପତ୍ୟ ଜୀବନର ସମସ୍ୟାର ଏକ ଅତି ସୁନ୍ଦର କଥନ । ନିଛକ ବୈଜ୍ଞାନିକ ଦୃଷ୍ଟିକୋଣର କୃତ୍ରିମତା ଯେ ଦାମ୍ପତ୍ୟ ଜୀବନର ଦୁର୍ଦ୍ଦଶାର କାରଣ ହୋଇପାରେ, ଏହା ଏଥିରେ ସୁନ୍ଦର ଭାବରେ ଦର୍ଶାଇ ଦିଆଯାଇଛି । ବମ୍ବେ ସହରର ପୃଷ୍ଠଭୂମି ଉପରେ ଲିଖିତ ଏହି ଉପନ୍ୟାସରେ ଏକ କଳାକାର ଏବଂ ଜଣେ ଡାକ୍ତରଙ୍କର ଚିନ୍ତାଧାରାର ସାମନ୍ତରତା ବେଶ୍ ମନୋଜ୍ଞ ହୋଇଛି । ରଚନା ପରିପାଟୀ ଦୃଷ୍ଟିରୁ ଏହି ଉପନ୍ୟାସ 'ଦୂର ସରଦରୁ' ଠାରୁ ମଧ୍ୟ ଅଧିକ ସଫଳ ବୋଲି ଧରାଯାଏ ।

ଭୈରପ୍ପାଙ୍କର 'ନାଥୀ ନେରଳୁ' (କୁକୁରର ଛାଇ) ଉପନ୍ୟାସ ପୁନର୍ଜନ୍ମ କଥାବସ୍ତୁ ଉପରେ ଆଧାରିତ, କନ୍ନଡ ଉପନ୍ୟାସ ଜଗତରେ ଏକ ନୂତନ ପ୍ରୟାସ । ଲେଖକଙ୍କ ଭାଷାରେ, ଏ କାହାଣୀରେ ଦୁଇଟି ପରସ୍ପର ବିରୋଧୀ ବୌଦ୍ଧିକ ସ୍ଥିତିର ଦ୍ୱନ୍ଦ୍ୱ ହିଁ ଚିତ୍ରିତ ହୋଇଛି । 'ନାଥୀ ନେରଳୁ' ରେ ଚରିତ୍ରମାନଙ୍କ ଅପେକ୍ଷା କଥା ସମ୍ବନ୍ଧୀୟ ବିବରଣୀ ମନକୁ ବିଶେଷ ପ୍ରଭାବିତ କରେ । ଏଥିରେ ଥିବା ଯୋଗଯ୍ୟା ଚରିତ୍ର 'ଗୃହଭଙ୍ଗ'ର 'ମହାଦେବୟ୍ୟା' ଚରିତ୍ରର ପୃଷ୍ଠଗାମୀ ପରି ମନେ ହୁଏ । ନୂତନ ବୈଜ୍ଞାନିକ ପୃଷ୍ଠଭଙ୍ଗୀର କଥାବସ୍ତୁ ଥିଲେ ମଧ୍ୟ ବିଶ୍ୱାସର ମୌଳିକତାକୁ ପ୍ରୟୋଗ କରି ଭୈରପ୍ପା ଏହି ଉପନ୍ୟାସକୁ ତାଙ୍କର ଅନ୍ୟ ଉପନ୍ୟାସମାନଙ୍କ ସାଙ୍ଗରେ ଯୋଡି ଦେଇଛନ୍ତି । ଏହି କଥାବସ୍ତୁ ବୃହତ୍ ସମସ୍ୟାର ରୂପ ଧାରଣ କରିଛି ତାଙ୍କର 'ତବ୍ବଲିୟୁ ନୀନାଦେ ମଗନେ',(ପୁଅ ତୁ ଅନାଥ ହେଲୁ) ଉପନ୍ୟାସରେ । ବାହାରକୁ ଦେଖିବା ପାଇଁ ଯଦିବା ଏହାର କଥାବସ୍ତୁ ଗୋମହିଷାଦିଙ୍କର ସମ୍ବନ୍ଧିତ, ତଥାପି ଏହା ଆମ ଦେଶର ଗ୍ରାମ୍ୟ ସମାଜର ସାମ୍ପ୍ରତିକ ସଂକୀର୍ଣ୍ଣତାକୁ ପ୍ରତିଫଳନ କରି ପାରିଛି । ଗଉଡ ଘରର ପୁଅ ବିଦେଶରୁ ଉଚ୍ଚଶିକ୍ଷା ପାଇ ଫେରିବା ପରେ ସମାଜରେ ପ୍ରଚଳିତ

Digitized by srujanika@gmail.com

ଅନ୍ଧବିଶ୍ୱାସକୁ ଧିକ୍କାର କରିଛି । ତା'ର ଆମେରିକାସ୍ଥ ପତ୍ନୀ ତା' ଦେଶକୁ ଫେରିଯିବାର ପ୍ରଶ୍ନ ଉଠିବା ପୂର୍ବରୁ, ଉପନ୍ୟାସର ଗତି ଗାଁର ଗୋମହିଷାଦିଙ୍କର ଚାରଣ ଭୂମିର ସମସ୍ୟା ଉପରେ ଆଲୋକପାତ କରିଛି । କିନ୍ତୁ ତା' ଠାରୁ ଗୁରୁତ୍ୱ ପୂର୍ଣ୍ଣ ବିଷୟ ହେଲା, ଅଧିକ ଫସଲ ଆଦାୟ ପାଇଁ ଚରା ଭୂମିକୁ ଚାଷ ଜମିରେ ପରିଣତ କରିବା, ସରକାରୀ ନୀତିରେ ବିକୃତ ପରିଣାମ ଏବଂ ଆଧୁନିକତା ଆଡ଼କୁ ଆଗଉଥିବା ଗ୍ରାମ୍ୟ ସମାଜରେ ହେଉଥିବା ଦ୍ୱନ୍ଦ୍ୱ, ଯାହାର ସୁନ୍ଦର ବର୍ଣ୍ଣନା ହୋଇଛି ଏ ଉପନ୍ୟାସରେ । ପୁରାତନର ବନ୍ଧନରୁ ମୁକୁଳିବାରେ ଅସମର୍ଥ ଏବଂ ନୂତନଆଗମନର ଆଗରେ ବିବଶ 'କାଳିଆ' (ସାପ) ଚରିତ୍ର; ନୂତନ ପ୍ରତି ଜିଜ୍ଞାସୁ 'ଭେଙ୍କଟ ରମଣ' ଆଦିଙ୍କର ସଫଳ ଚିତ୍ରଣ ମାଧ୍ୟମରେ ଲେଖକଙ୍କର ମୂଳ ସମସ୍ୟା (ସନାତନ ଏବଂ ଆଧୁନିକ) ଗ୍ରାମ୍ୟ ବାତାବରଣରେ ଏକ ନୂତନ ରୂପରେ ଉପସ୍ଥିତ ହୁଏ ।

'ମତଦାନ' ଭୈରପ୍ପାଙ୍କ ଉପନ୍ୟାସ ସାଧନାରେ ମହତ୍ତ୍ୱପୂର୍ଣ୍ଣ ପରିବର୍ତ୍ତନର ଏକ ବାର୍ତ୍ତାବହ । ଏଥିରେ ସେ ପ୍ରଥମଥର ପାଇଁ ରାଜନୀତିର ପଟ୍ଟଭୂମି ନେଇଛନ୍ତି । ଏଥିରେ ରହିଛି ଏକ ଲୋକପ୍ରିୟ ଡାକ୍ତରଙ୍କର ରାଜନୈତିକ ଅଭିପ୍ସାର ଦୁଃଖଦ ପରିଣାମର ଚିତ୍ରଣ । ଏହାର ମୂଳ କଥନ ହେଲା ଯେ ଆଜିର ଛନ୍ଦ, କପଟ, ପ୍ରବଞ୍ଚନାର ରାଜନୀତିରେ ବୁଦ୍ଧିଜୀବିର ଅସଫଳତା ଅନିବାର୍ଯ୍ୟ । ଏକଥାବସ୍ତୁର ବିସ୍ତୃତ ଚିତ୍ରଣ କରାଯାଇଛି ତାଙ୍କର ପରବର୍ତ୍ତୀ ସଫଳ ଉପନ୍ୟାସ 'ଦାଟୁ'ରେ ।

ଏ ପର୍ଯ୍ୟନ୍ତ ଭୈରପ୍ପା, ତାଙ୍କର ଉପନ୍ୟାସ ଗୁଡ଼ିକରେ ସାତ୍ତ୍ୱିକତାକୁ ସ୍ୱୀକାର କରିଛନ୍ତି କିମ୍ବା ସାମାଜିକ ପ୍ରଗତି ଏବଂ ବୈବାହିକ ଜୀବନର ସମସ୍ୟାକୁ କଥାବସ୍ତୁ ରୂପେ ନେଇ ଆସିଛନ୍ତି । କିନ୍ତୁ 'ଗୃହଭଙ୍ଗ' ଉପନ୍ୟାସରେ ଲେଖକ ଏ ସ୍ତରରୁ ଉନ୍ନୀତ ହୋଇ ପୂର୍ବବର୍ତ୍ତୀ ଉପନ୍ୟାସ ଲେଖକମାନଙ୍କ ଦ୍ୱାରା ସ୍ୱୀକୃତ ସାହିତ୍ୟିକ ମୂଲ୍ୟବୋଧ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିଛନ୍ତି । ଏହି ଉପନ୍ୟାସର କଥାବସ୍ତୁ ତିପଟୁର ଏବଂ ଚନ୍ନପଟ୍ଟଣ ଅଞ୍ଚଳରେ ଖ୍ରୀ 1920 ରୁ 1945 ମଧ୍ୟରେ ଘଟିଥିବା ଘଟଣା ଉପରେ ଆଧାରିତ । ପ୍ରଥମ ଅଧ୍ୟାୟରେ ଗାଁର ସ୍ୱର୍ଗତ ରାମନ୍ନାଙ୍କ ପରିବାରର ଚିତ୍ରଣ ରହିଛି । ତାଙ୍କର ବିଧବା ପତ୍ନୀ ଗଙ୍ଗାମ୍ମା ଯାହାକୁ କି ସଭ୍ୟତା ଓ ସଂସ୍କୃତି ସ୍ପର୍ଶ କରିନାହିଁ, ତା'ର ପାଟିରୁ ଅନବରତ ବାହାରୁଥିବା ଗାଳି 'ଗୃହଭଙ୍ଗ'ର ମୂଳକାରଣ ହୋଇଛି । ଗଙ୍ଗାମ୍ମାର ପୁଅ ଦୁଇଟାଙ୍କ ମଧ୍ୟରେ ବହୁତ ତଫାତ୍ । ସାନପୁଅ ଅପନ୍ନୟ୍ୟା ଗଜମୂର୍ଖ ଏବଂ ବଡ଼ପୁଅ ଚେନ୍ନିଗା ଆଳସ୍ୟ ପରାୟଣ ଏବଂ ମହାସ୍ୱାର୍ଥୀ । ଚେନ୍ନିଗାର ପତ୍ନୀ ଏବଂ ସନ୍ତାନଙ୍କ ପ୍ରତି ଟିକିଏ ହେଲେ ଆସକ୍ତି ନାହିଁ । ପତ୍ନୀ ଉପରେ ଅଧିକାର ଜାହିର କରିବାକୁ ତାର ସବୁବେଳେ ଇଚ୍ଛା । କିନ୍ତୁ ସେ ଭୟାଳୁ । ସେ ଏତେ ଦୂର ଆଳସ୍ୟପରାୟଣ ଯେ ଯଦି ତା'ର ସ୍ତ୍ରୀ ନଞ୍ଜମ୍ମା, ତାର ସାନଭାଇର ସ୍ତ୍ରୀ ପରି କଳିହୁଡ଼ୀ ହୋଇଥାନ୍ତା, ତେବେ କେଜାଣି ଚେନ୍ନିଗାର ଚରିତ୍ରରେ କିଛି ପରିବର୍ତ୍ତନ ଆସିଥାନ୍ତା । ନଞ୍ଜମ୍ମା କଣ୍ଠାଜୋଇସଙ୍କ ଭଳି ଉଗ୍ରପ୍ରକୃତି ଲୋକର ଝିଅ ହୋଇ ମଧ୍ୟ ଅତ୍ୟନ୍ତ ସହନଶୀଳା । ବାପଘର ଏବଂ ଶାଶୁଘର, ଉଭୟକୁଳର ମର୍ଯ୍ୟାଦା ରକ୍ଷା କରିବା ପାଇଁ ଚେଷ୍ଟା କରିଛି । ବଡ଼ ଦୁଃଖ ପୂର୍ଣ୍ଣ ତା' କାହାଣୀ । ପତି ନିରକ୍ଷର ଏବଂ ପେଟୁ, ଶାଶୁ ତ ହୃଦୟହୀନ ପଶୁ ଭଳି । ନର୍କଭଳି ସେ ପରିବାରକୁ ସ୍ୱର୍ଗରେ ପରିଣତ କରିବା ପାଇଁ ନଞ୍ଜମ୍ମାର ସଂଘର୍ଷ

Digitized by srujanika@gmail.com

ବିଫଳ ହୋଇଛି । ବିବାହିତା ଝିଅ ଏବଂ ବିବେକବାନ ପୁଅ, ଦୁଇଜଣଙ୍କର ମୃତ୍ୟୁ ହୁଏ ପ୍ଲେଗ ରୋଗରେ । ଏ ଭଳି ସଙ୍କଟ ପୂର୍ଣ୍ଣ ଜୀବନରୁ ନଷ୍ଟିଆକୁ ରକ୍ଷା ମିଳିଛି କେବଳ ତାର ମୃତ୍ୟୁ ପରେ ।

'ବଂଶବୃକ୍ଷ' ଏବଂ 'ଗୃହଭଙ୍ଗ' ଉପନ୍ୟାସର 'ଶ୍ରୋତୀ' ଏବଂ 'କଣ୍ଡାଜୋଇସ୍' ଚରିତ୍ର ଦୁଇଟିର ତୁଳନା କଲେ ଜଣାପଡେ ଯେ, 'ଗୃହଭଙ୍ଗ'ର ଚରିତ୍ର ଚିତ୍ରଣ ଉଚ୍ଚକୋଟୀର । କଣ୍ଡାଜୋଇସ୍ ଦେବତା ବିରୋଧୀ ନାସ୍ତିକ ହୋଇପାରନ୍ତି; କାରଣ ସେ ଗୁଣି ଗାରେଡିରେ ବିଶ୍ୱାସ କରନ୍ତି; କିନ୍ତୁ ସେ ନୀଚମନା ନୁହନ୍ତି । ନିଜେ ନାସ୍ତିକ ହେଲେ ସୁଦ୍ଧା 'ଭୈରପପା' 'ଗୃହଭଙ୍ଗ' ଉପନ୍ୟାସରେ ଉତ୍ତମ ମଣିଷ ହେବା ପାଇଁ ଚେଷ୍ଟା କରୁଥିବା ଚରିତ୍ର ଗୁଡିକକୁ ସ୍ଥାନ ଦେଇଛନ୍ତି । ସେହିପରି 'ମହାଦେବୟ୍ୟା'ଙ୍କୁ ଶୁଦ୍ଧାଚାରୀ ସନାତନୀ ଭାବେ ଚିତ୍ରିତ ନ କରି ଜଣେ ଦୟାଳୁ ଯୋଗୀର ରୂପ ଦେଇଛନ୍ତି । ବୃଦ୍ଧ ବୟସରେ ଅନ୍ୟଜାତିର ସ୍ତ୍ରୀ ଲୋକ ନଞ୍ଜିଆର ସାନ ପୁଅ ପାଇଁ କେତେ ଯତ୍ନ ସେ ନକରିଛନ୍ତି ? ଏହି ଉପନ୍ୟାସରେ ଦେଖାଇ ଦିଆଯାଇଛି ଯେ, ନିଜକୁ ତଥାକଥିତ ଉଚ୍ଚ ଜାତି ବୋଲାଉଥିବା ବ୍ରାହ୍ମଣ ଜାତିରେ ମଧ୍ୟ ଚେନ୍ନିଗ ଭଳି ପଶୁ ଅଛନ୍ତି । ଏ ପର୍ଯ୍ୟନ୍ତ ଲେଖକ ତାଙ୍କ ଉପନ୍ୟାସରେ ଆଧୁନିକ ଏବଂ ସନାତନ, ଏ ଦୁଇ ପକ୍ଷକୁ ସାମନା ସାମନି କରି ଉପନ୍ୟାସର କଥାବସ୍ତୁ ପ୍ରସ୍ତୁତ କରି ଆସୁଥିଲେ, କିନ୍ତୁ 'ଗୃହଭଙ୍ଗ'ରେ ଏହି ବୈଚାରିକ ବିବାଦକୁ ଦୂରେଇ ଯାଇ ଭୈରପପା ଚରିତ୍ର ଚିତ୍ରଣରେ ଦକ୍ଷତା ପ୍ରକାଶ କରିଛନ୍ତି । ଉପନ୍ୟାସର ନାୟିକା ନଞ୍ଜିଆକୁ ଧୈର୍ଯ୍ୟ ଏବଂ ସାହସର ମୂର୍ତ୍ତିମନ୍ତ ପ୍ରତୀକ ରୂପେ ଗଢିଛନ୍ତି । ନଞ୍ଜିଆର ଦୁଃଖ କାହାଣୀର ପରିସମାପ୍ତି ଅନୁମେୟ ହେଲେ ସୁଦ୍ଧା, ସେ ଚରିତ୍ରର ଭାଗ୍ୟ ସାଙ୍ଗରେ ସଂଘର୍ଷ, ତାକୁ ଏକ ଦୁଃଖାନ୍ତ ମହାକାବ୍ୟତର ନାୟିକା ସ୍ତରକୁ ଉନ୍ନୀତ କରାଇ ପାରିଛି । ଏ ଚରିତ୍ରର କାହାଣୀ ପଢି ପାଠକ ମନରେ ଯୁଗପତ ଭୟ ଏବଂ କରୁଣ ଭାବ ଜାଗ୍ରତ ହେବା ସ୍ୱାଭାବିକ । କାରଣ ଭୈରପପା ଆମରି ପରିଚିତ ଗ୍ରାମ୍ୟ ସମାଜର ପୃଷ୍ଠଭୂମିରେ ଗୋଟିଏ ମହାକାବ୍ୟ ସ୍ତରର ଚରିତ୍ର ଚିତ୍ରଣ କରିଛନ୍ତି ।

ଉପନ୍ୟାସର ଶେଷ ଆଡକୁ ଯେଉଁ ପ୍ଲେଗର ବର୍ଣ୍ଣନା ଅଛି ତାହା ଏକ ବିନାଶକାରୀ ଶକ୍ତିର ପୁନଃ ଆବିର୍ଭାବ ହେଲେ ସୁଦ୍ଧା, ଉପନ୍ୟାସର ସାମଗ୍ରୀକ ରୂପକୁ ଦୁର୍ବଳ କରିପାରି ନାହିଁ । ଏହି ଉପନ୍ୟାସରେ ଜୀବନ ବିନ୍ୟାସର କଳା ଅପେକ୍ଷା ବାସ୍ତବ ଜୀବନର ଲହୁଲୁହାଣ ମୁହୂର୍ତ୍ତ ଗୁଡିକର ଚିତ୍ରଣକୁ ଅଗ୍ରାଧିକାର ଦିଆଯାଇଛି । ଏ ଉପନ୍ୟାସ ଭୈରପପାଙ୍କର ଉପନ୍ୟାସ ଶୈଳୀର ମହତ୍ୱ ମଧ୍ୟ ପ୍ରତିପାଦନ କରେ । ତାହା ହେଉଛି, ଯେତେବେଳେ ସେ ବ୍ୟକ୍ତିଗତ ଅନୁଭୂତିରୁ ଗ୍ରାମ୍ୟ ଜୀବନର ଚିତ୍ରଣ କରନ୍ତି, ସେତେବେଳେ ତାଙ୍କ ଉପନ୍ୟାସ ବୈଚାରିକ ବିଶ୍ଲେଷଣର ଊର୍ଦ୍ଧ୍ୱକୁ ଚାଲିଯାଏ ଏବଂ ଚରିତ୍ର ଚିତ୍ରଣର ସାବଲୀଳତା ସେଥିରେ ପ୍ରକାଶ ପାଏ । ଅନ୍ୟପକ୍ଷରେ ସେ ଯେତେବେଳେ ସନାତନ ଏବଂ ଆଧୁନିକ ଚିନ୍ତାଧାରାର ବୌଦ୍ଧିକ ଦ୍ୱନ୍ଦ୍ୱର ପ୍ରଶ୍ନ ଉଠାନ୍ତି, ସେତେବେଳେ ଅଧିକାଂଶତଃ ତାଙ୍କର ଉପନ୍ୟାସର ପଟ୍ଟଭୂମି ଏବଂ ଚରିତ୍ର ଗୁଡିକ ସହରୀ ସଭ୍ୟତା ସମ୍ବନ୍ଧିତ ହୋଇଥାନ୍ତି ।

'ଗୃହଭଙ୍ଗ'ରେ କନ୍ନଡ ଉପନ୍ୟାସ ପରମ୍ପରାର ସମସ୍ତ ତତ୍ତ୍ୱ ପ୍ରୟୋଗ କରାଯାଇଛି । ଗ୍ରାମ୍ୟ ଜୀବନର ଯଥାର୍ଥ ଚିତ୍ରଣ ପାଇଁ ଆବଶ୍ୟକ ଗ୍ରାମୀଣ କଥିତ ଭାଷା ଚରିତ୍ରମାନଙ୍କ ମୁହଁରେ ଦିଆଯାଇଛି ।

Digitized by srujanika@gmail.com

ଏକ ଶୁଦ୍ଧ ସାହିତ୍ୟିକ କୃତୀ ଭାବରେ 'ଗୃହଭଙ୍ଗ' ଗମ୍ଭୀର, ସଙ୍କୀର୍ଣ୍ଣ ହେଲେ ହେଁ, 'ବଂଶବୃକ୍ଷ' ଠାରୁ ମଧ୍ୟ ଅଧିକ ଲୋକପ୍ରିୟ ହୋଇ ପାରିଛି । କାରଣ 'ବଂଶବୃକ୍ଷ'ରେ ଅଛି ବିଚାରଗତ ଦ୍ୱନ୍ଦ୍ୱର ବିଶ୍ଳେଷଣ ଏବଂ 'ଗୃହଭଙ୍ଗ'ରେ ରହିଛି ମହାକାବ୍ୟ ଧର୍ମୀ ଘଟଣା ପ୍ରବାହ ଏବଂ ଚରିତ୍ର ଚିତ୍ରଣ । 'ଗୃହଭଙ୍ଗ' ର ତୁଳନା 'ଗ୍ରାମାୟଣ' ଉପନ୍ୟାସ ସହିତ କଲେ ଏହାର ଲେଖକ ରାଓବାହାଦ୍ଦୁର ଏବଂ ଭୈରପ୍ପାଙ୍କର ଦୁଃଖାନୁଜୀବନ ଦୃଷ୍ଟି ମଧ୍ୟରେ ଥିବା ତଫାତ୍ ଜଣା ପଡେ । 'ଗ୍ରାମାୟଣ'ରେ ଗ୍ରାମ୍ୟ ଜୀବନର ସମସ୍ୟାକୁ ସାରା ଦେଶର ସମସ୍ୟା ଏବଂ ଅବନତିର ପ୍ରତୀକାତ୍ମକ ଚିତ୍ରଣ କରାଯାଇଛି । କିନ୍ତୁ 'ଗୃହଭଙ୍ଗ'ରେ ନଞ୍ଜମ୍ମାର ଦୁଃଖ ଏବଂ ସଂଘର୍ଷର କାହାଣୀ ତାର ଏକାନ୍ତ ବ୍ୟକ୍ତିଗତ । ଗୋଟିଏ ବ୍ୟକ୍ତିର ଦୁଃଖଦ ସଂଘର୍ଷର ମାଧ୍ୟମରେ, ତାର ଆଖପାଖ ବାତାବରଣରେ ଅନୁକମ୍ପନ, ନିର୍ଦ୍ଦୟତା, ମୂର୍ଖତା, ଏବଂ ଜିଦ୍‌ଖୋର ଭାବ ପ୍ରଭୃତି ପ୍ରକଟିତ ହୋଇଛି । 'ଭୈରପ୍ପା', ବ୍ୟକ୍ତିର ଦୁଃଖଦ ଚିତ୍ରଣ ବର୍ଣ୍ଣନା କଲାବେଳକୁ, 'ରାଓବାହାଦୁର' ସମାଜର ଦୁର୍ଦ୍ଦଶାକୁ ବର୍ଣ୍ଣନା କରନ୍ତି । 'ଭୈରପ୍ପା'ଙ୍କର ନିର୍ଲିପ୍ତ ସ୍ରଷ୍ଟାର ଭାବର ଅଭାସ 'ଗୃହଭଙ୍ଗ'ରୁ ମିଳେ । ସତେ ଯେପରି ଲେଖକ ଆଡୁଆଳରେ ଥାଇ ନିଜ ଦ୍ୱାରା ସୃଷ୍ଟ ଚରିତ୍ରମାନଙ୍କର ଗତିବିଧି ଲକ୍ଷ୍ୟ କରୁଛନ୍ତି । ଏହି ଉପନ୍ୟାସ ବିଷୟରେ ଭୈରପ୍ପା କହନ୍ତି, "ଏହି ଉପନ୍ୟାସ କୌଣସି ସମସ୍ୟା ସାଙ୍ଗରେ ସମ୍ବନ୍ଧିତ ନୁହେଁ - ଜୀବନର ବାସ୍ତବିକ ରୂପ ଉପସ୍ଥାପିତ କରିବାର ଏହା ଏକ ପ୍ରୟାସ ।" ଏ ଉଦ୍ୟମରେ ଯେ ଲେଖକ ସଫଳ ହୋଇଛନ୍ତି ଏହା ମାନିବାକୁ ହେବ ।

'ଗୃହଭଙ୍ଗ' ପରେ ଲେଖକଙ୍କ ପ୍ରକାଶିତ 'ନିରାକରଣ' ଏବଂ 'ଗ୍ରହଣ' ଅତ୍ୟନ୍ତ ଦୁର୍ବଳ ରଚନା, ଏବଂ ଏମାନଙ୍କ ପ୍ରଭାବ କନ୍ନଡ ସାହିତ୍ୟରେ ଉଲ୍ଲେଖନୀୟ ନୁହେଁ । ଜଣେ ସାଧୁ ବିବାହ କରିବା ପାଇଁ ଠିକ୍ କଲାପରେ, ଗାଁରେ ହଲଚଲ ସୃଷ୍ଟି ହୋଇଛି । ଏହାହିଁ 'ଗ୍ରହଣ'ର କଥାବସ୍ତୁ । ଯୋଗୀର ଜୀବନକୁ ତ୍ୟାଗ କରିଥିବା ସାଧୁର କ୍ରୋଧପୂର୍ଣ୍ଣ ଆବେଶ ଏ ଉପନ୍ୟାସରେ ସ୍ପଷ୍ଟ ହୋଇପାରିନାହିଁ । 'ନିରାକରଣ' ମାନବ ସମ୍ବନ୍ଧ ଏବଂ ନିର୍ଲିପ୍ତତା ଉପରେ ଆଧାରିତ । ଏଥିରେ ପୁଣି ବୈଚାରିକତାର ଓଜନରେ ଉପନ୍ୟାସଟି ଦବି ଯାଇଛି । ଏ ଉପନ୍ୟାସର କଥାବସ୍ତୁ - ନରହରି ତାର ପତ୍ନୀର ମୃତ୍ୟୁ ପରେ, ସନ୍ତାନମାନଙ୍କୁ ଅନ୍ୟମାନଙ୍କୁ ଦେଇ ନିର୍ଲିପ୍ତଭାବରେ ଶାନ୍ତିର ସନ୍ଧାନରେ ବାହାରି ପଡିବା । ଏଥିରେ ଡାଃ ଶିବରାମ କରନ୍ତଙ୍କର 'ଅଳିଦମେଲେ' (ମୃତ୍ୟୁପରେ) ଉପନ୍ୟାସ ର ଛାୟା ଦେଖିବାକୁ ମିଳେ । ସଂକ୍ଷେପରେ କହିବାକୁ ଗଲେ ଭୈରପ୍ପାଙ୍କର ଉପନ୍ୟାସ ଦୁଇଟି ରଚନା ଶୈଳୀ ଦୃଷ୍ଟିରୁ କିମ୍ବା କଥାବସ୍ତୁ ଦୃଷ୍ଟିରୁ, କନ୍ନଡ ସାହିତ୍ୟ ଉପରେ କୌଣସି ପ୍ରକାର ପ୍ରଭାବ ପକାଇ ପାରି ନାହିଁ ।

କିଛି ବର୍ଷ ପୂର୍ବେ ପ୍ରକାଶିତ ଭୈରପ୍ପାଙ୍କର ଉପନ୍ୟାସ 'ଦାଟୁ' ପୁଣି ତାଙ୍କୁ ଖ୍ୟାତି ଆଣିଦେଲା । ଏହା ତାଙ୍କୁ ଡାଃ ଶିବରାମ କରନ୍ତଙ୍କ ପରେ କନ୍ନଡ ଭାଷାର ଶ୍ରେଷ୍ଠ ଲେଖକ ରୂପେ ପୁନଃ ଉପସ୍ଥାପିତ କଲା ଏବଂ ସମୀକ୍ଷକ ମହଲରେ ମଧ୍ୟ ବେଶ୍ ପ୍ରତିକ୍ରିୟା ସୃଷ୍ଟିକଲା । ଏଥିପାଇଁ ଭୈରପ୍ପା 1975 ମସିହାର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଲେ । ଏ ଉପନ୍ୟାସରେ ସାମ୍ପ୍ରତିକ ସମାଜର ଜାତିଆଣ

Digitized by srujanika@gmail.com

ସମସ୍ୟା ସମ୍ବନ୍ଧରେ ନିର୍ଲିପ୍ତ ବର୍ଣ୍ଣନା କରାଯାଇଛି । ବିପ୍ଳବକୁ ଭିତ୍ତି କରି ଉପନ୍ୟାସ ଲେଖାଯାଇ ପାରେ, ଏବଂ ବୈପ୍ଳବିକ ଉପନ୍ୟାସ ମଧ୍ୟ ଲେଖାଯାଇପାରେ । 'ଦାଟୁ'କୁ ଦ୍ୱିତୀୟ ଗୋଷ୍ଠୀର ଉପନ୍ୟାସ ଭିତରେ ଗଣା ଯାଇପାରେ । ଏହାର ବିଶେଷତ୍ୱ ଏହି ଯେ, ବୈପ୍ଳବିକ ଚିନ୍ତାଧାରରେ ଭାସିଯାଇ ଉପନ୍ୟାସର ଉଦ୍ଦେଶ୍ୟ, ଉପନ୍ୟାସର ଚରିତ୍ରମାନଙ୍କୁ ଗ୍ରାସ କରିଦେଇ ନାହିଁ । ଜାତିଆଣ ପ୍ରଥା ମଧ୍ୟ ଉପନ୍ୟାସ କଥାବସ୍ତୁର ଏକ ଅବିଚ୍ଛେଦ୍ୟ ଅଙ୍ଗ ହୋଇଯାଇଛି । ଅନ୍ୟ ଜାତିର ଯୁବକକୁ ବିବାହ କରିବାକୁ ଇଚ୍ଛା କରୁଥିବା ନାୟିକାକୁ ତା'ର ସ୍ୱଜାତି ଲୋକଙ୍କ ଦ୍ୱାରା ପରିଚାଳିତ କଲେଜ ଚାକିରୀରୁ ବିତାଡିତ କରାଯାଏ । ହରିଜନମାନଙ୍କର ମନ୍ଦିର ପ୍ରବେଶ ବିଚାରକୁ ପ୍ରୋତ୍ସାହନ ଦେଉଥିବା ମନ୍ତ୍ରୀ 'ମେଲେଗିରୀ' ଗୌଡଙ୍କ ପିତା ବୃଦ୍ଧ ଗୌଡ ହରିଜନମାନଙ୍କ ପ୍ରବେଶ ପରେ ମନ୍ଦିରକୁ ଗୋ ମୂତ୍ର ଆଦିରେ ଶୁଦ୍ଧ କରନ୍ତି, ଏବଂ ନିଜକୁ ବ୍ରାହ୍ମଣମାନଙ୍କ ଠାରୁ ମଧ୍ୟ ଶ୍ରେଷ୍ଠ ବୋଲି ସାବ୍ୟସ୍ତ କରିବାକୁ ଯାଇ ସେ ବ୍ରାହ୍ମଣଙ୍କ ଠାରୁ ମଧ୍ୟ ଅଧିକ ଶୁଦ୍ଧାଚାରୀ ହୋଇ ଯାଇଛନ୍ତି । ହରିଜନ ବସ୍ତିରେ ଗାନ୍ଧୀବାଣୀର ପ୍ରଚାର କରିବାକୁ ଚେଷ୍ଟାକରୁଥିବା ହରିଜନ ନେତା ବେଟ୍ଟୟ୍, ନିଜେ ଭେଙ୍କଟରମଣୟ୍ୟାଙ୍କୁ ଛୁଇଁବାକୁ ଘୃଣାକରେ ଯାହାକି ଜାତି ଭେଦ ସମସ୍ୟାର ପ୍ରକୃତ ପରିଚୟ ଦିଏ । ଏହି ସବୁ ବିରୋଧାଭାସ ଗୁଡ଼ିକୁ ଉପନ୍ୟାସରେ ବଡ ଅବିକଳ ଭାବରେ ଉପସ୍ଥାପିତ କରାଯାଇଛି । ସେଥିପାଇଁ ଯେତେବେଳେ ଏଭଳି ପରିସ୍ଥିତିମାନ ଉପନ୍ୟାସରେ ଆସିଛି, ସେତେବେଳେ ସମାଜରେ ଅନ୍ତର୍ନିହିତ ଅସଙ୍ଗତି ଗୁଡ଼ିକ ପ୍ରକାଶ ପାଇଛି ।

କେବଳ ଯେ ପ୍ରଶ୍ନପ୍ରଧାନ ଉପନ୍ୟାସରେ ଚରିତ୍ରମାନେ ହୃଦୟର ଆଲୋଡନ ଭଲ ଭାବରେ ପ୍ରତିଫଳନ କରିପାରିବେ, ଏ ବିଚାରକୁ 'ଦାଟୁ' ଉପନ୍ୟାସରେ ଖଣ୍ଡନ କରାଯାଇଛି ବୋଲି ଯାହା କୁହାଯାଏ, ସେଥିରେ ମୁଁ ଏକମତ ନୁହେଁ । ଏଥିରେ ଦିଆଯାଇଥିବା ବିଚାର ବୋଲି ଯାହା କୁହାଯାଏ, ସେଥିରେ ମୁଁ ଏକମତ ନୁହେଁ। ଏଥିରେ ଦିଆଯାଇଥିବା ବିଚାରଧାରା ସମ୍ପୂର୍ଣ୍ଣ ସଫଳ ନହେଲେ ମଧ୍ୟ, ଏହା ପ୍ରମାଣିତ କରେ ଯେ ଗୋଟିଏ ସମସ୍ୟାର ବିଭିନ୍ନ ଦିଗରୁ ବିଚାର କରାଯାଇ ପାରେ । କନ୍ନଡ ଉପନ୍ୟାସ ପରମ୍ପରାରେ ଏ ବିଚାର ଅତି ମହତ୍ତ୍ୱପୂର୍ଣ୍ଣ । ସମକାଳୀନ ସମସ୍ୟାର ସମାଧାନ ନିର୍ଣ୍ଣୟ କରିବା ସବୁବେଳେ କଠିନ, ଏବଂ ଏହା ଉପନ୍ୟାସକାର ଆଗରେ ଏକ ବଡ ପ୍ରଶ୍ନ ହୋଇ ଠିଆ ହୁଏ । ଜଣେ ସଫଳ ଲେଖକ ପାଇଁ ଆବଶ୍ୟକ ତାଜା ଅନୁଭୂତି ଏବଂ ଜୀବନକୁ ପରଖିବାକୁ ଏକ ସୂକ୍ଷ୍ମ ଦୃଷ୍ଟି । ଏ ଦୁଇ ଗୁଣର ସମନ୍ୱୟ ହୋଇଥିବାରୁ 'ଦାଟୁ' କନ୍ନଡ ଉପନ୍ୟାସ ଜଗତରେ ଅମର ହୋଇ ରହିବ ।

'ଗୃହଭଙ୍ଗ'ର ପରବର୍ତ୍ତୀ ଭାଗ 'ଅନ୍ୱେଷଣ' ନାମକ ଉପନ୍ୟାସ ରୂପରେ ଆତ୍ମପ୍ରକାଶ କରୁଛି । ଗତ କେତେବର୍ଷ ଧରି ଭୈରପ୍ପା 'ମହାଭାରତ'ର ପୃଷ୍ଠଭୂମିରେ ସାଂପ୍ରତିକ ଜୀବନର ଘଟଣା ଗୁଡ଼ିକୁ ଏକ ବୃହତ୍ ଉପନ୍ୟାସରେ ରୂପ ଦେବାପାଇଁ ସାଧନା ଚଳାଇଛନ୍ତି ।

ମାଧବ କୁଲକର୍ଣ୍ଣୀ

Digitized by srujanika@gmail.com

କର୍ଣ୍ଣାଟକ ରାଜ୍ୟର ତୁମକୁର ଜିଲ୍ଲାରେ ତିପଟୁର୍ ତହସିଲ । ଏଇ ତହସିଲର କମ୍ବନକେରେ ଇଲାକାରେ ରାମସନ୍ଦ୍ର ବୋଲି ଗାଁ ଟିଏ । ଗାଁ ଖାନଦାନୀ ଅମୀନ ରାମନ୍ନା ମରିବାର ଛଅ ବର୍ଷ ହେଲାଣି । ଏବେ ତାଙ୍କ ସ୍ତ୍ରୀ ଗଙ୍ଗାମ୍ମା ଏବଂ ଦୁଇପୁଅ ଚେନ୍ନିଗରାୟ୍ ଓ ଅପନ୍ନାୟ୍ୟା ଅଛନ୍ତି । ରାମନ୍ନାଙ୍କ ମୃତ୍ୟୁବେଳକୁ ଗଙ୍ଗାମ୍ମାକୁ ପଚିଶି ବର୍ଷ । ବଡ ପୁଅ ଚେନିଗରାୟ୍ ନଅ ବର୍ଷର ଏବଂ ସାନ ଅପନ୍ନାୟ୍ୟା ସାତବର୍ଷର ହୋଇଥାଏ । ରାମନ୍ନାଙ୍କ ମୃତ୍ୟୁପରେ ତାଙ୍କର ବଂଶପରମ୍ପରାଗତ ଅମୀନ କାମ ଗାଁର ମୁଖିଆ ଶିବ ଗୌଡ଼ର ଶଳା ଶିବଲିଙ୍ଗ ଗୌଡ ଦେଖାଶୁଣା କରୁଥାଏ । କାରଣ ଚେନ୍ନିଗରାୟ୍ ସେତେବେଳକୁ ନାବାଳକ । ଏହାଛଡା ଅମୀନ କାମ ଏତେ ସହଜ ତ ନୁହେଁ । ଏଥିପାଇଁ କିଛି ପଢାଶୁଣା ଦରକାର । ହିସାବକିତାବ ରଖିବା ଏବଂ ଜମି ମାପଚୁପ ସମ୍ବନ୍ଧୀୟ କାଗଜ ଦସ୍ତାବିଜରେ ଦୋରସ୍ତ ହେବା ନିହାତି ଆବଶ୍ୟକ । ସେଥିପାଇଁ ଚେନ୍ନିଗରାୟ୍ ଗାଁ ଚାଟଶାଳୀକୁ ପାଠ ପଢିବାକୁ ଯାଏ ।

କିନ୍ତୁ ସାନଭାଇ ଅପନ୍ନାୟ୍ୟାର ଚାଟଶାଳୀ ଦୁଆର ମାଡିବାକୁ ଇଚ୍ଛା ନଥାଏ । ସିଲଟ ଧରି ବସିବା ତା ପକ୍ଷରେ ଅସମ୍ଭବ । ତାର ବ୍ରତଘର ମଧ୍ୟ ହୋଇନଥାଏ । ଗଙ୍ଗାମ୍ମା ଯେତେ ଆକଟକରି କହିଲେ ମଧ୍ୟ ସେ କାନଦିଏ ନାହିଁ । ମା ଯଦି କହେ, "କିରେ ପଢିବାକୁ ଯାଉନୁ ?" ଅପନ୍ନାୟ୍ୟା ମୁହେଁ ମୁହେଁ ଜବାବ ଦେଇ କହେ "ମୁଁ ପାଠ ନ ପଢିଲେ ତୋର କଣ ଭାସି ଯାଉଛି ?" ତା ପାଟିରୁ କେତେକଣ ଅଶ୍ରାବ୍ୟ ଗାଳି ବରଷିଯାଏ । ମା ବୋଲି ଯେମିତି ଟିକିଏ ଖାତିରି ନାହିଁ । ଏପରିକି ତାକୁ ଦୋଗାରୁଣୀ ବୋଲି ମଧ୍ୟ କୁହେ । ଗଙ୍ଗାମ୍ମା ମଧ୍ୟ ଅଭିସମ୍ପାତ ବର୍ଷଣ କରିବାକୁ ପଛାଏ ନାହିଁ । "ମତେ ଦୋଗାରୁଣୀ କହୁଛୁ ? ତୋ ବଂଶ ବୁଡିଯିବ ।" ଅପନ୍ନାୟ୍ୟା ଚିଡେଇ କହେ,"ବଂଶତ ତୋହରି ନଷ୍ଟ ହେଉଛି ।" ଗଙ୍ଗାମ୍ମା ପାଟିକରି ଉଠିଲା,"ଆରେ ଏ ମୁଦା ନେଲୁ ଏ ଅଳପେଇଷକୁ ଘୋଷାଡି ଘୋଷାଡି ଚାଟଶାଳୀ ମାଷ୍ଟର୍ଙ୍କ ପାଖକୁ," ଏ କଥା ଅପନ୍ନାୟ୍ୟା ଯେମିତି ଶୁଣିଛି ଡିଆଁମାରି ପଳେଇଗଲା । କିନ୍ତୁ ଗାଁ ଚଉକିଆ ମୁଦା ପାଞ୍ଚହାତିଆ ମରଦ । ଦଶଟା ପାହୁଣ୍ଡରେ ଅପନ୍ନାୟ୍ୟା ବେକୁ ଧରିପକାଇଲା । ଅପନ୍ନାୟ୍ୟା ହାତଗୋଡ ବାଡେଇ ପାଟିକରୁଥାଏ । ଗଙ୍ଗାମ୍ମା କହିଲା,"ଦେଖିଲୁ ଏ ଟୋକା କେମିତି ହେଉଛି । ଦେ ତାକୁ ଦିପାହାର," କିନ୍ତୁ, ବ୍ରାହ୍ମଣ ଘର ପୁଅକୁ ମୁଦା କ'ଣ ହାତ ଉଠାଇ ମାରିପାରିବ ? ସେ କ'ଣ ଜାଣିନି ଯେ ବ୍ରାହ୍ମଣ ଉପରକୁ ହାତ ଉଠାଇଲେ ହାତ ଛିଣ୍ଡିଯିବ ! ସେଥିପାଇଁ ସେ ଅପନ୍ନାୟ୍ୟାର ଡେଣାଟା ଧରି ଘୋଷାଡି ଘୋଷାଡି ଚାଟଶାଳୀ ଅବଧାନ କେଶବୟ୍ୟାଙ୍କ ପାଖକୁ ନେଇଗଲା ।

ଗଙ୍ଗାମ୍ମାର ନଜର ଏବେ ପଡିଲା ବଡପୁଅ ଉପରେ,ପାଟିକରି କହିଲା,"ଏ ଚେନ୍ନିଗା, ତୁ କଣ ଏମିତି ଘରେ ବସିଥିବୁ ? ତୋ ଆଗରେ କେତେଥର ମୁଣ୍ଡ ବାଡେଇ କହିଲିଣି, ହୋନ୍ନବଳୀ ଗାଁର

Digitized by srujanika@gmail.com

ସୀତାରାମୟ୍ୟାଙ୍କ ପାଖକୁ ଯାଇ ଅଙ୍କହିସାବ ଶିଖିବାକୁ ? କାଲି ସକାଳୁ ଯିବୁତ ଯିବୁ ନହେଲେ ତୋ ଉପରେ ମଧ୍ୟ ବସିବ ଗୋଟାକାତେ ।'' ଚେନ୍ନିଗା ଖମ୍ବ ପଛଆଡୁ ପାଟିକରି କହିଲା,''ମତେ ଆଉ ସେମିତି କହିବୁ ଯଦି ତୋ ମୁଣ୍ଡ ଭଣ୍ଡା କରିଦେବି ।'' ଏକଥା ଶୁଣି ଗଙ୍ଗାମ୍ମାର କ୍ରୋଧ ଦ୍ୱିଗୁଣିତ ହୋଇଗଲା ! କହିଲା,''ତୋ ବାପା ମରିବା ପର ଠାରୁ ମୋର ସବୁ ଦୁର୍ଭାଗ୍ୟ ମାଡି ଆସିଛି । ନହେଲେ ଜନ୍ମକଲା ମା'କୁ କେଉଁ ପୁଅ ଏମିତି କହେ ! ତୋ ପାଟିରେ ପୋକପଡୁ, ''ଏହିପରି ମା ଓ ପୁଅଙ୍କ ମଧ୍ୟରେ ବଚସା ଲାଗିରହିଥାଏ ।

ରାମସନ୍ଦ୍ର ଗାଁରୁ ହୋନ୍ନବଳୀ 18 ମାଇଲ ଦୂର । ଦୁଇଟିଯାକ ଗାଁ ତିପଟୁର ତହସିଲରେ । ହୋନ୍ନବଳୀ ଗାଁରେ ଆଗରୁ ତହସିଲ ଅଫିସ ଥିଲା ଏବଂ ସେଇଠାରେ ସୀତାରାମୟ୍ୟା ଜଣେ ବହୁତ ଖ୍ୟାତି ସମ୍ପନ୍ନ ଅମୀନ ଥିଲେ । ଜମିବାଡି ମାପହିସାବରେ ସେ ଏକଦମ୍ ଓସ୍ତାଦ୍ । ଏମିତି କେହି ପୁଅ ନାହିଁ ଯିଏ ତାଙ୍କ ହିସାବକୁ କାଟିଦେବ । ତାଙ୍କଠାରୁ ଯିଏ କାମ ଶିଖିଛି ସିଏ ଅମୀନ କାମରେ ନାମ କମେଇଛି । ତାଙ୍କ ନାଁ ଆଖପାଖ ତହସିଲମାନଙ୍କରେ ମଧ୍ୟ ଜଣା । କିନ୍ତୁ ସୀତାରାମଙ୍କ ପାଖରେ କାମ ଶିଖିବା ଏତେ ସହଜସାଧ୍ୟ ନଥିଲା । ତାଙ୍କଠାରୁ ଗୁଳବାଡି ମାଡ ଯିଏ ନଖାଇଛି ସିଏ ବା କି ଅମୀନ ହେବ ? ଖାତାମାନଙ୍କରେ ପୃଷ୍ଠା ଚିହ୍ନ ଦେବାଠାରୁ ଆରମ୍ଭ କରି ନାଲି କାଳିରେ ଗୁଳ ପକାଇବା ପର୍ଯ୍ୟନ୍ତ ସବୁକାମକୁ ଟିକିନିଖି ବତାଇବା ତାଙ୍କର ଅଭ୍ୟାସ । ଚାଟଶାଳୀ ଅବଧାନଙ୍କ ପରି ସେ କହନ୍ତି ''ବିନା ମାଡରେ କଣ ପାଠ ହୁଏ ?''

ପୁଅ ଦୁହିଁଙ୍କର ଗୁଣ ଦେଖି ଗଙ୍ଗାମ୍ମା ବ୍ୟସ୍ତ ହୋଇ ଉଠିଲା । ଆଖିରୁ ଲୁହ ଝପଝପ ହୋଇ ବୋହିଗଲା । କାନ୍ଦିକାନ୍ଦି କହିଲା,''ମୋ ଫଟା କପାଳ, ଆଉ କାହାଘରେ କେହି ନିକମ୍ମା'କୁ ଏତେ ବେଖାତିର କରୁନଥିବେ । ଏ ଅଳପେଇଷଙ୍କୁ କି ରୋଗ ଧରିଛି କେଜାଣି ।'' ରାଗରେ ତମ୍‌ତମ୍ ହୋଇ ଲୁହାପାତିଆ ଖଣ୍ଡେ ନେଇ ଜଳନ୍ତା ଚୁଲି ଭିତରେ ପକାଇଦେଲା । ବଡପୁଅ ଏହାର ଗୂଢ଼ଅର୍ଥ ବୁଝିପାରି ଏକା ନିଶ୍ୱାସରେ ଯେତେ କଦର୍ଯ୍ୟ ଗାଳି ହୋଇପାରେ ବକି ଦେଇ ଦୌଡି ପଳାଇଲା । ଗଙ୍ଗାମ୍ମା କଣ ହାରମାନିବା ସ୍ତ୍ରୀ । ବସି ବସି ଭାବିଲା ଏ ଟୋକା ଦୁଇଟାଙ୍କୁ କେମିତି ଶାସନ କରିବ । ତେଣେ ଲୁହାପାତିଆଟା ରଡନିଆଁ ଭିତରେ ପାଚିଆସୁଥାଏ ।

ଗଙ୍ଗାମ୍ମା ଶାଶୁଘରେ ପାଦଦେଇଥିଲା ତେର ବର୍ଷ ବୟସରେ । ସେତେବେଳକୁ ସ୍ୱାମୀଙ୍କୁ ହୋଇଥାଏ ପଇଁଚାଳିଶ । ଦ୍ୱିତୀୟପକ୍ଷ ସ୍ତ୍ରୀ । ପ୍ରଥମ ସ୍ତ୍ରୀର ଦୁଇଟି ଯାକ ପିଲା ମରିଯାଇଥିଲେ । ପ୍ରଥମ ସ୍ତ୍ରୀର ବାପଘର ଗଙ୍ଗାମ୍ମାର ଗାଁରେ । ରାମନ୍ନା ସେତବେଳକୁ ତିନିଖଣ୍ଡ ଗାଁର ଅମୀନ ଥାନ୍ତି । ତାଙ୍କର ଛଅ ଏକର ଜମି, ଆଠ ଏକର ଖଣ୍ଡେ ଖଜାବାଡ଼ି ଓ ତିନିଶହ ନଡିଆ ଗଛ ଥିଲା । ସୁନାରୁପା, କଂସାବାସନ ଆଦି ଭରପୂର । ଏତେ ସମ୍ପତ୍ତି ପାଇଁ ଦ୍ୱିତୀୟପକ୍ଷ ହୋଇ ବିବାହ କରିବାକୁ କେହି ନାପସନ୍ଦ କଲେ ନାହିଁ । ଏହାଛଡା ଭଲଲୋକ ବୋଲି ତାଙ୍କର ବହୁତ ସୁନାମ ଥିଲା । କିନ୍ତୁ ଗଙ୍ଗାମ୍ମା ବହୁତ ମୁହଁଖର । ପରଲୋକଗତ ସ୍ୱାମୀଙ୍କର ଏହିପରି ସୁଗୁଣ ଶୁଣିଲେ ସେ ବ୍ୟସ୍ତ ହୋଇ ଉଠେ । ତାର ଇଚ୍ଛା ହୁଏ

Digitized by srujanika@gmail.com

କହିଲା ଲୋକର ମୁଣ୍ଡ ଉପରେ ଦୁଇ ଗାପୁଡ଼ା ବସେଇ ଦେବା ପାଇଁ । ସତରେ ଯଦି ତାର ଦୁଇ ପୁଅ ଗୁଣର ହୋଇଥାନ୍ତେ ଏବଂ ତା' ବୋଲ ମାନୁଥାନ୍ତେ ସେ ସତକୁ ସତ ଏପରି କିଛି କରିପକାନ୍ତା । କିନ୍ତୁ ସେ ବା କଣ କରିପାରିବ । ପିଲାଦୁଇଟା ନିହାତି ଗଜମୂର୍ଖ । ହେଲେ ଗଙ୍ଗାଜ୍ଜା ମନେମନେ ଭାବିଲା, "ଏ ଦୁଇଟାଙ୍କୁ ଯଦି ଚେଙ୍ଗେ ନ ଦେଇଛି ତେବେ ମୁଁ ବାପର ଝିଅନୁହେଁ । ଲୁହାପାତିଆଟା ଚୁଲିରେ ସେମିତି ତାତୁଥାଉ । ସନ୍ଧ୍ୟାହେଲେ ତ ଗିଳିବାକୁ ଘରକୁ ନିଶ୍ଚୟ ଆସିବେ । ସେତେବେଳେ ତାଙ୍କ ଗୋଡ଼ରେ ପଟେ ପଟେ ଲାଗିଲେ ଯାଇ ମୋ ମନ ଶାନ୍ତ ହବ ।"

ଏତିକିବେଳେ ଚାଳର ଖପର ଉପରେ କେହି ଜଣେ ଚାଲିବାର ଶବ୍ଦ ହେଲା, ଗଙ୍ଗାଜ୍ଜା ଭାବିଲା ବୋଧହୁଏ ମାଙ୍କଡ ଡେଉଁଥିବେ । ମନେମନେ ତୁହାଏ ଗାଳିବର୍ଷଣ କଲା ମାଙ୍କଡମାନଙ୍କ ଉପରେ, "ଗଛରେ ନଡିଆକଷିଟିଏ ତ ରଖେଇଦେଲେନି । ପୋଡାମୁହାଁ ଗୁଡାକ ଚାଳରେ ଖପରଟିଏ ମଧ୍ୟ ରଖେଇ ଦେବେନି । ମରଣ ହେଉନି ଏଗୁଡାକର । ଏଗୁଡାକ କୁଆଡେ ହନୁମାନ ଦେବତାଙ୍କ ବଂଶଧର !" ଜାଣେ ଆଉ ଅଧିକା ଗାଳି ଦେଲେ ହନୁମାନ ଦେବତାଙ୍କର ଅଭିଶାପ ପଡିପାରେ ଏକଥା ଭାବି ଗଙ୍ଗାଜ୍ଜା ଚୁପ ରହିଲା । କିନ୍ତୁ ଉପରକୁ ଚାହିଁ ଦେଖେତ ତାକୁ ଲାଗିଲା କିଏ ଜଣେ ଠେଙ୍ଗାରେ ଖପରଗୁଡାକ ବାଡେଇ ଭାଙ୍ଗିବାରେ ଲାଗିଛି । ଖପର ସବୁ ଖଣ୍ଡ ଖଣ୍ଡ ହୋଇ ରୋଷେଇଘରେ ପଡୁଥାଏ । ତା ମୁଣ୍ଡରେ ମଧ୍ୟ ଖଣ୍ଡେ ଆସି ପଡିଲା । ଗଙ୍ଗାଜ୍ଜା ପାଟିକରି ଉଠିଲା "ସତ୍ୟାନାଶିଆ "। ଏତିକିବେଳେ ଚେନ୍ନିଗା ପାଟିକରି କହିଲା "ଏ ଅପନ୍ନାପ୍ପା, ଦେ ଆଉ ଦିପାହାର ସେ ଖପର ଉପରେ । ମା ସେଇଠି ଠିଆହୋଇଛି ।" ଦୁଇ ଭାଇଙ୍କର ଠେଙ୍ଗା ମାଡରେ ଖପର ସବୁ ଖଣ୍ଡ ଖଣ୍ଡ ହୋଇ ତଳେ ପଡୁଥାଏ । ଗଙ୍ଗାଜ୍ଜାର ପାଟି ଶୁଭୁଥାଏ । "ରହ, ତୁମ ଦୁଇ ଜଣଙ୍କୁ ଠିକ୍ କରିଦେଉଛି । ଗାଁ ମୁଖିଆକୁ କହି ତୁମକୁ ଯଦି ଫାଶି ଉପରେ ନ ଚଢେଇଛି ତେବେ ମୋ ନାଁ ନୁହଁ ।" ଏତକ କହି ଘରୁ ବାହାରିଗଲା ।

ଅପନ୍ନାପ୍ପା ବଡଭାଇକୁ ସଜାଗ କରିଦେଲା, "ଆରେ ମା ଯାଉଛି ମୁଖିଆକୁ ଡାକିବା ପାଇଁ," ତାପରେ ଦୁଇଜଣ ଯାକ ଚାଳଉପରୁ ଡେଇଁ ବାଡି ପାଖ ଦେଇ ନାଳ ଆରପଟ ଆଡକୁ ଦୌଡି ଦୌଡି ଚାଲିଗଲେ ।

**2**

ତିନପିଲା ରାମସନ୍ଦ୍ର ଗାଁରେ ପାଞ୍ଚଶହ ପରିବାର ରହୁଥିଲେ । କିନ୍ତୁ ଏବେ ଅମାନର ରେକର୍ଡରୁ ଜଣାପଡେ ଯେ କେବଳ ଶହେ ଶତଚାଳିଶଟି ପରିବାର ରହୁଛନ୍ତି । ଗାଁ ଦିମୁଣ୍ଡରେ ଦୁଇଟି ବଡ

Digitized by srujanika@gmail.com

ପୋଖରୀ । ବର୍ଷାଦିନରେ ପୋଖରୀ ପାଣି ଉଚ୍ଛୁଳି ଗଡଖାଇବାଟରେ ଯାଇ ଗାଁ ମୁଣ୍ଡର ପୁରୁଣା ଭଙ୍ଗା ଦୁର୍ଗ ପର୍ଯ୍ୟନ୍ତ ମାଡିଯାଏ । ଗାଁ ଦକ୍ଷିଣପଟ ପୋଖରୀ କୂଳରେ ଗୋକେଶ୍ୱର ମହାଦେବଙ୍କ ମନ୍ଦିର । ମନ୍ଦିର ସାମନା ରାସ୍ତାଦେଇ ଗଲେ ଗାଁ ସେ ପାଖେ ପଡେ ବ୍ରହ୍ମ ମଣ୍ଡପ, ତା ପାଖକୁ ହନୁମାନ ମନ୍ଦିର । ଗାଁ ମୁଣ୍ଡରୁ ଟିକିଏ ଦୂରରେ ଗଛବୁଦା ଗହଳରେ ଗ୍ରାମଦେବୀ ମା କାଳୀ ଠାକୁରାଣୀଙ୍କ ମନ୍ଦିର, ଗାଁ ଭିତରେ ଅନେକ ସାହି, ବଣିଆ, କୁମ୍ଭାର, ବଢେଇ, ତେଲି ଗଉଡ ଆଦି ପ୍ରତ୍ୟେକ ଜାତି ପାଇଁ ଅଲଗା ଅଲଗା ସାହି ।

ମୁଖିଆ ଶିବଗୌଡ ଏବଂ ସ୍ୱର୍ଗତ ଅମାନ ସାମନ୍ତଙ୍କ ଘର ମଧ୍ୟରେ ଦୁଇଟି ସାହିର ପାର୍ଥକ୍ୟ । ସେଦିନ ଶିବଗୌଡ଼ ଘରେ ଥାଏ । ଗଙ୍ଗାମା ସିଧା ଘରଭିତରକୁ ପଶିଆସି କହିଲା, "ଶୀଘ୍ର ଆ' ଦେଖିବୁ ମୋର କୁଳଙ୍ଗାର ପୁଅ ଦୁଇଟା କିପରି ତାଳର ଖପରାସବୁ ଭାଙ୍ଗି ଗୁଣ୍ଡକରିଛନ୍ତି । ହେଇଟି ଦେଖ, ମୋ ମୁଣ୍ଡରେ ଖପରା ପଡି କିପରି ରକ୍ତ ବାହାରୁଛି ।" ଶିବଗୌଡ଼ ଆଶ୍ଚର୍ଯ୍ୟ ହୋଇ ପଚାରିଲା, "କଥା କ'ଣ ?"

"ଚାହାଳୀକୁ ଯିବାକୁ କହିଲି ବୋଲି ମୋର ଦୋଷ ହେଲା । ପାଠ ପଢିବାକୁ ଯିବେନି, ତା ସାଙ୍ଗକୁ କାହିଁକି କହିଲି ବୋଲି ତାଳରୁ ଖପର ଭାଙ୍ଗି ଗୁଣ୍ଡ କଲେ ।" ଶିବ ଗୌଡର ସ୍ତ୍ରୀ ଗୌରମା କହିଲା, "ପିଲା ଚଗଲା ହୋଇଗଲେଣି । ତାଙ୍କୁ ଟିକିଏ ଭଲକରି ଶାସନ କର ।" ମୁଖିଆ ଚପଲଯୋଡ଼ି ଗଙ୍ଗାମାର ଘରଆଡକୁ ବାହାରିପଡିଲା । ଏକେତ ପୃଥଳକାୟ ଶରୀର ପୁଣି ପେଟଟି ଆଗକୁ ଓହଳିପଡିଥାଏ । ସରଜମିନରେ ପହଞ୍ଚିଲା ବେଳକୁ ଦୁଇଭାଇ କେତେବେଳୁ ଫେରାର ହୋଇସାରିଥାନ୍ତି ।

ଇତିମଧ୍ୟରେ ଗାଁର ପାଞ୍ଚ ଦଶଜଣ ଲୋକ ମଧ୍ୟ ସେଠି ଜମା ହୋଇଯାଇଥାନ୍ତି । ରୋଷେଇଘରର ଖପର ଚାଳଟି ପୁରା ଭାଙ୍ଗିଯାଇଥିଲା । ମୁଖିଆ ଦୁଇ ଚାରିଜଣକୁ କହିଲା, "ଯାଅ ସେ ଦୁଇଭାଇକୁ ଖୋଜି ଧରି ଆଣିବ ।" ଚାଳର ଅବସ୍ଥା ଦେଖି ଗଙ୍ଗାମା କାନ୍ଦ କାନ୍ଦ ହୋଇ କହିଲା "ଏ ଶିବଗୌଡ, ଏ କୁଳଙ୍ଗାରମାନଙ୍କ ପାଇଁ ଟିକିଏ ଦୟାମାୟା ରଖିବାକଥା ନୁହଁ । ଆଣୁଗଣ୍ଡି ଭାଙ୍ଗିପକାଇଦେଲେ ଯାଇ ସେମାନେ ଜାଣିବେ ।

ବହୁତ ଖୋଜିଲାପରେ ମଧ୍ୟ ଦୁଇଭାଇଙ୍କର ପତ୍ତା ମିଳିଲାନି । ଚାହୁଁ ଚାହୁଁ ଅନ୍ଧାର ହୋଇଗଲା । ଗଙ୍ଗାମା ସେତିକିବେଳୁ ବସି ଭଡ ଭଡ ହେଉଥାଏ । "କୁଆଡେ ମଲେ କେଜାଣି, କେଉଁଠି ଲୁଚିକରି ବସିଥିବେ ? ତାଙ୍କୁ କଣ ଭୋକ ଶୋଷ ଜଣାପଡୁଥିବ କି ? ଭୋକହେଲେ ତ ବାଡିରୁ ନଡିଆ ତୋଳେଇ ଖାଇଦେଉଥିବେ, ନହେଲେ ଆମ୍ବୁବାଡିରୁ ଆମ୍ବୁଭାଙ୍ଗି ଖାଉଥିବେ । ହେଲେ ଘରକୁ ଫେରିବାକୁ କଣ ବେଳ ହୋଇନି ? ଆଜି ରାତିରେ ନ ଆସିଲେ କାଲି ସକାଳେ ତ ନିଶ୍ଚୟ ଆସିବେ ଯିବେ କୁଆଡେ । ସେତେବେଳେ ତାଙ୍କୁ ପଚାରିବି ।"

Digitized by srujanika@gmail.com

ଗଙ୍ଗାମାର ଘର ସାମନାରେ ଚୋଳେଶ୍ୱରଙ୍କ ମନ୍ଦିର । ମନ୍ଦିରରେ ପ୍ରତିଦିନ ପ୍ରାୟ ରାତି ବାରଟା ପର୍ଯ୍ୟନ୍ତ ମହାଦେବଯ୍ୟାଙ୍କର ଭଜନ ଶୁଣିବାକୁ ମିଳେ । ଲୋକେ କହନ୍ତି ମହାଦେବଯ୍ୟା ଏ ଗାଁକୁ ପ୍ରାୟ କୋଡିଏ ବର୍ଷ ହେଲା ଆସିଛନ୍ତି । ତାଙ୍କ ଘର କେଉଁଠି କେହିଜାଣନ୍ତିନି । ଗାଁକୁ ଆସିବା ଦିନଠାରୁ ପ୍ରତିଦିନ ସିଏ ଏକତାରା ଧରି ମନ୍ଦିର ମଣ୍ଡପରେ ଭଜନ କରୁଥାନ୍ତି । ଭିକ୍ଷାରୁ ଯାହାମିଳେ ସେଥିରେ ପେଟ ପୋଷନ୍ତି । ଦେଖିବାକୁ ଗୋଲଗାଲ ଚେହେରା । କପାଳରେ ତିନିଗାର ବିଭୂତି ମରାହୋଇଥାଏ । ମୁଣ୍ଡ ଲଣ୍ଡା । ଗେରୁଆ ରଙ୍ଗର ଜୁଗା ଓ କୁର୍ତ୍ତାଟିଏ ପିନ୍ଧିଥାନ୍ତି ।

ସେଦିନ ରାତିରେ ଗଙ୍ଗାମା ଆଖିରେ ନିଦ ନଥାଏ । ପିଲାଦୁଇଟା କୁଆଡେ ଗଲେ ତାକୁ ସେଇ ଚିନ୍ତା ଘାରୁଥାଏ । ପ୍ରାୟ ଅଧରାତି ହେବଣି, ମନ୍ଦିରରୁ ମହାଦେବଯ୍ୟାଙ୍କର ଭଜନ ଶୁଣାଯାଉଥାଏ । କିଛି ସମୟପରେ ଗଙ୍ଗାମା ଦୁଆର ବନ୍ଦକରି ମନ୍ଦିର ମଣ୍ଡପ ପାଖରେ ପହଞ୍ଚିଲା । ସନ୍ଧ୍ୟାବେଳେ ଗାଁର ଯିଏ ଯେମିତି ମହାଦେବଯ୍ୟଙ୍କ ଭଜନ ଶୁଣିବାକୁ ଆସନ୍ତି ସେମାନେ କେତେବେଳୁ ଚାଲିଗଲେଣି । ଗଙ୍ଗାମା ମଣ୍ଡପର ଗୋଟିଏ ଖମ୍ବକୁ ଆଉଜି ବସିଲା । ଭଜନ ସରିଲାପରେ ଗଙ୍ଗାମା ପଚାରିଲା "ମତେ ଟିକିଏ ବୁଦ୍ଧି ବତାଅ । ନିଉଛୁଣା ପିଲାଦିଟାକୁ ମୁଁ ଆଉ ସମ୍ଭାଳିପାରୁନି ।"

"ଗଙ୍ଗାମା ବ୍ୟସ୍ତ ହୁଅନି । ସେମାନେ ଏବେ ପିଲା । ସେମାନଙ୍କର ବୁଦ୍ଧି ହୋଇନି । କିନ୍ତୁ ତୁମ ତୁଣ୍ଡରୁ ଗାଳିଗୁଲଜ ପ୍ରଥମେ ବନ୍ଦ ହେବା ଦରକାର ।"

"ମୁଁ କଣ କହିଲି କି ?"
"ନିଉଛୁଣା ପିଲା ବୋଲି ତ ମୋ ଆଗରେ ହେଇଟି ଏବେ କହିଲ । କାହିଁ, କହିଲନିତ ଏମିତି ହୋଇଛି କି, ସେମିତି ହୋଇଛି ।"

ଗଙ୍ଗାମାର ଗାଳିଗୁଲଜ କରିବା ଅଭ୍ୟାସଟା ବହୁତ ପୁରୁଣା । ମହାଦେବଯ୍ୟା କେତେଥର ଯେ ତାକୁ ବୁଝାଇଛନ୍ତି ତାର ହିସାବ ନାହିଁ । କିନ୍ତୁ ସେ କି ଛାଡୁରିବା ଜନ୍ତୁ । ମହାଦେବଯ୍ୟା ଯେତେବେଳେ ସୁଯୋଗ ପାଆନ୍ତି ତାକୁ ଏହିପରି ବୁଝାନ୍ତି । ତାପରେ ଗଙ୍ଗାମା କହଲା, "ରାତି ଆସି କେତେ ହେଲାଣି, ସେ ଟୋକା ଦୁଇଟା ଫେରିନାହାନ୍ତି କଣ କରିବି କହିଲ ?"

ମହାଦେବଯ୍ୟାଙ୍କୁ ଦୁଇ ଭାଇଙ୍କର ଟାଳଭାଙ୍ଗିବା ଉପାଖ୍ୟାନ ଜଣାଥାଏ । ସେ କହିଲେ,"ପିଲା ଦୁଇଟା କଣ ଟିକିଏ ଦୋଷ କରିଦେଲେ ବୋଲି ସିଧା ଗାଁ ମୁଖିଆ ପାଖକୁ ପଠାଇଲ ।"

"ଆଉ କଣ କରିଥାନ୍ତି ? ତାଙ୍କୁ ମୁଁ କଣ ଧରିପାରିଥାନ୍ତି ?"
"ଦୋଷ ତୁମର" । ମହାଦେବଯ୍ୟା ବୁଝାଇଲେ ।" "ମା ଯଦି ପୁଅକୁ ସୁଧାରି ନପାରିବ ବାହାର ଲୋକ କଣ କରିପାରିବେ ।"

Digitized by srujanika@gmail.com

ଏଇ ଉପଦେଶ ଗଙ୍ଗାଙ୍କାର ହୃଦୟକୁ ଛୁଇଁଲା ।

"ଅପନ୍ନାସ୍ୟାଙ୍କୁ ଚାହାଙ୍କାକୁ ପଠାଇଲ ଯେ, ସେ ତୁମଠାରୁ ଯେମିତି ସବୁ ଗାଳି ଗୁଲଜ ଶୁଣିଥିଲ ମାଷ୍ଟ୍ରକୁ ସେମିତିକା ଗାଳି ଦେଲା ।"

"ମୋର କପାଳ, କଣ କରିବି । ଏତେ ହନ୍ତସନ୍ତ କରୁଛନ୍ତି ଯେ ମୋ ପାଟିରୁ କଣ ନା କଣ ବାହାରିଯାଉଛି । ହେଲେ ମାଷ୍ଟ୍ରକୁ ଯଦି ସେ ଗାଳିଦେଲା ତାହାହେଲେ ସେ ଅଳପେଇଷକୁ ଦିପାହାର ବସାଇ କଣ ଶାସନ କରିନଥାନ୍ତେ ।"

"ଆଜ୍ଞା ଦି'ଭାଇ ଆସି ଏଇ ଖପର ଭାଙ୍ଗିବା କାର୍ତ୍ତି କରିଛନ୍ତି ନା !"

"ତାଙ୍କର ସତ୍ୟାନାଶ ହେଉ । ଏଇନେ ଏତେ ଟଙ୍କା କେଉଁଠୁ ଆଣିବି ଖପର ବଦଳାଇବାକୁ ।"

"ଫେର୍ ସେମିତି ଖରାପ କଥା କହିଲ । ତୁମକୁ - - - - - - - "

କହୁକହୁ ମହାଦେବଯ୍ୟା ଅଟକି ଗଲେ । ବାହାରେ ଦଶବାରଜଣ ଦୌଡି ଦୌଡି ଯିବାର ଶବ୍ଦ ଶୁଣାଗଲା । ସେମାନେ ଚିତ୍କାର କରୁଥିଲେ, "ଧାଇଁ ଆସ ଧାଇଁ ଆସ । ଆଖୁକିଆରୀରେ ନିଆଁ ଲାଗିଯାଇଛି ।"

ଗଙ୍ଗାଙ୍କା ଓ ମହାଦେବଯ୍ୟା ମଣ୍ଡପ ବାହାରକୁ ଆସି ଦେଖନ୍ତି ତ ପୋଖରୀ ସେପାଖ ଥିବା ଆଖୁବାଡି ଖୁବ୍‌ଜୋରରେ ଜଳିଯାଉଛି ।

"ହାଏ, ଏ କଣ ହେଲା । ଆମ ଆଖୁକିଆରୀରେ ମଧ୍ୟ ନିଆଁ ଲାଗିଯାଇଥିବ । କିଏ ସେ ବାଡିପଡା ନିଆଁଲଗାଇଛି କେଜାଣି ?" ଏହିପରି ଅନର୍ଗଳ ଅଭିସମ୍ପାତ ବର୍ଷଣ କରି କରି ଗଙ୍ଗାଙ୍କା ନିଜଘର ଆଡକୁ ଦୌଡିଗଲା । ଘରେ ତାଲା ଲଗାଇ ଆଖୁକିଆରୀ ଆଡକୁ ଦୌଡିଗଲା ।

ସେତେବେଳକୁ ଗାଁର ସବୁଲୋକ ପୋଖରୀକୂଳରେ ରୁଣ୍ଡ ହୋଇ ସାରିଥାନ୍ତି । ଆଖୁକିଆରୀର ପଶ୍ଚିମପଟେ ଦୁଇଟି ଆଖୁପେଡା କଳ ବସିଥାଏ । ପୂର୍ବପଟ କିଆରୀ ପଟୁ ନିଆଁ ଲାଗିଥାଏ । ଏବଂ ପ୍ରବଳବେଗରେ ପଶ୍ଚିମ ଆଡକୁ ମାଡିଆସୁଥାଏ । ଆଖୁଗଛ ଗୁଡାକ ବେଶ୍ ପୁରଷ୍ଟିଆ ହୋଇଥାନ୍ତି । ଶୁଖିଲାପତ୍ର ସବୁ ଖୁବ୍ ଶୀଘ୍ର ନିଆଁ ଧରିଯାଉଥାନ୍ତି ତେଣୁ ନିଆଁ ମାଡି ମାଡି ଚାଲିଥାଏ । ଏତିକିବେଳକୁ ପବନ କୁଆଡେ ଥିଲା ସେ ମଧ୍ୟ ଏ ହୁତାଶନକୁ ଆହୁରି ପ୍ରବଳ କରିବାକୁ ସାହାଯ୍ୟ କଲା । ଯେଉଁ ଲୋକମାନେ ଆଖୁପେଡାରେ ବ୍ୟସ୍ତ ଥିଲେ ଅଗ୍ନିର ତେଜ ଧୀରେ ଧୀରେ ବଢିବା ଦେଖି ବଳଦଗୁଡାକ ଫିଟେଇ ଦେଇ ପୋଖରୀ ଆଡକୁ ଘଉଡେଇ ନେଲେ । କୁଡିଆ ଭିତରେ ଥୁଆହୋଇଥିବା ଗୁଡ ହାଣ୍ଡିଗୁଡାକ ବୋହି ନେଇ ଦୂରକୁ ରଖିବାରେ ଲାଗିଲେ । ଆଖୁପେଡା କଳଗୁଡାକ ଟେକିନେଇ ପୋଖରୀ କୂଳରେ ରଖିଦେଲେ । ଏଭିତରେ ନିଆଁ ପ୍ରାୟ ସବୁଯାକ ଆଖୁକ୍ଷେତ ମାଡିସାରିଥାଏ । ଏହାଛଡା ପୋଖରୀ କୂଳର ଆଖପାଖରେ ଥିବା ନଡିଆ ବଗିଚା ଓ ବାଉଁଶବୁଦା ମାନଙ୍କରେ ମଧ୍ୟ ନିଆଁ

Digitized by srujanika@gmail.com

ଧାସ ବାଙ୍ଗି ତାଳପତ୍ର ସବୁ ଝର୍ଝରିବା ଆରମ୍ଭ କରୁଥାନ୍ତି । ଲାଗୁଥାଏ ସତେଯେପରି କେଇ ମିନିଟ ମଧ୍ୟରେ ଆଖପାଖ ସମଗ୍ର ବାଡିବଗିଚା ଭସ୍ମ କରିଦେବ । ଏଣେ ନିଆଁର ତେଜ ଯେତିକି ବଢ଼ି ଚାଲିଥାଏ ପୋଖରୀ କୂଳରେ ରୁଣ୍ଡ ହୋଇଥିବା ଆତଙ୍କିତ ଗ୍ରାମବାସୀମାନଙ୍କର 'ହାଏ ହାଏ' ଚିତ୍କାର ସମାନ ତାଳରେ ବଢ଼ିଚାଲିଥାଏ । ସମସ୍ତଙ୍କ ମନରେ ଗୋଟିଏ ପ୍ରଶ୍ନ । ନିଆଁ ଲାଗିଲା କେମିତି ? କିଏ ଲଗାଇଲା ?

ଆଖୁବାଡିକୁ ଲାଗି ଏକରେ ହେବ ବଗିଚା ଗଙ୍ଗାମାର । ସେଥିରେ ପ୍ରାୟ ଚାଳିଶଟି ନଡିଆ ଗଛ ଥିଲା । ତିନିପଟକୁ ଲାଗି ଆଖୁକିଆରୀ । ଲୋକମାନଙ୍କ କୋଳାହଳ ଏବଂ ନିଆଁ ଜଳିବାର ଶବ୍ଦ ଭେଦକରି ଗୋଟିଏ ପିଲାର ବିକଳ ଚିତ୍କାର ଶୁଣାଯାଉଥାଏ । "ମତେ ବଞ୍ଚାଅ । ମରିଗଲି - ମରିଗଲି" ରୁଣ୍ଡ ହୋଇଥିବା ଲୋକେ ଆଶ୍ଚର୍ଯ୍ୟ ହୋଇ ଚିତ୍କାର ଯେଉଁଆଡୁ ଆସୁଥାଏ ସେଇଆଡ଼କୁ ଦେଖୁଥାନ୍ତି । ଗଙ୍ଗାମା ହଠାତ୍ ପାଟିକରି ଉଠିଲା, "ଆରେ ଏ ତ ମୋ ପୁଅ ଚେନ୍ନିଗା ପାଟିପରି ଶୁଭୁଛି । ଅଳପେଇଷ ଏତେରାତି ପର୍ଯ୍ୟନ୍ତ ଏ ବାଡି ଭିତରେ ପଶି କଣ କରୁଥିଲା ? ଭଗବାନ୍, ଏବେ କଣ କରିବି ? ଏ ନିଆଁଭିତରୁ କେମିତି ସେ ଆସିବ ?" ଲୋକମାନଙ୍କୁ କହିଲା –

"ଏ ପୁଅ, ତୁମ ହାତଗୋଡ ଧରୁଛି । ତୁମ ଗୋଡତଳେ ପଡୁଛି, ତାକୁ ବଞ୍ଚାଅ ।"

ହେଲେ କାହାର ଜୀବନକୁ ଲୋଭ ନାହିଁ ଯେ ଏ ନିଆଁର ଘେର ଭିତରେ ପଡିବ । ନଡିଆ ବଗିଚାରେ ମଧ୍ୟ ନିଆଁ ଲାଗିସାରିଥାଏ । ନିଆଁ ଏତେ ଉପରକୁ ଉଠୁଥାଏ ଯେ ନଡିଆ ବାହୁଙ୍ଗା ଏବଂ ଗୋଟମା ପର୍ଯ୍ୟନ୍ତ ବାଜୁଥାଏ । କାହାରି ସାହାସ ପାଉନଥାଏ ଭିତରକୁ ଯିବାପାଇଁ । କିନ୍ତୁ ମହାଦେବଯା ଆଗକୁ ବାହାରି ପଡି କହିଲେ, "ଆରେ ଦେଖୁଚ କଣ ମ ! ଆମେ ଏତେ ଲୋକଥାଉ ଥାଉ ପିଲାଟାକୁ ବଞ୍ଚାଇ ପାରିବାନି ?" ଏହା କହି ସେ ନିଆଁ ଲାଗିଥିବା ଦୁଇ ଆଖୁକିଆରୀ ଭିତରେ ଥିବା ପାଣିନାଳବାଟେ ନଡିଆ ବଗିଚା ଭିତରକୁ ପଶିଗଲେ ।

ଗଙ୍ଗାମା ପାଟିକରି ଉଠିଲା, "ଏଠି କଣ କେହି ମରଦପୁଅ ନାହାନ୍ତି ? ମୁଁ ମାଇପିଲୋକଟିଏ ହେଲେ ମଧ୍ୟ ମୋର ସାହସ ଆସୁଛି ।" ଏହା କହି ଗଙ୍ଗାମା ବାଡତଳକୁ ଓହ୍ଲାଇଲା । ଏଥର ଚାରିପାଞ୍ଚଜଣ ଲୋକ ଗଙ୍ଗାମା ପଛେ ପଛେ ନିଆଁ ଆଡକୁ ଦୌଡିବାକୁ ଲାଗିଲେ ।

ଏଣେ ବାଡି ଭିତରେ ଚେନ୍ନିଗା ନଡିଆ ଗଛ ଭିତରେ ବସି ରଡ଼ି ଛାଡୁଥାଏ । ମହାଦେବଯା ପାଟିକରି ଡାକୁଥାନ୍ତି ।"ଆରେ ଏ, ଶୀଘ୍ର ଓହ୍ଲାଇ ଆସ । ଆଉ ଡେରିକଲେ-ବାଡି ଚାରିପାଖେ ନିଆଁ ଘେରିଯିବ ।" ଧଇଁସଇଁ ହୋଇ ଗଙ୍ଗାମା ବାଡିଭିତରେ ପହଞ୍ଚି ପାଟିକଲା, "ମୋ ଧନଟାପରା ଶୀଘ୍ର ଓହ୍ଲାଇପଡ ।" ପୁଅର ଅବସ୍ଥା ଦେଖି ମା ଆଖିରୁ ଲୁହ ବୋହିଯାଉଥାଏ । ଏହାପରେ ଚେନ୍ନିଗା ଦମ୍ଭଧରି ଧିରେ ଧିରେ ଓହ୍ଲାଇଲା । ନିଆଁ କିନ୍ତୁ ମାଡିଯାଉଥାଏ । ଚେନ୍ନିଗାକୁ ଧରି ପାଣିନାଳ ବାଟେ ମନ୍ଦିର ଆଡକୁ ଚାଲି ଆସିଲେ । ଆଖୁ ଶାଳ ପାଖରେ ପଡିଥିବା ଆଖୁ ଚୋପା ଗଦାମାନଙ୍କରେ ଏବେ ସୁଦ୍ଧା ନିଆଁ ହୁତୁ ହୁତୁ ହୋଇ ଜଳୁଥାଏ ।

Digitized by srujanika@gmail.com

ପୋଖରୀ କୂଳରେ ପହଞ୍ଚି ମହାଦେବଯ୍ୱା ଚେନ୍ନିଗାକୁ ପଚାରିଲେ,"ଏତେବେଳ ଯାଏଁ ଗଛ ଉପରେ କାହିଁକି ବସିଥିଲୁ । ସେ କହିଲା,"ମା କାହିଁକି ମୁଖିଆ ଶିବଗୌଡ଼କୁ ଡାକିବାକୁ ଯାଇଥିଲା କି ?" ସେତେବେଳକୁ ଗାଁର ପ୍ରାୟ ସବୁଲୋକ ଏବଂ ଶିବଗୌଡ଼ ସେଠାରେ ରୁଣ୍ଡ ହୋଇସାରିଥାନ୍ତି । ମହାଦେବଯ୍ୱା ପଚାରିଲେ."ତୁମେ ଦୁଇଭାଇ ବଡ ଦୁଷ୍ଟ ହୋଉଛ । ଚାଳରୁ ଖପରାତକ କାହିଁକି ଭାଙ୍ଗିଲ ?" ସାନପୁଅ ଅପନ୍ନାଯ୍ୱାକୁ ନ ଦେଖି ଗଙ୍ଗାମ୍ମା ପାଟିକରି କହିଲା,ନିଆଁ ଲାଗୁ ସେ ଚାଳରେ ଅପନ୍ନାଯ୍ୱା କୁଆଡେ ଗଲା ?" ଚେନ୍ନିଗା କହିଲା,"ସେଇତ ନିଆଁ ଲଗେଇ ସାରି ଲିଙ୍ଗାପୁର ଆଡକୁ ଦୌଡିପଳାଇଲା ।"

"ସିଏ କାହିଁକି ଲଗାଇବ ମ ?"ଗଙ୍ଗାମ୍ମା ମନାକଲା ।

"ମୁଁ କହିଲି ଚାଲ ନଡିଆ ଗଛ ଉପରେ ଲୁଚିପଡିବା । କିନ୍ତୁ ସେ ନଡିଆ ଗଛ ଉପରେ ଆଖୁଶାଳରେ ଥିବା ଲୋକେ ଦେଖିଦେବେ ସେଥିପାଇଁ ଦି' ଆଖୁକିଆରୀ ମଝିରେ ଥିବା ପାଣିନାଳରେ ବସିଥିଲା । ସେଠାରେ ବିଡିପିଇବ ବୋଲି ଦିଆସିଲି ଜଳେଇ ଜଳନ୍ତାକାଠିଟି ଶୁଖିଲା ଆଖୁପତ୍ର ଆଡକୁ ପିଙ୍ଗିଦେଲା ।"

ଏତକ ଶୁଣି ଶିବଗୌଡ଼ ଗର୍ଜିକହିଲା,"ଆରେ ଶୁଣୁଛ କଣ କିରେ ? ବେଗେ ଦୁଇ ଚାରିଜଣ ଧାଇଁଯାଇ ସେ ଟୋକାକୁ ଧରିଆଣ ।" କିନ୍ତୁ ମହାଦେବଯ୍ୱା କହିଲେ,"ପିଲାଟା କଥାରେ ବିଶ୍ୱାସ କଣ ? କିରେ ତୁ କଣ ଦେଖିଛୁ ସେ ଜଳନ୍ତା ଦିଆସିଲି କାଠି ପିଙ୍ଗିବାର ?"

"ମୁଁ କାହିଁକି ମିଛ କହିବି ? ଭଗବାନ୍‌ଙ୍କ ରାଣ । ସେ ନିଜେ ଦୌଡି ଦୌଡି ଆସି ମତେ ଏକଥା କହିଲା ଯେ ବିଡି ପିଉ ପିଉ ଆଖୁ କିଆରୀରେ ନିଆଁ ଲାଗିଯାଇଛି । ଆହୁରି କହିଲା, ଚାଲ ଲିଙ୍ଗାପୁର ଆଡକୁ ପଳାଇବା । ମୁଁ କହିଲି,ମୁଁ କାହିଁକି ଯିବି ତୁ ତ ନିଆଁ ଲଗାଇଛୁ ?"

ଏ ଅଗ୍ନିକାଣ୍ଡ ବିଷୟରେ କି ପ୍ରକାର ଶାସ୍ତି ଦିଆଯିବ, ଏକଥା ମୁଖିଆ ଶିବଗୌଡ଼ ଏବଂ ଅନ୍ୟ କେତେକ ଲୋକ ଚିନ୍ତା କରିବାକୁ ଲାଗିଲେ । ଗଙ୍ଗାମ୍ମାକୁ କିଛି ବୁଦ୍ଧି ଦିଶୁନଥାଏ । ମହାଦେବଯ୍ୱା ଶିବଗୌଡ଼ର ଉଦ୍ଦେଶ୍ୟ ବୁଝିପାରି କହିଲେ,"ପିଲାଟାର କଥାରେ ଏତେ ବିଶ୍ୱାସ କରିଯିବା ଠିକ୍ ନୁହେଁ ?" ଶିବଗୌଡ଼ ଜୋର ଦେଇ କହିଲା,"ଏଥିରେ ଅବିଶ୍ୱାସ କରିବାର କଣ ଅଛି ?" ଚେନ୍ନିଗା ପୁଣି କହି ଉଠିଲା,"ଆଜ୍ଞା ମୁଁ ନିରଛଟ ସତକଥା କହୁଛି ଏବଂ ମୋର କିଛି ଦୋଷ ନାହିଁ ।" ବଡଭାଇର ମୂର୍ଖାମୀ ଦେଖି ମହାଦେବଯ୍ୱା ଚୁପ ରହିଲେ । ଭାବିଲେ ଏ ମୂର୍ଖଟା ପାଇଁ ଗାଁ ଲୋକଙ୍କ ସାଙ୍ଗରେ ଶତ୍ରୁତା କରି ଲାଭ ବା କଣ ?

Digitized by srujanika@gmail.com

ମୁଖିଆର ଆଦେଶରେ ଗାଁ ଚଉକିଆ ଏବଂ ଆଉ କେତେଜଣ ଲୋକ ତତ୍‌କ୍ଷଣାତ୍ ଅପନ୍ନାସ୍ୱାକୁ ଖୋଜିବାକୁ ବାହାରି ପଡିଲେ । ରାତିଅନ୍ଧାରକୁ ଡରି ଅପନ୍ନାସ୍ୱା ବେଶି ଦୂରକୁ ଯାଇପାରିନଥିଲା । ପୋଖରୀ ଆରପଟେ ଗୋଟିଏ ଭଙ୍ଗା ପୋଲ ପାଖରେ ଚୁପଚାପ୍ ହୋଇ ବସିଥିଲା । ଚଉକିଆ ଅନୁମାନ କରି ପୋଲଭିତରକୁ ଚାହିଁ ଦେଖେତ ଅପନ୍ନାସ୍ୱା । ଅପନ୍ନାସ୍ୱା ସଙ୍ଗେ ସଙ୍ଗେ ତା ଗୋଡତଳେ ପଡିଗଲା । ଚଉକିଆ ଗୋଟିଏ ଝୁଙ୍କାରେ ଅପନ୍ନାସ୍ୱାକୁ ନିଜ ପିଠିରେ ଉପରେ ପକାଇ ପୋଖରୀ କୂଳରେ ଜମାହୋଇଥିବା ଲୋକମାନଙ୍କ ପାଖକୁ ନେଇଗଲା ।

ସେତେବେଳକୁ ସବୁଯାକ ଆଖୁକ୍ଷେତ ଜଳିସାରି ଅଙ୍ଗାର ହୋଇଯାଇଥାଏ । ସମସ୍ତଙ୍କ ଆଗରେ ଅପନ୍ନାସ୍ୱାକୁ ଓହ୍ଲାଇଲା ବେଳକୁ ସେ ଗୋଟିପଣେ ଥରୁଥାଏ । ମୁଣ୍ଡଠାରୁ ଗୋଡ ପର୍ଯ୍ୟନ୍ତ ଝାଳସରସର । ପୁଅକୁ ଦେଖି ଗଙ୍ଗାମ୍ମାର ସତେ ଯେପରି ଗୋଟିଏ ବଡ ଭୟ କଟିଗଲା । ସେ ମନେମନେ ଠିକ୍ କରିଥିଲା ଯେ ଏଥର ଭଲକରି ତା'ଉପରେ ମାଡ ବସିବା ଦରକାର । କିନ୍ତୁ ଶିବଗୌଡର ଚିନ୍ତାଧାରା ଅନ୍ୟପ୍ରକାର ଥିଲା ।

ସେ ପଚାରିଲା, "କିରେ ଟୋକା, ନିଆଁ କାହିଁକି ଲଗାଇଲୁ ?" ଡରରେ ଅପନ୍ନାସ୍ୱାର ପାଟି ଫିଟୁନଥାଏ । ଆଉଥରେ ଗର୍ଜି ପଚାରିଲାରୁ ସେ କହିଲା, "ମୁଁ କିଛି ଜାଣିନି ।" ସାନଭାଇର ଏପରି ମିଛକଥା ଚେନ୍ନିଗା କଣ ସହ୍ୟ କରିପାରେ ? ଆଗଭର ହୋଇ କହିଲା – "କଣହେଲା ତୁ ଜାଣିନୁ କେମିତି ନିଆଁ ଲାଗିଲା ? ବିଡିରେ ନିଆଁ ଧରାଇଲାବେଳେ ଆଖୁପତ୍ରରେ ନିଆଁ ଲାଗିଗଲା ବୋଲି ପରା ତୁ ନିଜେ ଆସି ମତେ କହିଲୁ ?"

ଏପରି ଟାଣୁଆ ପ୍ରମାଣ ଆଗରେ ଅପନ୍ନାସ୍ୱା କେବଳ ମୁଣ୍ଡତଳକୁ କରି ମୌନ ହୋଇ ରହିଥାଏ । ତାର ଗୋଡ ଦୁଇଟା ଠକ୍‌ଠକ୍ ହୋଇ ଥରୁଥାଏ । ସଙ୍ଗେ ସଙ୍ଗେ ପୁରୋହିତ ଶାସ୍ତ୍ରୀ ଆପଣେ କହିଲେ, "ଆରେ କଣ ବୁଝୁଛ ? କଥାରେ ଅଛି ପରା "ମୌନ ସମ୍ମତି ଲକ୍ଷଣ – ଅର୍ଥାତ ଏହା ସ୍ପଷ୍ଟ ହୋଇଗଲା – ଯେ ପ୍ରକୃତରେ ଏ ପିଲାହିଁ ନିଆଁ ଲଗାଇଛି । ବର୍ତ୍ତମାନ ଆଗକୁ କଣ ବିଧାନ କରାଯିବ ତାହା ଚିନ୍ତା କରାଯାଉ ।"

ଯେଉଁମାନଙ୍କର ଆଖୁକିଆରୀ ନଷ୍ଟ ହୋଇଥାଏ, ସେମାନେ ସବୁ କହି ଉଠିଲେ, "ମୋ କ୍ଷେତର ଆଖୁ ଭାରି ମିଠା - ମିଶ୍ରୀ ଭଳିଆ ଗୁଡ ହୋଇଥାନ୍ତା ଅଣକୁ ଦି ଗୁଳାକରି ଗୁରୁବାର ଦିନ ହାଟରେ ଖୁବ୍ ବିକ୍ରୀ ହୋଇଥାନ୍ତା । ଅତିକମ୍‌ରେ ମୋର ତିନିଶହ ଟଙ୍କା ଗଲା ।"

Digitized by srujanika@gmail.com

ଆଉ ଜଣେ କହିଲା – "ମୋର ତ ଆଖୁଶାଳରେ ଗୁଡତକ ତିଆରି ସରିଥିଲା । ଯେଉଁତକ ଗଛ ବାକି ଥିଲା, ସେତକ ମିଶି ଚାରିଶହ ଟଙ୍କା ନୋକସାନ୍ ହେଲା ।"

ଏମିତି ସମସ୍ତେ ନିଜ ନିଜର କ୍ଷତି କଥା ବଖାଣିବାକୁ ଲାଗିଲେ । ପୁରୋହିତ ଶାସ୍ତ୍ରୀଙ୍କର କିଛି କ୍ଷେତ ନଷ୍ଟ ହୋଇନଥିଲେ ମଧ୍ୟ ସେ କହିଉଠିଲେ, "ଏ କଥା ସତ ଯେ ମୋର କିଛି ଫସଲ ନଷ୍ଟ ହୋଇନି, କିନ୍ତୁ କ୍ଷତି ହୋଇଛି । କିରେ, ଗୁଡ ତିଆରି ହେଲାବେଳେ ପ୍ରତି ଆଖୁଶାଳରେ ଗଣେଶ ପୂଜା କରି ପ୍ରତି ଗୁଡ କରେଇ ପାଇଁ ଗୁଳେ ଗୁଳେ ଗୁଡତ ମିଳିଥାନ୍ତା । ହିସାବକଲେ ସବୁ ହୋଇ ଅତିକମ୍‌ରେ ପାଞ୍ଚଶହ ଗୁଳାତ ମିଳିଥାନ୍ତା । ତେଣୁ ଧରିନିଅ ମୋର ପଚାଶ ଟଙ୍କା କ୍ଷତି ହେଲା । ଏହାଛଡା ଆଖୁ ଦୋରୁଅ କେତେ ପିଇଥାନ୍ତି, ଆଉ ଗୁଡ କରେଇ ଓହ୍ଲାଇଲାବେଳେ ଗରମ ଗରମ ଫୁଲଗୁଡ କେତେ ମଜାରେ ଖାଇଥାନ୍ତି । ଏସବୁ ମୋର କ୍ଷତି ନୁହଁତ ଆଉ କଣ ?"

ଏମାନଙ୍କର କଥାଶୁଣି ମହାଦେବଯ୍ୟା ବିରକ୍ତ ହୋଇ କହିଲେ, "ପୁରୋହିତ ଆପଣେ । ଆପଣଙ୍କର ଚକ୍ରବୃଦ୍ଧି ହିସାବଟା ଟିକିଏ ବେଶୀ ହୋଇଗଲା । କିହୋ, ଯାହାର କ୍ଷେତ ଜଳିଛି ସିଏ ସିନା କ୍ଷତି ପୂରଣ ମାଗିବ । ତୁମର ଗୋଟେ କଣ କ୍ଷତି ହୋଇଯାଉଛି ? ଆଚ୍ଛା ଲୋକ ତୁମେ ସବୁ, ରେବଣସେଠୀର ହିସାବ ମଧ୍ୟ କେଉଁ ହିସାବରେ ଲେଖା । ଆଖୁଡାଙ୍ଗ ପୁଳେ ବିଲରେ ବାକିଥିଲା ଯେ ତାର ଦାମ୍ କୁଆଡେ ଚାରିଶହ ଟଙ୍କା । କଣ ଶୁଣିବ ? ଅରବର୍ଷ ତାର ବିଲରୁ ସମୁଦାୟ ଛଅଶହଟଙ୍କା ମିଳିଥିବ କି ନାହିଁ ? ସେଠୀ ପୁଅ ମତେ ପରା ନିଜେ କହୁଥିଲା ଯେ ଆଖୁରେ ଆଉ ଲାଭ ହେଉନାହିଁ, ଜମି ଖରାପ ହୋଇଯାଉଛି, ତେଣୁ ଏଥର ଆଖୁ ଡାଙ୍ଗ ନଛାଡି, ଜମି ସଫା କରିଦେଲେ ଆସନ୍ତାକୁ ଧାନ ବୁଣିବ ।"

ଆଉ ଯିଏ ଯେମିତି ଏ ପରିସ୍ଥିତିର ସୁଯୋଗ ନେଇ ତାଙ୍କର କଣ କଣ କ୍ଷତି ହେଲା, ଏ ସବୁର ବଢାଇ ଚଢାଇ ହିସାବ ଦେବାକୁ ମନେ ମନେ ଭାବୁଥିଲେ, ସେମାନେ ମହାଦେବଯ୍ୟାଙ୍କ କଥାଶୁଣି ଟିକିଏ ଦବିଗଲେ । ନାଇଁ, କ୍ଷତିର ହିସାବଟା ଠିକ୍ ଠିକ୍ କରିବାକୁ ପଡିବ ।

ମହାଦେବଯ୍ୟା କହିଲେ, "ଗଣେଶ ପୂଜାରେ ଏତିକି ଏତିକି ସାନଗୁଡ ଗୁଳା ପୁରୋହିତଙ୍କୁ ଦିଆଯାଏ । ସେଥିରୁ ପାଞ୍ଚଶହ ଗୁଳା ପୁରୋହିତ ହିସାବ କରୁଛନ୍ତି ଯେ ସେତକ କଣ ପଚାଶ ଟଙ୍କାର ହେବ । ବଜାରରେ ବଡବଡ ଗୁଳା ଟଙ୍କାକୁ ଚାଳିଶଟା, ହେଲେ ହିସାବରେ ଯ୍ୟାଙ୍କର କେତେ ପଇସା ହେଲା ।"

ଏକଥା ଶୁଣି ପୁରୋହିତଙ୍କ ପାଟି ଏକଦମ୍ ଚୁପ । ଉଠୁ ଉଠୁ ମହାଦେବଯ୍ୟା କହିଲେ, "ଆହେ କ୍ଷତିର ହିସାବ ଯଦି ଏମିତି କରି ବସିବ ତେବେ କାହାକୁ କିଛି ମିଳିବନି । ପିଲାଟାତ ! ଅଜାଣତରେ ଯଦିବା ନିଆଁ ଲାଗିଗଲା ଏଥିରେ ତାର ଦୋଷ କଣ ? ହଁ ଏକଥା ମାନିବି ଯେ ବକଟେ ବୋଲି ପିଲା

Digitized by srujanika@gmail.com

ସେ ପୁଣି ବିଡି ପିଉଛି । ଏଥିପାଇଁ ତାକୁ ଉଚିତ ଦଣ୍ଡ ମିଳିବା କଥା । ମୁଁ ତ କହୁଛି ତାକୁ ଦି'ଚାରି ବେତଦିଅ, ନହେଲେ ଗାଁ ମାଷ୍ଟରକୁ କହି ଏହାର ଗୋଡ ହାତ ଦୌଡିରେ ବାନ୍ଧି ପକାଇଦିଅ ।''

ଏକଥା ଶୁଣି ଅପନ୍ନାସ୍ୱା ବିଳବିଳେଇ ଉଠିଲା, ''ନାଇଁ ନାଇଁ ମତେ ବାନ୍ଧ ନାହିଁ । ମୁଁ ତୁମ ଗୋଡତଳେ ପଡୁଛି ।'' ଦରକାର ନଥିଲେ ମଧ୍ୟ ବଡ ଭାଇ କହିଲା – ''ମୋର କିଛି ଦୋଷ ନାହିଁ । ତେଣୁ ଦଣ୍ଡ ତାକୁ ମିଳୁ ।''

ମୁଖିଆ ଶିବଗୌଡ଼ କହିଲା –''ତୁମେ ତ ଯୋଗୀ ଲୋକ । ଘରଦ୍ୱାର କିଛିନାହିଁ । ତମକଥା ମାନୁଛି ଯେ – ଏ ଟୋକାକୁ ଉଚିତ ଶିକ୍ଷା ମିଳିବା କଥା । କିନ୍ତୁ ଯେଉଁତକ କ୍ଷତି ହୋଇଛି ସେଥିପାଇଁ କିଏ ଦାୟୀ ? ଗାଁ ମୁଖିଆ ହିସାବରେ ମୋର ନ୍ୟାୟ ହେଉଛି ଯେ ଯାହାସବୁ କ୍ଷତି ହୋଇଛି ସେଥିପାଇଁ କିଛି ଟଙ୍କା ଦଣ୍ଡ ଆକାରରେ ଦେବାକୁ ପଡିବ । ସେ ଟଙ୍କାତକ ଯେଉଁମାନଙ୍କର କ୍ଷତି ହୋଇଛି ତାଙ୍କ ଭିତରେ ବଣ୍ଟାଯିବ ।''

ଜମା ହୋଇଥିବା ଲୋକେ ପାଟିକରି ଉଠିଲେ, ''ଏହାକୁ କହନ୍ତି ପ୍ରକୃତ ନ୍ୟାୟ ।'' ରେବଣ ସେଠୀ ଓ ଶାସ୍ତ୍ରୀ ପୁରୋହିତ କହିଲେ, ''ଇଏ ହେଉଛି ପ୍ରକୃତ ବାପର ପୁଅ ମୁହଁରୁ ବାହାରିଥିବା ନ୍ୟାୟ ।'' ତାଙ୍କ ଉଦ୍ଦେଶ୍ୟ ଥିଲା ମହାଦେବୟାଙ୍କୁ ଚିଡେଇବା । ହେଲେ, ସେ ସିଆଡେ ଧ୍ୟାନ ଦେଲେ ନାହିଁ । ଗଙ୍ଗାମ୍ମାକୁ ଧୀରେ ଧୀରେ ଜଣାପଡିଲା ମାମଲାଟା କେଉଁଆଡେ ଯାଉଛି । ସମସ୍ତଙ୍କ ଆଗରେ ହାତଯୋଡି କହିଲା – ''ମୁଁ ବିଧବା ଲୋକ । ପିଲା ଦୁଇଟା ଅଜ୍ଞାନରେ କଣ କରିପକାଇଛନ୍ତି - - '' । ମଝିରେ ଚେନ୍ନିଗା ପାଟି କରି ଉଠିଲା, ''ମୋ ନାଁ କାହିଁକି ନେଉଛୁ ମୋର କିଛି ଦୋଷ ନାହିଁ । ଖାଲି ଅପନ୍ନାସ୍ୱାର କଥା କହୁନୁ ।'' ଗଙ୍ଗାମ୍ମା ତା କଥା ନ ଶୁଣିଲା ପରି କହି ଚାଲିଥାଏ, ''ପିଲାଟାର ଭୁଲପାଇଁ ତାକୁ ମାଡଦିଅ.କିନ୍ତୁ ମୁଁ କେଉଁଠୁ ଟଙ୍କା ଆଣିବି ଯେ, କ୍ଷତିପୂରଣ ଦେବି ?''

ଅପନ୍ନାସ୍ୱା କାନ୍ଦି କାନ୍ଦି କହିଲା, ''ମତେ ମାଡ ଦିଅନି, ଜୋରିମାନା କର ପଛେ ।''

ଏ ମଧ୍ୟରେ ରୁଣ୍ଡ ହୋଇଥିବା ତଥାକଥିତ ଗାଁ ମହାଜନମାନଙ୍କ ମଧ୍ୟରେ ଚର୍ଚ୍ଚା ଆରମ୍ଭ ହୋଇଗଲା । ସମସ୍ତେ ନିଜ ନିଜ କ୍ଷତିର ହିସାବ ଶୁଣାଇଲେ । ନିଷ୍ପତ୍ତି କରାଗଲା ଯେ ଯଦି ଗଙ୍ଗାମ୍ମା ସବୁଟଙ୍କା କ୍ଷତି ପୂରଣ ଦେଇନପାରୁଛି ତେବେ ଅତି କମ୍‌ରେ ଦୁଇ ହଜାର ଟଙ୍କା ତାକୁ ଦେବାକୁ ପଡିବ । ତାହାହେଲେ ସମସ୍ତେ କିଛି କିଛି ବାଣ୍ଟିନେବେ । ଏହାଛଡା ଗଣେଶ ପୂଜାରେ ମିଳୁଥିବା ଘୃତ ଟେଙ୍କାରୁ ବଞ୍ଚିତ ହୋଇଥିବାରୁ ଶାସ୍ତ୍ରୀ ପୁରୋହିତଙ୍କୁ ଦଶଟଙ୍କା ଓ ରେବଣସେଠୀକୁ ଆଖୁମୂଳ ନଷ୍ଟ ହୋଇଥିବାରୁ ପଚାଶଟଙ୍କା ଦିଆଯାଉ ।

ଏତେଟଙ୍କାର ହିସାବଶୁଣି ଗଙ୍ଗାମ୍ମାର ମୁଣ୍ଡରେ ବଜ୍ର ପଡିଲା । ହାତଯୋଡି କେତେ କାକୁତି ମିନତି ହେଲା । ହେଲେ ମିଳୁଥିବା ଟଙ୍କା ଛାଡେ କିଏ । ମହାଦେବୟା ମଧ୍ୟ ଚୁପ ହୋଇ ରହିଥାନ୍ତି । ଗଙ୍ଗାମ୍ମା

Digitized by srujanika@gmail.com

ଯେତେବେଳେ କହିଲା ପାହୁଲାଟେ ହେଲେ ମଧ୍ୟ ନାହିଁ ତା ପାଖରେ, ଶିବଗୌଡ଼ କଥା ତୁଟାଇବା ପାଇଁ କହିଲା, "କିଛି ଚିନ୍ତା ନାହିଁ । ତୋର କ୍ଷେତ ବାଡି, ଘର, ମତେ ବନ୍ଧା ଦେଇପକା । ମୁଁ ଏ ଟଙ୍କା ତତେ ଦେବି । ପରେ ତୋ ପାଖରେ ଟଙ୍କା ହେଲେ ତୋ ଜିନିଷ ତୋତେ ଲେଉଟେଇ ଦେବି ।"

ଗଙ୍ଗାମ୍ମାକୁ କିଛି ବୁଦ୍ଧି ଦିଶୁନଥାଏ । ନିରାଶ ହୋଇ ଗାଁ ପୁରୋହିତ ଆଡକୁ ଚାହିଁଲା । ଶାସ୍ତ୍ରୀ ଆପଣଙ୍କ ମୁହଁରେ ଟିକିଏ ହେଲେ ଦୟା ନଥାଏ । ସେ ବା କାହିଁକି ତାଙ୍କ ମିଳୁଥିବା କ୍ଷତି ପୂରଣ ଟଙ୍କାରୁ ବଞ୍ଚିତ ହେବେ ? ତାଙ୍କ ପାଖରେ ତାଙ୍କ ପୁତୁରା ପୁରୋହିତ ଅପ୍ପା ଠିଆ ହୋଇଥାଏ । କକେଇଙ୍କ ନିଷ୍ପତ୍ତି ବିରୁଦ୍ଧରେ ସେ'ବା କଣ କହିବ ? ଏହାଛଡା ଗାଁର ପାଞ୍ଚଜଣ ଭଦ୍ରଲୋକ ଥାଇ ଏ ପ୍ରକାର ନିଷ୍ପତ୍ତି ନିଆ ହୋଇଛି । ଶିବଗୌଡ଼ର ନିଷ୍ପତ୍ତି ମାନିନେବା ଛଡା ଗଙ୍ଗାମ୍ମା ପାଖରେ ଅନ୍ୟ କୌଣସି ଚାରା ନଥିଲା । ମହାଦେବୟା ପୁଣି ଥରେ କହିଲେ,"ବିଲବାଡି ବନ୍ଧାରଖି ଟଙ୍କା ନିଅନାହିଁ । ଯାହାକିଛି ସୁନାରୁପା ତାକୁ ବିକିଦିଅ । ସେଥିରେ ସବୁ ଟଙ୍କା ନହେଲେ ଘରେ ଯାହା ଧାନ ଚାଉଳ ଅଛି ତାକୁ ବିକି ଜୋରିମାନା ଦେଇଦିଅ । ଯଦି ଉଧାର ନେବ ତେବେ ସୁଧ ବଢି ଚାଲିଥିବ ।"

ଶିବଗୌଡ଼ ଆଶ୍ୱାସନା ଦେଇ କହିଲା,"ଡରିବାର କିଛି କାରଣ ନାହିଁ, ମୁଁ କଣ ଏ ଟଙ୍କାର ସୁଧ ନେବି । ଖାଲି ପ୍ରମାଣକୁ ବନ୍ଧକ ପତ୍ର ଲେଖେଇ ଦେବି । ଏହାଛଡା ବାପଦାଦି ଅମଳର ଗହଣାପତ୍ର ବିକିଦେଲେ ଆଉକଣ ସେସବୁ ହୋଇପାରିବ ? ଯୋଗୀଙ୍କୁ ସିନା ଗହଣା ପତ୍ର ଦରକାର ପଡେନି ହେଲେ ଗୃହସ୍ଥ ସଂସାରୀ ଲୋକଙ୍କର ଏସବୁ ଲୋଡା ଏବେ ତୁ ଗଙ୍ଗାମ୍ମା, ନିଜେ ଠିକ୍ କର । ଗାଁର ଦଶଜଣଙ୍କ କଥାଠିକ୍ ନା ଯୋଗୀ ମହାଦେବୟାଙ୍କ କଥା ଠିକ୍ ତତେ ଯେଉଁଟା ଭଲ ଲାଗୁଛି ସେଇଟା କର ।"

ଲୋକେ ସବୁ ଶିବଗୌଡ଼ର କଥା ସମର୍ଥନ କଲେ । ଶିବଗୌଡ଼ ଶଳା, ଯିଏ ଏବେ ଗାଁର ଅମୀନ କାମ କରୁଥାଏ, କହିଲା, "ବାହାଘର ବେଳେ ଯେଉଁ ସୁନା ରୁପା ମିଳିଥାଏ, ସ୍ୱାମୀର ମୃତ୍ୟୁପରେ ତାକୁ ବିକିବାର ଅଧିକାର କୌଣସି ସ୍ତ୍ରୀର ନାହିଁ । ହଁ ଜମିବାଡ ବନ୍ଧକ ରଖାଯାଇପାରେ ।" ପୁରୋହିତ ମୁଣ୍ଡ ହଲେଇ ଏକଥାକୁ ଅନୁମୋଦନ କଲେ । ଏ ପ୍ରକାର ନ୍ୟାୟ ଓ ଯୁକ୍ତିର ବିରୋଧ କରିବା ପାଇଁ ମହାଦେବୟାଙ୍କର ଆଇନ୍ କାନୁନ୍ ଜ୍ଞାନ ଏତେ ନଥିଲା । ଥିଲେ ମଧ୍ୟ ଏ ଲୋକେ ଗରୀବର ସମ୍ପତ୍ତି ଖାଇବା ପାଇଁ ଯେଉଁ ଏକଯୁଟ ହୋଇଛନ୍ତି, ସେମାନେ କଣ କିଛି ଶୁଣିବେ ? ତାଛଡା ଗଙ୍ଗାମ୍ମା ଯେ ତାଙ୍କକଥା ମାନିବ ଓ ଗାଁ ଲୋକଙ୍କ କଥା ଟାଳିଦେବ ଏ ବିଶ୍ୱାସ ମଧ୍ୟ ମହାଦେବୟାଙ୍କର ନଥିଲା ।

ପାଞ୍ଚପଚିଶିରେ ଯାହା ତୁଟିଯାଇଛି ସେଇଟା ଶୀଘ୍ର କରିଦେବା ଦରକାର । ତା'ପରଦିନ ଦିଟା ଶଗଡ ଠିକ୍ କରି ଗଙ୍ଗାମ୍ମା ଦୁଇପୁଅଙ୍କୁ ଧରି ତିପଟୁର ସହରରେ ପହଞ୍ଚିଗଲେ । କଚେରୀରେ ବନ୍ଧକପତ୍ର ଦାଖଲ ପାଇଁ ଶିବଗୌଡ଼ ଏବଂ ଅନ୍ୟ କେତେଜଣ ଭଦ୍ରଲୋକ ମଧ୍ୟ ଆଉ ଗୋଟିଏ ଶଗଡରେ ବସି ଯାଇଥାନ୍ତି । ରେଜଷ୍ଟ୍ରି ଅଫିସରଙ୍କ ସାମନାରେ ଶିବଗୌଡ଼ ନଗଦ ଦୁଇହଜାର ଟଙ୍କା

Digitized by srujanika@gmail.com

ଗଙ୍ଗାମ୍ମାକୁ ଧରାଇଦେଲେ । ଗଙ୍ଗାମ୍ମା ଘର ଚଳାଇବାପାଇଁ ପଇସା ନେଉଛି ବୋଲି ଅଫିସରଙ୍କୁ କହି ବନ୍ଧକପତ୍ର ଦାଖଲକଲେ । ଗାଁ ଅମୀନ ଆଗରୁ ସବୁ କାଗଜପତ୍ର ଠିକ୍‌କରି ରଖିଥିଲା । ସେଥିପାଇଁ ପଚିଶଟଙ୍କା ମାଗିବାରୁ ଗଙ୍ଗାମ୍ମା କହିଲା ଫସଲ ଉଠିଲେ ତା ଟଙ୍କା ଦେଇଦବ । ଏହାପରେ ଶିବଗୌଡ଼ ନିଜପାଇଁ ଚାରିଶହଟଙ୍କା ରଖି ବାକି ଘରର ଯେମିତି କ୍ଷତି ହୋଇଥିଲା ସବୁ ଟଙ୍କା ବାଣ୍ଟିଦେଲେ ।

ଗଙ୍ଗାମ୍ମା ବିଧବା ହୋଇଥିବାରୁ ହୋଟେଲରେ କିଛି ନଖାଇ ପାଖ ପୋଖରୀରେ ଗାଧୋଇସାରି ଗାଁରୁ କାନିରେ ବାନ୍ଧି ଆଣିଥିବା ମୁଠେ ଚଣା ଓ ଟେକାଏ ଗୁଡ଼ଖାଇ ପାଣିପିଇ ରହିଗଲା । ଗାଁକୁ ଫେରି ଲାଜରେ ଗଙ୍ଗାମ୍ମା ଚାରିଦିନ ପର୍ଯ୍ୟନ୍ତ ଘରୁ ବାହାରିଲାନି । ପାଖ ଗାଁର କୁମ୍ଭାରକୁ କହି ଛାତର ଭଙ୍ଗା ଖପର ସବୁ ବଦଳାଇଲା । ସାତ ଆଠ ଦିନପରେ ମନ୍ଦିର ବେଢାକୁ ଯାଇ ମହାଦେବୟାଙ୍କ ସଙ୍ଗରେ ସୁଖଦୁଃଖ କଥାହେଲା । ବର୍ତ୍ତମାନ କଣ କରାଯିବ ଏ ବିଷୟରେ ମହାଦେବୟାଙ୍କ ମତ ପଚାରିବାରୁ ସେ କହିଲେ, "ଅପନ୍ନାୟାକୁ ମାଷ୍ଟ୍ରଙ୍କ ପାଖକୁ ନିୟମିତ ପଠାଯିବା ଦରକାର । ପାଠପଢ଼ିଲେ ତାର ଦୁଷ୍ଟାମୀ ଛାଡ଼ିଯିବ । ଚେନ୍ନିଗାକୁ ହୋନ୍ନବଳୀ ଗାଁର ସର୍ବରାକାରଙ୍କ ପାଖକୁ ପଠାଇଦିଅ । ତାଙ୍କଠୁ କାମ ଶିଖିଲେ ଚେନ୍ନିଗା ତୁମର ବଂଶପରମ୍ପରା ଗତ ଅମୀନକାମଟାକୁ ହାତକୁ ନେଇଆସନ୍ତା । ଏବେ ପର ଲୋକ ଏ ସୁବିଧା ଭୋଗୁଛି । ଆଉ ଡେରି କରନି । ଚେନ୍ନିଗାକୁ ପନ୍ଦରବର୍ଷ ହେଲାଣି । ତେଣୁ ଏଥର ବୟସ ହୋଇଗଲା ।"

ଗଙ୍ଗାମ୍ମାକୁ ଏକଥାଟା ପସନ୍ଦ ହେଲା । ଶିବଗଉଡ ଏକଥା ଜାଣିଲା ଯେ ଚେନ୍ନିଗାକୁ ଅମୀନଗିରୀ ପଢାଇବାକୁ ଗଙ୍ଗାମ୍ମା ଅନ୍ୟଆଡେ ପଠାଉଛି । ଦିନେ ସେ ଆସି କହିଲା – "ଏଇ କଥପାଇଁ ଏତେଦୂରକୁ ପଠାଇବା ଦରକାର କଣ ? ଆମ ଶିବଲିଙ୍ଗାଠାରୁ ଶିଖିଲେ କଣ ହୁଅନ୍ତାନି ? ଘର ପାଖରେ ରହି କାମ ଶିଖିଯାଆନ୍ତା ।"କିନ୍ତୁ ଗଙ୍ଗାମ୍ମା ସ୍ୱାମୀଙ୍କଠାରୁ ସୀତାରାମୟାଙ୍କର ନାଁ ଶୁଣିଥିଲା । ତେଣୁ ସେ ଠିକ୍ କରିଥିଲା ଯେ ବଡ ପୁଅ ତାଙ୍କଠାରୁ ହିଁ କାମ ଶିଖିବ । ଅମୀନ ତ ବହୁତ ଅଛନ୍ତି । ହେଲେ ଗୁରୁହୋଇ ବିଦ୍ୟା ଶିକ୍ଷା ଦେବା ଯୋଗ୍ୟତା କେବଳ ସୀତାରାମୟାଙ୍କର ଅଛି ।

ଦିନେ ଦୁଇଦିନପରେ ଶଗଡଗାଡ଼ିରେ ଦି'ପୁଅଙ୍କୁ ଧରି ଗଙ୍ଗାମ୍ମା ହୋନ୍ନବଳୀ ଗାଁକୁ ଯିବା ପାଇଁ ବାହାରିପଡ଼ିଲା । ଯିବାର ଦିନେ ଆଗରୁ ଚେନ୍ନିଗାକୁ ଗାଁ ଭଣ୍ଡାରୀ ପାଖରେ ମୁଣ୍ଡଲଣ୍ଡା କରାଇଲା । ଯିବାଦିନ ସକାଳୁ ତେଲ ଭଲ କରି ଘଷି ଦେଇ ଗାଧୋଇ ଦେଲା । ଆରିଷାପିଠା କରି ଗଣ୍ଠିଲିରେ ବାନ୍ଧି ପୁଅପାଇଁ ନେବାକୁ ରଖିଲା । ପୁଅକୁ କୋଟ ଟୋପି ପିନ୍ଧାଇ ଶଗଡରେ ବସିଲାବେଳକୁ ମହାଦେବୟା ଆସି କହିଲେ – "ପୁଅ, ନୂଆ ଯାଗାକୁ ଯାଉଛୁ, ଭଲ ପାଠ ପଢ଼ି ବଡଲୋକ ହୁଅ । ମୁହଁରୁ ଖରାପ କଥା ମୋଟେ ବାହାର କରିବୁନି ।"

ହୋନ୍ନାବଳୀର ସୀତାରାମୟା ଚେନ୍ନିଗାର ବାପାକୁ ଭଲକରି ଜାଣନ୍ତି । ଗଙ୍ଗାମ୍ମାର ଅନୁରୋଧ ରକ୍ଷାକରି ଚେନ୍ନିଗାକୁ କାମ ଶିଖାଇବାକୁ ରାଜି ହୋଇଗଲେ । ମା ଏବଂ ସାନଭାଇ ଗାଁକୁ ଫେରିବାକୁ

Digitized by srujanika@gmail.com

ବାହାରିଲା ବେଳେ ଚେନ୍ନିଗା କାନ୍ଦି ପକାଇଲା । କାନ୍ଦି କାନ୍ଦି କହିଲା, "ମା ଆଉକିଛି ଆରିଷା ଓ ମିଠେଇ କାହା ହାତରେ ପଠେଇଦେବୁ ।"

ଗାଁକୁ ଫେରି ଗଙ୍ଗାମ୍ମା ସାନପୁଅ ଅପନ୍ନାର ଚାଟଶାଳୀରେ ନାଁ ଲେଖେଇ ଦେଲା । ହେଲେ ସବୁଦିନ ତାକୁ ପାଠପଢ଼ି ଯିବା ପାଇଁ ଚଣା, ଗୁଡ଼ କିମ୍ବା ଆଉ କଣ ହେଲେ ଖାଇବା ଜିନିଷ ଲାଞ୍ଚ ଦେବାକୁ ପଡୁଥିଲା ।

Digitized by srujanika@gmail.com

# ଦ୍ୱିତୀୟ ଅଧ୍ୟାୟ

## 1

ଚେନ୍ନିଗରାୟ ତିନିବର୍ଷ ସୀତାରାମୟାଙ୍କ ପାଖରେ ରହି କାମ ଶିଖିଲା । ଏଥର ତାକୁ କାଗଜ ଉପରେ ରୋଳବାଡି ଧରି ସଳଖ ଗାର ଟାଣିବା କାମ ଆସିଯାଇଥାଏ । ହିସାବଖାତାରେ ବାଁ ପୃଷ୍ଠାରେ କ'ଣ ଲେଖା ହେବ ଏବଂ ଡାହାଣ ପୃଷ୍ଠାର ସବୁ ଧାଡିରେ ହିସାବ କରିବା ନିୟମ ମଧ୍ୟ ଶିଖିଗଲା । କିନ୍ତୁ ତାର ତାଲିମ ପୂରା ହେଲାକି ନାହିଁ ଏକଥା କହିବା କଷ୍ଟ । ଗୁରୁ ସୀତାରାମୟା କହନ୍ତି, "ତୋ ପୁଅର ଶିକ୍ଷା ଚାରିଅଣା ମଧ୍ୟ ହୋଇନି ।" ଚେନ୍ନିଗା ମୁହଁରେ ସିନା ଜବାବ ଦିଏନି କିନ୍ତୁ ଗୁରୁଙ୍କର ଏ ପ୍ରକାର କଥା ତାକୁ ଭଲ ଲାଗେନି, "ୟାଙ୍କର ପାଖରେ କଣ ଜୀବନ ଯାକ ବସି ହିସାବ ଶିଖୁଥିବି ।"

ବର୍ଷରେ ଦୁଇତିନିଥର ଚେନ୍ନିଗା ଗାଁକୁ ଯାଏ । ଚାଲିଚାଲି ଯିବାକୁ ପଡେ । ଗାଁକୁ ଆସିଲେ ମା'କୁ ପଚାରେ, "ଆଉ କେତେଦିନ ସେଠାରେ ରହିବାକୁ ପଡିବ ? ଏଥର ଗାଁକୁ ଆସି ଅମୀନ୍‌କାମ ଆରମ୍ଭ କରିବି ?"

ମା ପଚାରେ "କାମ ସବୁ ଭଲକରି ଶିଖିଗଲୁଣି ତ ?

"ଶିଖିନି ତ ଆଉ କଣ ? ପଚାରୁନୁ ମୁଁ କହିପାରୁଛି ନା ନାହିଁ ?" ଏହାପରେ ଅମୀନକାମର ବିଭିନ୍ନ ନିୟମ ଏବଂ ବିଭିନ୍ନ ପ୍ରକାର ଖାତାର ନିୟମାବଳୀ ଗାଇବାକୁ ଆରମ୍ଭ କରେ । ଏସବୁ ଶୁଣି ମା'ର ବିଶ୍ୱାସ ହୋଇଗଲା ଯେ ଏଥର ପୁଅର ଯୋଗ୍ୟତା ଆସିଗଲା । ପୁଅ ମା'ର ମନକଥା ଜାଣି କହିଲା – "ଦେଖିଲୁ ତ, ଏଥର ମୋର ବାହାଘର କରାଇଦେ ।" "ନିଶ୍ଚୟ କରାଇବି । ଆଗ ଅମୀନ ସିରସ୍ତାଟା ହାତକୁ ନେ ।"

"ସେଇଟାତ ନିଶ୍ଚିତ । ମତେ ତ ଅଠର ପୂରିଗଲା । ନାବାଳିକି କଟିଗଲା ।"

ଚେନ୍ନିଗରାୟର ଅମୀନ ବିଦ୍ୟା ହାସଲ ହେବାର ଖବର ଶୁଣି ଅନେକ ବିବାହ ପ୍ରସ୍ତାବମାନ ଆସିଥିଲା । କିନ୍ତୁ ଗଙ୍ଗାମ୍ମା ସେଆଡେ ଆଜି ପର୍ଯ୍ୟନ୍ତ ଧ୍ୟାନ ଦେଇନଥିଲା । ହେଲେ ଭେଣ୍ଡା ପୁଅଟା ଯେତେବେଳେ ପାଟି ଫିଟେଇ କହୁଛି ତେବେ ଆଉ ଡେରି କରି ଲାଭ ନାହିଁ । ପ୍ରତିକଥାରେ ଗଙ୍ଗାମ୍ମା

Digitized by srujanika@gmail.com

ମହାଦେବସ୍ୱାଙ୍କର ଉପଦେଶ ନିଏ । ତାଙ୍କୁ ପଚାରିବାରୁ ସେ କହିଲେ, " ଏତେ ତରତର କାହିଁକି ଆଉ ବର୍ଷେ ଦି ବର୍ଷ କାମଟା ଭଲ କରି ଶିଖିଯାଉ ।"

ଏକଥା ଶୁଣି ଚେନ୍ନିଗରାୟ କହିଲା – ବିବାହ କରିନେବା ଶୀଘ୍ର ଦରକାର, ତେଣୁ ମହାଦେବସ୍ୱାଙ୍କ ଉପଦେଶ ଠିକ୍ ନୁହେଁ ।

ତା' ପରଠାରୁ ଚେନ୍ନିଗା ଆଉ ସୀତାରାମସ୍ୱାଙ୍କ ପାଖକୁ କାମ ଶିଖିବାକୁ ଗଲାନାହିଁ । ଦିନେ ଶିବଲିଙ୍ଗ ପାଖକୁ ଯାଇ କହିଲା ଯେ ଏଥର ସେ ସାବାଳକ ହେଲାଣି ତେଣୁ ତାଙ୍କର ବଂଶପରମ୍ପରା-ଗତ ଅମାନ କାମ ସେ ହାତକୁ ନେବାକୁ ଚାହୁଁଛି । ଶିବଲିଙ୍ଗ କହିଲା, "ଉପରୁ ହୁକୁମ ଆସିଲେ ଯାଇ କାମ ମିଳିବ ।" ଚେନ୍ନିଗା କିଛି ବୁଝିପାରିଲା ନାହିଁ ଯେ ଉପରୁ ହୁକୁମ୍ ଆଉ କଣ ଆସିବ । ଏବେ କଣ କରିବ କିଛି ବୁଝିନପାରି ଫେରିଆସିଲା ।

ଦିନେ ଜଣେ ଲମ୍ବା ଚଉଡା ଲୋକ ଧଳା ପ୍ୟାଣ୍ଟ, ଧଳା କୋଟ୍ ଓ ଜୋତା, ମୋଜା ପିନ୍ଧି ଗୋଟିଏ ଘୋଡାରେ ବସି ଆସି ଚେନ୍ନିଗାର ଦୁଆରେ ଓହ୍ଲାଇଲେ । ଲୋକଟିର ଚେହେରା, ପୋଷାକ ଓ ଘୋଡା ଦେଖି ଯେ କେହି ଭାବିବ ଯେ ଡେପୁଟି କଲେକ୍ଟର ସାହେବ ହୋଇଥିବେ । କାରଣ ସେକାଳର ସରକାରୀ ଅଫିସର ଏପରି ପୋଷାକମାନ ପିନ୍ଧି ରାସ୍ତାରେ ଯାଆନ୍ତି । ଗଙ୍ଗାମ୍ମା ମଧ୍ୟ ଏହାଭାବି ଘର ଭିତରକୁ ଯାଇ ବଡପୁଅକୁ ଏକଥା କହିଲା । ଚେନ୍ନିଗା ବାହାରକୁ ଆସି ବଡ ନମ୍ର ହୋଇ ନମସ୍କାରଟିଏ କଲା । ପାଟି ଖନି ମାରିଯାଉଥାଏ । ହେଲେ ମଧ୍ୟ କହିଲା – "ମହାଭାଗ ମୋ ପ୍ରତି ଦୟା କରନ୍ତୁ ।" ସେ ମନେମନେ ଭାବିଲା ଅମାନ କାମଟି କରାଇଦେବା ପାଇଁ ଡେପୁଟୀ ସାହେବ ନିଜେ ଆସିଛନ୍ତି । ଚେନ୍ନିଗା ପଚାରିଲା – "ଆଜ୍ଞା ଶିବଲିଙ୍ଗ ଗଉଡକୁ ଡାକିବି କି ?" ଲୋକଟି ପଚାରିଲା "ସିଏ କିଏ ?"

"ଆଜ୍ଞା ସେ ଆଜିକାଲି ଆମର ବଂଶପରମ୍ପରାଗତ ଅମାନ କାମ କରୁଛି । ଆପଣ ଦୟାକଲେ ଆମର ଏ ପୁରୁଣାକାମଟା ମତେ ମିଳିଯାନ୍ତା । ମୁଁ ଏ ଗାଁର ସର୍ବରାକାର ସ୍ୱର୍ଗତ ରାମନ୍ନାଙ୍କର ବଡ ପୁଅ ଚେନ୍ନିଗରାୟ ।" ଧଳା ପୋଷାକ ପରିହିତ ଲୋକଟି କହିଲା, "ଆଚ୍ଛା, ଆଚ୍ଛା, ତୁମକୁ ତୁମର କାମ ମିଳିଯିବ ଚାଲ ଘର ଭିତରକୁ ଚାଲ ।"

ଘରେ ବସିବା ପାଇଁ ଚୌକି ନଥାଏ । ଗାଁଟା ସାରା କାହାଘରେ ମଧ୍ୟ ଚୌକିଟିଏ ନଥିଲା । ହଁ ପୁରୋହିତ ଶାସ୍ତ୍ରୀଙ୍କ ଘରେ ଗୋଟିଏ ଥିଲା ପରି ଲାଗୁଛି । ଆଗନ୍ତୁକ ପଟି ଉପରେ ବସିଗଲେ । ଚେନ୍ନିଗା ପିଇବା ପାଇଁ ପାଣି ଆଣି ରଖିଲାରୁ ସେ କହିଲେ "ଆରେ ଛାଡ, ପାଣି ଏବେ ପିଇବି ନାହିଁ ।"

ବେଙ୍ଗାସମ୍ମ ମା ପୁଅକୁ ସନ୍ଦେହରେ ନରଖି ଆଗନ୍ତୁକ କହିଲେ "ତୁମେ ନାଗଲାପୁର ଗାଁ ନାଁ ଶୁଣିଥିବ । ମୁଁ ସେ ଗାଁର ପୁରୋହିତ । ମୋ ନାଁ କଣ୍ଠୀଜୋଇସ୍ । ମୋର ଗୋଟିଏ ବୋଲି ଝିଅ, ନଞ୍ଜମ୍ମା,

Digitized by srujanika@gmail.com

ରେବତୀ ନକ୍ଷତ୍ର ଦ୍ୱିତୀୟପାଦରେ ତାର ଜନ୍ମ । ବୟସ ବାରବର୍ଷ, ଜାତକ ମଧ୍ୟ ସାଙ୍ଗରେ ଆଣିଛି । ତୁମ ବଡ ପୁଅର ଜାତକଟି ମତେ ଟିକିଏ ଦେଖାଅ । ବିବାହ ପ୍ରସ୍ତାବ ନେଇ ଆସିଛି ।"ମା ପୁଅ ବୁଝିଗଲେ ଯେ ଏ ଲୋକ ଡେପୁଟୀ ସାହେବ ନୁହେଁ । ଗଙ୍ଗାମ୍ମା କହିଲା,"ବିଭାଘର ହେବ ଯେ କିନ୍ତୁ ପୁଅକୁ ଅମାନ କାମ ମିଳିଯାଉିଲେ ।"

ଚେନ୍ନିଗା ମଝିରେ କହିଉଠିଲା ।"ମା' ତୁ କିଛି ଜାଣିନୁ । ପାଟି କାହିଁକି କରୁଛୁ । ଏ ବାବୁ ମତେ ଦାଣ୍ଡରେ କହିଛନ୍ତି ଯେ ଅମୀନକାମ ଆମକୁ ଦିଆଇଦେବେ ।"

କଣ୍ଠୀଜୋଇସ କହିଲେ,"ସେ ଲୋକଟା ମାତିବସିଛି । ତେଣୁ କିଛି ସମୟ ଲାଗିପାରେ । ମୁଁ ତହସିଲଦାରଙ୍କୁ କହି କାମ କରାଇଦେବି । କିନ୍ତୁ ବିଭାଘରଟା ପ୍ରଥମେ ହୋଇଗଲେ ଭଲ ।"

ଗଙ୍ଗାମ୍ମା ପୁଅର ଜାତକଟା ତାଙ୍କୁ ଦେଲା । କଣ୍ଠୀଜୋଇସଙ୍କୁ ଜ୍ୟୋତିଷବିଦ୍ୟା ଜଣାଥିଲା । ସଙ୍ଗେ ସଙ୍ଗେ ହିସାବରେ ଲାଗିଗଲେ । କହିଲେ "ଜାତକ ମେଳକଟା ଠିକ୍ ଅଛି । ବାକି ନକ୍ଷତ୍ରଟା ଠିକ କରିବା କଥା ।"

## 2

ନାଗଲାପୁର ରାମସନ୍ଦ୍ର ଗାଁଠାରୁ ବାରମାଇଲ୍ ଦୂର । ଆଖପାଖ ସବୁଗାଁରେ କଣ୍ଠୀଜୋଇସଙ୍କୁ ସମସ୍ତେ ଭଲକରି ଜାଣନ୍ତି । କଣ୍ଠୀଜୋଇସଙ୍କର ଆଛାଖାସା ଉଚ୍ଚତା, ଚଉଡା କପାଳ ଏବଂ ବଡ ଆଖିଦୃଷ୍ଟିଆ ଚେହେରା । ଗୋଟିଏ ପୁଅ ଏବଂ ଗୋଟିଏ ଝିଅ । ଝିଅଟି ସାନ । ଝିଅ ଜନ୍ମବେଳକୁ ସ୍ତ୍ରୀ ମରିଗଲେ । ଝିଅଟିକୁ ବାପା,ମା ଉଭୟର ସ୍ନେହ ଦେଇ ପାଳିଥିନ୍ତି । ଲୋକେ କେତେ କହିଲେ ମଧ୍ୟ କଣ୍ଠୀଜୋଇସ ଦ୍ୱିତୀୟ ପକ୍ଷ ବିବାହପାଇଁ ରାଜି ହୋଇନଥିଲେ । ବଡପୁଅ କଲ୍ଲେଶ ପୁଲିସ କନେଷ୍ଟବଲ ଚାକିରୀ କରେ ।

କଣ୍ଠୀଜୋଇସ ନାଁ ପ୍ରଚାର ହୋଇଥିଲା ତାଙ୍କର ବ୍ୟକ୍ତିତ୍ୱର ଅନେକ ଗୁଣ ପାଇଁ । ଏକେତ ଭୀମକାୟ ପୁରୁଷ । ତାଛଡା ନାଟକ, ଯକ୍ଷଗାନ (କର୍ଣ୍ଣାଟକ ପ୍ରଦେଶର ଏକ ବିଶିଷ୍ଟ ଲୋକ ନୃତ୍ୟ) ଆଦିରେ ଅଭିନୟ ଏତେ ସୁନ୍ଦର କରନ୍ତି,ଯେ ଥରେ ଦେଖେ ଭୁଲିପାରେ ନାହିଁ । କାଳିଦାସ· ନାଟକରେ ଭୋଜରାଜଙ୍କ ଅଭିନୟ ତାଙ୍କ ଛଡା କେହି ଏତେ ନିଖୁଣ ଭାବରେ କରିପାରନ୍ତି ନାହିଁ । ମହାଭାରତରେ ସତେ ଯେପରି ଦୁର୍ଯ୍ୟୋଧନ ଅଭିନୟ ତାଙ୍କରି ପାଇଁ ରଖାଯାଇଥିଲା । ଯକ୍ଷଗାନ ନାଚରେ ବୀରବେଶ

Digitized by srujanika@gmail.com

ଧରି ଉନ୍ମତ୍ତ ହୋଇ ସେ ଯେତେବେଳେ ନାଚନ୍ତି ତାଙ୍କୁ ବନ୍ଦ କରିବା ଅସମ୍ଭବ । କେତେ ଯେ ଗୀତ ମୁଖସ୍ଥ କରିଛନ୍ତି ହିସାବ ନାହିଁ । ଅଭିନୟ ସାଙ୍ଗରେ ବଡ ସୁନ୍ଦର ସ୍ୱରରେ ଗୀତ ଗୁଡିକ ଆମୂଳଚୂଳ ଗାଇଯାଆନ୍ତି । ଏହାଛଡା ହାରମୋନିୟମ୍, ତାବଲା ବଜାଇ ମଧ୍ୟ ଜାଣନ୍ତି । ଏବେ ପୁରୋହିତ କାମ, ଜ୍ୟୋତିଷ ବିଦ୍ୟା, ଜଡିବୁଟି, ଗୁଣୀଗାରେଡି, ଏସବୁରେ ମଧ୍ୟ ଦୋରସ୍ତ । ବଡବଡ ଅଫିସରମାନଙ୍କ ସାଙ୍ଗରେ ଇଂରାଜୀରେ ମଧ୍ୟ ଦୁଇପଦ କଥା କହିବାର ଯୋଗ୍ୟତା ତାଙ୍କର ଥିଲା ଏବଂ ମୁସଲମାନମାନଙ୍କ ସାଙ୍ଗରେ ଉର୍ଦ୍ଦୁରେ । ଏହିପରି ବହୁମୁଖୀ ବ୍ୟକ୍ତିତ୍ୱର ପରିଚିତି ଆଖପାଖ ଅଞ୍ଚଳରେ ହେବା ନିହାତି ସ୍ୱାଭାବିକ । ଶୁଣାଯାଏ ଅନେକ ମାଲିମକଦ୍ଦମାରେ ମଧ୍ୟ ସେ ଜିଣିଛନ୍ତି । ଥରେ ଦୁଇଥର କୁଆଡେ ହତ୍ୟାମାମଲାରେ ମଧ୍ୟ ଖସି ଯାଇଛନ୍ତି । ହେଲେ ଏ କଚେରୀ ଅଦାଲତ ସମ୍ବନ୍ଧୀୟ ତାଙ୍କର କୃତୀତ୍ୱ ସତ କି ମିଛ କେହି ଜାଣନ୍ତିନି । ସେ ନିଜେ କହନ୍ତି ଏ ସବୁ ମିଛ । କିନ୍ତୁ କାହା ସାଙ୍ଗରେ କଳିତକରାଳ କଲାବେଳେ ରାଗରେ ଲାଲ ହୋଇ "ତତେ ହତ୍ୟା କରିବି " ଏହିପରି କହିଲାବେଳେ ସମସ୍ତେ ଡରିଯାଆନ୍ତି । ସେ ଥିଲେ ରାତ୍ରିଚର । ଅନ୍ଧାରକୁ ତିଳେମାତ୍ର ଡରନଥିଲା । ରାତି ଅନ୍ଧାରରେ ଘୋଡାରେ ବସି ଅଣ୍ଟାରେ ଖଣ୍ଡା ବାନ୍ଧି କୋଶ କୋଶ ବାଟ ଯାଆନ୍ତି । ଦିନବେଳେ ଯିବା ଆସିବା ତାଙ୍କୁ ବୋଧହୁଏ ପସନ୍ଦ ଆସେନି ନା କଣ ? ଏହା ମଧ୍ୟ ଶୁଣାଯାଏ ଭୂତ, ପ୍ରେତ, ରାକ୍ଷସ, ପିଶାଚ, ଡାହାଣୀ ଚିରଗୁଣୀ ଏମାନଙ୍କୁ ଡରାଇ ରଖିବାର କ୍ଷମତା ତାଙ୍କର ଥିଲା । ତେଣୁ ଏଭଳି ଜଣେ ବ୍ୟକ୍ତିଙ୍କୁ ଯେ ପ୍ରାୟ ସମସ୍ତେ ଜାଣନ୍ତି ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନଥିଲା ।

ଚେନ୍ନିଗରାୟ ବିଭାଘରକୁ ରାମସନ୍ଦ୍ର ଗାଁର ସମସ୍ତ ବ୍ରାହ୍ମଣ ଏବଂ ଗଣ୍ୟମାନ୍ୟ ବ୍ୟକ୍ତି ଆସିଥିଲେ । ଦଶଖଣ୍ଡ ଶଗଡରେ ବରଯାତ୍ରୀ ଯାଇଥିଲେ । ନାଗଲପୁର ଗାଁ ମୁଣ୍ଡରୁ ବାଜା ରୋଷଣୀ ସାଙ୍ଗରେ ନେଇ କନ୍ୟାପକ୍ଷ ବରଯାତ୍ରୀଙ୍କୁ ପାଛୋଟି ନେଲେ । ବର ବସିବା ପାଇଁ ଧଳା ଘୋଡା ଆଣି କଣ୍ଠୀଜୋଇସ୍ ଆସିଥିଲେ । ହେଲେ ତା ଉପରେ ଚଢିଲା ବେଳକୁ ଚେନ୍ନିଗାର ପିଳେହିପାଣି ହୋଇଯାଉଥାଏ । ସେ ଘୋଡାରେ ବସିନଥାନ୍ତା । କିନ୍ତୁ ତା ଗାଁର ଅପମାନ ହେବ, ମା ଗାଳିଦେବ, ଏ ଡରରେ ଚଢିଗଲା । ଶଙ୍କା କଲେଶ ଘୋଡାର ଲଗାମ ଧରି ଆଗେ ଆଗେ ଚାଲୁଥିଲା । ବରପକ୍ଷ କଣ୍ଠୀଜୋଇସଙ୍କର ବ୍ୟବହାରରେ ଅତ୍ୟନ୍ତ ପ୍ରୀତ । ବଡଧୁମଧାମରେ ବାହାଘରଟି କରିଥିଲେ । ଶାସ୍ତ୍ରୀ ପୁରୋହିତ ଏବଂ ତାଙ୍କ ପୁତୁରା ବରପକ୍ଷର ପୁରୋହିତ ହୋଇ ଆସିଥିଲେ । ଶାସ୍ତ୍ରୀଙ୍କୁ ବିବାହ କର୍ମକାଣ୍ଡ ବିଷୟରେ ଜଣାନଥିଲା । କିନ୍ତୁ ପୁତୁରା ଆପ୍ପଜୋଇସ୍ ଏଥିରେ ସିଦ୍ଧହସ୍ତ । ବରପକ୍ଷର ଯଜ୍ଞକର୍ମ ବେଳେ ଖୁବ୍ ଉଚ୍ଚସ୍ୱରରେ ମନ୍ତ୍ରପାଠ କରୁଥାନ୍ତି "ଓମ୍ ଭୂରଗ୍ନିୟେ ପ୍ରାଣାୟ ସ୍ୱାହା, ଇଦମ୍ ଅଗ୍ନୟେ - - - - -।

ମନ୍ତ୍ର ଉଚ୍ଚାରଣ କନ୍ୟାପକ୍ଷ ମଧ୍ୟ ଶୁଣୁଥିଲେ । କିନ୍ତୁ କଣ୍ଠୀଜୋଇସଙ୍କ କାନରେ ଯେମିତି ଏ ମନ୍ତ୍ର ପଡିଛି, ଆସି କରି କହିଲେ "ପୁରୋହିତେ, ଅଗ୍ନି ଆହୁତି ମନ୍ତ୍ରଟା ଆଉଥରେ ଟିକିଏ ବୋଲିଲେ ।"

ଅପ୍ପାଶାସ୍ତ୍ରୀ କହିଲେ "କଣ ହେଲାକି ?"

"ନାଁ, ଏମିତି ଶୁଣିବା ।"

Digitized by srujanika@gmail.com

"ବେଦମନ୍ତ୍ର ଦୁଇଥର ପଢାଯାଏନି।" ଏହା କହି ସେ କକେଇ ଶାସ୍ତ୍ରୀଙ୍କ ଆଡକୁ ଚାହିଁଲେ।

"କାହିଁକି, ଏପରି କିଛି ନିୟମ ନାହିଁ। ଆପଣ କାହିଁକି ଭୁଲ ମନ୍ତ୍ର ପଢୁଥିବେ।"

"କଣ ହେଲା, ମୁଁ ଭୁଲ ମନ୍ତ୍ର ପଢୁଛି ? ଆଜ୍ଞା ଏ ପାଠ ଲେଖିଛନ୍ତି ସିଦ୍ଧ ଘଟ ସୁରନ୍ଦୋଇସ ମହାଶୟ। କକେଇ କଣ କହୁଛ। ତୁମେ ଯଦି କହିବ ଏ ବିବାହ କାର୍ଯ୍ୟ କରିବି ନହେଲେ ମୁଁ ଚାଲିଲି।" ଏକଥା କହି ପଣ୍ଡିତେ ଉଠିପଡିଲେ।

ହେଲେ କଣ୍ଠାଦୋଇସ କି ଛାଡିବା ଲୋକ। କହିଲେ, "ଆପଣଙ୍କ ଗୁରୁଙ୍କୁ ମଧ୍ୟ ଶୁଦ୍ଧ ସଂସ୍କୃତ ଆସେନି। 'ଭୂରଗ୍ନିସ୍' ଶବ୍ଦଟା ଭୁଲ, 'ଭୂରଗ୍ନୟେ' କହିବା ଠିକ୍। ଆପଣଙ୍କର ବ୍ୟାକରଣ ଜ୍ଞାନ ଆଦୌ ନାହିଁ। ଯଦି କହିବେ ବ୍ୟାକରଣ ଶାସ୍ତ୍ର ଆଣି ଦେଖେଇବି। ଆପଣ ଜାଣନ୍ତି ବେଦମନ୍ତ୍ର ଭୁଲ ଉଚ୍ଚାରଣ କଲେ କେତେ ଦୋଷ।"

ପଣ୍ଡିତ ଅନ୍ଦୋଇସ ଏକବାରେ ଚୁପ୍। କନ୍ୟାପିତାଙ୍କର ମନ୍ତ୍ରଜ୍ଞାନରେ ବରଯାତ୍ରୀ ମାନେ ଆଶ୍ଚର୍ଯ୍ୟ। ପାଣିଗ୍ରହଣ ସମୟରେ ମଧ୍ୟ କନ୍ୟାଦାନ ମନ୍ତ୍ର ସେ ଅତି ଉଚ୍ଚ ସ୍ୱରରେ ବୋଲିବାକୁ ଲାଗିଲେ। ସମସ୍ତେ ମଗ୍ନ ହୋଇ ଶୁଣୁଥାନ୍ତି। ବାହାଘର ପରେ ବରଯାତ୍ରୀ ବିଦା ହେବା ପୂର୍ବରୁ ଅନ୍ଦୋଇସ ପାଖକୁ ଯାଇ କହିଲେ, "ଆଜ୍ଞା ଆମେ ସିନା ମନ୍ତ୍ର ଗୁଡାକ ଘୋଷିପକାଇଛୁ ହେଲେ ବ୍ୟାକରଣ ଜ୍ଞାନ ନାହିଁ। ହୋଇଥାନ୍ତା କି କଣ ଯେ, ବାପା ମରିଗଲା ପରେ ଆଉ ପଢାଇବାକୁ କେହିନଥିଲେ। ବହି ଦେଖି ଯାହା ଶିଖିପାରିଛି ସେତିକି। ଭୁଲ ଭଟକା ହୋଇଗଲା। ଆପଣ ଟିକିଏ ଚଳାଇନେବେ। ଏଥିପାଇଁ କ୍ଷମା ଚାହୁଁଛି।"

ବିବାହ କାର୍ଯ୍ୟ ସମ୍ପନ୍ନ ହେଲା। କନ୍ୟା ବାହୁବନ୍ଧ, ଖଡୁ, ନୋଥ, ହାର, କାନଫୁଲ, ମଥାମଣି ଏବଂ ଗୋଡରେ ରୂପାର ପାହୁଡ ପିନ୍ଧି ସଜ ହୋଇଥାଏ। ବରପକ୍ଷ ମଧ୍ୟ ବିଧିଅନୁସାରେ କନ୍ୟାପାଇଁ ମଙ୍ଗଳସୂତ୍ର, କାନକୁ ଝୁମୁକା, ଏବଂ କାନଫୁଲ ନେଇ ଆସିଥିଲେ। ବୋହୂପିଲା ମଧ୍ୟ ଉଚ୍ଚସାର, ଉଚ୍ଚକପାଳୀ ଏବଂ ଗୋଲ ଆଖି ସୁଲକ୍ଷଣୀ ଝିଅଟିଏ। ବରଯାତ୍ରୀ ବାଲା କଥା ହେଲେ ଚେନ୍ନିଗାର ବହୁତ ଭାଗ୍ୟ ଜୋର ଯେ ଏମିତି କନ୍ୟାଟିଏ ପାଇଲା। ଗଙ୍ଗାମାକୁ ବୋହୂପିଲାର ଏତେ ପ୍ରଶଂସା ଭଲ ଲାଗୁନଥାଏ। ବିଭାଘରଦିନ କନ୍ୟା ବର ପିଲାର ଅଇଁଠା ଖାଇବା ବିଧି। କିନ୍ତୁ ଯାହାସବୁ ବରପିଲା ପାଇଁ ବଢାଯାଇଥିଲା ଚେନ୍ନିଗା ତାକୁ ଚାଟିବୁଟି ଏକବାରେ ସଫା କରିଦେଇଥିଲେ। ଏଥିରୁ କେତେ ଟାହି ଟାପରା ଖୁଣ୍ଟା ଦିଆଚାଲିଲା। ହେଲେ ଚେନ୍ନିଗା ତାର ବୁଦ୍ଧି ଅନୁସାରେ କହିଲା, ଭାଇ ଏତେ ସୁନ୍ଦର ଜିନିଷ ବଢା ହୋଇଥିଲା ତାକୁ ଭଲା କିଏ ଛାଡେ।

Digitized by srujanika@gmail.com

ଚେନ୍ନିଗରାୟ୍ ବହୁତ କହିଲେ ମଧ୍ୟ ଶିବଲିଙ୍ଗ ଗୌଡ ସର୍ବରାକାର କାମ ଫେରାଇଲା ନାହିଁ । ଆଗ କେତେଦିନ 'ହଁ ଦେଖିବା' କହି କହି କଥା ଟାଳୁଥାଏ । ଚେନ୍ନିଗା କିଛିଦିନ ଅପେକ୍ଷା କରି ପୁଣିଥରେ ପଚାରିବାରୁ ସେହି ଉତ୍ତର ମିଳିଲା । ଆଉଥରେ କହିଲା, "ଖରିଫ ଫସଲ ଖଜଣାଟା ଆଦାୟ୍ କରିସାରିଲା ପରେ ଦେଇଦେବି' । ଖରିଫ୍ ଫସଲ ଆହୁରି ପାଞ୍ଚମାସ ବାକି । ଚେନ୍ନିଗା କୁ ଗୌଡ କହିଲା – "ଆରେ ବାବୁ ବର୍ଷ ଶେଷ ଖଜଣାଟା ପଇଠ ନହେଲେ ତୁ ଏ କାଗଜ ପତ୍ର ନେଇ କିଛି ବୁଝିପାରିବୁ ନାହିଁ ।" ଚେନ୍ନିଗା ମନକୁ ଏକଥା ଟା ଖୁବ୍ ପାଇଲା ।

ଏଣେ ଘରେ ମଧ୍ୟ କିଛି କାମ ନାହିଁ । ଛୋଟ କନ୍ୟା ବିବାହ, ତେଣୁ ସ୍ତ୍ରୀ ଘରକୁ ଆସିନଥାଏ । ସାନଭାଇ ଅପନ୍ନା ଗାଁ ଅବଧାନଙ୍କ ପାଖକୁ ଦୁଇବର୍ଷ ଖଣ୍ଡେ ଗଲାଣି ହେଲେ ଅବଧାନେ ତା ପ୍ରତି ମୋଟେ ନଜର ଦିଅନ୍ତି ନାହିଁ । କାରଣ ସେ ଭାବନ୍ତି, ଏ ପିଲାଟର ଲାଟକରେ ପାଠ ନାହିଁ । ତେଣୁ ଅପନ୍ନାର କାମ ହେଲା - କାହାବାଡିରୁ ପଇଡ ତୋଳିବା, କେଉଁଠି ମହୁଫେଣା ଭାଙ୍ଗିବା । ଗାଁର ଭବିଷ୍ୟତ ସର୍ବରାକାର ଚେନ୍ନିଗା, ସକାଳୁ ଉଠି ନିତ୍ୟକାମ ସାରି ଗାଧୋଇ ପକାଏ । ଭଲକରି ଚନ୍ଦନ ଟିକକଟେ କରି, ସମସ୍ତେ ଶୁଣି ପାରିବା ଭଳି, 'ଓଁ ତତ୍ ସତ୍' ପାଟି କରି ଗାୟତ୍ରୀ ମନ୍ତ୍ର ଜପ କରେ, ଯେ କୌଣସି ମତେ ଖରିଫ୍ ଫସଲ ଉଠିଲା ପର୍ଯ୍ୟନ୍ତ ସମୟ୍ କଟିଗଲା । ଖଜଣା ଆଦାୟ୍, ପଇଠ ସରିଲାପରେ, ଚେନ୍ନିଗା ଶିବଲିଙ୍ଗ ଗୌଡ଼ ପାଖକୁ ଯାଇ କାଗଜପତ୍ର ମାଗିବାରୁ ସେ କହିଲା – "ଉପରୁ ହୁକୁମ ନ ଆସିଲେ ଦେଇପାରିବି ନାହିଁ ।"

"ଆମ ପୂର୍ବପୁରୁଷଙ୍କ ଅଧିକାର ମଧ୍ୟ ଆମେ ନବାକୁ ହୁକୁମ ଦରକାର ।"

"ଆରେ ଏଥିରେ କାହା ବାପର ନାଁ ଲେଖା ହୋଇନି । ଏଥିରେ ଦଶବର୍ଷ କାମ କଲିଣି, ମତେ ଆଉ ପାଠ ପଢାନା, ଯାହା ପାରୁଛୁ କର । ମୁଁ ତତେ ଦେବି ନାହିଁ ।"

ଏକଥା ଶୁଣି ଚେନ୍ନିଗା ସକସକ କାନ୍ଦି ପକାଇଲା । ରାଗିକରି ପିଲାଙ୍କପରି ଏଆଡୁ ସେଆଡୁ କଣ ଗୁଡେ ଗାଳି ଦେଇଆସୁଥିଲା – ଫେର କଣ ଭାବି ଚୁପ୍ ହୋଇଗଲା । ତାପରେ ଯାଇ ଲିଙ୍ଗା ଗୌଡ଼ର ଭିଣୋଇକୁ ପଚାରିଲାରୁ ସେ କହିଲା – "ଆରେ ଭାଇ ତୋ ହାତରେ କଣ ଏ କାମ ହେବ ? ଏଇଟାତ ଆଉ ପିଲା ଖେଳ ହୋଇନି ।"

ଚେନ୍ନିଗାକୁ ବୁଦ୍ଧିବାଟ ଦିଶିଲା ନାହିଁ । ଗାଁ ମୁଖିଆ ଆଗରେ ଯୁକ୍ତି କରିବାକୁ ମଧ୍ୟ ତାର ସାହସ ହେଲା ନାହିଁ । କାରଣ ଏଇ ଶିବଗୌଡ ମୁଖିଆର ନାଁ ଧରି ପିଲାଦିନେ ତା ମା' ତାକୁ ଡରାଇ ଶୁଆଇ ପକାଉଥିଲା । ଚେନ୍ନିଗା ସିଧା ଘରକୁ ଯାଇ ମା' ଆଗରେ ସବୁକଥା କହିଲା । ଗଙ୍ଗାମ୍ମା ଏକଥା ଶୁଣି କଣ

Digitized by srujanika@gmail.com

ଚୁପ ରହିବା ସ୍ତ୍ରୀ । ଧାଇଁ ଧାଇଁ ଗଲା ଏବଂ ମୁଖିଆ ଘର ଆଗରେ ଠିଆ ହୋଇ ପାଟିକଲା – "ହଇରେ ଶିବା, ହଇରେ ବାଡିପତା ରାଣ୍ଡ, ସପତ୍ତି ଖାଇବାକୁ ତୋର ଏତେ ସାହାସ । ତୋ ମାଇପ ରାଣ୍ଡ ହେଉ ରେ ଚୁଲିପଶା । ତୋ ଘର ନାଶ ହେଉ, ତୋ ବଂଶ ବୁଡୁ ।"

ଦାଣ୍ଡରେ ଏ ପ୍ରକାର ଗାଳି ଶୁଣି ମୁଖିଆର ସ୍ତ୍ରୀ ଗୌରମ୍ମା ମନରେ ଭୟ ପଶିଲା କାଳେ ବିଧବା ବ୍ରାହ୍ମଣୀର ଅଭିଶାପ ପଡିବ । ସ୍ୱାମୀ ପାଖକୁ ଯାଇ କହିଲା – "ହଇହେ, ଏ ବୁଢୀଟାର ସପତ୍ତି ନେଇ କରି ଆଉର କଣ ଲାଭ ହେବ । ତାକୁ କହିଦେଉନ କାହିଁକି, ତାଙ୍କର କାଗଜ ପତ୍ର ଫେରାଇ ଦେବାକୁ ।" ମୁଖିଆ ଶିବଗୌଡ ଦାଣ୍ଡକୁ ଆସି କହିଲା – "ଏ ଗଙ୍ଗାମ୍ମା, କାହିଁକି ଏପରି ଖରାପ ଭାଷାରେ ଗାଳିଦେଉଛୁ ? ଆ, ଏଠି ବସ୍, କଣ ଦରକାର କହ ?" ଏଣେ ଗୌରମ୍ମା ପିଣ୍ଡାରେ ପିଢା ଖଣ୍ଡିଏ ପକାଇଦେଲା । ଗଙ୍ଗାମ୍ମା ଆସି ବସିଲା । ଚେନ୍ନିଗା ମଧ୍ୟ ଆସି ବସିଲା । ଶିବଲିଙ୍ଗା ମଧ୍ୟ ଆସି ପହଞ୍ଚିଥାଏ । ମୁଖିଆ ଶିବଲିଙ୍ଗାକୁ କହିଲା - "ଆରେ, ଏ ମାଉସୀକୁ ବୁଝାଇ ଦେଉନୁ କାହିଁକି ? ଅମୀନ କାମ ଚେନ୍ନିଗାକୁ ଦେବାପାଇଁ ତୋର ଅସୁବିଧା କଣ ହେଉଛି ?" ଶିବଲିଙ୍ଗା ଗଙ୍ଗାମ୍ମାକୁ ପଚାରିଲା – "ଚେନ୍ନିଗାକୁ ବୟସ କେତେ ହେଲା ?"

"ଉଣେଇଶି ଚାଲିଛି ।"

"ତୁମେ ସିନା ଏକଥା କହୁଛ - ହେଲେ ତେଣେ ସରକାରୀ ରେକର୍ଡରେ ତ ଷୋହଳ ବର୍ଷ ବାହାରୁଛି । ତେଣୁ ଚେନ୍ନିଗା ସରକାରୀ ରେକର୍ଡ ଅନୁସାରେ ଏ ପର୍ଯ୍ୟନ୍ତ ନା'ବାଳକ । ତେଣୁ ଜଣେ ନା'ବାଳକକୁ ସରକାରୀ ଅମୀନ କାର୍ଯ୍ୟ କିପରି ଦିଆହେବ କହିଲ ?"

"ଆରେ ଚେନ୍ନିଗା ଜନ୍ମ ହେଲାବେଳକୁ ତା ବାପାତ ଅମୀନ ଥିଲେ, ସେ ନିଜେ କାଗଜ ପତ୍ରରେ ଯାର ବୟସ କଥା ନିଶ୍ଚେ ଲେଖିଥିବେ । ଟିକିଏ ଭଲକରି ଦେଖ ।"

"ଜନ୍ମମୃତ୍ୟୁ ରେକର୍ଡ ଆମ ପାଖରେ ତ ନାହିଁ । ସେ କଥା ଦେଖିବାକୁ ହେଲେ କଚେରୀରେ ଫିସ୍ ବାନ୍ଧିବାକୁ ପଡିବ । ମତେ ପଚାଶ ଟଙ୍କା ଦିଅ, ଚିପଟୁର୍ ଯାଇ ସେଠି ସବୁ ଦେଖାଇ ଦେବି ।"

ଏସବୁ ଶୁଣି ଗଙ୍ଗାମ୍ମା ପୁଅକୁ କହିଲା – "କିରେ ଏମିତି କଣ କହୁଛନ୍ତି । ତୁ ମଧ୍ୟ ତ ଏକାମ ଶିଖିଛୁ ? କଣ ଯେ ସତ କଥା, ଆରେ କହୁନୁ, ମୁହଁଟା ତଳକୁ ପୋତି ବସିଛୁ କଣ ?"

"ମୁଁ କିଛି ଜାଣିନି ମା ।"

"ଆରେ ତୁ ତ କହୁଥିଲୁ ତୁ ସବୁ କାମ ଶିଖି ସାରିଛୁ ବୋଲି ।"

ଶିବଲିଙ୍ଗା କହିଲା – "ମୁଁ ତ ଶୁଣିଛି, ତୁ ହୋନ୍ନବଳୀ ଯାଇ ସେଠି ସବୁ କାମ ଶିଖିଥିଲୁ ! ହେଲେ, ତତେ ଯିଏ ପାଠଶିଖାଉଥିଲା ତାକୁ ତ କିଛି ଜଣାନଥିବ, ସିଏ ତତେ କଣ ଶିଖେଇବ ? ହଉ

Digitized by srujanika@gmail.com

ଏବେ ଆମପାଖରେ ଦି ଚାରିବର୍ଷ ଛାଡିଦିଅ । କାମସବୁ ଠିକ୍ ଠିକ୍ ଶିଖିଯିବ ।''

ମୁଖିଆ କହିଲା – ''ଗଙ୍ଗାମ୍ମା, ତୁ ପଚାଶଟଙ୍କା ଦେଇ ଦେ ! ଚେନ୍ନିଗାକୁ ସରକାରୀ ରେକର୍ଡ ଅନୁସାରେ କେତେ ବୟସ ହେଲା ଲେଖାଇକରି ଆଣିଦେବା ।''

''ମୁଁ କାହିଁକି ଟଙ୍କା ଦେବି ?''

''ଆଲୋ ସରକାରୀ କଥା । ପଇସା ତ ଲାଗିବ ।''

ଗଙ୍ଗାମ୍ମାର ଆଉ କୌଣସି ଚାରା ନଥିଲା । ଟଙ୍କା ନଦେଲେ ପୁଅର ବୟସ ରେକର୍ଡରୁ ମିଳିବ ନାହିଁ । ଏବଂ ବୟସର କାଗଜ ନ ମିଳିଲେ ଅମାନ କାମ ମିଳିବ ନାହିଁ । ହେଲେ ପଇସା ଆସିବ କେଉଁଠୁ ? ଘରକୁ ଯାଇ ବାକ୍ସ ପେଡି ଘାଣ୍ଟିଲା । ତିରିଶିଟି ପୁରୁଣା ଟଙ୍କା ମିଳିଲା । ତା ସାଙ୍ଗରେ କୋଡିଏ ଟଙ୍କାର ମାଣ୍ଡିଆ ଧରି ଆସି ଶିବଲିଙ୍ଗାକୁ ଦେଇ କହିଲା - ''ପୁଅ, ଟିକିଏ ବୟସ କାଗଜଟା ଶୀଘ୍ର ମଗାଇଦେ । ଶୀଘ୍ର କିପରି ମୋ ପୁଅକୁ ଅମାନ କାମ ମିଳିଯିବ ଖାଲି ସେଇ ଚିନ୍ତା ।''

ଚାହୁଁ ଚାହୁଁ ତିନିମାସ ବିତିଗଲା । ଗଙ୍ଗାମ୍ମା ଥରେ ପଚାରିଲାରୁ ଶିବଲିଙ୍ଗା କହିଲା – ''ସରକାରୀ କାମ, ଟିକିଏ ଡେରି ହେବ । କାଗଜ ଡେପୁଟୀ କମିଶନର ସାହେବଙ୍କ ପାଖକୁ ଯିବ ସେଠୁ ଦିବାନ୍ ସାହେବ ଦେଖିବେ, ତାପରେ ଯାଇ ଆସିବ । ଏମିତି ଅଧୈର୍ଯ୍ୟ ହେଲେ ଚଳିବ ?''

ଗଙ୍ଗାମ୍ମା ନିରୁପାୟ ହୋଇ ଘରକୁ ଫେରି ପୁଅକୁ କହିଲା – ''ଆରେ ମତେ ଲାଗୁଛି ଇଏ ଆମ କାମ କରାଇଦେବ ନାହିଁ । ତୁ ନିଜେ ଡିପୁଟ୍ର କଚେରୀକୁ ଯାଇ, ସାହେବଙ୍କ ଗୋଡ ଧରି କାମ କରାଇ ଆସ ଏବଂ ସବୁ କଥା ଯାଇ କହ ।''

ଚେନ୍ନିଗା ଭାବିଲା – ଆରେ ବାବା, ତହସିଲଦାର ସାଙ୍ଗରେ କଥାବାର୍ତ୍ତା କିଏ କରିବ । ସିଏ ଯଦି ରାଗିବେ, ମୁଁ କଣ କରିବି ? ମୋ ବୟସ ପ୍ରକୃତରେ ଷୋହଳ ବର୍ଷ ହୋଇଥାଇପାରେ । ମୋ ଜାତକରେ ମଧ୍ୟ ଭୁଲ୍ ଥାଇପାରେ । ମାକୁ କହିଲା – ''ମା' ମତେ ଷୋହଳ ବର୍ଷ ହୋଇଥିବ ବୋଧେ । ଆଉ ଦିବର୍ଷ ଅପେକ୍ଷା କରିଯିବା ।''

ଗଙ୍ଗାମ୍ମା ପାଟିକରି ଉଠିଲା – ''ଆରେ ରାଣ୍ଡିପୁଅ, ତତେ କହୁକଲାବାଲା, ମୁଁ କଣ ଜାଣିନି ତତେ କେତେ ବର୍ଷ ହୋଇଛି । ପୁରା ଉଣେଇଶ ହେଲାଣି । ଶୀଘ୍ର ଯା, ତହସିଲଦାରଙ୍କ ଗୋଡତଳେ ପଡି ସବୁକଥା କହ ।''

''ମା ମତେ ଡର ଲାଗୁଛି ।''

''କଣ କହିଲୁ, ମାଇଚିଆ କେଉଁଠିକାର, ମୁଁ ତୋ ସାଥିରେ ଯିବି ଚାଲ ।''

Digitized by srujanika@gmail.com

ଗଙ୍ଗାମ୍ମା ସିନା ଏକଥା କହିଦେଲା ହେଲେ ଡରିଗଲା । କାରଣ ସେ ଶୁଣିଥିଲା ସ୍ତ୍ରୀଲୋକମାନେ ସରକାରୀ କାମରେ ଦଖଲ ଦେଲେ ସରକାର ରାଗିଯାଆନ୍ତି । ଏବଂ ପୁଲିସ୍ ମଧ୍ୟ ବାନ୍ଧିନିଏ । ଆଉ କିଛି ଉପାୟ୍ ନପାଇ ଗଙ୍ଗାମା କହିଲା – "ଯାହା ହେଉଛି ହେଉ । ତୁ ତୋ ଶଶୁରଙ୍କ ପାଖକୁ ଯା । ସେ ନିଶ୍ଚୟ୍ ତତେ ଏ କାମରେ ସାହାଯ୍ୟ କରିବେ ।"

**4**

ଚେନ୍ନିଗାର ବିବାହ ହେବାର ଦେଢବର୍ଷ ହୋଇଯାଇଥାଏ । କିନ୍ତୁ ସେ ଏ ଭିତରେ ଥରେ ହେଲେ ଶୁଶୁର ଘରକୁ ଯାଇନଥିଲା । ଯିବାର ଇଚ୍ଛା ଯେ ନଥିଲା ତାହା ନୁହେଁ, କିନ୍ତୁ ତାକୁ କେହି ଡାକି ମଧ୍ୟ ଆସିନଥିଲେ । ମା କହିଲା ପରେ ସେ ମନଖୁସିରେ ବାହାରି ପଡିଲା । ଦିନେ ସକାଳୁ ଉଠି ଗାଧୋଇ ସାରି, ପେଟେ ଖାଇ, ରାସ୍ତାରେ ଖାଇବାପାଇଁ ବାନ୍ଧି, ଶଶୁର ଘର ଗାଁ ଆଡକୁ ବାହାରି ପଡିଲା । ରାସ୍ତାରେ ଖାଇବାପାଇଁ ଦିଖଣ୍ଡ ରୁଟି ଓ ତରକାରୀ ବାନ୍ଧିଥିଲା । ବିଭାଘର ବେଳର ଧୋତି ଓ କୋଟ୍ ପିନ୍ଧିଥାଏ । ଚପଲ ପିନ୍ଧି ଚାଲିବାର ଅଭ୍ୟାସ ନଥିବାରୁ ଖାଲି ପାଦରେ ଗଲା ।

ରାମସନ୍ଦ୍ର ଗାଁଠାରୁ ତିନିମାଇଲ ଗଲେ ସାନ ପାହାଡଟିଏ ପଡେ ତାକୁ ପାରକଲେ ଆଉ ଗୋଟିଏ ଛୋଟ ପାହାଡ ପଡେ । ତା ଆରପଟେ ଗୋଟିଏ ବାଲିଆ ପୋଖରୀ, ଚାରିପଟେ ଗଛ ଘେରା, ପୋଖରୀ ମଝିରେ ମଧ୍ୟ କେତୋଟି ଗଛ ଅଛି, ଚେନ୍ନିଗା ସେ ପୋଖରୀ ପାଖରେ ଥିବା କୁଅମୂଳରେ ବସି ଲୁଗାରୁ ରୁଟି ତରକାରୀ ଟିକ ବାହାର କରି ଖାଇବସି ପଡିଲା । କୁଅରେ ହାତ ପାହାନ୍ତରେ ପାଣି । ଖାଇସାରି ଆଞ୍ଜୁଳାରେ ପେଟେ ପାଣି ପିଇ ଚେନ୍ନିଗା ପୁଣି ଶଶୁର ଘର ଗାଁ ଆଡେ ମୁହାଁଇଲା । ହେଇ ସେଇ ପାହାଡଟା ଡେଇଁଲେ ପଡିବ କଟାଗେଲ୍ଲୀ ଗାଁ, ତା ପାଖକୁ ହୁବିନହଲ୍ଲୀ, ଏବଂ ତାପରେ ଅଧକୋଶେ ଗଲେ ଶଶୁର ଘର ଗାଁ ନାଗଲାପୁର । ନାଗଲାପୁର ଗାଁ ମୁଣ୍ଡରେ ବଡ ପୋଖରୀଟିଏ । ପୋଖରୀଠୁ ପୁଣି ଗାଁ ଭିତରକୁ ପ୍ରାୟ୍ ଅଧମାଇଲିଏ ବାଟ । ବଡ ପୋଖରୀ କୂଳରେ ପହଞ୍ଚିଲା ବେଳକୁ ଚେନ୍ନିଗାର ମନଟା କିମିତି କିମିତି ଲାଗିଲା । ଯଦି ଏଗାଁରେ ମତେ କିଏ ଚିହ୍ନିପକାଇବ କଣ କରିବି ? ପଚାରିବ ଯଦି, ଏବେ କେମିତି ପଳାଇ ଆସିଲ ? କଣ କହିବି ? ଯଦି ଶଶୁର ମଧ୍ୟ ଏକଥା ପଚାରନ୍ତି କଣ କହିବି ? ତା ଛଡା 'ସେ - ମୋର ସ୍ତ୍ରୀ, ଏବେ କେମିତି ଦେଖାଯାଉଥିବ କେଜାଣି ? ମୋ ସାଙ୍ଗରେ କଥାବାର୍ତ୍ତା କରିବ କି ନାହିଁ ? ଯଦି ନ କହିବ ତେବେ ଏମିତି ପାନେ ଦେବି ଶାଳୀକୁ ଯେ ମନେପକାଉଥିବ । ସେ କେବେ ଆମ ଗାଁକୁ ଆସିବ କେଜାଣି ? ତାକୁ ଢେର ପୁରିଗଲାଣି, ଏମିତି ଭାବୁ ଭାବୁ ଚେନ୍ନିଗା ଗାଁ ମୁଣ୍ଡରେ ଯାଇ ପହଞ୍ଚିଗଲା । ଗାଁ ଭିତରକୁ ପଶିଲାବେଳକୁ ତା ଛାତି ଦକଦକ ହେଉଥାଏ । ଗାଁ ଦାଣ୍ଡରେ ଗଲାବେଳକୁ ଭାବୁଥାଏ, ଆରେ ଏଇ ରାସ୍ତାରେ ତ ତାର ବିଭାଘର ପଟୁଆର ଯାଇଥିଲା – କିଏ ଆଉ ମତେ ଚିହ୍ନି ଦେବନି ତ ?

Digitized by srujanika@gmail.com

ଗାଁର ଅମୀନ ସାଇଟା ସବୁଠୁ ବଡ । ଅମୀନ ଶ୍ୟାମସୁନ୍ଦରଙ୍କର ବଡ ପ୍ରତିପତ୍ତି ଥିଲା । ସାଇମୁଣ୍ଡରେ ବୁଲିଗଲେ ଚେନ୍ନିଗାର ଶଶୁର ଘର, ତାଙ୍କ ଘରଟା ସେ ପାଖରେ ଥିବା ଅନ୍ୟ ଘରମାନଙ୍କଠାରୁ ବାରି ହୋଇପଡୁଥିଲା । ଛାତିଟା ଦୁକଦୁକ ହୋଉଥାଏ, ଅଧ ଆଉଜା ଦୁଆରଟା ଠେଲି ଚେନ୍ନିଗା ଘରଭିତରକୁ ପଶିଲା । ଭିତରେ ସବୁ ଶୁନ୍‌ଶାନ । କେତେ ସମୟ ଠିଆ ହେଲାପରେ ପାଟିକରି ଡାକିଲା – "ଘରେ କିଏ ଅଛନ୍ତି ?" ରୋଷେଇ ଘରୁ ବୁଢୀର ପାଟି ଶୁଭିଲା - "କିଏରେ ପୁଅ, କାହିଁଆ କିରେ ?"

"ନାଇଁ ମୁଁ ରାମଚନ୍ଦ୍ର ଗାଁରୁ ଆସିଛି । ମୁଁ ଅମୀନ ରାମନ୍ନାଙ୍କ ବଡପୁଅ ଚେନ୍ନିଗରାୟ ।"

"ଆସ ବାପା, ଆସ" - କହି ବୁଢୀ ରୋଷେଇଘରୁ ବାହାରକୁ ଆସି ଚାଦରଟିଏ ବିଛାଇ ଦେଲା । ପାଣିହାଣ୍ଡିରେ ଥୋଇ ଗୋଡ ଧୋଇବାକୁ କହିଲା । ବୁଢୀ ଚେନ୍ନିଗାକୁ ଘରର ସମସ୍ତ ହାଲଚାଲ ପଚାରି ବସିଲା ।

ଏତିକିବେଳେ ଚେନ୍ନିଗାର ସ୍ତ୍ରୀ ବାଡ଼ିପଟ ବଗିଚାରେ କାମକରି ସାରି ଲୁଗାପଟା ଧୂଳିମଳି ହୋଇ ଆସିଲା । ମୁହଁ ଅନ୍ଧାର ହୋଇଯାଇଥିବାରୁ ବାରଣ୍ଡାରେ କିଏ ବସିଛି ଦେଖି ନପାରି ଅଗଣାରେ, ଦେହରୁ, ଲୁଗାରୁ ଧୂଳି ଝାଡିବାକୁ ଲାଗିଲା । ବୁଢୀମା କହିଲା -"ଆଲୋ ତତେ କଣ ଦିଶୁନାହିଁ କି ? ତୋ ବର ଆସିଛି ପରା ।" ଏତକ ଯେମିତି ଶୁଣିଛି ଚେନ୍ନିଗାର ସ୍ତ୍ରୀ ନଞ୍ଜକ୍କା ଶାଢୀଟାକୁ ଭଆଡୁ ସିଆଡୁ ଦେହରେ ଗୁଡେଇ ଦେଇ ଏକା ନିଶ୍ୱାସକେ ବାଡିପଟ ଦୁଆର ପଟେ ଧାଇଁ ବାହାରି ଗଲା ।

ରାତିରେ ବୁଢୀ ଜ୍ୱାଇଁପୁଅ ପାଇଁ କେତେ ପ୍ରକାରର ତରକାରୀ, ଆଚାର, ପାମ୍ପଡ, ଦହି ସବୁ ଖାଇବାକୁ ପରଷି ଦେଲା । ତାକୁ ଖାଇବାରେ ତ ଟିକିଏ ଲାଜ ନଥାଏ । ତେଣୁ ଆକଣ୍ଠ ଭୋଜନ କରି ଉଠିଲା । ରାତିରେ ପଚାରି ବୁଝିଲା ଯେ ଶଶୁର କଣ୍ଠାଜୋଇସ ମହାଶୟେ ଗାଁରେ ପ୍ରାୟ ଅଧିକାଂଶ ସମୟ ରହନ୍ତି ନାହିଁ । ପାଖଆଖ ଅଞ୍ଚଳରେ ଯଜମାନ କାମ ଜ୍ୟୋତିଷ କାମ ଇତ୍ୟାଦି ଧନ୍ଦାରେ ବ୍ୟସ୍ତ ଥାନ୍ତି । ଏଥର ଯିବାର ପ୍ରାୟ କୋଡିଏ ଦିନ ହୋଇଗଲାଣି । ଦୁଇତିନିଦିନ ଭିତରେ ଆସିଯାଇପାରନ୍ତି । ଶଶୁର ଘରକୁ ଆସି ଶଶୁରଙ୍କୁ ଦେଖାନକରି ଯିବାଟା ଅନୁଚିତ । ଚେନ୍ନିଗା ଆଉ କେତେଦିନ ଏହିପରି ରହିଗଲା । ପାଖପଡୋଶୀ ଲୋକଙ୍କୁ ସାଙ୍ଗରେ ଚିହ୍ନା ହୋଇ ଶଶୁର ଘର ଗାଁ ଦେଖିଲା । କଣ୍ଠାଜୋଇସଙ୍କ ବିଲବାଡି ମଧ୍ୟ ବୁଲି ଦେଖିଲା । ଭାରି ଆରାମରେ ଦୁଇଦିନ କଟିଗଲା । ହେଲେ ନଞ୍ଜକ୍କାକୁ ଏପର୍ଯ୍ୟନ୍ତ ମନପୁରେଇ ଦେଖି ପାରିନଥିଲା । ପାହାନ୍ତିଆରେ ନିଦଭାଙ୍ଗିଲା ବେଳକୁ ଯେତିକି ଦେଖିଥିଲା ସେତିକି । ନଞ୍ଜକ୍କା ଗାଧୋଇ ଆସି ଶାଢୀ ଶୁଖାଉଥିଲା ।

ଧୀରେ ଧୀରେ ଖାଲିଟାରେ ଚୁପଚାପ ବସି ରହିବାପାଇଁ ତାକୁ ବିରକ୍ତ ଲାଗିଲା । ସମୟ ଜମା କଟିଲା ନାହିଁ । ତାଙ୍କ ଗାଁ ଭଳି ଏଠି ମଧ୍ୟ ସକାଳୁ ଉଠି ସ୍ନାନ ସାରି ଚନ୍ଦନ ଇତ୍ୟାଦି ଲଗାଇ ଓଦା ଗାମୁଛା ପିନ୍ଧି ଜପତପ କରିବାକୁ ପଡୁଥାଏ । ବୁଢୀ କିନ୍ତୁ ଏ ସବୁ ଦେଖି ଜ୍ୱାଇଁ ପୁଅଙ୍କ ଉପରେ ବହୁତ ସନ୍ତୋଷ ।

Digitized by srujanika@gmail.com

ଚାରିପାଞ୍ଚଦିନ ଯିବାପରେ ଦିନେ ରାତିରେ ପାହି କୁକୁର ଗୁଡାକ ଜୋର୍ ଜୋରରେ ଭୁକିବାକୁ ଲାଗିଲେ । ଦାଣ୍ଡଦୁଆରରେ ଠକ୍‌ଠକ୍ ଶୁଭିଲା । କୁକୁର ଗୁଡାକ ଆହୁରି ଜୋରରେ ଭୁକିବାକୁ ଲାଗିଲେ । କାହାର ଗୋଟାଏ ଭାରି ଗଳା କୁକୁର ମାନଙ୍କ ଉପରେ ଗାଳି ବର୍ଷଣ କରିବା ମଧ୍ୟ ଶୁଭିଲା । ଦାଣ୍ଡ ଦୁଆରୁ ଶବ୍ଦ ଶୁଭିଲା - "ଆଲୋ ଏ ଝିଅ, କବାଟ ଖୋଲ," ଏଥର ଚେନ୍ନିଗା ଜାଣିପାରିଲା ଯେ, ଶଶୁର ଆସିଗଲେ । କିନ୍ତୁ ଉଠିଯାଇ କବାଟ ଖୋଲିବାକୁ ତାକୁ ଭାରି ଲାଜ ଲାଗୁଥାଏ । କମ୍ବଳଟାକୁ ମୁହଁ ଉପରକୁ ଟାଣି ଆଣି ଆଖି ବୁଜି ଚୁପ୍ ହୋଇ ପଡିରହିଲା ।

ତେଣେ ରୋଷେଇ ଘର ବାରଣ୍ଡାରେ ଜେଜେମା ସାଥିରେ ଶୋଇଥିବା ନଣ୍ଡିଲାର ନିଦ ମଧ୍ୟ ଭାଙ୍ଗିଗଲା । କିନ୍ତୁ, ସ୍ୱାମୀ ଚେନ୍ନିଗରାୟ୍ ଦାଣ୍ଡଘରେ ଶୋଇଥିବାରୁ ସେବାଟେ ଯାଇ କବାଟ ଖୋଲିବାକୁ ସଂକୋଚ ବୋଧକଲା । ବୁଢୀମାକୁ ହଲାଇ ଉଠାଇଲା । ବୁଢୀ ଡିବିରି ଜାଳି କବାଟ ଖୋଲିଲା । କଣ୍ଠୀଜୋଇସ ଘରଭିତର ବାଟେ ଘୋଡାଟିକୁ ନେଇ ବାଡିପଟ ଅଗଣାରେ ବାନ୍ଧିଦେଲେ । ପଚାରିଲେ - "ଏଠି କିଏ ଶୋଇଛି ?"

"ଚାରି ପାଞ୍ଚଦିନ ହେଲାଣି ଜ୍ୱାଇଁ ପୁଅ ଆସିଛନ୍ତି । ତୋରି ଅପେକ୍ଷାରେ ରହିଛନ୍ତି ।"

"ଚେନ୍ନିଗରାୟ୍ ।" ଏଇ ନାଁ ଟା ଏତେ ଜୋରରେ ତାଙ୍କ ପାଟିରୁ ବାହାରିଲା ସତେ ଯେମିତି କାହା ମୁଣ୍ଡରେ ଠେଙ୍ଗା ପଡିଲା । ବୁଢୀ କହିଲା - "ଆରେ ତାଙ୍କୁ କାହିଁକି ଉଠାଉଛୁ ? ନିଦରେ ଶୋଇଛି ପରା ।" ଶଶୁର ଚୁପ୍ ହୋଇଗଲେ ।

ଲୁଗାପଟା ବଦଳେଇ ଧୂଆଁପତ୍ର ପାଟିରେ ଟିକିଏ ପକାଇ ଦାଣ୍ଡ ବଖରାରେ ମଶିଣା ଖଣ୍ଡେ ପକାଇ ଶୋଇଗଲେ । ବାହାରୁ କଣ ଖାଇକରି ଆସିଥିଲେ ତେଣୁ ଆଉ କିଛି ଖାଇଲେ ନାହିଁ ।

## 5

ସକାଳୁ ଉଠି କଣ୍ଠୀଜୋଇସ ଜ୍ୱାଇଁପୁଅ ସାଙ୍ଗରେ ସୁଖଦୁଃଖ ପଚରା ପଚରି ହେଲେ । ଚେନ୍ନିଗା ସବୁକଥା ଗୋଟିଗୋଟି କରି କହିଗଲା । ଶିବଲିଙ୍ଗ ଗୌଡ ଯେଉଁ ପଚାଶ ଟଙ୍କା ଗଙ୍ଗାମ୍ମାଠୁ ନେଇଥିଲା ସେ କଥା ମଧ୍ୟ କହିଲା । ଏ ସବୁ ଶୁଣି କଣ୍ଠୀଜୋଇସ କହିଲେ, "ତୁମମାନଙ୍କ ମୁଣ୍ଡରେ ବୁଦ୍ଧି ଅଛି ନା ଖାଲି ଗୋବର ? ଅମାଳକାମ ବିଷୟରେ ତ ଚତେ କିଛି ଜଣାନାହିଁ ଆଉ କଣ ହେବ ତୋ ଦ୍ୱାରା ?" ଚେନ୍ନିଗା ତଳକୁ ମୁହଁ ପୋତି ମୌନ ହୋଇ ରହିଥାଏ । ବୁଢୀମା' ଜ୍ୱାଇଁ ପୁଅଉପରେ ଗାଳି ପଡିବାର ଦେଖି, ସହିନପାରି କହିଲା, "ଆରେ କଣ୍ଠୀଆ, ସେ ତ ପିଲାଟା କିଛି ଜାଣିପାରୁନି । ଖାଲି ଗାଳିଗୁଡାଏ ଦେଲେ କଣ ହେବ ? ତୁ ସିନା ଯାଇ ତାର ଅମାଳ କାମ ଫେରାଇବାରେ ସାହାଯ୍ୟ କରନ୍ତୁ ।"

Digitized by srujanika@gmail.com

କଣ୍ଟାକୋଇସ୍ ଆଉ କିଛି ନକହି ଉଠି ଚାଲିଗଲେ । ଗାଧୁଆ, ପାଧୁଆ ପୂଜାପାଠ ସାରି ଖାଇଲାବେଳକୁ ଆସି ପହଞ୍ଚିଗଲେ । ଝିଅ ନଡ଼ିଆ ପିଠା, ତରକାରୀ, ଭଜା, ଇତ୍ୟାଦି ଖାଇବାକୁ ବାଢ଼ିଦେଲା । ଶଶୁର ଜ୍ୱାଇଁ ଏକାଠି ଭୋଜନରେ ବସିଗଲେ । ଖାଇସାରି ପାଟିରେ ଧୂଆଁପତ୍ର ଜାକି ଚାରି ପାଞ୍ଚଥର ପିକ ପକାଇ ଚେନ୍ନିଗାକୁ ତାଙ୍କ ଗାଁ ବିଷୟରେ ଅନେକ କଥା ପଚାରିଗଲେ । ତାକୁ ଯେତିକି ଆସିଲା ସେତିକି କହିଲା । କିଛି ସମୟପରେ ହଳିଆକୁ ଡାକି ଖଣ୍ଡେ ଚିଠି ଲେଖି ତାଙ୍କ ପୁଅ କଳେଶ ପାଖକୁ ପଠାଇଲେ । ହଳିଆକୁ କହିଲେ, "ଚିଠିର ଉତ୍ତର ହାତେ ହାତେ ଧରିଆସିବୁ ।" ଏହାପରେ ଦିନଯାକ ଚୁପଚାପ୍ ବସିରହିଲେ । ଗାଁ ଲୋକେ କଣ୍ଟାମହାଶୟେ ଆସିଲେଣି ବୋଲି ଜାଣି କିଏ ଝଡାଫୁଙ୍କା କରାଇବା ପାଇଁ କିଏ ଭୂତପ୍ରେତ ଛଡାଇବା ପାଇଁ ଆସିଲେ ।

ତହିଁଆରଦିନ ଏଗାରଟା ବେଳେ ହଳିଆ କଳେଶଠାରୁ ଚିଠି ଧରି ପହଞ୍ଚିଲା । କଣ୍ଟାକୋଇସ୍ ଚିଠି ପଢ଼ିସାରି ମା'କୁ ଡାକି କହିଲେ - "ଆମେ ଦୁଇଜଣ ଆଜି ରାତିରେ ରାମସନ୍ଦ୍ର ଗାଁକୁ ଯିବୁ ।"

"ଆଜି ନଗଲେ କଣ ହେବନି ? ଜ୍ୱାଇଁ ପୁଅକୁ ତ ଏ ପର୍ଯ୍ୟନ୍ତ କିଛି ପିଠାପଣା କରି ଖୁଆଇ ପାରିନି ।"

"ସନ୍ଧ୍ୟା ସୁଦ୍ଧା ତିଆରି କରିଦେ । ରାତିରେ ଖାଇବାପାଇଁ ଭଲକରି ଖିରୀ ତିଆରି କରିଦେ ।"

"ତୁ ସିନା ଭୂତପ୍ରେତଙ୍କ ଭଳି ରାତିସାରା ବୁଲୁଥାଉ । ଏ ପିଲାଟାକୁ କାହିଁକି ରାତିରେ ନେଇ ଯାଉଚୁ ?"

"କାହିଁକି, ଏକଣ ଝିଅ ପିଲା ହୋଇଛି କି ? ମରଦ ପିଲା ବୋଲି ଜାଣିତ ମୋ ଝିଅକୁ ଏହା ସାଙ୍ଗରେ ବିବାହ କରାଇଛି ।"

ଚେନ୍ନିଗରାୟ ଅନ୍ଧାରକୁ ଏତେ ଡରୁନଥିଲେ ମଧ୍ୟ ଭୂତପିଶାଚ ଯେ ରାତିରେ ବୁଲନ୍ତି ଏକଥା ମନେ ପଡି ତା ଛାତି ଭିତରଟା ଦାଉଁକିନା ହୋଇଗଲା । ଏହାଛଡା ସେ ଶୁଣିଥିଲା ଯେ ବାଟରେ ଯେଉଁ ଜଙ୍ଗଲ ପଡେ ସେଥିରେ ବାଘ ରହନ୍ତି । କିନ୍ତୁ ଶଶୁରଙ୍କ ଡରରେ ଚୁପ୍ ରହିଥାଏ ।

ବୁଢ଼ୀମା ଚରବର ହୋଇ ଦି'ପ୍ରକାର ପିଠାପଣା ତିଆରି କଲା । ନଡ଼ିଆ ପିଠା ଛଣାଛଣିରେ ସାହାଯ୍ୟ କରିଥାଏ । ରାତିରେ ଖାଇସାରି କଣ୍ଟାକୋଇସ୍, ଧଳାପେଣ୍ଟ, ଖାକିକୋଟ୍, ମୁଣ୍ଡରେ ସାହେବ ଟୋପି ଏବଂ ଜୋତା, ମୋଜା ପିନ୍ଧି ବାହାରି ପଡିଲେ । ଘୋଡା ପିଠିରେ ଜିନ୍ ବନ୍ଧାଗଲା । କିଛି ଲୁଗାପଟା ଗୋଟାଏ ବ୍ୟାଗରେ ରଖି ଘୋଡା ପିଠିରେ ଲଦିଲେ । ଘରୁ ବାହାରିବା ପୂର୍ବରୁ ଚେନ୍ନିଗା

Digitized by srujanika@gmail.com

ବୁଢ଼ାମାକୁ ମୁଣ୍ଡିଆ ମାରିଲା । ବୁଢ଼ୀ ନଣନ୍ଦାକୁ ଡାକି ସ୍ୱାମୀଙ୍କୁ ମୁଣ୍ଡିଆ ମାରିବାକୁ କହିଲା । କିନ୍ତୁ ସେ ପାଖରେ ଆସିଲା ନାହିଁ । ବାପା ଆଉଥରେ ଡାକିବାରୁ ଦୂରରୁ ମୁଣ୍ଡିଆଟିଏ ମାରି ପଳାଇଲା । ଚେନ୍ନିଗାର ଇଚ୍ଛା ଥିଲା ଯିବା ପୂର୍ବରୁ ସ୍ତ୍ରୀକୁ ଟିକିଏ ଭଲକରି ଦେଖନ୍ତା । କିନ୍ତୁ ଶଶୁରଙ୍କ ଡରରେ ମୁହଁ ଉଠାଇ ନଣନ୍ଦା ଆଡେ ଚାହିଁ ମଧ୍ୟ ପାରିଲା ନାହିଁ ।

ଅମାବାସ୍ୟା ରାତି । ଘରୁ ବାହାରିଲାବେଳକୁ ରାତି ଦଶଟା ହୋଇଯାଇଥାଏ । ଅନ୍ଧାରରେ ମୁହଁକୁ ମୁହଁ ଦିଶୁନଥାଏ । ଗାଁ ମୁଣ୍ଡ ପାର ହେଲାପରେ କଣ୍ଟୀଗୋଇସ ଜ୍ୱାଇଁ ପୁଅକୁ ଘୋଡା ଉପରେ ବସିବାକୁ କହିଲେ । ସେ କିନ୍ତୁ କହିଲା - "ମୋର ଅଭ୍ୟାସ ନାହିଁ, ଡର ଲାଗୁଛି ।" ଶଶୁର କହିଲେ "ମୁଁ ଧରିଦେବି ।" କିନ୍ତୁ ସେ ମାନିଲା ନାହିଁ । ଗୋଇସ୍ ଏତେ ଅନ୍ଧାରରେ ମଧ୍ୟ ଏମିତି ଜୋର ଜୋରରେ ପାଦ ପକାଇ ଚାଲୁଥିଲେ, ସତେ ଯେପରି ରାସ୍ତା ସଫା ଦେଖାଯାଉଥିଲା । ପଛରେ ଘୋଡା ଚାଲିଥାଏ । ଘୋଡାର ଦଶବାର ଗଜ ପଛରେ ଚେନ୍ନିଗା । ସମସ୍ତେ ଚୁପଚାପ୍ । ଏ ଭୟଙ୍କର ଅନ୍ଧକାରରେ ପବନର ସାଇଁ ସାଇଁ ଶବ୍ଦ ଛଡା ଆଉ କିଛି ଶୁଭୁନଥାଏ ।

6

ଏମିତି ଯାଉ ଯାଉ ଦୁଇଟି ଗାଁ ପାରହେଲେ । ଆଗରେ ଜଙ୍ଗଲିଆ ରାସ୍ତା, ଯେଉଁଠି ବାଘ ରହନ୍ତି ବୋଲି ଶୁଣିଥିଲା ଚେନ୍ନିଗା । ଚେନ୍ନିଗାକୁ ହାଲିଆ ଲାଗିଲେ ସୁଦ୍ଧା ଅନ୍ଧାରରେ ଧଳାରଙ୍ଗର ଘୋଡାକୁ ଦେଖି ଧାଇଁ ଧାଇଁ ଚାଲିଥାଏ । କିଛିବାଟ ଗଲାପରେ, ଶଶୁର ହଠାତ୍ ଠିଆ ହୋଇଗଲେ । ଘୋଡାମଧ୍ୟ ଅଟକି ଗଲା । ଚେନ୍ନିଗା ଘୋଡାପଛରେ ଆସି ବାଟେଇ ହେଲା । ଚାରିଆଡେ ଆଖିବୁଲାଇ ଦେଖିଲା । ଆଗରେ କିଛିବାଟରେ ଗୋଟିଏ ଆଲୁଅ ଜଳୁଥିଲା । ଶଶୁର କହିଲେ "ଆଗକୁ ଆସ ।" ପାଖକୁ ଯିବାରୁ ଆଲୁଅ ଆଡକୁ ହାତ ଦେଖାଇ କହିଲେ "ଏଇ ଦେଖ ।" ବାସ୍ ଏତିକିରେ ଚେନ୍ନିଗାର ହାତ ଗୋଡ ଥର ଥର । ଦେହରୁ ଝାଳ ବୋହିଗଲା ।

ପ୍ରାୟ ଅଣ୍ଟେଉଷ୍ଟର ଚଣ୍ଡିମୂର୍ତ୍ତି ଠିଆ ହୋଇଥାନ୍ତି । ମୁହଁ ବିକଟାଳ ଏବଂ ଲହଲହ ଜିଭରେ ରକ୍ତ ବୋଳି ହୋଇଥାଏ । ବେକରେ ମନ୍ଦାର ଫୁଲର ହାର । ଆଗରେ ଦୁଇଟା ଦୀପ ଜଳୁଥାଏ । ସାମନାରେ ତିନିଟା କୁକୁଡା କଟା ହୋଇ ପଡିଥାନ୍ତି । ଦୁଇଚିନି ପେଣା କଦଳୀ, ସିନ୍ଦୁର କୁଙ୍କୁମ ବିଛେଇ ହୋଇ ପଡିଥାଏ । ଚଣ୍ଡୀଙ୍କ ସାରା ଦେହରେ ହଳଦୀ, କୁଙ୍କୁମ ବୋଳା ହୋଇଥାଏ । ଏହାଛଡା ଧଳା, ସୂତା ଡେଉଁରିଆ, ମଣିଷ ହାଡ, ଏସବୁ ଚାରିଆଡେ ଖେଳେଇହୋଇ ପଡିଥାଏ । ଦୂରରୁ ଚଣ୍ଡିମୂର୍ତ୍ତି ଭାରି ଭୟଙ୍କର ଦେଖାଯାଉଥାଏ । ଏସବୁ ଦେଖି ଭୟରେ ଚେନ୍ନିଗାର ମୁହଁରୁ କଥା ବାହାରୁ ନଥାଏ । ଶଶୁର

Digitized by srujanika@gmail.com

କହିଲେ, "ଯା, ମୂର୍ତ୍ତିର ଛାତି ଉପରେ ଲାତମାରି ଗଡେଇ ଦେଇ କଦଳୀତକ ଧରି ଆସ ।" ଚେନ୍ନିଗା ଝାନ୍ନିମରା ପାଟିରେ କହିଲା - "ନାଇଁ ନାଇଁ ମୁଁ ପାରିବିନି ।"

"ଆଛା ଘୋଡା ଧର ମୁଁ ଯିବି ।"

ତାପରେ ମୂର୍ତ୍ତିପାଖକୁ ଜୋଇସ୍ ଯାଇ କଦଳୀତକ ଧରିଲେ, ମୂର୍ତ୍ତିର ଆଖି ମୁଣ୍ଡ, ଜିଭରୁ କଣ ସବୁ ଖୋଲି ବାହାର କଲେ । ବୋଧହୁଏ ରୂପାର ଟଙ୍କା ସେଥିରେ ସବୁ ଲାଗିଥିଲା । ତାପରେ ଜୋତାରେ ଜୋର୍ କରି ମୂର୍ତ୍ତିର ଛାତି ଉପରେ ଲାତ ମାରିଲେ । ମୂର୍ତ୍ତିଟି ଭାଙ୍ଗି ତଳେ ପଡିଗଲା । ତା ତଳୁ ଆଉ କେତେ ଟଙ୍କା ଗୋଟେଇ ପକେଟ୍‌ରେ ରଖି ଶଶୁର ଜୋଇଁ ଆଗକୁ ଚାଲିଲେ । ଆଗରେ ଶଶୁର, ମଝିରେ ଘୋଡା ପଛରେ ଜ୍ୱାଇଁ । ଚେନ୍ନିଗାକୁ ଭାରି ଡର ଲାଗୁଥାଏ କାଳେ ପଛପଟୁ ଖଣ୍ଡିଆ ଚଣ୍ଡିମୂର୍ତ୍ତି ଆସି ତା ତଣ୍ଟି ଚିପି ଦେବେ । ଚାରିଆଡ ନିଃଶବ୍ଦ । କଥାବାର୍ତ୍ତାକଲେ କାଳେ ଡର କଟିବ ବୋଲି ଭାବି ଶଶୁରଙ୍କୁ ପଚାରିଲା, "ସେଇଟା କି ପୂଜା ?"

"ଆଜି ଅମାବାସ୍ୟା ନା ! ସେଥିପାଇଁ କିଏ ଗୁଣିଗାରିଡି ପାଇଁ ଏକଥା କରିଛି । ମୁଁ ତାକୁ ଜାଣିଛି ଯିଏ ଏ ସବୁ କରେ । ସେ ଲୋକ ଯା ପାଇଁ ଗୁଣିଗାରିଡି କରେ ପୂଜାପାଠ ସାରି ତା ସାଙ୍ଗରେ ଚାଲିଯାଏ । କିଛି ସମୟପରେ ଏକୁଟିଆ ଫେରି ମୂର୍ତ୍ତି ଭିତରେ ଲୁଚାଇଥିବା ଟଙ୍କା ତକ ଓ ଫଳମୂଳ ନେଇ ଚାଲିଯାଏ । ଆଜି ଫେରିଲା ବେଳକୁ ଦେଖିବ ମାଟି ଟେଳାଟେ ଛଡା ଆଉ କିଛି ତାକୁ ମିଳିବ ନାହିଁ ।"

"ଆପଣ ସେ ମୂର୍ତ୍ତି ଛୁଇଁଲେ ଆପଣଙ୍କର କିଛି ହେବ ନାହିଁ ?"

"ଆରେ, ଯଦି ଛାତିରେ ଦମ୍ ଥିବ କେହି ବାଳ ବି ବଙ୍କା କରିପାରିବ ନାହିଁ । ଯଦି ଡରିଯିବ ରକ୍ତବାନ୍ତି କରି ମରିଯିବ ।"

ରକ୍ତବାନ୍ତି କଥା ଶୁଣି ଚେନ୍ନିଗା ବେଶି ଡରିଗଲା । କିନ୍ତୁ, ଜଙ୍ଗଲିଆ ରାସ୍ତାଟା ସରିଆସୁଥାଏ । ଚଣ୍ଡିମୂର୍ତ୍ତି ମଧ୍ୟ କାହିଁ ପଛରେ ରହିଲାଣି, ସେ ସାହସ କରି ଥରେ ମୁହଁ ବୁଲାଇ ପଛକୁ ଦେଖିଲା । ଅନ୍ଧାରରେ କିଛି ଦିଶୁନଥାଏ । ଶଶୁର କିନ୍ତୁ ବେପରୁଆ ହୋଇ ଆଗେଇ ଚାଲିଥାନ୍ତି ।

## 7

ଘରେ ପହଞ୍ଚିଲାବେଳକୁ ରାତି ଦୁଇଟା ବାଜି ସାରିଥାଏ । ଏମାନଙ୍କ ଆଗରୁ କଣ୍ଡୋଜୋଇସ୍‌ଙ୍କ ପୁଅ ପୋଲିସ୍ କନେଷ୍ଟବଲ୍ କଳେଶ ତାର ଜଣେ ହାବିଲ୍‌ଦାର ସାଙ୍ଗରେ ଗଙ୍ଗାମ୍ମାର ଘରେ ଆସି

Digitized by srujanika@gmail.com

ପହଞ୍ଚିସାରିଥିଲେ । ଦୁଇଜଣ ଯାକ ପୋଲିସ୍ ପୋଷାକ ପିନ୍ଧିଥାନ୍ତି । ଗଙ୍ଗାମା ଏମାନଙ୍କ ଆସିବାର କାରଣ ବୁଝି ପାରୁନଥାଏ । କିନ୍ତୁ ଭାରି ଆଦରରେ ବସାଇ ଖୁଆଇ ଥିଲା । ସେମାନେ ଖାଇସାରି ଟିକିଏ ବସିଛନ୍ତି କି ନାହିଁ, ଚେନ୍ନିଗା ଓ ତା ଶଶୁର ଆସି ପହଞ୍ଚିଗଲେ । କଣ୍ଡାକୋଇସ୍ ସାଙ୍ଗେ ସାଙ୍ଗେ ଅମାନ କାର୍ଯ୍ୟ ବିଷୟରେ ସବୁ ଘଟଣା ତାଙ୍କ ପୁଅ କଳେଶକୁ କହିଲେ । ସେ କହିଲା - "ଚାଲ ଏବେ ଯିବା, ସବୁ କାଗଜ ପତ୍ର ଶିବ ଗୌଡ଼ ଠାରୁ ନେଇ ଆସିବା ।" ତାପରେ ସମସ୍ତେ ବାହାରିପଡିଲେ । ଘୋଡା ଉପରେ ବସି କଣ୍ଡାକୋଇସ୍ ଚେନ୍ନିଗାକୁ କହିଲେ, "ଚାଲ ତା ଘର ଆମକୁ ଦେଖାଇ ଦିଅ ।"

ଚେନ୍ନିଗରାୟ ଡରିଡରି ଚାଲିଲା । ପଛରେ ଘୋଡା ଉପରେ କଣ୍ଡାକୋଇସ୍ ଏବଂ ଦିକଡରେ ଦୁଇଜଣ ପୋଲିସ୍ । ଶିବଲିଙ୍ଗ ଗୌଡର ଘର ଆଗରେ ପହଞ୍ଚି କଣ୍ଡାକୋଇସ୍ ଗମ୍ଭୀର ସ୍ୱରରେ କହିଲେ, "ତା ଦୁଆର ଖଡ୍ ଖଡ୍ କରି ତାକୁ ଉଠାଅ ।" ଚେନ୍ନିଗା ଦୁଆର ଠକ୍ ଠକ୍ କଲାରୁ ଶିବଲିଙ୍ଗର ସ୍ତ୍ରୀ କହିଲା, "କିଏ ଡାକୁଛ ?" "ମୁଁ ଚେନ୍ନିଗା, ଶିବଲିଙ୍ଗ ଗୌଡକୁ ଉଠାଇ ଦିଅ ।"

ଏତିକି ଶୁଣି ଶିବଲିଙ୍ଗର ନିଦ ଭାଙ୍ଗିଗଲା । କବାଟ ଖୋଲି ବାହାରକୁ ଆସି ଆଖି ମଳିମଳି କହିଲା, - "କଅଣ କଣ ?" ଏତିକି କହି ଯେତେବେଳେ ସେ ସାମ୍ନାରେ ପୋଲିସ୍ ଏବଂ ଘୋଡାରେ ବସିଥିବା ଅଫିସରଙ୍କୁ ଦେଖିଲା, ଶିବଲିଙ୍ଗର କଲିଜା ପାଣି ହୋଇଗଲା । ଭୟରେ ପାଟି ଖନି ମାରିଗଲା । ଘୋଡା ଉପରୁ ଅଫିସର ଆଦେଶ ଦେଲେ, "ହାବିଲଦାର ଯାଙ୍କୁ ଗିରଫ କର ।" ପୋଲିସ୍ ତାର ଦି ହାତକୁ ଧରିପକାଇଲେ । ଘର ଭିତରୁ ଶିବଲିଙ୍ଗର ସ୍ତ୍ରୀ ହାଉଳି ଖାଇଲା ପରି କାନ୍ଦି ଉଠିଲା - "ହେ ଭଗବାନ୍ ମୋ ସ୍ୱାମୀ କଣ ଭୁଲ କରିଛନ୍ତି ?" କଳେଶ ଗର୍ଜି ଉଠିଲା, "ଆଉ ବେଶି ପାଟିକରିବୁ ତ, ତତେ ମଧ୍ୟ ବାନ୍ଧି ଜଙ୍ଗଲରେ ନେଇ ପକାଇ ଦେବି । ଚୁପ୍ ରହ ।" ସ୍ତ୍ରୀ ଲୋକଟି ଡରିଯାଇ ନିଜମୁହଁରେ ହାତ ଦେଇ କାନ୍ଦ ବନ୍ଦ କରିଦେଲା । ଘୋଡାରୁ ଓହ୍ଲାଇ କଣ୍ଡାକୋଇସ୍ ଆଦେଶ ଦେଲେ, ସମସ୍ତେ ଭିତରକୁ ଚାଲ । ପୋଲିସ୍ ଧକ୍କା ମାରି ଶିବଲିଙ୍ଗାକୁ ଘରଭିତରକୁ ନେଲେ । କଣ୍ଡାକୋଇସ୍ ଭିତରୁ ଶିକୁଳି ପକାଇ ଶିବଲିଙ୍ଗାକୁ ପଚାରିଲେ -"କିରେ ବଦମାସ୍ କଣ ସବୁ ଧପେଇ ତୁ ଏ ପିଲାଠୁ ଜନ୍ମତାରିଖ ମଗାଇବାକୁ ପଚାଶ ଟଙ୍କା ନେଇଛୁ ? ଜାଣିଛୁ ଏଥିପାଇଁ ତତେ ଫାଶି ଦିଆଯାଇପାରେ । ଏତିକିବେଳେ ଚେନ୍ନିଗା ଡରିମରି ପାଟିକରି ଉଠିଲା - "ଆ - ଉ ତାକୁ ଛାଡିଦିଅନ୍ତୁ ।" କଣ୍ଡାକୋଇସ୍ ଜୋରରେ ପାଟିକଲେ - "ତୁ ଚୁପ୍ ରହ ।" ସେ ମଧ୍ୟ ଡରି ପାଟିରେ ହାତ ଦେଇ ଚୁପ୍ ହୋଇଗଲା । ତାପରେ ଶିବଲିଙ୍ଗା ଆଡକୁ ଚାହିଁ କଣ୍ଡାକୋଇସ୍ କହିଲେ, - "ଦିୱାନ୍ ମିରଜା ସାହେବଙ୍କ ହୁକୁମ୍‌ରେ ଆମେ ଏଠାକୁ ଆସିଛୁ । ତାଙ୍କ ଶାସନରେ ଏ ଠକାମୀ ଧପାବାଜି ଚଳିବ ନାହିଁ । ଶଳା ତୁ ଏତେ ଚୋର, ସରକାରଙ୍କ ନାଁରେ ପଇସା ଠକୁଛୁ । ଗୋରା ସାହେବ ହୁକୁମ୍ ଦେଇଛି ତତେ ଶୂଳିରେ ଚଢା ହେବ । ପୋଲିସ୍ କନେଷ୍ଟବଲ, ଏହାକୁ ହାତକଡି ଲଗାଅ ।"

ଶିବଲିଙ୍ଗ ଏସବୁ ଦେଖି ଡରି କଳାକାଠ ପଡିଗଲାଣି । ତା ସ୍ତ୍ରୀ ସେମାନଙ୍କ ଗୋଡତଳେ ପଡି କାନ୍ଦୁଥାଏ । କଣ୍ଡାକୋଇସ୍ କହିଲେ, "ଯେଉଁ ପଚାଶ ଟଙ୍କା ନେଇଛ ଶୀଘ୍ର ଗଣିଦିଅ । ଶିବଲିଙ୍ଗ

Digitized by srujanika@gmail.com

ଥରିଥରି କହିଲା - "ସେ - ଲୁ - ହ୍ନା - ସି - ହ୍ନୁ - କ - ରେ - ଅ - ଛି । ତା - ଲା - ଫି - ଟେ - ଇ - ଆ - ଣି - ଦେ ।" ତା ସ୍ତ୍ରୀ ଟଙ୍କା ଆଣି ଦେଲା ପରେ କଣ୍ଡୀକୋଇସ୍ ହୁକୁମ୍ ଦେଲେ, "କନେଷ୍ଟବଲ ଏ ଟଙ୍କା ପକେଟ୍‌ରେ ରଖ । କାଲି ସରକାରୀ ଖଜଣାରେ ଜମା ହେବ ।" ତାପରେ ଅନର୍ଗଳ କିଛି ସମୟ ଶିବଲିଙ୍ଗାର ଚଉଦପୁରୁଷ ଉଦ୍ଧାର କରିସାରିବା ପରେ କଣ୍ଡୀକୋଇସ୍ ଚିତ୍କାର କରି କହିଲେ - "ଆରେ ଶଳା, ସର୍ବରାକାର କାମ କାହିଁକି ଛାଡୁନୁ ? ଶୀଘ୍ର ଫର୍ଦ୍ଦେ କାଗଜ ଓ କଲମ ନେଇ ଆସ ।" ଶିବଲିଙ୍ଗ ତରିମରି ଯାଇ କାଗଜ କଲମ ଆଣିଲା ତାପରେ ଆଦେଶ ହେଲା - "ମୁଁ ଯାହା କହୁଛି, ସେ କାଗଜରେ ଲେଖ । ସନ୍ ଉଣେଇଶହ ଏତେ ମସିହାରେ ମହିଶୁର ମହାରାଜାଙ୍କ ଶାସନଗତ ତୁମକୁର ଜିଲ୍ଲାର ଚିପ୍‌ଟୁର ତାଲୁକାର କମ୍ବନକେରେ ପ୍ରଗଣା ଅନ୍ତର୍ଗତ ରାମସନ୍ଦ୍ର ଗ୍ରାମରେ ସ୍ଥାୟୀ ବଂଶାନୁକ୍ରମେ ସର୍ବରାକାର ସ୍ୱର୍ଗୀୟ ରାମନ୍ନା ମହାଶୟଙ୍କର ଜ୍ୟେଷ୍ଠ ପୁତ୍ର ଉତ୍ତରାଧିକାରୀ ଶ୍ରୀ ଚେନ୍ନିଗରାୟ ମହାଶୟଙ୍କୁ ଉପର ଲିଖିତ ଜିଲ୍ଲା ଏବଂ ତାଲୁକାର ରାମସନ୍ଦ୍ର ଗ୍ରାମର ବର୍ତ୍ତମାନର ସର୍ବରାକାର କାର୍ଯ୍ୟ ତୁଲାଉଥିବା ଆମ୍ଭେ ଶ୍ରୀ ଶିବଲିଙ୍ଗ ଗୌଡ ଏତଦ୍ୱାରା ଲିଖିତ ଆକାରରେ କାର୍ଯ୍ୟଭାର ପ୍ରଦାନ କରୁଛୁ । ଯାହାକି ଏ ପର୍ଯ୍ୟନ୍ତ ଆମ୍ଭେ ଆପଣ ନାବାଳକ ହୋଇଯାଇଥିବା ହେତୁ ଆପଣଙ୍କର ବଂଶପରମ୍ପରାଗତ ଉପରୋକ୍ତ ଅଧିକାର ଅଦ୍ୟ ଦିବସରେ ଆପଣଙ୍କୁ ଫେରାଇ ଦେଇ ଅଛୁଁ ଏବଂ ଖଜଣା ପାଇଁ ହିସାବ ଖାତା, ଜମିଜମା ହିସାବ ଖାତା, ଆଦି ସମସ୍ତ ତଳ ଲିଖିତ ତାଲିକା ମତେ ଆପଣଙ୍କୁ ବିନା ଆପତ୍ତିରେ ହସ୍ତାନ୍ତର କରୁଅଛୁଁ । ଏତଦ୍‌ବ୍ୟତୀତ ଆମ୍ଭେ ବହୁତ ରୋଗଗ୍ରସ୍ତ ହୋଇପଡିଥିବା ହେତୁ ଏହି ସରକାରୀ କାର୍ଯ୍ୟଭାର ସମ୍ଭାଳିବା ପାଇଁ ଅସମର୍ଥ ହେଉଅଛୁଁ ଏବଂ ଏଥିନିମନ୍ତେ ଲିଖିତ ସରକାରୀ ଆଦେଶ ଆସିବା ପୂର୍ବରୁ ଏହି କାର୍ଯ୍ୟଭାର ହସ୍ତାନ୍ତର କରୁଅଛୁଁ । ଆପଣ ଦୟାକରି ଏ ଦାୟିତ୍ୱ ଆପଣଙ୍କ ହାତକୁ ନିଅନ୍ତୁ ।" ତା ତଳେ ବିଭିନ୍ନ ପ୍ରକାର ଖାତା, ବହିର ତାଲିକା ଲେଖାଗଲା । ତା ତଳେ ଶିବଲିଙ୍ଗ ଦସ୍ତଖତ କରିଦେଲା । ଏ କାଗଜଟିକୁ ହାତରେ ଧରିସାରି କଣ୍ଡୀକୋଇସ୍ ଖାତାପତ୍ରର ଗଣ୍ଠିଲା ବାହାର କରିବାକୁ ହୁକୁମ୍ ଦେଲେ ଏବଂ ସ୍ୱାମୀ ସ୍ତ୍ରୀ ଦୁଇଜଣଙ୍କୁ ହିସାବ ଖାତାପତ୍ର ବୋଝ ମୁଣ୍ଡାଇ ଚେନ୍ନିଗରାୟର ଘରେ ପହଞ୍ଚାଇ ଦେଇ ଆସିବାକୁ କୁହାଗଲା । ବିଚରା ସ୍ୱାମୀ, ସ୍ତ୍ରୀ ଏବଂ ତାଙ୍କ ପୁଅ, ଝିଅ ସମସ୍ତେ ମିଶି ଖାତା ପତ୍ରତକ ଧରି ଗଙ୍ଗାମ୍ମାର ଘରେ ପହଞ୍ଚାଇ ଦେଇ ଆସିଲେ । ତାପରେ କଣ୍ଡୀକୋଇସ୍ ଧମକ ଦେଇ କହିଲେ - "ଏଥର ସୁନାପିଲା ପରି ଚୁପଚାପ୍ ଯାଇ ଘରେ ଶୋଇ ଯା । ଟିକିଏ କୁଁ - କାଁ ହେଲେ ପୋଲିସ୍ ତୋ ପିଠିରୁ ଛାଲ ଉତାରି ଦେବ ।"

ଏସବୁ ଘଟଣା ଏତେ ଶୀଘ୍ର ଓ ଅପ୍ରତ୍ୟାଶିତ ଭାବେ ହୋଇଗଲା ଯେ ଶିବଲିଙ୍ଗକୁ ଏକଥା ଏକ ଦୁଃସ୍ୱପ୍ନ ପରି ଜଣାପଡୁଥାଏ । ଭୟରେ ତାର ଲୋମ ଟାଙ୍କୁରି ଉଠୁଥାଏ । ସ୍ତ୍ରୀ ପିଲାପିଲିଙ୍କୁ ନେଇ କବାଟ କିଳି ସେ ଘର ଭିତରେ ଗୋଟାପଣରେ ଥରିବାକୁ ଲାଗିଲେ । ତା ସ୍ତ୍ରୀ ତାକୁ ଅନେକ ବୁଝାଇ ସୁଝାଇ କହିଲା - " ବେଶିଗୁଡେ ଭାବି କିଛି ଲାଭ ନାହିଁ । ଭଲ ହୋଇଛି ସେ ଜଞ୍ଜାଳ ହାତରୁ ଯାଇଛି ।"

ଏଣେ ଚେନ୍ନିଗରାୟର ଆଖିରେ ମଧ୍ୟ ନିଦ ନଥାଏ । ସେ ମଧ୍ୟ ଏକ ରକମ ଡରିଯାଇଥିଲା । ଏବଂ ତା ଦେହଟା ଖାଲି ଜର ଜର ଲାଗୁଥାଏ । ଭାବିଲା, ଶଶୁର ଶୋଇଲେ କି ନାହିଁ ତ ବୁଝିଲେ ନି ।

Digitized by srujanika@gmail.com

ତାଙ୍କୁ ବହୁତ ଭୋକ ଲାଗୁଥାଇ ପାରେ । ସକାଳୁ ଦେଖାଗଲା ଯେ ବାଟରୁ ଚଣ୍ଡୀମୂର୍ତ୍ତି ପାଖରୁ ଆଣିଥିବା କଦଳୀ ଦି'ପେଣା ଯାକ ସେ ରାତିରେ ଖାଇଦେଇଛନ୍ତି । ବଡି ସକାଳୁ ଉଠି କଣ୍ଡାକୋଇସ୍ ଅପନ୍ଥାସ୍ତା ହାତରେ ଗାଁ ଚୌକିଦାରକୁ ଡକାଇଲେ । ତାକୁ ଆଦେଶ ଦିଆଗଲା - "ଗାଁ ସାରା ଢେଣ୍ଢେରା ଦେଇଦେ ଯେ ଚେନ୍ନିଗରାୟ୍ ଗାଁର ନୂଆ ସର୍ବରାକାର ହିସାବରେ କାମକରିବେ । ଏବଂ ଏ ଆଦେଶ ଅମାନ୍ୟ କଲେ ଦଣ୍ଡ ଦିଆଯିବ ।" ଚୌକିଦାରକୁ ହାତଠାରି ଡାକି କହିଲେ - "ହେଇ ଦେଖ ପୋଲିସ୍ କନେଷ୍ଟବଲ୍ ଆସିଛନ୍ତି ତାଙ୍କ ଟୋପି କାନ୍ଥରେ ଓହଳା ହୋଇଛି ।"

ଚୌକିଦାର ନମସ୍କାର କରି ଚାଲିଗଲା । ନୂତନ ସର୍ବରାକାର ଚେନ୍ନିଗରାୟ୍‌ର ନାଁ ସାଙ୍ଗେ ସାଙ୍ଗେ ଗାଁ ସାରା ଘୋଷଣା କରିଦିଆ ଗଲା । ତାପରେ ଶିବଲିଙ୍ଗ ପଚାଶଟଙ୍କାରୁ ପଚିଶି ଟଙ୍କା ପୁଅ କଲେଷ୍ଟ ସାଙ୍ଗରେ ଆସିଥିବା ଅନ୍ୟ ପୋଲିସ୍ ହାବିଲଦାରକୁ ଦେଇ ବାକି ପଚିଶ ଟଙ୍କା ନିଜ ପକେଟ୍‌ରେ ଧରି କଣ୍ଡାକୋଇସ୍ ଘୋଡାରେ ବସି ବାହାରି ପଡିଲେ କମ୍ବନକେରେ ସହର ଆଡକୁ । ସେଠି ଇଲାକାଦାରଙ୍କ ସାଙ୍ଗରେ ଦେଖା କରି ସର୍ବରାକାର କାର୍ଯ୍ୟ ହସ୍ତାନ୍ତର ବିଷୟ ସରକାରୀ ରେକର୍ଡରେ ଚଢାଇବା ପାଇଁ କହିବାକୁ ହେବ । କଲେଷ୍ଟ ଏବଂ ତା ସାଥି ଦୁହେଁ ଖାଇସାରି ତାଙ୍କ ଚାକିରୀ ଜାଗାକୁ ଚାଲିଗଲେ ।

ସେଦିନ ରାତି ଦଶଟାରେ କଣ୍ଡାକୋଇସ୍ ଫେରି ଦେଖନ୍ତିତ ଚେନ୍ନିଗରାୟ୍ ଦେହରେ ଜ୍ୱର ଖାଇ ଫୁଟୁଛି । ଗଙ୍ଗାମ୍ମା ପୁଅର କପାଳରେ ପାଣି ପଟି ଦେଇ ବସିଥାଏ । ଚେନ୍ନିଗରାୟ୍ ବାଉଳି, ଚାଉଳି ହେଉଥାଏ "ଆ - ମ୍ମା -ଆମ୍ମା ମା'ଲୋ ମୋର ଦୋଷ ହୋଇଛି । ମତେ କ୍ଷମା କରିଦେ । ମୁଁ କିନ୍ତୁ ତୋ ଉପରକୁ ଗୋଇଠା ମାରିନି ।" ତାର ଏସବୁ ବାତାଳାମି ବୁଝିଗଲେ । ଗୋଟିଏ ସରାରେ କିଛି ରଡନିଆଁ ମଗାଇ ସେଥିରେ ଝୁଣା ପକାଇ ଧୂଆଁ କଲେ । ତଳେ ମଣ୍ଡଳ ଚିତ୍ର କରି ବିଭିନ୍ନ ପ୍ରକାର ମନ୍ତ୍ର ପଢିଲେ । ଗୋଟିଏ ନଡିଆ ଭାଙ୍ଗି ନଡିଆ ପାଣି ରୋଗୀର ଦେହସାରା ଛୁଞ୍ଚି ବାକି ପାଣି ମୁହଁ ଉପରକୁ ଛାଟି ଦେଲେ ଏହା ଛଡା ପୂଜା କରି ଗୋଟିଏ ତେଉଁରିଆ ତା ବେକରେ ବାନ୍ଧିଦେଲେ । ମନ୍ତ୍ର ପଢି ତାଦେହକୁ ଝାଡିଦେଲେ । ଗଙ୍ଗାମ୍ମାକୁ କହି, ଅଦା, ଲବଙ୍ଗ, ଗୋଲମରିଚ ଇତ୍ୟାଦି ସିଝାଇ ପାଚନ କଡା ପାଚନ ତିଆରି କରାଇ ତାକୁ ପିଆଇ ଦେଲେ । ଏଥର ଚେନ୍ନିଗାକୁ ନିଦ ଆସିଗଲା । ତା ପରଦିନ ରାତି ପାହିବା ଆଗରୁ ଜ୍ୱରର ନାଁ ଗନ୍ଧି ମଧ୍ୟ ନଥିଲା ।

Digitized by srujanika@gmail.com

# ତୃତୀୟ ଅଧ୍ୟାୟ

## 1

ଇତି ମଧ୍ୟରେ ନଷ୍ଟଙ୍କା ରତ୍ନମଣୀ ହୋଇସାରିବାପରେ ପହିଲିପାଳି ଶାଶୁଘରକୁ ଆସିଥାଏ । ନୂତନ ସର୍ବରାକାର ଚେନ୍ନିଗରାୟ ବହୁଦିନରୁ ପତ୍ନୀସୁଖ ଅପେକ୍ଷାରେ ଥିଲା । ଏହାଛଡା ଆଉଜଣଙ୍କ ଉପରେ ହୁକୁମ ଚଳାଇବାର ସୁଯୋଗ ମଧ୍ୟ ତାସ୍ତୁ ଥିଲା । ଯାଉଣୁ ଆସୁଣୁ ମୁର୍ହିରୁ ଅଭଦ୍ର ଭାଷା ଓ ଅକଥ୍ୟ ଗାଳି ବର୍ଷଣ କରି ସେ ଏ ଅଭିଳାଷ ପୂରଣ କରୁଥାଏ । ଯେତେବେଳେ ତ ଗଙ୍ଗାମ୍ମାର ପୁଅ କୁ ପ୍ରୟୋଗ କରିବାରେ ପଛାଇବା ତା' ଜାତକରେ ନାହିଁ । ହେଲେ ଏକଥା ଶଶୁରଙ୍କ କାନ ପର୍ଯ୍ୟନ୍ତ ଜାଣେ ହୋଇଯିବ ଏ ଭୟଟି ସବୁବେଳେ ଥାଏ ।

ଏଣେ ଶାଶୁ ହିସାବରେ ବୋହୂ ଉପରେ ଅଧିକାର ସାବ୍ୟସ୍ତ କରିବା ଗଙ୍ଗାମ୍ମାର ଯେଉଁ ଇଚ୍ଛା, ତାର କୌଣସି ସୀମା ନଥାଏ । କିନ୍ତୁ ସମୁଦିଙ୍କୁ ଡରି ଗାଳି ଦେବାର ଇଚ୍ଛାରେ ସେ ଲଗାମ ଦେଇଥାଏ । ଚେନ୍ନିଗରାୟ ତାଲୁଖା ଅଫିସକୁ ଗଲା । କିରାନୀକୁ ହାତଗୁଞ୍ଜା ଦେଇ ସୁଦ୍ଧା ହିସାବରେ ଥିବା ଭୁଲଭାଲ ଧରାପଡିଲା ଏବଂ ହିସାବ ଗୃହୀତ ହେଲାନାହିଁ । ଚେନ୍ନିଗା ମନ ଭିତରେ ଭୁତୁଭୁତୁ ହୋଇ କିରାନୀର ଚଉଦପୁରୁଷ ଉଦ୍ଧାର ସିନା କରୁଥାଏ, ମୁର୍ହ ଖୋଲି କହିବାକୁ ସାହସ ନଥାଏ । ହେଡ କିରାନୀ କହିଲେ- - "ହିସାବରେ ବହୁତ ଭୁଲ ବାହାରିଲା । ଏହାକୁ ଦୁଇମାସ ଭିତରେ ତିପଟୁର ସହରରେ ତାଲୁକାଦାରଙ୍କ ପାଖରେ ଯାଇ ଠିକ୍ କରାଇବାକୁ ହେବ ।"

ସେଥର ହିସାବ ପାଇଁ ତିମଲାପୁର ଗାଁର ସର୍ବରାକାର ଶ୍ରୀ ଦ୍ୟାବରସୟ୍ୟା ମଧ୍ୟ ଆସିଥାନ୍ତି । ନିର୍ଭୁଲ ଖଜଣା ହିସାବ ପାଇଁ ତାଙ୍କର ବଡ ନାଁ । ଚେନ୍ନିଗରାୟ ଏ ମହାଶୟଙ୍କ ଶରଣ ପଡିଲା, କାରଣ ଜମି ଖଜଣା ହିସାବ ବୁଝିବା ତାର ବୁଦ୍ଧିଶକ୍ତିର ବାହାରେ ଥିଲା । ହେଲେ ଶ୍ରୀ ଦ୍ୟାବରସୟ୍ୟା ଏ ଅତିରକ୍ତ କାମ ପାଇଁ ପ୍ରତିବର୍ଷ ପଚାଶଟଙ୍କା ନେବେ ବୋଲି କହିଲେ । ଚେନ୍ନିଗରାୟର ମୋଟ ବାର୍ଷିକ ଆମଦାନୀ ଶହେ ବାଇଶି ଟଙ୍କା ସାତଅଣା । ଏଥିରୁ କାଗଜ, ସାହି କିଣା ଖର୍ଚ୍ଚ, ବାର୍ଷିକ ହିସାବ ବୁଝାଇବା, ସମୟରେ ସିରସ୍ତାଦାରଙ୍କୁ ଲାଞ୍ଚ ଦଶଟଙ୍କା, ହେଡ୍‌କିରାନୀର ଦିଟଙ୍କା, ତା ତଳ କିରାନୀର ଦୁଇଟଙ୍କା, ଖଜଣାଦାର ର ଟଙ୍କାଏ ଏବଂ ଚପରାଶିମାନଙ୍କର ଆଠଅଣା ଲେଖାଏଁ । ଏପରି ପ୍ରାୟ ଅଠର ଟଙ୍କା ଖର୍ଚ୍ଚ ଲାଗିଯାଉଥିଲା । ଏହାଛଡା ତିପଟୁର କୁ ଯିବା ଆସିବା, ହୋଟେଲରେ ଖାଇବା ପିଇବା ପଚାଶଟଙ୍କା

Digitized by srujanika@gmail.com

ଦେଇଦିଆଯାଏ । ତାହା ହେଲେ ହାତରେ ବଳିବ ବା କଣ ? ହଁ - ଖଜଣା ଅସୁଲ ସମୟରେ ଚାଷୀମାନଙ୍କଠାରୁ ଚାରଣା, ଆଠଅଣା, ବଢାଇ ଆଦାୟ କରିବା ପ୍ରଥା ମଧ୍ୟ ପ୍ରଚଳନ ଥିଲା । କିନ୍ତୁ ଏସବୁ ଉପରି ଟଙ୍କା ଆଦାୟ ସର୍ବରାକାରର କ୍ଷମତା ଉପରେ ନିର୍ଭର କରୁଥିଲା । ଭାଇଭାଗ, ସମ୍ପତ୍ତି ବଣ୍ଟରା, ବିଶୋଧନୀ, ବିକ୍ରିଖରିଦ୍ ଦଲିଲ, ବନ୍ଧକ ଏବଂ ଖଜଣା ସମ୍ବନ୍ଧୀୟ ଯେତେପ୍ରକାର ଦରଖାସ୍ତ ଏ ସମସ୍ତ ବାବଦରୁ କିଛି କିଛି ଉପୁରି ଆୟ କରାଯାଇପାରେ । ହେଲେ ଏସବୁ ପାଇଁ ହିସାବପତ୍ରରେ ଏବଂ ସରକାରୀ ନିୟମରେ ଦୋରସ୍ତ ହେବା ଆବଶ୍ୟକ । ଚେନ୍ନିଗରାୟଙ୍କୁ ନିଜ ହିସାବ ଲେଖିବା ଆସୁନଥିଲା, ଏସବୁ ଆସିବ କୁଆଡୁ ?

ତେଣୁ ଚିମଲାପୁର ଗାଁର ସର୍ବରାକାର ଶ୍ରୀଦ୍ୱାବରସପ୍ପାଙ୍କୁ ରାମସନ୍ଦ୍ର ଗାଁରେ ପନ୍ଦର ଦିନ ଡେରା ପକାଇବାକୁ ହିଁ ପଡିଲା । ତାଙ୍କର ସେବା ଶୁଶ୍ରୁଷା ଏବଂ ଖାଇବା ପିଇବା ଇତ୍ୟାଦି ବ୍ୟବସ୍ଥାରେ ଚେନ୍ନିଗରାୟ, ଗଙ୍ଗାମ୍ମା, ଏବଂ ନଞ୍ଜମ୍ମା ଭାରି ତତ୍ପର । ହିସାବ ଖାତା ଠିକ୍ କରିସାରିଲାପରେ ଚେନ୍ନିଗରାୟଙ୍କୁ ସାଙ୍ଗରେ ଧରି ତାଲୁକା କଚେରୀରେ ହାଜିର ହେଲେ । ସେଠି ହେଡ୍‌କିରାଣୀଙ୍କୁ ହାତଗୁଞ୍ଜା ଦି ଟଙ୍କା ଏବଂ ସିରସ୍ତାଦାରଙ୍କୁ ପାଞ୍ଚଟଙ୍କା ଦେଇ ଖଜଣା ପାଇଁ ଖାତାରେ ଦସ୍ତଖତ କରାଗଲା । ଚେନ୍ନିଗରାୟ କୋଟ୍ ପଗଡି ପିନ୍ଧି ତାଲୁକାଦାର ସାହେବଙ୍କ ଆଗରେ ହାଜର ହେଲା । ସାହେବଙ୍କ ଆଗରେ କାଗଜ ପେଶ କରାଗଲା ବେଳେ ଚେନ୍ନିଗରାୟ ହାତଯୋଡି ଠିଆ ହୋଇଥାଏ । ସୌଭାଗ୍ୟବଶତଃ ସାହେବ କିଛି ପଚାରିଲେ ନାହିଁ ଏବଂ ହେଡ୍‌କିରାନି ଜମାବନ୍ଦୀ କାଗଜ ଉପରେ ଦସ୍ତଖତ କରାଇନେଲେ ।

ତିପଟୁରରୁ ଗାଡିଧରି ଚିମଲାପୁରରେ ଯାଇ ଶ୍ରୀ ଦ୍ୱାବରସପ୍ପାଙ୍କୁ ଓହ୍ଲାଇ ଦେଇ ସେଠାରୁ ନିଜ ଗାଁକୁ ଚେନ୍ନିଗରାୟ ଫେରିଲା । ଘରେ ଯେମିତି ପାଦ ଦେଇଛି ସ୍ତ୍ରୀକୁ ପାଟିକରି ଡାକିଲା, "ଆଲୋ ପୋଡାମୁହିଁ, କେଉଁଠି ଅଛୁ ? ଶୀଘ୍ର ଆସ । କଚେରୀରୁ କାମ କରି ଫେରିଛି ଯେ ହାତଗୋଡ ବିନ୍ଧିଲାଣି । ବେଗେ ସୋରିଷ ତେଲ ଆଣି ମୋର ଗୋଡ ହାତରେ ମାଲିସ୍ କର ।"

ନଞ୍ଜମ୍ମାର ବେଶ୍ ହୃଷ୍ଟପୁଷ୍ଟ ଗଠଣ । ସାଙ୍ଗେ ସାଙ୍ଗେ ବାଡିପଟ ଅରଟ ଲଗା କୁଅରୁ ପାଣିକାଢି ହଣ୍ଡା ଭର୍ତ୍ତି କରିଦେଲା । ନଡିଆ ପତ୍ର ଜଳେଇ ପାଣି ତତାଇଲା । ସ୍ୱାମୀର ଗୋଡ ହାତ ଦେହ ଭଲ କରି ତେଲ ଘସି ଗରମ ପାଣିରେ ସ୍ନାନ କରାଇଲା । ତାପରେ ଭଲକରି ପୋଛା ପୋଛି ହୋଇ ଆଗରୁ ବିଛା ହୋଇଥିବା ଶେଯରେ ଚେନ୍ନିଗରାୟ କମ୍ବଳ ଘୋଡାଇ ହୋଇ ଶୋଇଗଲା । ତା ପାଖରେ ବସି ନଞ୍ଜମ୍ମା ଧୀରେ ଧୀରେ ଗୋଡ ଘସିଦେଲା ।

Digitized by srujanika@gmail.com

ଏଣେ ସାନଭାଇ ଅପନ୍ନାଯ୍ୟାର ବିବାହ ବୟସ ହୋଇ ଯାଇଥାଏ । ସର୍ବଦାକାର କାମ ଗଣ୍ଡଗୋଳ ଭିତରେ ସେଆଡେ କେହି ଦୃଷ୍ଟି ଦେଇନଥିଲେ । ବର୍ତ୍ତମାନ ସେ ସବୁ ତୁଟିଲାପରେ ତା ବିବାହ ପ୍ରଶ୍ନ ଉଠିଲା । ଅପନ୍ନା ଗାଁ ଚାଟଶାଳୀରେ ଦିବର୍ଷ ଖଣ୍ଡେ ଅବଶ୍ୟ ବସିଥିଲା । ଅବଧାନେ କହିଥିଲେ ବିଦ୍ୟା ନାହିଁ । ତେଣୁ ତାର ବା ଦୋଷ କଣ ? '୦'ଟିଏ ମଧ୍ୟ ଲେଖିବା ତା ପକ୍ଷରେ କଷ୍ଟକର । ହେଲେ ସେ ଚାଟଶାଳୀ ଯେ ଯାଉଥିଲା ସେତିକି ଯଥେଷ୍ଟ । କାରଣ ଗାଁ ଲୋକେ ଚାହୁଁଥିଲେ ସେ ଯେପରି ଆଉଥରେ ବିଡ଼ିପିଇ ଆଖୁକିଆରୀ ରେ ନିଆଁ ନଲଗାଉ ।

ଯଥାସମୟରେ ଅପନ୍ନାର ବିବାହ ନୁଗଗିକେରେ ଗାଁର ପୁରୋହିତ ଶ୍ୟାମଭଟ୍ଟଙ୍କ ଝିଅ ସହିତ ସମ୍ପନ୍ନ ହେଲା । ଗଙ୍ଗାମ୍ମାର ବାପଘର ଗାଁ ଆଡୁ କେତେଜଣ ସମ୍ପର୍କୀୟ ଲୋକ ଏ ପ୍ରସ୍ତାବଟି ଆଣିଥିଲେ । ଝିଅଟି ମଧ୍ୟ ବାପା, ମା'ର ଏକମାତ୍ର ସନ୍ତାନ । ଝିଅଟି ଭାରି ବୁଦ୍ଧିଆ । ତାକୁ ଅନେକ କାମ ଜଣା, ହେଲେ ଝିଅର ଏ ସବୁ ଜାଣିଥିଲେ ବୋଧହୁଏ ଗଙ୍ଗାମ୍ମା ତାକୁ ବୋହୂକରିବାକୁ ରାଜି ହୋଇନଥାନ୍ତା ।

ବଡ଼ ଜାକଜମକରେ ବିବାହ ହେଲା । ବଡଭାଇ ଚେନ୍ନିଗରାୟ୍ ଏବଂ ଭାଉଜ ନଞ୍ଜମ୍ମା ବରଘର ତରଫରୁ କର୍ତ୍ତା ହୋଇ ବିବାହ କରାଇଲେ । ରୂପାର ବାସ, ମୁକୁଟ, ଦାମିକା ଧୋତି ଏବଂ ଜରିଦାର ପଗଡ଼ି ଇତ୍ୟାଦି ଅପନ୍ନାଯ୍ୟାକୁ ମିଳିଲା । ଏହାଛଡା ଅନେକ ଜିନିଷ ପତ୍ର ମଧ୍ୟ ଆସିଲା । ବିବାହଘର ଛଅମାସ ନହେଉଣୁ ବୋହୂଥିଲା ରଜୁମତୀ ହୋଇ କିଛିଦିନ ପରେ ଶାଶୁଘରକୁ ପହିଲିପାଳି ହୋଇ ଆସିଲା ।

ବର୍ତ୍ତମାନ ଅପନ୍ନାଯ୍ୟାର ସମସ୍ୟା ହେଲା ସ୍ତ୍ରୀକୁ କିପରି ଶାସନ କରାଯିବ । ସେ ଏକ ପ୍ରକାର ନିଷ୍ପତ୍ତି କରିନେଇଥିଲା ଯେ ବଡଭାଇ ଯେପରି ଭାଉଜଙ୍କ ଉପରେ ଶାସନ କରୁଛନ୍ତି ସେ ମଧ୍ୟ ସେପରି କରିବା ଦରକାର । ତେଣୁ ନିଜର ସ୍ୱାମୀତ୍ୱ ଜାହିର କରିବାପାଇଁ ସ୍ତ୍ରୀ ତା ଶାଶୁଘରେ ପାଦ ଦେଉ ନ ଦେଉଣୁ ତାକୁ ଡାକ ପଡ଼ିଲା, "ଆଲୋ କୁଆଡେ ଗଲୁ, ଶୀଘ୍ର ଆସ ମୋ ଗୋଡ ହାତରେ ତେଲ ଘସ ।" ବୋହୂର ନାଁ 'ସାତୁ' । ସ୍ୱାମୀଙ୍କ ଏପରି ଆଦେଶ ହେଲାବେଳେ ସେ ଘର ଓଳାଉଥିଲା । ସେ ବୁଝିପାରିଲା ନାହିଁ ଅପନ୍ନାଯ୍ୟା କାହାକୁ ଡାକୁଛି । ଏଣେ ଅପନ୍ନାଯ୍ୟା ପୁଣି ଚିତ୍କାର କଲା - "ଆଲୋ ତୁ କଣ କାଲୁଣିଟା କି ? ତତେ ପରା ଡାକୁଛି । କଣ କାନକୁ ଶୁଣାଯାଉନାହିଁ ?" ସାତୁ ସେମିତି ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଥାଏ । ଝାଡୁଣି ମୁଠାଟା ସେଠି ପିଙ୍ଗି ଦେଇ ସିଧା ଯାଇ ଶାଶୁପାଖରେ ହାଜର ହୋଇ କହିଲା, "ମା ଆପଣ ଶୁଣୁଛନ୍ତି, ଆପଣଙ୍କ ପୁଅ କେମିତି ଗାଳି ଦେଉଛନ୍ତି ।" ହେଲେ ଶାଶୁତ ଚହଟୁଁ ବଳକା । ଗଙ୍ଗାମ୍ମା କଳ୍ପନା ସୁଦ୍ଧାକରି ନଥିଲା ଯେ ସାନବୋହୂ ତା ପାଖରେ ଆସି ସ୍ୱାମୀ ବିରୁଦ୍ଧରେ

Digitized by srujanika@gmail.com

ଅଭିଯୋଗ କରିବା ପାଇଁ ସାହସ କରିପାରିବ । ବଡ ବୋହୂ ନନ୍ଦିନୀକୁ ତ ବଡ ପୁଅ ଏମିତି ଡାକେ । ହେଲେ ସିଏ ତ କାହିଁ କିଛି କହେ ନାହିଁ । ଆଉ ଇଏ ପୋଡାମୁହିଁ ଖଣ୍ଡିକ ଆସୁ ଆସୁ ଏମିତି କହିଲାଣି । "ଆଲୋ ବାପଖାଇ, ସ୍ୱାମୀ ଯଦି ଏମିତି କହିଦେଲା ଏଥିରେ କେଉଁ ବେଦ ଅଶୁଦ୍ଧ ହୋଇଗଲା ?" ସାନବୋହୂ କି ଛାଡିବା ଲୋକ । ସାଙ୍ଗେ ସାଙ୍ଗେ ଜବାବ ଆସିଲା "ମୁଁ କାହିଁକି ବାପଖାଇ ହେବି, ମତେ ଯିଏ କହୁଛି ସିଏ ହୋଇଥିବ ।" ଏକଥା ଶୁଣି ଗଙ୍ଗାମାର ଯାହା ଅବସ୍ଥା ହୋଇଥିବ ପାଠକେ ବୁଝିପାରୁଥିବେ । ଅଗତ୍ୟା ବାଧ୍ୟ ହୋଇ ଆକ୍ରମଣର ଦିଗ ପୁଅ ଆଡକୁ ମୋଡି କହିଲା, "ଶୁଣିଲୁ, ଆରେ ମାଇଚିଆ ତୋର ସ୍ତ୍ରୀ ତୋ ଜନ୍ମ କଲା ମାକୁ କଣ ବୋଲି ଗାଳିଦେଲା ? ନାଇଁ, ନାଇଁ ମୁଁ କଣ ବାପଖାଇ ? ଏ ବକଟେକର ଝିଅ ପିଲାଟାକୁ କଣ ଶାସନ କରିବାର ଶକ୍ତି ତୋର ନାହିଁ ? ତୁ ସତରେ ବର୍ଦ୍ଧିଷ୍ଣ ବୁଡା ଶିଖଣ୍ଡିଟା କିରେ ?"

ମା'ର ଗାଳି ଶୁଣି ପୌରୁଷ ସତେ ଯେମିତି ଚେଇଁ ଉଠିଲା । ସିଧାଯାଇ ସ୍ତ୍ରୀର ବେକକୁ ଧରି ଦୁଇ ଚାପୁଡା କସିଦେଲା । "ଆଜି ଏ ରାଣ୍ଡିକୁ ଜୀବନରେ ନ ମାରିଦେଲେ ମତେ ଶାନ୍ତି ନାହିଁ ।" ଏସବୁ ଗଣ୍ଡଗୋଳ ଶୁଣି ନନ୍ଦିନୀ ରୋଷେଇ ଘର ଭିତରୁ ଦଉଡି ଆସିଲା । ଏ ପର୍ଯ୍ୟନ୍ତ ସେ ଚୁପଚାପ ସବୁ ଶୁଣୁଥିଲା । କିନ୍ତୁ ଆଉ ସହିପାରିଲା ନାହିଁ । ରାଗରେ କହିଲା -"ଅପନ୍ନାସ୍ତ୍ରୀ ବୋହୂପିଲାକୁ ଏପରି କଷ୍ଟ ଦେଲେ ଭଗବାନ୍ ତୁମ ହାତ ଗୋଡରେ ବେମାର କରେଇଦେବେ । ତୁମ ମୁଣ୍ଡରେ କଣ ଟିକିଏ ହେଲେ ବୁଦ୍ଧି ନାହିଁ ।" ଏକଥା କହି ସେ ପାଣିଆଣି ତଳେ ମୂର୍ଚ୍ଛା ହୋଇ ପଡିଥିବା ସାନବୋହୂ ମୁହଁରେ ପାଣିଛାଟିବାକୁ ଲାଗିଲା । ଅପନ୍ନାସ୍ତ୍ରୀ, ଭାଉଜଙ୍କୁ ଗାଳିଦେବାକୁ ଇଚ୍ଛା ହେଲେ ସୁଦ୍ଧା କେଜାଣି କେଉଁ ଭୟରେ (ବୋଧହୁଏ ଜଣ୍ଡୀଜୋଇସଙ୍କ ଚେହେରା ମନେ ପଡିଯିବାରୁ) ଚୁପ ରହିଲା । ସାନବୋହୂ ସାବୁ ସାଷ୍ଟମ ହୋଇ ଉଠି ବସି କହିଲା - "ଉଚ୍ଚକୁଳରେ ଜନ୍ମ ହୋଇଥିଲେ ସିନା, ମୁହଁରୁ ଭଲ କଥା ବାହାରନ୍ତା ।"

"ତୁ ଆଉ କିଛି କହନା ସାବୁ । ତୁ ମୋ ସାଙ୍ଗରେ ଆ ।" ନନ୍ଦିନୀ ତାକୁ ନେଇ ଉପରକୁ ଚାଲିଗଲା । ପଛରୁ ଶାଶୁର ପାଟି ଶୁଭିଲା, "ଏ ରାକ୍ଷସୀର ପଟିଆ ହେବାକୁ ଏ ବଡ ରାକ୍ଷସୀଟି ବାହାରି ଯାଉଛି ।" ନନ୍ଦିନୀ ଶୁଣି ମଧ୍ୟ ଚୁପ ରହିଲା । ଉପରକୁ ଯାଇ ସାବୁ ପଚାରିଲା "ବ୍ରାହ୍ମଣ ହୋଇ ମଧ୍ୟ ଏମାନଙ୍କ ମୁହଁରୁ ଏପରି କଥା କିପରି ବାହାରୁଛି ?"

"ଆଲୋ ତୋ ପାଇଁ ତ ଇଏ ନୂଆ, ମୋର ତ ଦେହସୁହା ହୋଇଗଲାଣି ।"

"ଦେଢଶୁର ମଧ୍ୟ କଣ ଏପରି ବ୍ୟବହାର କରନ୍ତି ?"

"ଦିବର୍ଷ ହେଲା ଏପରି ଶୁଣି ଶୁଣି ଅଭ୍ୟାସ ହୋଇଗଲାଣି ।"

"ତୁମେ ଚୁପ ରହିଛ ବୋଲି ଏମାନଙ୍କର ମୁହଁ ବଢିଯାଇଛି ।"

ନନ୍ଦିନୀ କ'ଣ ସବୁ ବସି ଭାବୁଥାଏ । ସାବୁ ପୁଣି କହିଲା - "ନାନୀ ତୁମ ବାପାତ ଏ ଅଞ୍ଚଳର ବହୁତ ଜଣାଶୁଣା ଲୋକ । ଆମ ବାହାଘରକୁ ଆସିଥିଲେ ଯେ ତାଙ୍କ ଚେହେରା ଦେଖି ସମସ୍ତେ

Digitized by srujanika@gmail.com

ଡରିଗଲେ । ତାଙ୍କରି ଲାଗିପରା ଦେଢଶୁର ସର୍ବଗାକାର କାମ ଫେରିପାଇଲେ ନା କଣ ? ତୁମେ ଥରେ ତାଙ୍କୁ କହି ଏମାନଙ୍କୁ ଡରାଇଦେଲେ ଏମାନଙ୍କର ମୁହଁ ବନ୍ଦ ହୋଇଯାଆନ୍ତା ।''

''ସାନ୍ତୁ ତୁ ପିଲାଲୋକ, ବୁଝିପାରୁନୁ । କୌଣସି ସ୍ତ୍ରୀ ନିଜର ସ୍ୱାମୀର ଭୁଲ ଠିକ କରିବା ପାଇଁ ନିଜ ବାପାଙ୍କ ଆଗରେ ଅଭିଯୋଗ କରିବା କଥା ନୁହେଁ ।'' ତାପରେ ସେ କହିଲା ତା' ବାପା କେମିତି ରାଗୀ ଲୋକ । ରାଗିଲାବେଳେ ଚୁଟିକୁ ଧରି ଦାନ୍ତଲଗା ଚାପୁଡା କସିଦିଅନ୍ତି । ଏବଂ ତାପରେ ଯାଇ କଥାବାର୍ତ୍ତା କରନ୍ତି । ଏପରିକି ରାଗିଲାବେଳେ ଜ୍ୱାଇଁ ପୁଅ ମଧ୍ୟ ବାଦ୍ ଯାଆନ୍ତି ନାହିଁ । ଅଧୈର୍ଯ୍ୟ ଲୋକଙ୍କୁ ସେ ସବୁବେଳେ ନୀଚଆଖିରେ ଦେଖନ୍ତି । ତେଣୁ ଏପରି ଅବସ୍ଥାରେ ସ୍ୱାମୀ ବିରୁଦ୍ଧରେ ତାଙ୍କୁ କହିବା ଅର୍ଥ ନିଜ ସ୍ୱାମୀଙ୍କର ସମ୍ମାନ ହାନିକରିବା ଛଡା ଆଉ କିଛି ନୁହେଁ । ସାନ୍ତୁ କହିଲା, ''ତେବେ ତୁମେ ଏମାନଙ୍କୁ ବୁଝାଅ ଯେମିତି ମତେ ଆଉ କେବେ ଏପରି କଷ୍ଟ ନଦିଅନ୍ତି ।'' ଏତିକି ବେଳେ ଡେନ୍ଣିଗରାପ୍ସ ର ପାଟି ଶୁଭିଲା - ''ଆଲୋ କୁଆଡେ ଗଲୁ ଲୋ ? ଏପର୍ଯ୍ୟନ୍ତ ଗଣ୍ଡେ ଖାଇବାକୁ ଦେଇ ପାରିଲୁ ନାହିଁ ? ତୋ ବଂଶ ବୁଡିଯାଉ ।''

''ଶୁଣିଲୁ ଦେଢଶୁରଙ୍କ ଭାଷା ? ମୁଁ ଯାଉଛି ଜଲଦି ଜଲଦି ଦିଖଣ୍ଡ ରୁଟି ତିଆରି କରିଦେବି । ତୁ ଶୀଘ୍ର ମସଲାଟିକିଏ ବାଟିଦେ । ନାଇଁ, ଯଦି ତୁ ଅପନ୍ନାସ୍ୱାର ଗୋଡରେ ତେଲ ଘସିବାକୁ ଚାହୁଁ ଚାହାନ୍ତେଲେ ଯା ।'' ନନ୍ଦିନୀ ଏକଥା କହି ରୋଷେଇ ଘରକୁ ଯିବାକୁ ବାହାରିଲା । ସାନ୍ତୁ କହିଲା- ''ତେଲ ଘସିଦେବାକୁ ଯଦି ଇଚ୍ଛା ତେବେ ମା' ବୁଢୀକୁ କହନ୍ତୁ । ମୁଁ ଯାଏଁ ମସଲା ବାଟିଦିଏଁ ।''

Digitized by srujanika@gmail.com

# ଚତୁର୍ଥ ଅଧ୍ୟାୟ

## 1

ନଷ୍ଟିକ୍ନାର ଗର୍ଭ ସାଢେ ସାତମାସ ହୋଇସାରିଥାଏ । ଦିନେ ଘୋଡାରେ ଚଢି କଣ୍ଠାଜୋଇସ ମହାଶୟ ରାମଚନ୍ଦ୍ର ଗାଁରେ ଆସି ପହଞ୍ଚିଲେ । ଏଥର କିନ୍ତୁ ସେ ଦିନବେଳେ ଆସିଥିଲେ । ତାଙ୍କର ପହଞ୍ଚିବାର ଦୁଇ ଘଣ୍ଟାପରେ ଗୋଟିଏ ଶଗଡ ଗାଡି ମଧ୍ୟ ଆସି ପହଞ୍ଚିଲା । ଗଦି, ତକିଆ ପଡ଼ି ଗାଡ଼ିଭିତରଟି ବେଶ ସୁଦୃଶ୍ୟ ହୋଇଥାଏ । ଝିଅର ପ୍ରଥମ ପ୍ରସବ ପାଇଁ ତାକୁ ଘରକୁ ନେବାପାଇଁ ଆସିଥାନ୍ତି ।

କଣ୍ଠାଜୋଇସ ତାଙ୍କ ପୁଅ କଲ୍ଲେଶର ବିଭାଘର ଠିକ୍ କରିଥିବା ମଧ୍ୟ କହିଲେ । ମାତ୍ର ପନ୍ଦର ଦିନ ରହିଲା । ବୋହୁପିଲାର ଘର ହାସନ୍ ଗାଁରେ । ବିଭାଘର ପାଇଁ ସମସ୍ତଙ୍କୁ ଯିବାପାଇଁ ନିମନ୍ତ୍ରଣ ଦେଲେ । ଜିନିଷ ପତ୍ର ଲୁଗାପଟା ବନ୍ଧାବନ୍ଧି ପରେ ନଷ୍ଟିକ୍ନା ଶଗଡରେ ବସିଲା । ଗାଡିର ଆଗେ ଆଗେ ଧଳାଘୋଡା ଉପରେ ବସି, କଣ୍ଠାଜୋଇସ ସେନାପତିଙ୍କ ପରି ଦିଶୁଥାନ୍ତି ।

ନାଗଲାପୁର ଘରେ, ବୁଢୀମା ପିଲାଦିନୁ ନଷ୍ଟିକ୍ନାକୁ ପାଳିପୋଷି ବଡକରିଥିଲା । ଗାଡିରୁ ଓହ୍ଲାଇ ବୁଢୀମାକୁ କୁଣ୍ଢେଇ ଧରି ନଷ୍ଟିକ୍ନା ସକ୍‌ସକ୍ କାନ୍ଦିପକାଇଲା । ନାତୁଣୀକୁ ଘରକୁ ଆଗରୁ ଡାକିଆଣିବାକୁ ବୁଢୀମାର ଇଚ୍ଛାଥିଲା, କିନ୍ତୁ ତାହା ହୋଇ ପାରିନଥିଲା । ଯାହାର କାରଣ କଣ୍ଠାଜୋଇସ ଅନେକଦିନରୁ ଘରେ ନଥିଲେ, ଏବଂ କାଲି ମାତ୍ର ସେ ଆସି ପହଞ୍ଚିଥିଲେ । ଏଥର କିନ୍ତୁ ସେ ପୁଅ କଲ୍ଲେଶର ବିଭାଘର ମଧ୍ୟ ଠିକ୍ କରି ଆସିଥିଲେ । ପୁଅର ବିଭାଘର କଥା ସେ ଏପର୍ଯ୍ୟନ୍ତ ଧ୍ୟାନ ଦେଇନଥିଲେ । କିନ୍ତୁ ଗୋଟିଏ ପୋଲିସ କନେଷ୍ଟବଲ୍ ଠାରୁ ପୁଅର ଚାଲିଚଳନ ସନ୍ଦେହଜନକ ବୋଲି ଶୁଣି, ସେ ମାତ୍ର ଦିଟା ଦିନ ମଧ୍ୟରେ କନ୍ୟାଟିଏ ଖୋଜି, ବିଭାଘର ତିଥି ପର୍ଯ୍ୟନ୍ତ ଠିକ୍ କରିଦେଇଥିଲେ ।

ନଷ୍ଟିକ୍ନା ଏଣେ ବାପଘରକୁ ଆସିଲାଦିନଠାରୁ ଭାଇର ବିଭାଘର ପାଇଁ ଆୟୋଜନରେ ଲାଗିପଡିଲା । ଘର, କାନ୍ଥ, ବାଡ ଲିପା ପୋଛା, ଚିତା ଦେବା ଏବଂ ଛୋଟବଡ ଅନେକ କାମ ଚାକରବାକରଙ୍କୁ ଲଗାଇ କରାଇଲା । ଏଣେ ନିଜ ଗାଁରେ ଦି'ଦିନ ରହିଗଲେ କଣ୍ଠାଜୋଇସଙ୍କ ମନ କୁଆଡେ ବାହାରିଯିବାକୁ ଉଦବେଗ ଖାଇ ହୁଏ । ତେଣୁ ଏଥର ମଧ୍ୟ ଗଲେ ଯେ, ଆଠଦିନପରେ ଫେରିଲେ ।

Digitized by srujanika@gmail.com

ବିଭାଘର ମାତ୍ର ଛଅଟାଦିନ ବାକି । କନ୍ଷ୍ଟେଶ ପୋଲିସ୍ ପୋଷାକରେ ଗାଁରେ ଆସି ପହଞ୍ଚିଲା । ପିଲାଟା ଭାରି ଚାଲାଖ । ବିଭାଘର ପାଇଁ ଆୟୋଜନରେ ସେ ବୁଢ଼ୀମା ଓ ଭଉଣୀ ନନ୍ଦିନୀ ସାଙ୍ଗରେ ଲାଗି ପଡ଼ିଲା । ଖାସ୍ ବନ୍ଧୁବାନ୍ଧବଙ୍କ ମଧ୍ୟରେ ନନ୍ଦିନୀର ଶାଶୁଘର ଲୋକ ବି ଥିଲେ । ବିଭାଘର ଦୁଇଦିନ ପୂର୍ବର ଦିଅଁମଙ୍ଗୁଳା ଦିନ ଚେନ୍ନିଗରାୟ୍, ଭାଇ ଅପନ୍ନାୟ୍ୟା ଏବଂ ତା ସ୍ତ୍ରୀ ସାତୁକୁ ଶଗଡ ଗାଡ଼ିରେ ଧରି ପହଞ୍ଚିଗଲା । ଗଙ୍ଗାମ୍ମା କହିପଠାଇଥିଲା, ସେ ବିଧବା ଲୋକ, ମଙ୍ଗଳକାର୍ଯ୍ୟକୁ ଆସିବା ଠିକ୍ ହେବ ନାହିଁ । ସେଦିନ ରାତିରେ ପୂଜା ବିଧି ସାରି ସମସ୍ତଙ୍କୁ ବରଯାତ୍ରୀ ହୋଇ କନ୍ୟାର ଗାଁ ହାସନ୍ ଅଭିମୁଖେ ବାହାରିବା କଥା । ହେଲେ ନନ୍ଦିନୀର ଦେହ ଜ୍ୱରରେ ତାତି ଖଇ ଫୁଟୁଛି । ସେଥିପାଇଁ ସମସ୍ତଙ୍କ ମନ ଖରାପ । ବିଚାରୀ କାମ କରିକରି ଭାରି ହାଲିଆ ମଧ୍ୟ ହୋଇପଡ଼ିଥାଏ । ସେଦିନ ଦିପହରରୁ ତାତି ଆସିଥାଏ ଏବଂ ସନ୍ଧ୍ୟା ବେଳକୁ ଘୋଡାଇହୋଇ ଶୋଇଥାଏ । ସମସ୍ତେ ଭାବିଲେ ଏବେ ଏ ଅବସ୍ଥାରେ ନନ୍ଦିନୀ ଶଗଡ ଗାଡ଼ିରେ ବାରକୋଶ ବାଟ ଯିବାଟା ଠିକ୍ ହେବନି । ତେଣୁ ସେ ଓ ବୁଢ଼ୀମା ଘରେ ରହନ୍ତୁ । ନନ୍ଦିନୀ ମଧ୍ୟ ପ୍ରଥମ ଗର୍ଭହେତୁ ଟିକିଏ ଡରିଯାଇଥିଲା ଏବଂ ସ୍ୱାମୀ ଚେନ୍ନିଗରାୟ୍କୁ ପାଖରେ ରହିବାକୁ କହି ପଠାଇଲା । ହେଲେ ତେଣେ ଚେନ୍ନିଗରାୟ୍ ଆଗରୁ ଯାଇ ଶଗଡ ଗାଡ଼ିରେ ଜାଗା ଆଗୁଳି ଶୋଇବାପାଇଁ ବ୍ୟବସ୍ଥା କରୁଥିଲା । ଖବରପାଇ ସେ ଘରକୁ ଆସି ପତ୍ନୀକୁ ପଚାରିଲା - "କଥା କଣ ?"

" ମତେ ଡର ଲାଗୁଛି, ଆମ ପାଖରେ କେହି ରହିବେ ନାହିଁ । ତୁମେ ରୁହ, ଏବଂ ଅପନ୍ନାୟ୍ୟା ଓ ତା ସ୍ତ୍ରୀ ବରଯାତ୍ରାରେ ଯାଆନ୍ତୁ ।"

ବଡ ହତାଶ ହୋଇ ଚେନ୍ନିଗା କହିଲା -" ଏତେ ବଡ ମୁସ୍କିଲ କଥା ।"

"ମୁଁ ବାପାଙ୍କୁ ଓ କନ୍ଷ୍ଟେଶ ଭାଇଙ୍କୁ ତୁମ ରହିବା ବିଷୟ କହିଦେବି ଯେ ।"

"ଆରେ, ନା, ନା, ଯଦି ଦରକାର ଅପନ୍ନାୟ୍ୟାର ସ୍ତ୍ରୀ ସାତୁକୁ ପାଖରେ ରଖ । ମୁଁ ପାରିବିନି ।"

ନନ୍ଦିନୀ ଗତବର୍ଷରେ ଶାଶୁଘର ଅଭିଜ୍ଞତାରୁ ନିଜର ସ୍ୱାମୀଙ୍କ ବ୍ୟବହାର ସାଙ୍ଗରେ ପରିଚିତ ଥିଲା । ଟିକିଏ ଭାବି କହିଲା- "ହଉ ତୁମେ ଯଦି ନଚାହୁଁଛ ତେବେ ଯାଅ ।" ଚେନ୍ନିଗରାୟ୍ ସାଙ୍ଗେ ସାଙ୍ଗେ ତିଆଁମାରି ଶଗଡ ଭିତରେ ଘୋଡା ଘୋଡି ହୋଇ ବସିଗଲା । ସାତୁ ନନ୍ଦିନୀର ଦେହର ଅବସ୍ଥା ଦେଖି ଆସି ପଚାରିଲା -"କହିବ ଯଦି ମୁଁ ତୁମ ପାଖରେ ରହିଯିବି ।"

"ନାଇଁ, ତୁ ଯା ।"

ନନ୍ଦିନୀର କଥା ନଶୁଣି ବୁଢ଼ୀମା' ପାଖକୁ ଯାଇ ସାତୁ କହିଲା- "ତୁମେ ଏକା ବୁଢ଼ୀ ମଣିଷ, ଘରେ ଗର୍ଭିଣୀ ମାଇପି ଲୋକ, ଏବଂ ଜର, ତୁମେ ପାରିବନି, ମୁଁ ରହିଯାଉଛି ।" ବୁଢ଼ୀ କହିଲା -"ତୁ ଯା, ସେଠି ମଧ୍ୟ ବିଭାବେଦୀରେ ଆମପଟୁ ଜଣେ ହେଲେ କେହି ସ୍ତ୍ରୀଲୋକ ରହିବା ଦରକାର । ତୁ କାମ ଚଳାଇ ନେବୁ । ମୁଁ ଏଠି ପିଲାଟାର ପଥି କରିବାକୁ ରହିବି । ଡରିବାର କିଛି ନାହିଁ ।" ଏକଥା ଶୁଣି ସାତୁ ମଧ୍ୟ ଶଗଡରେ ଯାଇ ବସିଲା ।

Digitized by srujanika@gmail.com

ରାତି ଠିକ୍ ଆଠଟାରେ ଚାରିଟାଯାକ ଶଗଡରେ ବରଯାତ୍ରୀ ହାସନ୍ ଅଭିମୁଖରେ ବାହାରି ପଡିଲେ । କଣ୍ଟାକୋଇସ୍ ତାଙ୍କର ପ୍ରିୟ ବୁଟ୍ କୋଟ, ଟିପା ପେଣ୍ଟ ଏବଂ ପଗଡି ବାନ୍ଧି ଘୋଡାରେ ଆଗେ ଆଗେ ଚାଲିଲେ । ବରବେଶ ସାଜି, କନ୍ନେଶ ତାର ସାଙ୍ଗ ସାଥୀ ଧରି ସବା ପଛ ଗାଡିରେ ବସିଥାଏ । ନଞ୍ଜମ୍ମା ଦୁଆରକୁ ଆସି ଚାରିଟା ଯାକ ଶଗଡ ଦିଶୁଥିଲା ପର୍ଯ୍ୟନ୍ତ ଦେଖୁଥାଏ ।

ଶୋଇଲାବେଳକୁ ବୁଢ଼ୀମା ନଞ୍ଜମ୍ମା ପାଖରେ ବସି କହିଲା - "ବୁଝିଲୁ ମା', ତୁ ଆଉ କନ୍ନୁ ମୋ ନିଜ ଛୁଆଙ୍କଠୁ ବଳିକରି । ହେଲେ ତୋ ବାପର ସ୍ୱଭାବ ବଦଳିଲା ନାହିଁ । ସେ କଣ ଜାଣିନି ତୋର ସାତମାସ ଗର୍ଭ କଥା । ଏ ସମୟରେ ପୁଅର ବିଭାଘର ଠିକ୍ କରିନଥିଲେ କଣବା ହୋଇଯାଇଥାନ୍ତା ? ତୋର ଜନ୍ମପରେ, ତୋ ମା' ମଲାଦିନଠୁ ମୁଁ ଏକୁଟିଆ । କନ୍ନୁକୁ ସେତେବେଳେ ସାତବର୍ଷ । ତୋ ବାପତ ଦିନେ ଘରେ ରହିଲେ ସାତଦିନ ବାହାରେ । ତୋରି ସାଙ୍ଗରେ ତୋ ବାହାଘର ପର୍ଯ୍ୟନ୍ତ ଦିନକାଟି ଆସିଥିଲି । ତୁ ଶାଶୁଘର ଗଲାଦିନଠୁ ମୋର ମନ କେଉଁଥିରେ ଲାଗୁନି । ତୋରି କୋଳରୁ ପିଲା ଜନ୍ମ କରିବାକୁ, ଏବୁଡି ଲଗାଇବା ପାଇଁ ମୋର ବଡ ଇଚ୍ଛା ଥିଲା । ଭଗବାନ୍ ମୋର ଡାକ ଶୁଣିଛନ୍ତି । ଝିଅ ଜନମ ତ ପର ଘରକୁ । ଶାଶୁଘରକୁ ଗଲାଠୁଁ ସେମାନେ ପର ।"

"ତୁ ମୋଟେ ଚିନ୍ତା କରନା ବୁଢ଼ୀମା, ଏବେ ଘରକୁ ନୂଆ ବୋହୂ ଆସିବ । ତୋର ଆଉ କିଛି କଷ୍ଟ ରହିବନି ।"

"ନାଇଁ ଲୋ ମା, ସେ ଭାଗ୍ୟ କଣ ମୋର ଅଛି ? କନ୍ନେଶ ତା ସ୍ତ୍ରୀକୁ ଧରି ଯେଉଁଠି ଚାକିରୀ କରିଛି ସେଠି ରହିବନା ! ତାଛଡା ବୋହୂତ ପୁଣି ସହରୀ ଝିଅ । ସେଠି ବିଭାଘର ଠିକକଲାବେଳେ ତୋ ବାପ ମତେ ଟିକିଏ ପଚାରିଥାନ୍ତା ହେଲେ, ତା ମନକୁ ଯାହା ଆସିବ ସେୟା କରିବ । ଏପରି ଗୋଟିଏ ରାକ୍ଷସକୁ ମୁଁ ତ ଜନମ କରିଛି, କାହାକୁ କହିବି ?"

ନଞ୍ଜମ୍ମା ବାପାଙ୍କ କଥା ଭାବୁ ଭାବୁ ବୁଢ଼ୀମା ପଚାରିଲା - "ତୋ ଶାଶୁ ତୋର ଭଲମନ୍ଦ ବୁଝେ କି ?"

"ହଁ ଖୁବ୍ ବୁଝନ୍ତି । ବେଶିଗୁଡେ ଆଶା କରିବା ମଧ୍ୟ ଭଲ ନୁହେଁ, ବୁଢ଼ୀମା - ନାଁ କଣ ?" ଟିକିଏ ରହି ବୁଢ଼ୀ ପଚାରିଲା - "ଝିଅ, ତୁ ରାମାୟଣର ସୀତାବନବାସ ଆଉ ଲବକୁଶ କଥା ମନେ ରଖିଛୁ ଟି ?"

"ଶାଶୁଘର ଗଲାଠୁ ଆଉ ସେ ଗୀତ ଗାଇବାର ସୁବିଧା କାହିଁ ? ଦିନେ ସକାଳୁ ମାଣ୍ଡିଆ ଚୁନା କୁଟୁକୁଟୁ ଗୁଣୁଗୁଣୁ ହୋଇ ଗାଉଥିଲି ଯେ, ଶମଗ୍ରେ ପାଟିକରି ଉଠିଲେ ଯେ ତାଙ୍କ ଦିନ ଭାଙ୍ଗି ଯାଉଛି । ତେଣୁ ଚୁପ୍ ରହିବାକୁ ପଡିଲା ।"

"କାଲିଠୁ ତୁ ଆମର ସବୁଦିନ ମୋ ଆଗରେ ଗାଇବୁ ଲୋ ମା । ମୋର କେତେଦିନ ହେଲା ଶୁଣିବାକୁ ଇଚ୍ଛା ହେଲାଣି ।" ପୁଣି କଣ ମନେ ପଡିଲାରୁ ବୁଢ଼ୀ କହିଲା - "ନା, ନା ଥାଉ, ତୋର ଗର୍ଭ ସମୟରେ ଏସବୁ ଦୁଃଖ ଗୀତ ଗାଇବା, ଶୁଣିବା କଥା ନୁହେଁ । ହେଲେ ତୁ ଶାଶୁଘରକୁ ଗଲାଦିନଠୁ ଏ

Digitized by srujanika@gmail.com

ଗାଁରେ ଗୀତ ବୋଲିବାକୁ ଆଉ କେହି ଝିଅପିଲା ନାହାନ୍ତି । ଜାହାଘରେ ଓଷା ଉପବାସ ହେଲେ, ଗୀତ ଗାଇବାକୁ କେହି ନାହିଁ । ତୋର ଗୀତ ବହିଟିକ ମଧ୍ୟ ଏଠି ତୁ ଛାଡିଯାଇଥିଲୁ । ଦିନେ ତୋ ବାପା ତାକୁ ଦେଖି, କେଉଁଠି ଯତ୍ନରେ ରଖିଦେଇଛି ।''

## 2

ଜନ୍ମେଶର ବାହାଘର ଦିନ ନାଗଲାପୁର ଗାଁର କେଉଟ ସାହିରେ ମୂଷାମାନେ ମରିପଡିଥିବା ଦେଖାଗଲା । ସାଙ୍ଗେ ସାଙ୍ଗେ କୋକୁଆ ଭୟ ବ୍ୟାପିଗଲା ଯେ ପ୍ଲେଗ ମହାମାରୀ ମାଡିଆସିଲା । ଲୋକସବୁ ଡରି ଗାଁଘର ଛାଡି ବିଲମଝିରେ କୁଡିଆଘର କରି ରହିଲେ । ଏମିତି ଦୁଇ ତିନିମାସ ରହିଲାପରେ ଯାଇ ପ୍ଲେଗ ମହାମାରୀର ପ୍ରାଦୁର୍ଭାବ କଟିଥାଏ ଏବଂ ଲୋକ ନିଜ ନିଜ ଘରକୁ ଫେରି ଆସନ୍ତି ।

ତାପର ଦିନ କାଳିସୀ ବେଶ ହୋଇ ଜଣେ ଲୋକ ହାତରେ ଚାବୁକ ଧରି ନିଜ ଦେହକୁ ମାରି ମାରି ସାହି ସାହି ବୁଲିଲା । ତା ଦେହ ଯାକ ସିନ୍ଦୁର ହଳଦୀ ବୋଳା ହୋଇଥିଲା । ତା ଦେହରେ କୁଆଡେ ଦେବୀ ଉଭା ହୋଇଥିଲେ । ସେ ଲୋକର ପଛେ ପଛେ ତା ସ୍ତ୍ରୀ ପାଟିକରୁଥାଏ, ''ଆହେ ଗାଁ ଲୋକେ ଆଖପାଖ ଚଉଷଠୀ ଗାଁ ମଉଳାରେ ଦେବୀ ମହାମାରୀ ଉଭା ହୋଇଛନ୍ତି । ମା କୋଳରୁ ପୁଅକୁ, ପୁଅ ପାଖରୁ ମାକୁ ଛଡେଇ ଖାଇ ଯାଉଛନ୍ତି । ଅଳିଆତୀ ଯୁବତୀ ମାନଙ୍କୁ ଜୀବନରେ ମାରିଦେଉଛନ୍ତି । ଗର୍ଭବତୀମାନଙ୍କର ମଧ୍ୟ ପ୍ରାଣ ନେଇଯାଉଛନ୍ତି ।'' ମଝିରେ ମଝିରେ ସେଇ ବିଚିତ୍ର ବର୍ଣ୍ଣ ପୁରୁଷଟି ତାର ନିଜ ଦେହ ଉପରେ ଚାବୁକଟି ପିଟୁଥାଏ । ଏମିତି କାଳିସୀ ବୁଲିବା କିଛି ନୂଆ ନୁହେଁ । କିନ୍ତୁ ଗର୍ଭବତୀମାନଙ୍କର ପ୍ରାଣହାନୀ କଥାଶୁଣି ବୁଢୀ ଅନ୍ନପୂର୍ଣ୍ଣାର ଛାତିରେ ଛନକା ପଶିଲା । ତରତର ହୋଇ ଉଠି ସିନ୍ଦୁର, ହଳଦୀ, ଚାଉଳ, ଡାଲି, ନଡିଆଟେ ଏବଂ ଦକ୍ଷିଣା ପାଇଁ ତିନିପଇସା ଥାଳିରେ ଧରି କାଳିସୀ ଆଗରେ ରଖିଲା । ପୂଜାସାରି ପ୍ରସାଦ କୁଙ୍କୁମ ନେଇ ନଣ୍ଡିହାକୁ ଦେଲା ।

ତା' ଆରଦିନ ଆହୁରି ଅଧିକ ମୂଷାମାନେ ମରିବାର ଦେଖାଗଲା । କେଉଟ ସାହି ଡେଇଁ ନଣ୍ଡିହା ଘର । ସାଇଆଡେ ମଧ୍ୟ ରୋଗ ମାଡିଆସିବାର ଜଣାପଡିଲା । ସମସ୍ତେ ଘର ଛାଡି ଗହିର ମଝିରେ କୁଡିଆ କରି ରହିବା ପାଇଁ ଚାଲିଯାଉଥାନ୍ତି । ଗାଁର ସର୍ବରାକାର ଶ୍ୟାମସୁନ୍ଦର ସନ୍ଧ୍ୟାବେଳେ ଘର ଘର ବୁଲି କହିଲେ ଯେ ଆସନ୍ତା ସୋମବାର ସୁଦ୍ଧା ଗାଁର ସମସ୍ତେ ଘର ଛାଡି ଚାଲିବାକୁ ହେବ । ତାପର ଦିନ ସକାଳଠାରୁ ପ୍ରାୟ ଅଧିକାଂଶ ଲୋକ କୁଡିଆମାନ ତିଆରି କରି ପଳାଇଲେ । ଏଣେ କଣ୍ଟାଝୋଇସ ପୁଅର ବିବାହ କାର୍ଯ୍ୟ ଶେଷକରି ଗାଁକୁ ଫେରିଲାବେଳକୁ ଗାଁ ପ୍ରାୟ ଖାଲି । ବାହାଘର ଦୌଡଧାପଡ

Digitized by srujanika@gmail.com

ପରେ ଶାନ୍ତିରେ ନିଶ୍ୱାସ ମାରିବାକୁ ଭାବିଥିଲେ । କିନ୍ତୁ ପୁଣି ଜିନିଷପତ୍ର ବୁହାବୁହି କାମ ପଡ଼ିଲା । ହେଲେ ଘର ଛାଡ଼ି ଯିବା ପାଇଁ ଶୁଭମୁହୂର୍ତ୍ତ ନିର୍ଣ୍ଣୟ କରିବା ଦରକାର । ଏଥିପାଇଁ ପାଖଗାଁର ଭଟମହାଶୟଙ୍କୁ ପଚାରିବାର ଥିଲା ବୋଲି କଣ୍ଟୀରୋଇସ ଭାବିଲେ । କିନ୍ତୁ ଶ୍ୟାମନ୍ନା କାହାକୁ ନପଚାରି ନିଷ୍ପତ୍ତି କରିସାରିଥିଲେ । କଣ୍ଟୀରୋଇସ ଫେରିବା ପର୍ଯ୍ୟନ୍ତ ମଧ୍ୟ ଅପେକ୍ଷା କଲେ ନାହିଁ । ଏ ଦୁଇଜଣଙ୍କ ଭିତରେ ଶତ୍ରୁତା ଥିଲା । କଣ୍ଟୀରୋଇସ ଭାବିଲେ ଶ୍ୟାମନ୍ନାର ଏ ନିଷ୍ପତ୍ତିର ବିରୋଧ କରାଯିବା ଉଚିତ୍ । ଗାଁକୁ ଫେରିଲା ପରଦିନ ଚେନ୍ନିଗରାୟ୍, ଅପନ୍ନୟ୍ୟା ଏବଂ ତା ସ୍ତ୍ରୀ ସାତୁ, ଏ ତିନିଜଣଙ୍କୁ ଶଗଡରେ ବସାଇ ତାଙ୍କ ଗାଁକୁ ପଠାଇ ଦିଆଗଲା । ବର୍ତ୍ତମାନ କଣ୍ଟୀରୋଇସଙ୍କ ଭାବନା ହେଲା ଶ୍ୟାମନ୍ନା ଗାଁ ଘର ଛାଡିଯିବାକୁ ଲୋକମାନଙ୍କୁ ଯାହା କହିଛି ତାର ବିରୋଧ କିପରି କରାଯିବ । ହେଲେ ପ୍ରାୟ ଅଧିକାଂଶ ଲୋକତ ଘରଛାଡ଼ି ଯାଇସାରିଥିଲେ । କଣ୍ଟୀରୋଇସ ସମସ୍ତଙ୍କୁ ଯାଇ ବୁଲି ବୁଲି କହିଲେ - "ମୁଁ ଶାସ୍ତ୍ର ଦେଖିଛି ଆମ ଗାଁରେ କିଛି ହେବ ନାହିଁ । ତୁମେମାନେ ସମସ୍ତେ ଘରକୁ ଫେରିଆସ ।" ଲୋକମାନେ କିନ୍ତୁ କେହି ଶୁଣିଲେ ନାହିଁ । କିଏ ଜଣେ କହିଲା- "ତୁମେ ଯଦି ଭାବୁଛ କିଛି ହେବ ନାହିଁ ତାହାହେଲେ ତୁମେ ରହ ।" କଣ୍ଟୀରୋଇସ ରାଗିକରି କହିଲେ -"ହଁ, ହଁ ମୁଁ ରହିବି । ଦେଖିବ, ମୋର କଣ ହୋଇଯିବ ।" ନିଜର ଜିଦ୍ ରଖିବାପାଇଁ କଣ୍ଟୀରୋଇସ ଏକୁଟିଆ ଖାଲି ଗାଁଟାରେ ରହିଲେ ।

ଏଣେ ତାଙ୍କ 'ମା', ଅକ୍କାମ୍ମା ଭାରି ରାଗି କହିଲେ - "ନାତୁଣୀ ପ୍ରଥମ ଗର୍ଭପାଇଁ ଘରକୁ ଆସିଛି, କିନ୍ତୁ ତାର କଣ ସିଆଡେ ଧ୍ୟାନ ଅଛି ? ଏ ସମୟରେ କଣ ଏପରି ଜିଦ୍ କରାଯାଏ । ହେଲେ ତୁ କଣ ବୁଝିବା ଲୋକ, ଯେତେ ନିନ୍ଦା ପାଇଲେ ପାଇବି ପଛେ ଝିଅକୁ ତା ଶାଶୁଘର ଗାଁରେ ଛାଡି ଦେଇ ଆସିବି । ପିଲାଜନ୍ମ ହେଲାବେଳକୁ ସେଠିକି ଯାଇ ସବୁ ବୁଝାଶୁଝା କରିବି ।"

"ମୁଁ ଥରେ କହିଛି ମାନେ, ମୁଁ ସେଇ ଗାଁ ଘରେ ହିଁ ରହିବି । ନହେଲେ ମୋ ଇଜତ୍ ରହିବ ନାହିଁ ।"

ବହୁତ ତର୍କ ବିତର୍କ ଚାଲିଲା । ହେଲେ କଣ୍ଟୀରୋଇସ ନିଜର ସମ୍ମାନ ରକ୍ଷା କରିବା ପାଇଁ କରିଥିବା ଜିଦ୍ ଅନୁସାରେ ଗାଁ ଘରେ ରହିବା ନିଷ୍ପତ୍ତିରେ ଅଟଳ ରହିଲେ । ଅକ୍କାମ୍ମା ନାତୁଣୀକୁ ଧରି ବିଳମଝିରେ କୁଡିଆଟିଏ କରି ରହିଲା, ଘରଛାଡି ଗଲାବେଳେ ବୁଢୀ ପୁଅକୁ କହିଲା -"ଆରେ - ତୁ, ତ ସାକ୍ଷାତ୍ ଯମ । ଏ ଶୁନଶାନ ଗାଁଟାରେ ଏକୁଟିଆ ରହିବାକୁ ଭଲ ଲାଗୁଛି ?"

"ତୁମେ ସବୁ ଯାଅ । ମୁଁ ମରଦପିଲା, ପ୍ଲେଗ ମହାମାରୀରେ ମୋର କିଛି ହେବ ନାହିଁ ।"

ସିଆଡେ ଗାଁ ପଞ୍ଚାୟତ ସ୍ଥିରକଲେ ଯେ କଣ୍ଟୀରୋଇସ ଗାଁ ଭିତରେ ରହୁଥିବାରୁ ଗାଁ ବାହାରକୁ ଆସି ତାଙ୍କ ମା ଓ ଗର୍ଭବତୀ ଝିଅ ସାଙ୍ଗରେ ମିଳାମିଶା କରିପାରିବେ ନାହିଁ । କାରଣ ଏହାଦ୍ୱାରା ମହାମାରୀ ଡେଇଁ ପାରେ । ନଞ୍ଜାମ୍ମାର ପ୍ରସବ ପାଇଁ ସାରା ଜିମା ବୁଢ଼ୀମା ଉପରେ ପଡିଲା ।

Digitized by srujanika@gmail.com

ଶୁନ୍‌ଶାନ୍ ଗାଁଟା ଭିତରେ କଣ୍ଠୀକୋଇଲ୍ ହାତରେ ରାନ୍ଧି ଖୁଆପିଆ କରନ୍ତି । ଘର ଅଗଣା ଓଳାଇ ସଫା ରଖିଥାନ୍ତି ଏବଂ ଦିନଯାକ ବ୍ୟାଘ୍ରଚର୍ମ ଉପରେ ବସି ଜ୍ୟୋତିଷ ଶାସ୍ତ୍ର ଅଧ୍ୟୟନ କରୁଥାନ୍ତି ଏବଂ ବିଭିନ୍ନ ମନ୍ତ୍ର ତନ୍ତ୍ର ଆଦିର ଶକ୍ତି ସମ୍ବନ୍ଧରେ ଗଭୀରଭାବରେ ଧ୍ୟାନ କରୁଥାନ୍ତି । ବେଳେବେଳେ ଉଚ୍ଚାଟ ସ୍ୱରରେ ଉଚ୍ଚାରଣ କରି ବଗିଚା ଭିତରେ ବୁଲୁଥାନ୍ତି । ଯେତେବେଳେ ବହୁତ ବ୍ୟସ୍ତ ଲାଗେ ଘୋଡାରେ ବସି ପାଖ ସହରଆଡେ ଚାଲିଯାଆନ୍ତି ।

ଏତେଗୁଡାଏ ଦିନ ଏକାଠି ସେ କେବେହେଲେ ଗାଁରେ ରହୁନଥିଲେ । ଦରକାର ବି ପଡୁନଥିଲା । କିନ୍ତୁ ଏଥର ଜିଦ୍ ରଖିଛନ୍ତି । ତାଙ୍କର ରାଗ ହେଲା ଶ୍ୟାମନ୍ଧା ଉପରେ ଏବଂ ଅନ୍ୟ ଡରୁଆ ଗାଁ ଲୋକଙ୍କ ଉପରେ କାରଣ ସେ ପିଲାଦିନୁ ଅନ୍ଧାର, ଚୋର, ଡାକୁ, ଗୁଣ୍ଡା, ସାପ, ବାଘ ଇତ୍ୟାଦିକୁ ଡରିବା କାରଣ ଜାଣିନଥିଲେ । ଏ ଭିତରେ ଦିନେ ଗାଁକୁ ଜଣେ ଲୋକ ଆସିଲା । ପ୍ରାୟ ପଚାଶ ପାଖାପାଖି ବୟସ ହେବ । ଲଣ୍ଡା ମୁଣ୍ଡ । ପଛପଟେ ଚୁଟି । ଧୋତି କୁରୁତା ଉପରେ ଗୋଟିଏ ମଇଳା କଳା କୋଟ୍ । ଛାମୁଦାନ୍ତ ପଡ଼ିଯାଇଥାଏ । ଏବଂ ପାଟିରେ ଚୂନ ଗୁଣ୍ଡି, ଡାହାଣ ହାତ ମଝି ଆଙ୍ଗୁଠିରେ ଗୁଣିଆ ମୁଦି । ଆଗନ୍ତୁକ ବ୍ୟକ୍ତିକୁ କଣ୍ଠୀକୋଇଲ୍ ଚିହ୍ନିପାରିଲେ ନାହିଁ । କିଛି ସମୟ ଭାବି କହିଲେ - "ଆରେ ବିରାଚାରୀ ଏ ଗାଁ ଭିତରକୁ କାହିଁକି ଆସିଛୁ ?"

"ଆପଣଙ୍କ ଦର୍ଶନ ପାଇଁ ପଳାଇ ଆସିଛି । ଆନେକ ଥର ଆସି ଦର୍ଶନ ନ ପାଇ ଫେରି ଯାଇଥିଲି ।"

"ହଉ ଭିତରକୁ ଆସ ।"

ବିରାଚାରୀ ଭିତରକୁ ଆସି ବସିଲା । କିଛି ସମୟପରେ ପଚାରିଲା, "ଆପଣ ଭୂତପ୍ରେତ ଝାଡନ୍ତି ଶୁଣିଛି । ମୋ ମନ ଭିତରେ ଗୋଟିଏ ସନ୍ଦେହ ହେଲା ବୋଲି ପଚାରିଆସିଛି । ପ୍ରାୟ ବର୍ଷେ ତଳେ ଟୋକେଶ୍ୱର ମନ୍ଦିର ପାଖରେ ଗୋଟିଏ ଗୁଣି କରାଇଥିଲି । ଅମାବାସ୍ୟା ରାତିରେ କାଳିମାତାଙ୍କ ମୂର୍ତ୍ତି ରଖି ପୂଜା କରିଥିଲି । କିନ୍ତୁ କିଏ ଜଣେ ଆସି ଦକ୍ଷିଣା ଟଙ୍କାତକ ନେଇ ପୂଜା ଫଳତକ ଖାଇ ମୂର୍ତ୍ତିଟିକୁ ଭାଙ୍ଗି ଦେଇଥିଲା । ଭାବିଲି ଆପଣଙ୍କୁ ଏ ବିଷୟରେ ପଚାରିବି ।"

"ଯିଏ ଗୁଣିଗାରିଡି କରି ଜାଣନ୍ତି ସିଏ ଶାସ୍ତ୍ର କଥା କଣ ଜାଣନ୍ତି ନାହିଁ କି ? ମତେ କଣ ପଚାରୁଛ ? ତୁମେ ତ ଜଣେ ବଡ ମନ୍ତ୍ର ବିଦ୍ୟା ପାରଙ୍ଗମ ଲୋକ ।"

"ଆଜ୍ଞା ଏହା ବୁଝିବାପାଇଁ ଶାସ୍ତ୍ର କିଛି ଦରକାର ନାହିଁ । ସେଦିନ ରାତିରେ ଖଣ୍ଡିତ ମୂର୍ତ୍ତିକୁ ଦେଖି ମୁଁ ବୁଝିଯାଇଥିଲି ଯେ ଏପରି ସାହସ କିଏ କରିପାରେ ? ଆପଣଙ୍କ ଛଡା ଏ ଅଞ୍ଚଳରେ କାହା ଛାତିରେ ଦମ୍ଭ ଅଛି ଯେ ଏପରି କରିବ ? ଆପଣ ସତକରି କୁହନ୍ତୁ ?"

Digitized by srujanika@gmail.com

"ତୁମେ ତ ଖୁବ୍ ବୁଦ୍ଧିଆ ଦେଖୁଛି ବିରାଚାରୀ । ଏବେ କଣ ସେହି ଟଙ୍କା ମାଗିବାକୁ ଆସିଛ କି ?"

"ନାଁଇ ଆଜ୍ଞା ଟଙ୍କାକୁ କିଏ ପଚାରେ । ହେଲେ ଆପଣଙ୍କର ଆଗରେ ହାତ ଯୋଡୁଛି, ମୋ ଗୁଣିଆ କାର୍ଯ୍ୟରେ ଆପଣ ବାଧା ଦିଅନ୍ତୁ ନାହିଁ ।"

"ଆଚ୍ଛା, ଆଚ୍ଛା, ଠିକ୍ ଅଛି । ମୁଁ ତୁମପାଇଁ ଚାଉଳଗଣ୍ଡେ ବସେଇ ଦେଉଛି ଏକାଠି ଖାଇବା ।"

ବିରାଚାରୀ ଭୋଜନ ସାରି ସନ୍ଧ୍ୟାବେଳକୁ ଚାଲିଗଲା । ରାତିରେ କଣ୍ଟାକ୍ଟୋଇସଙ୍କ ମନରେ ଝିଅ ବିଷୟରେ ନାନା ପ୍ରକାର ଭାବନା ଆସିଲା, " ପ୍ରସବ ଦିନ ବୋଧେ ପାଖେଇ ଆସିବଣି । ମୁଁ ତ ଦେଖିବାକୁ ଯାଇପାରୁ ନାହିଁ । ସେଇ ଶ୍ୟାମନ୍ନା ପଞ୍ଚାୟତ ନିଷ୍ପତ୍ତିରେ ମୋର ଯିବା ବନ୍ଦ କରି ଦେଇଛି । ତା ବୋଲି କଣ ଡରିକରି ଯିବି ନାହିଁ ? କାଲି ନିଶ୍ଚୟ ଯାଇ ଦେଖି ଆସିବି । ଦେଖିବି ପଞ୍ଚାୟତ ମୋର କଣ ବିଗାଡି ପକାଇବ ? ଶ୍ୟାମନ୍ନାର କୁଡିଆ ଆମ କୁଡିଆ ପାଖରେ । ସେଇ ବାଟେ ଛାତି ଫୁଲାଇ ଯିବି । ଯଦି କିଛି କହିବ ତାହାହେଲେ ତାର ଚମଡା ଉତାରି ଦେବି । ଏପର୍ଯ୍ୟନ୍ତ ନଯାଇ ମୁଁ ଭାରି ଭୁଲକରିଛି । ଶ୍ୟାମନ୍ନା ମନେ ମନେ ଭାବୁଥିବ ଯେ ମୁଁ ତା କଥାରେ ଡରିକରି ଯାଉନି । ଏକଥା ସମସ୍ତଙ୍କୁ କହି ନିଶରେ ହାତ ପକାଉଥିବ । ଶଳାର ନିଶ ଉପାଡି ଦେବା କଥା ।" ଏମିତି କେତେ କଣ ଭାବି କଡ ଲେଉଟାଉ ଲେଉଟାଉ ଘରର ଚାଳ ଉପରେ କଣ ଗୋଟାଏ ପଡିବାର ଶବ୍ଦ ହେଲା । କିଛି ସମୟପରେ ପୁଣି ଢେଲା ପଡିବାର ଶବ୍ଦ ହେଲା । ସେ ଭାବିଲେ, ଗୁଣିଆ ବିରାଚାରୀର କାମ ନୁହେଁ ତ ଆଉ ? ଏ ଭିତରେ କୋଡିଏ ତିରିଶି ଖଣ୍ଡ ଢେଲା ପଡିସାରିଥିଲା । "ନାଁ ବିରାଚାରୀର କାମ ନୁହେଁ । ଆମରି ଗାଁ ଲୋକେ ହୋଇଥିବେ । ମତେ ଡରାଇବା ପାଇଁ ଏହା କରୁଛନ୍ତି । ହଉ ଏ ହାରାମଜାଦାଙ୍କୁ ଦେଖି ନେବି ।" ଧୀରେ ଧୀରେ ଉଠି ନିଃଶବ୍ଦରେ ବାଡିପଟ ଦ୍ୱାର ଖୋଲି ବଗିଚା ଭିତରେ ଯାଇ ପହଞ୍ଚିଲେ । ଚୁପଚାପ ପାଚେରୀ ଡେଇଁ ପଡିଶାଘର ପଛପଟେ ଯାଇ ଗଳି ବାଟ ଦେଇ ବାଣ୍ଡକୁ ବାହାରିଲେ । ଏବଂ ହଠାତ୍ ପାଟି କରି ଉଠିଲେ - "କିଏ ବେ ହାରାମଜାଦା, ଆଜି ତୋତେ ପ୍ରାଣରୁ ମାରି ଦେବି ।" ତାଙ୍କର ବିକଟାଳ ଚିତ୍କାର ଶୁଣି ଅନ୍ଧାରରେ ଠିଆ ହୋଇଥିବା ଚାରିପାଞ୍ଚଜଣ ଲୋକ ଡରି ଛିନ୍ନଛତ୍ର ହୋଇ ଧାଇଁବାରେ ଲାଗିଲେ । ତାଙ୍କ ଭିତରୁ ଜଣକୁ ଦଉଡି କଣ୍ଟାକ୍ଟୋଇସ ଧରି ପକାଇଲେ । ଯିଏ ଧରାପଡିଲା ତା ନାଁ ଜଗୁଆ । ସେ ଶ୍ୟାମନ୍ନାର କ୍ଷେତ ଜଗୁଆଳି । ତାର ଦେହଟା ଖାଲି ବରଡାପତ୍ର ପରି ଥରୁଥାଏ । କଣ୍ଟାକ୍ଟୋଇସଙ୍କୁ ସେ କୌଣସି ପିଶାଚ ଭାବି ଡରିଯାଇଥାଏ । ଥର ଥର ଗଳାରେ କହିଲା - "ମ - ତେ - ଛା - ଡି - ଦି - ଅ ।"

ଦୁଇହାତ ଯୋଡି ମୁଣ୍ଡିଆ ମାରିବାକୁ ଲାଗିଲା ।

"କିଏ ରେ ତୁ ? ତୋ ନାଁ କଣ ? ତତେ ଶ୍ୟାମନ୍ନା ପଠେଇଛିନା । ଏ କାମ କରିବାକୁ ?"

"ହଁ ।"

"କେଉଁ ସାହସରେ ଏଠିକି ତୁ ଆସିଛୁ ?"

"ଆମକୁ କହିଥିଲା ଯେ ଆପଣ ଗାଁରେ ନାହାନ୍ତି ।"

"ଗାଁରେ ନଥିଲେ ମଧ୍ୟ ମୋ ଘରକୁ ପଥର ଫିଙ୍ଗିବାକୁ ତୁ କିଏ ସେ ?

Digitized by srujanika@gmail.com

"ମତେ ଧମକାଇଥିଲା ଯେ ମୁଁ ପଥର ନ ଫିଙ୍ଗିଲେ ମତେ ଭାଗଚାଷ ପାଇଁ ବିଲ ଦେବ ନାହିଁ ।"

ତାପରେ ଧମକାଇ ସବୁକଥା ଆଦାୟ କରି କଣ୍ଟାଜୋଇସ ବୁଝିଲେ ଯେ କେତେ ଜଣ ଏବଂ କିଏ କିଏ ଆସିଥିଲେ । କଣ୍ଟାଜୋଇସ ହଠାତ୍ ଭାବିଲେ ଯେ ଶ୍ୟାମନ୍ନା ରହିଥିବା କୁଡିଆରେ ନିଆଁ ଲଗାଇଦେବେ । କିନ୍ତୁ ତାଙ୍କ କୁଡିଆ ମଧ୍ୟ ପାଖରେ ଥିବାରୁ ଜାଳେ ସେଥିରେ ମଧ୍ୟ ନିଆଁ ଲାଗିଯିବ ଭାବି ଏ ଭାବନା ଛାଡିଦେଲେ । ପୁଣି ଭାବିଲେ ଶ୍ୟାମନ୍ନାକୁ ସମସ୍ତଙ୍କ ସାମନାରେ ଦିନ ଦ୍ୱିପହରରେ ବେଇଜତ୍ କରିବି । ରାତିରେ ଯଦି କିଛି ପ୍ରତିଶୋଧ ନେବେ ତାହାହେଲେ ଶ୍ୟାମନ୍ନା ସାଙ୍ଗରେ ସମାନ ହୋଇଯିବେ ନାହିଁକି ? ଜଗୁଆ ସେମିତି ହାତ ଯୋଡି ଠିଆ ହୋଇଥାଏ । ତାକୁ ପଚାରିଲେ- "ଆମ କୁଡିଆ ଆଡେ ଯାଇଥିଲୁ କି ? ମୋ ମା ଓ ଝିଅ କିପରି ଅଛନ୍ତି ?"

"ସେଇବାଟେ ଯାଇଥିଲି, କିନ୍ତୁ ଭିତରକୁ ଯାଇନି । ଆଜି କିନ୍ତୁ ଶୁଣିଛି ଯେ ଆଜି ଦ୍ୱିପହରରେ ନଞ୍ଜମ୍ମାଙ୍କର ଗୋଟିଏ ଝିଅ ଜନ୍ମ ହୋଇଛି ଏବଂ ମା'ଝିଅ ଦୁଇଜଣଯାକ ଭଲ ଅଛନ୍ତି ।"

ଏହା ଶୁଣି କଣ୍ଟାଜୋଇସ ବଡ ସନ୍ତୁଷ୍ଟ ହେଲେ । କାଲି ସକାଳୁ ଯାଇ ନିଶ୍ଚୟ ଦେଖି ଆସିବେ ବୋଲି ଠିକ୍ କଲେ । ତା ଛଡା ଶ୍ୟାମନ୍ନା ସାଙ୍ଗରେ ମଧ୍ୟ ପଚରା ଉଚରା କରିବା ପାଇଁ ଅଛି । ଜଗୁଆକୁ କହିଲେ "ତୁ ଯା ।" ସିଏ କହିଲା - "ଆଜ୍ଞା ଭାରି ଡର ଲାଗୁଛି, ମତେ ଟିକିଏ ସାଙ୍ଗରେ ନେଇ ଛାଡି ଆସନ୍ତୁ ।"

"କିରେ ଶଳା ଯେତେବେଳେ ଆସିଥିଲୁ ସେତେବେଳ ଡର ଲାଗୁନଥିଲା । ଚୁପଚାପ୍ ଯାଉଛୁ ନା, ପିଠିରେ ମାଡ ଛପର କରିଦେବି ?"

"ଆଜ୍ଞା ଯାଉଛି, ଯାଉଛି" କହି ଦଉଡ଼ି ଦଉଡି ପଳାଇଲା । କିନ୍ତୁ ସେ ଗଳିଟା ପାର ହୋଇସାରି ପୁରା ଗାଁଟା ଡେଇଁ ଯିବାକୁ ପ୍ରାୟ ଦୁଇ ତିନିଶହ ପାହୁଣ୍ଡର ରାସ୍ତା । ବହୁତ ଦମ୍ଭରେ ସିନା ଜଗୁଆ ଗଳିଟା ପାର ହୋଇଗଲା, କିନ୍ତୁ ଅନ୍ଧାର ରାତି ଏବଂ ମହାମାରୀ ମାତାଙ୍କ ଡରରେ ହାଉଳି ଖାଇ "ମରିଗଲିଲୋ ମା" ଚିତ୍କାର କରି କରି ଦଉଡି ଯିବାର ଶୁଣାଯାଉଥାଏ ।

ବାଡିପଟ ପାଚେରୀ ଡେଇଁ ପୁଣି ଜୋଇସ ଘର ଭିତରକୁ ଆସିଲେ, ଖଟରେ ପଡି ପଡି ନିଦ ଆସୁନଥାଏ । କାଲି ସକାଳୁ ଶ୍ୟାମନ୍ନାକୁ କିପରି ପାନେ ଚଖାଇବେ ସେଇ ଚିନ୍ତା ମୁଣ୍ଡରେ ଘେର କାଟୁଥାଏ । ତାଙ୍କ ଦୁଇ ପରିବାର ଭିତରେ ବହୁତ ଦିନରୁ ଶତ୍ରୁତା ଚାଲିଆସୁଛି । ଶ୍ୟାମନ୍ନାର ବାପା ନିଜକୁ ରାଜ ପ୍ରତିନିଧି ବୋଲି କହି ସମସ୍ତଙ୍କୁ ହେୟ ଜ୍ଞାନ କରୁଥିଲେ ଏବଂ ତାଙ୍କ ପୁଅ ମଧ୍ୟ ସେୟା କରୁଛି । "ହେଲେ ଆମେ କେଉଁଥିରେ କମ୍ କି ?" କେଉଁକାଳେ ସିନା ସିଏ ଲୋକଙ୍କୁ ଡରାଇ ଧମକାଇ ରଖୁଥିଲା, ଏ ଯୁଗେ ସେ କଥା ଚଳିବ ନାହିଁ । କଣ୍ଟାଜୋଇସକୁ କଣ ବୋଲି ଭାବିଛି କି ? ମୋ ନାଁର ଅର୍ଥ ହେଉଛି ସିଂହ । ସିଂହ ଲାଙ୍ଗୁଡରେ ହାତ ଦେବାର ଅର୍ଥ କ'ଣ ? ତାକୁ କାଲି ବତାଇବି ଏମିତି କେତେ କଣ ଭାବନାରେ ତାଙ୍କୁ କେତେବେଳେ ନିଦ ଆସିଯାଇଥିଲା ।

Digitized by srujanika@gmail.com

ସକାଳୁ ଉଠୁ ଉଠୁ ଦିନ ଦଶଟା ବାଜିସାରିଥିଲା । ଗତ ରାତିର ପ୍ରତିଶୋଧ ଭାବନା ନେଇ ଉଠିଲେ । ଦାଣ୍ଡ ଆଡକୁ ଯାଇ ଦେଖନ୍ତିତ ଗୋଟିଏ ପୋଲିସ କନେଷ୍ଟବଲ ଠିଆହୋଇଛି । ତାଙ୍କୁ ଦେଖି ସେ କହିଲା - "ଆପଣଙ୍କ ପୁଅ କଳେଶକୁ ପ୍ଲେଗ ରୋଗ ହୋଇଛି । ଆପଣ ଶୀଘ୍ର ଚାଲନ୍ତୁ ।"

ଶୀଘ୍ର ଘରେ ତାଲା ପକାଇ ଘୋଡାରେ ବସି କଣ୍ଢେଇଜୋଇସ ବାହାରିପଡିଲେ ।

4

ଏଥର ପ୍ଲେଗ ମହାମାରୀରେ ନାଗଲାପୁର ଗାଁର କାହାରି ମୃତ୍ୟୁ ହୋଇନଥିଲା । ପାଖଆଖ ସବୁ ଗାଁର ଲୋକମାନେ ମଧ୍ୟ ଗାଁ ଘର ଛାଡି ବିଲ ମଝିରେ କୁଡିଆ କରି ରହୁଥିଲେ । ରାମସନ୍ଦ୍ର ଗାଁର ଲୋକ ମଧ୍ୟ ବିଲରେ କୁଡିଆ କରି ରହୁଥିଲେ । ତଥାପି ସେ ଗାଁଆର ତିନିମୁଣ୍ଡ ଦେବୀମାତା ନେଇ ଯାଇଥିଲେ । ଆଖପାଖ ଗାଁର ଅନେକ ଲୋକ ପ୍ଲେଗରେ ମୃତ୍ୟୁ ବରଣ କରିଥିଲେ । ଅବଶ୍ୟ ଏହା କୁହାଯାଇ ନପାରେ ଯେ ନାଗଲାପୁରରେ କେହିହେଲେ ମରିନଥିଲେ । କାରଣ ସେଦିନ ରାତିରେ କଣ୍ଢୀଜୋଇସଙ୍କ ଚାଳରେ ପଥର ଫିଙ୍ଗିସାରି ଜଗୁଆ ତା ଘରେ ଯେମିତି ପହଞ୍ଚିଛି ତାକୁ ଜ୍ୱର ମାଡି ଆସିଲା । ସେ ତା ସ୍ତ୍ରୀକୁ ଗାଁ ଭିତରକୁ ଯିବା କଥା କହିଲା । ଜଗୁଆ କହିଲା - "ଯେତେବେଳେ ସେ କଣ୍ଢୀଜୋଇସଙ୍କ ଗାଳି ଶୁଣି ଦୌଡି ଦୌଡି ଆସୁଥିଲା ତାକୁ ଜଣାପଡିଲା ଯେମିତି ଗାଁ ମୁଣ୍ଡରେ ଗୋଟିଏ କାଳି, ମୋଟି ସ୍ତ୍ରୀ ଲୋକ କଳା ଶାଢୀ ପିନ୍ଧି ପଣତ ହଲାଉଥିଲା ।" ବାସ, ତାପରେ ଜ୍ୱର ଏମିତି ବଢିଚାଲିଲା ଯେ ଓହ୍ଲାଇବାର ନାଁ ନେଲା ନାହିଁ । ତାପର ଦିନ ଦ୍ୱିପହର ବେଳକୁ ଜଗୁଆର ଚେତା ବୁଡିଗଲା । ସଞ୍ଜବେଳକୁ ଟିକିଏ ଚେତା ଆସିବାରୁ କହିଲା - "କଣ୍ଢୀଜୋଇସଙ୍କୁ ଡକାଇ ଶୀଘ୍ର ଝଡା ଫୁଙ୍କା କରାଅ ।" ଜଗୁଆ ସ୍ତ୍ରୀ ତା ମାମୁଁକୁ କଣ୍ଢୀଜୋଇସଙ୍କୁ ଡାକି ଆଣିବା ପାଇଁ ଗାଁ ଭିତରକୁ ପଠାଇଲା । କିନ୍ତୁ ସେତେବେଳକୁ କଣ୍ଢୀଜୋଇସ ଘରେ ତାଲା ଲଗାଇ ପୁଅପାଖକୁ ଚାଲି ଯାଇଥିଲେ, ତାପର ଦିନ ମଧ୍ୟ ଦେଖିଲାବେଳକୁ ତାଲା ପଡିଛି । ଜଗୁଆର ପୁଣି ଚେତା ଆସିବାରୁ ପଚାରିଲା - "ଜୋଇସ ଆସିଲେ ?" ଯେମିତି ଜାଣିଲା ଯେ ଆସିନାହାନ୍ତି, ସେ ଆଖି ବନ୍ଦ କରିଦେଲା । ତାପରଠାରୁ ଯେତେ ଚେଷ୍ଟା କଲେ ମଧ୍ୟ ତାର ଚେତା ଆସିଲା ନାହିଁ । ଦୁଇଦିନ ପରେ ସେ ମରିଗଲା । ଲୋକେ ଜାଣିପାରିଲେ ନାହିଁ ଯେ ଜଗୁଆ ପ୍ଲେଗରେ ମଲା କି ଡରିକରି ମଲା ।

ନଞ୍ଜମ୍ମାର ଝିଅ ଜନ୍ମ ହେବାର ପରଦିନ ବୁଢାମା କଣ୍ଢୀଜୋଇସଙ୍କ ପାଖକୁ ଏ ଖବର ଦେବା ପାଇଁ ତାଙ୍କ ଭାଗଚାଷୀକୁ ପଠାଇଲା । ସେ ଫେରିଆସି କହିଲା ଯେ ଘରେ ତାଲାପଡିଛି । ପୂର୍ବଦିନ ରାତିରେ ପଥର ଫିଙ୍ଗିବା ପାଇଁ ଯେଉଁମାନେ ଯାଇଥିଲେ ସେମାନେ ଏ ବିଷୟ କାହାକୁ ଜଣାଇ ନଥିଲେ । ତେଣୁ

Digitized by srujanika@gmail.com

ଘରେ ବନ୍ଧା ହୋଇଥିବା ଗାଈ ବାଛୁରୀ ଯେତେବେଳେ କୁଡିଆକୁ ପଠାଇଦେଇ କଣ୍ଟାକୋଇସ ଚାଲିଗଲେ, ବୁଢ଼ୀ ଭାବିଲା ଯେ ପୁଅ ଗାଁ ବାହାରକୁ ଚାଲିଯାଇଛି ଏବଂ ଏ ପର୍ଯ୍ୟନ୍ତ ବୋଧହୁଏ ଫେରିନାହିଁ । ପୋଖତି କାମରେ ଭଟ୍ଟପୁରୋହିତଙ୍କ ସ୍ତ୍ରୀ ବୁଢ଼ୀକୁ ଭାରି ସାହାଯ୍ୟ କଲେ । ବୁଢ଼ୀ ପୁରୋହିତଙ୍କୁ କହିଲେ, "ରାମସନ୍ଦ୍ର ଗାଁକୁ ଯାଇ ଚେନ୍ନିଗରାୟକୁ ଖବର ଦେଇ ଦିଅନ୍ତୁ ଓ ସେମାନଙ୍କୁ ଝିଅର ନାମକରଣ ଦିନ ଆସିବାକୁ କହିଆସନ୍ତୁ ।" ପୁରୋହିତ ମନେ ମନେ ଭାବିଲେ ଯେ ମହାମାରୀ ସମୟରେ କୌଣସି ଗାଁ ଭିତରକୁ ଯିବା ଉଚିତ ହେବ କି ନାହିଁ ?" ପାଖ ବଖରାରୁ ନଞ୍ଜମ୍ମା କହିଲା - "ସେମାନେ ବୋଧହୁଏ କେହି ଗାଁରେ ନଥିବେ । ବୋଧହୁଏ ଆମ ବାଡ଼ିପଟ ବିଲରେ ଠାକୁରାଣୀ ମନ୍ଦିର ପାଖରେ କୁଡିଆ କରି ରହିଥିବେ । ଆପଣ ଗାଁ ଭିତରକୁ ନ ଯାଇ ସେଠାକୁ ଯାଇ ଖବର ଦେଇ ଆସନ୍ତୁ ।" ପୁରୋହିତେ ରାମସନ୍ଦ୍ର ଗାଁ ଯିବାକୁ ବାହାରି ପଡ଼ିଲେ ।

ଏଣେ କୁଡିଆ ଭିତରେ ପୋଖତି ଘରର ରୀତି ନିଯ୍ମ ବୁଢ଼ୀ କରିବସିଲା । ଦଶ ଦିନ ନାମକରଣ କରାଯିବା କଥା । ଏଥିପାଇଁ ଚେନ୍ନିଗରାୟ ସଙ୍କବାଳ ହୋଇ ବାହାରିପଡ଼ିଲା । ଶଗଡଗାଡି କରି ଅପନ୍ନାୟା ଏବଂ ସାତୁକୁ ମଧ୍ୟ ସାଙ୍ଗରେ ନେଇ ପାରିଥାନ୍ତା । କିନ୍ତୁ ସାତୁ ସେତେବେଳେ ଗର୍ଭବତୀ । ତାର ବାନ୍ତି ହେବା ମଧ୍ୟ ବନ୍ଦ ହୋଇନଥାଏ । ନିୟମ ଅନୁସାରେ ସେ କାହାସାଙ୍ଗରେ କଥାବାର୍ତ୍ତା ହେବା କଥା ନୁହେଁ । କିନ୍ତୁ ଦିନେ ଶାଶୁ ସାଙ୍ଗରେ କଳି ଲଗାଇ ଖୁବ୍ ଜବାବ୍ ଉତ୍ତର ଦେଇଥିଲା । ଏପରି ପରିସ୍ଥିତିରେ ଚେନ୍ନିଗରାୟ ସାଥିରେ ଆଉ କାହାକୁ ନ ନେଇ ଶଶୁର ଘର ଗାଁକୁ ଏକୁଟିଆ ବାହାରି ପଡ଼ିଲା ।

ଦିନ ଏଗାର ଟା ବେଳକୁ ବାଳିନଦୀ ପାର ହୋଇ ଜଙ୍ଗଲିଆ ରାସ୍ତା ଦେଇ ହୁବନହଳି ଗାଁରେ ଯାଇ ପହଞ୍ଚିଲା । ସେ ଗାଁର ଗୋଟିଏ ଦୋକାନରେ ଦେଶୀ କଦଳୀ କାନ୍ଦିଟିଏ ଝୁଲୁଥିବାର ଦେଖି ସେଥିରୁ ତିନି ଡଜନ କଦଳୀ କିଣିଲା । ଭାବିଲା ନାମକରଣ ପୂଜାଥାଳୀରେ ଫଳ ରଖିବାକୁ ପଡ଼ିବ । ଦୋକାନରେ ଖଇ ଦେଖି ସେଥିରୁ ମଧ୍ୟ ସେରେ ଖଣ୍ଡେ କିଣିଲା । ଆଉ ଦୁଇମାଇଲ ଖଣ୍ଡେ ଗଲାପରେ ମନେ ମନେ ବିଚାରକଲା ଯେ ପୋଖତି ମାଇକିନାକୁ ଦୁଇଦିନରେ ଥରେ ତେଲମାଲିସ ହୋଇ ଗାଧୋଇବା ଦରକାର । ଖାଇଲାବେଳେ ଅସଲିଘିଅ ଚାମଚେ ଲେଖାଏଁ ଭାତରେ ପକାଇ ଖାଇବା କଥା ଏବଂ ତାଛଡା ଆରାମରେ ଶୋଇ ରହିବା କଥା । କିନ୍ତୁ ମୋ ପାଖରେ ତ ଏସବୁ କିଛି ନାହିଁ । ଯେବେଠାରୁ ସ୍ତ୍ରୀ ନାଗଲାପୁର ଗଲାଣି ମୋ ଦେହରେ ତେଲ ଘସିବା କିମ୍ବା ଗରମପାଣିରେ ଗାଧୋଇବା ବନ୍ଦ । ମୋ ହାତ ଗୋଡ କଣ ଘୋଳେଇ ହେଉନି ? ତା ବୁଢାମା ନାତୁଣୀ ପାଇଁ କେତେ ପ୍ରକାର ଭଲ ଜିନିଷ କରି ଖୁଆଇଲା । ନାତୁଣୀର ମା' ନାହିଁ ବୋଲି ତାର ଆହୁରି ବେଶି ସେବା କଲା । ଏସବୁ ତ ମୁଁ ଭଟ୍ଟପୁରୋହିତ ଠାରୁ ଶୁଣିଛି । କିନ୍ତୁ ମୋ ପାଇଁ ତ କିଛି ପଠାଇଲା ନାହିଁ । ପୁରୋହିତ ହାତରେ କଣ କହିପାରିନଥାନ୍ତେ ଯେ ଜ୍ୱାଇଁ ପୁଅପାଇଁ କେତେ ପ୍ରକାର ରନ୍ଧାବଢ଼ା କରି ରଖିଛୁ ତାଙ୍କୁ ଡାକି ଆଣିବ । ମନକୁ ମନ କଣ୍ଡଗୁଡାଏ ଗାଳି ଦେଇ ପକାଇଲା ।

Digitized by srujanika@gmail.com

ଏମିତି କିଛିବାଟ ଯାଉଯାଉ ଗୋଟିଏ ବରଗଛ ତଳେ ଛାଇରେ କିଛି ସମୟ ବିଶ୍ରାମ ନେଲା । ପାଖରେ ଗୋଟିଏ ପୋଖରୀ । କଦଳୀ ଆଉ ଖଇ ଗଣ୍ଠିଲି ଦେଖି ଭାବିଲା ଯେଉଁଠି ମୋ ପାଇଁ କିଛି ନେଲେ ବିଚାର ନାହିଁ ସେ ଘରକୁ ଏତେ ଜିନିଷ ନେଇଯିବା ଦରକାର ନାହିଁ । ଏହାଭାବି ପୁଟୁଳି ଫିଟାଇ ଗୋଟିଏ ପରେ ଗୋଟିଏ କଦଳୀ ଛଡାଇ ଖାଇବାରେ ଲାଗିଲା । ଖଇ ପୁଡାଟି ମଧ୍ୟ ଏଥିରେ ଯୋଗ ଦେଲା । କେତେବେଳେ ଯେ ଅଠତିରିଶଟି କଦଳୀ ଏବଂ ଏକ ସେର ଚିନି ଖଇ ଶେଷ ହୋଇଗଲା ଚେନ୍ନିଗାକୁ ଜଣାପଡିଲା ନାହିଁ । ସବୁ ଖାଇସାରି ପୋଖରୀରୁ ଯାଇ ପାଣି ପେଟେ ପିଇଲା । ଗାମୁଛାଟିକୁ ମୁଣ୍ଡତଳେ ଦେଇ ବରଗଛ ଛାଇରେ ଘୁଙ୍ଗୁଡି ମାରି ଶୋଇଗଲା ଯେ ସନ୍ଧ୍ୟାବେଳକୁ ଯାଇ ନିଦ ଭାଙ୍ଗିଲା । ଉଠି ଯେମିତି ଦେଖିଲା ସନ୍ଧ୍ୟାହୋଇ ଆସିଲାଣି ବେଗେ ବେଗେ ପାଦ ପକାଇ ଶଶୁର ଘର ଗାଁ ଆଡକୁ ଚାଲିଲା । ଭଟ୍ଟପୁରୋହିତଙ୍କ ଠାରୁ ଗାଁ ପଛପଟ କୁଡିଆର ଜାଗା ଆଗରୁ ପଚାରି ରଖିଥିଲା । ତେଣୁ ଖୋଜି ପାଇବାରେ କିଛି ଅସୁବିଧା ହେଲା ନାହିଁ । ଏପଟେ ବୁଢୀ ଏବଂ ନାତୁଣୀ ଦ୍ୱିପହରରୁ ରାନ୍ଧିବାଢି ଜ୍ୱାଇଁଙ୍କୁ ଅପେକ୍ଷା କରିଥିଲେ । ସବୁ ଥଣ୍ଡା ହୋଇଯିବାରୁ ରାତିପାଇଁ ପୁଣିଥରେ ରନ୍ଧାରନ୍ଧି କରିବାକୁ ବୁଢୀ କାମରେ ବ୍ୟସ୍ତ ଥିଲା । ଚେନ୍ନିଗରାୟ୍ ପହଞ୍ଚି ଦେଖିଲା କୁଡିଆର ଅଲଗା ଗୋଟିଏ ବଖରାରେ ନଞ୍ଜମ୍ମା ଖଟଉପରେ ଝିଅକୁ ଧରି ଶୋଇଛି । ସ୍ୱାମୀକୁ ଦେଖି କହିଲା, "ତମ ପାଇଁ ରନ୍ଧାରନ୍ଧି କରି ଚାହିଁ ବସିଥିଲୁ । ତମେ ସିଧା ଘରକୁ ନଆସି ସେ ଗଛତଳେ କାହିଁକି ଶୋଇ ପଡିଲ । ଆଶ୍ଚର୍ଯ୍ୟ ହୋଇ ଚେନ୍ନିଗା ପଚାରିଲା - "ଏକଥା ତୁ କେମିତି ଜାଣିଲୁ ?"

"ହୁବନହଲ୍ଲୀ ଗାଁର ଯେଉଁ ଦୋକାନରୁ ତୁମେ କଦଳୀ ଓ ଖଇ କିଣିଥିଲ, ସେ ଦୋକାନୀ ଦ୍ୱିପହରରେ ଆମ ଗାଁକୁ ଆସିଥିଲା । ସେ କହିଲା ଯେ ଆସିଲାବେଳେ ସେ ଦେଖିଲା ତୁମେ ଗଛମୂଳେ ଶୋଇଥିଲ ଏବଂ ପାଖରେ କଦଳୀ ଚୋପାଗୁଡିକ ଜମା ହୋଇଥିଲା ।" ଏ କଥା ଶୁଣି ଚେନ୍ନିଗା ରାଗ ଜର୍ଜର ହୋଇ ଗାଳି ଦେବାକୁ ଯାଉଥିଲା । ତା ପୂର୍ବରୁ ନଞ୍ଜମ୍ମା କହିଲା - "ଖରାପ କଥା ମୁହଁରେ ଧର ନାହିଁ । ରାସ୍ତାରେ ଯଦି ଭୋକ ଲାଗିଲା, କଦଳୀ ଟିକ ଖାଇଦେଲ, ଏଥିରେ ଖରାପ କଣ ହେଲା ? ହଁ ଘରକୁ ଯଦି ଶୀଘ୍ର ଚାଲିଆସିଥାନ୍ତ ତେବେ ଏଠି ରନ୍ଧା ବଢା ହୋଇଥିଲା ଖାଇଥାନ୍ତ ।" ଚେନ୍ନିଗା କଣ ଉତ୍ତର ଦେବ ଭାବିପାରିଲା ନାହିଁ । ତା ମୁହଁରୁ ଗାଳି ମଧ୍ୟ ବାହାରିଲା ନାହିଁ ।

ନାମକରଣ ସଂସ୍କାର ଦିନ ବୁଢୀ - ଅକ୍କମ୍ମା, ଦଶଜଣ ଲୋକଙ୍କୁ ଡାକି ଖୁଆଇବାର ବ୍ୟବସ୍ଥା କରିଥିଲା । ଭଟ୍ଟପୁରୋହିତ ଏବଂ ତାଙ୍କ ସ୍ତ୍ରୀ ଏଥିରେ ବହୁତ ସାହାଯ୍ୟ କରିଥିଲେ । ସର୍ବରାକାର ଶ୍ୟାମନ୍ନାର ପରିବାର ମଧ୍ୟ ଆସିଥିଲେ, ଘରର ପ୍ରଥମ ନାତୁଣୀ ହୋଇଥିବାରୁ କୁଳିଝିଅର ନାଁ ପ୍ରଚଳିତ ପ୍ରଥା ଅନୁସାରେ ଜେଜେମାର ନାଁକୁ ନେଇ 'ଗଙ୍ଗାମ୍ମା' ରଖାଯିବା କଥା । କିନ୍ତୁ ଜେଜେମା ବଞ୍ଚିଥିବାରୁ, ଜନ୍ମ ନକ୍ଷତ୍ର ଅନୁସାରେ ଝିଅର ନାମ ପାର୍ବତୀ ରଖାଗଲା । ଚେନ୍ନିଗରାୟ୍ ଆଠଦିନ ଖଣ୍ଡେ ସେଠାରେ ରହି ଗରମ ଗରମ ଭୋଜନ ଏବଂ ଜ୍ୱାଇଁ କୁଣିଆର ସମ୍ମାନ ପାଇଲା । ନଞ୍ଜମ୍ମା ପାଇଁ ଅଣାଯାଇଥିବା ବିଭିନ୍ନ ସ୍ୱାଦିଷ୍ଟ ଜିନିଷ ଟିକ ଖାଇବାରେ ତାକୁ ବହୁତ ଆନନ୍ଦ ଲାଗୁଥିଲା । ଏହାଛଡା ସ୍ତ୍ରୀ ମଧ୍ୟ ପାନ ତିଆରି କରି ବଢାଇ ଦେଉଥିଲା । ବୁଢୀମାର ମଧ୍ୟ ଇଚ୍ଛା ଥିଲା ଯେ ନାତୁଣୀ ଜ୍ୱାଇଁଙ୍କୁ ବିଭିନ୍ନ ପ୍ରକାର ଭଲ ଭଲ ଜିନିଷ ରାନ୍ଧି ଖୁଆଇବ । କିନ୍ତୁ ବୟସ ଅଧିକ ଯୋଗୁଁ ବେଶୀ କାମ କରିପାରୁ ନଥିଲା ।

Digitized by srujanika@gmail.com

ଏହାଛଡା ଘରେ ଯେଉଁଟିକ ପଇସା ଥିଲା ତା' ସରିଆସିଲାଣି । ପୁଅ କଣ୍ଡାଆ କୁଆଡେ ଗଲା ଯେ ତାର ଖବର କିଛି ନାହିଁ ।

ଦିନେ ନଷ୍ଟଜ୍ମା ସ୍ୱାମୀଙ୍କୁ କହିଲା - "ଗାଁରେ ସର୍ବରାକାର କାମ ସବୁ ପଡିଥିବ । ତୁମେ ଇଲାକାଦାର ସାହେବଙ୍କୁ ନ ଜଣାଇ ଏଠି ବେଶିଦିନ ରହିଲେ ଖରାପ ହେବନି ତ ?"

"ଇଲାକାଦାରଙ୍କୁ ଚିଠି ଲେଖିଦେଲେ ହେବନି ?" ସ୍ୱାମୀ ପଚାରିଲେ ।

"ଖଜଣା ଆଦାୟ ସମୟ ଆସି ପାଇଲାଣି, ତୁମେ ଗାଁରେ ନରହିଲେ ଦ୍ୱାବରସଯ୍ୟା ମହାଶୟ ମନଇଚ୍ଛା କରିଯିବେ । ଖଜଣା ଆଦାୟ କରିବା ତୁମ କାମ । ଆଜି ପନ୍ଦର, ଷୋହଳ ତାରିଖ ହେବ । ବର୍ଷା ମଧ୍ୟ ଆସିଲାଣି ଗାଁରେ ବିଲବାଡିର ଅବସ୍ଥାତ ବୁଲି ଦେଖିବାକୁ ପଡିବ ।"

ଗାଁକୁ ଫେରିଯିବା ଛଡା ଅନ୍ୟ ଉପାୟ ନଥିଲା । ତେଣୁ ସର୍ବରାକାର ଚେନ୍ନିଗରାୟ ସାହେବ ତହିଁଆରଦିନ ସକାଳୁ ଜଳଖିଆ ସାରି ବୁଢୀମା ଅକ୍କମ୍ମା ଦ୍ୱାରା ବାନ୍ଧିଥିବା ଗଣ୍ଠିଲି ଧରି ବାହାରି ପଡିଲେ । ସେ ଯିବାପରେ ବୁଢୀ ପଚାରିଲା - "ନଞ୍ଜୁ, ତୋ ସ୍ୱାମୀ ଥରେ ହେଲେ କୁନି ଝିଅକୁ କୋଳରେ ଧରିଲା ନାହିଁ । ଝିଅ ଜନ୍ମ ହୋଇଛି ବୋଲି ଦୁଃଖ କରୁଥିଲା କି ?" ନଷ୍ଟଜ୍ମା କିଛି କହିଲା ନାହିଁ । ତା ଆଖିରେ ଲୁହ ଭରିଗଲା । ପୁଅଟିଏ ହୋଇଥିଲେ ମଧ୍ୟ ସିଏ କୋଳକୁ ନେଇନଥାନ୍ତେ - ଏକଥା ସେ କହି ଆସୁଥିଲା । କିନ୍ତୁ କଣ ଭାବି ଚୁପ୍ ରହିଗଲା ଏବଂ ଆଖିରୁ ଲୁହ ପୋଛି ଦେଲା ।

## 5

କଣ୍ଠୀଜୋଇସ ପହଞ୍ଚିଲା ବେଳକୁ କଲ୍ଲେଶର କାଖତଳେ ଗୋଟା ପଡି ଜ୍ୱର ବଢିଯାଇଥାଏ । ସରକାରୀ ଡାକ୍ତରଖାନାର ଡାକ୍ତର ଔଷଧ ଦେଇ କହିଲା - "ବଡ ଡାକ୍ତର ପାଖକୁ ନେଇ ଯାଆନ୍ତୁ । କିନ୍ତୁ ଏ ଅବସ୍ଥାରେ ରୋଗୀକୁ ନେବା ଆଣିବା ମଧ୍ୟ କଷ୍ଟକର । ତେବେ ମୁଁ ଯେତିକି ଜାଣିଛି ସେ ଅନୁସାରେ ଔଷଧ ଦେବି ।" କଣ୍ଠୀଜୋଇସ ପହଞ୍ଚିଲା ପରେ ଥାନା ହାବିଲ୍‌ଦାରଙ୍କୁ କହିଲେ - "ଆପଣ ଗୋଟିଏ ମଟର ଗାଡିର ବ୍ୟାବସ୍ଥା କରାଇଦିଅନ୍ତୁ । ମୁଁ ରୋଗୀର ଜିମା ନେଇ ହାସନ୍ ସହରର ବଡ ଡାକ୍ତରଖାନାରେ ପହଞ୍ଚାଇ ଦେବି ।"

ହାବିଲ୍‌ଦାର ଗୋଟିଏ ଗାଡି ମଗାଇ ଆଣିଲା ପରେ କଲ୍ଲେଶକୁ ସେଥିରେ ଶୁଆଇ ହାସନ୍ ସହରକୁ ନେଇଗଲେ ଏବଂ ବଡ ଡାକ୍ତରଖାନାରେ ଭର୍ତ୍ତି କରାଇଦେଲେ । ଏଠା ଡାକ୍ତର କଲ୍ଲେଶର ଶ୍ୱଶୁର

Digitized by srujanika@gmail.com

ରଙ୍ଗହ୍ନାଙ୍କୁ ଭଲ କରି ଚିହ୍ନନ୍ତି । କାରଣ ସେ ଗତ ପଚିଶ ବର୍ଷ ଧରି ଏଇ ସହରରେ ପୋଷ୍ଟମ୍ୟାନ୍ କାମ କରୁଥିଲା । ଡାକ୍ତର କଲେଶର କାଖତଳ ଗୋଟାକୁ ଅପରେଶନ୍ କରି କାଟିଦେଲେ । ଅନେକ ରକ୍ତ ପୂଜ ଗଲା । କିନ୍ତୁ କଲେଶର ପ୍ରାଣ ବଞ୍ଚିଗଲା । ପନ୍ଦରଦିନ ଖଣ୍ଡେ ଡାକ୍ତରଖାନାରେ ରହିବାକୁ ପଡ଼ିଲା । କଲେଶ ଭାରି ଦୁର୍ବଳ ହୋଇଯାଇଥିଲା । କଣ୍ଠାକୋଇସ ମଧ୍ୟ ଏତକ ଦିନ କଲେଶର ଶ୍ୱଶୁର ଘରେ ରହି ପୁଅର ସେବା କଲେ । ପନ୍ଦର ଦିନ ପରେ ଯେତେବେଳେ ଡାକ୍ତରଖାନାରୁ ଛୁଟି ମିଳିବା କଥା, ଦେଖାଗଲା ଯେ କଲେଶର କାଖରେ ଆହୁରି ଗୁଡ଼ିଏ ଘା ବାହାରିଛି । ଡାକ୍ତର କହିଲେ - "ଯାଙ୍କୁ ଏଇ ସହରରେ ଆଉ କିଛିଦିନ ରଖନ୍ତୁ ଆହୁରି ଚିକିତ୍ସା ଦରକାର ।" ରଙ୍ଗହ୍ନା ଜ୍ୱାଇଁ ଘରକୁ ନେଇ ଆସିଲେ । ଏହାର ଆଠଦିନପରେ କଣ୍ଠାକୋଇସ ଘୋଡାରେ ବସି ନିଜ ଗାଁକୁ ଯିବା ପାଇଁ ବାହାରିପଡିଲେ । ଏଇ ପଚିଶଦିନ ଭିତରେ ତାଙ୍କର ଯାହା ସୁବିଧା ଅସୁବିଧା ହେଉ ନା କାହିଁକି ତାଙ୍କ ଘୋଡାଟିର ଖାଇବା ପିଇବାରେ ଭାରି କଷ୍ଟ ହୋଇଥିଲା । ସମୁଦୀ ଘରେ ଦୁଧଘିଅ ବେଶି ନ ମିଳିଲେ ମଧ୍ୟ ପେଟପୁରା ଭୋଜନ ମିଳୁଥିଲା । କିନ୍ତୁ ଘୋଡାପାଇଁ ଦାନାପାଣି ଏବଂ ଘାସଚାରା ବ୍ୟବସ୍ଥା ବିଶେଷ ହୋଇ ପାରୁନଥିଲା ।

ଗାଁରେ ପହଞ୍ଚିଲାବେଳକୁ ପ୍ଲେଗର ପ୍ରକୋପ ଶେଷ ହୋଇଯାଇଥାଏ । ଥରେ ଦୁଇଥର ବର୍ଷା ମଧ୍ୟ ହୋଇଗଲାଣି । ଘରେ ଅକ୍କାମା ଓ ନଣ୍ଡିମା ଡରିଯାଇଥିଲେ ଯେ କଲେଶକୁ ବୋଧେ ପ୍ଲେଗ ହୋଇଯାଇଛି ଯେଉଁଥିପାଇଁ ତାକୁ ହାସନ୍ ଡାକ୍ତରଖାନାକୁ ନିଆଯାଇଛି । ସେଠି ତା ଦେହ ଭଲ ହୋଇ ଆସୁଛି ବୋଲି ଅବଶ୍ୟ ବୁଢୀ ଶୁଣିଥିଲା । ବର୍ତ୍ତମାନ କୁଡିଆ ଛାଡି ଘରକୁ ଯିବା ପାଇଁ ପୁଅ ଆସିବା ପର୍ଯ୍ୟନ୍ତ ଅପେକ୍ଷା କରିବା ଠିକ୍ ହେବ ନାହିଁ ବୋଲି ଭାବି ବୁଢୀ ବଢେଇକୁ ଡାକି ଦୁଆରର ତାଲା ଭାଙ୍ଗିଲା । ଘର ଭିତରେ ପଶି ଦେଖିଲା ବର୍ଷାପାଣି ଘର ଭିତରେ ପଶି ଘର କାଦୁଅ ହୋଇଯାଇଛି । ଘର ଛାତ ଉପରେ ପଥର ପଡି ଖପର ଭାଙ୍ଗି ଯାଇଥାଏ । ଖପର ଛାତକୁ ଦେଖିଲେ ଜଣାପଡିବ ଯେ ଏହା ଉପରକୁ ପଥର ଫିଙ୍ଗାଯାଇଥିଲା । ହଳିଆକୁ ଡକାଇ ଛାତର ଖପର ସବୁ ଠିକ୍ କରାଇଲା । ଘରଦ୍ୱାର ସବୁ ଲିପା ପୋଛା କରାଇଲା । ଚାରିଦିନ ପରେ ଘର ଶୁଖିଯିବାରୁ ଜିନିଷପତ୍ର ଧରି ଘରକୁ ଆସିଲେ । ନଞ୍ଜୁକୁ ପୋଖରି ହେବାର ପ୍ରାୟ ମାସେ ହୋଇଗଲାଣି । ସେ ଘର କାମରେ ସାହାଯ୍ୟ କରିବା ପାଇଁ ଉଠିଲେ ବୁଢୀମା କିଛି କରାଇଦିଏ ନାହିଁ । ଘର ଓଳାଇବାଠାରୁ ଗାଈ ଦୁହିଁବା ପର୍ଯ୍ୟନ୍ତ ସବୁକାମ ଅକ୍କାମା ନିଜେ କରୁଥିଲା ।

ଏମାନେ ଘରକୁ ଆସିବାର ଚାରିଦିନ ପରେ ଉପର ବେଳା ଘୋଡାରେ ବସି କଣ୍ଠାକୋଇସ ଘରେ ପହଞ୍ଚିଲେ । ଘରେ ପୁଅର କୁଶଳ ସମ୍ବାଦ କହିଲେ । ଘର ଲିପାପୋଛା ହୋଇଥିବା ଦେଖି ପଚାରିଲେ- "ଏ ସବୁ କରିବାର କଣ ଦରକାର ଥିଲା ?"

"ଆରେ ଛାତର ଖପର ଭାଙ୍ଗିଯାଇଥିବାରୁ ଘରସାରା ପାଣି ଭର୍ତ୍ତି ହୋଇଯାଇଥିଲା । ସେଥିପାଇଁ ନୂଆ ମାଟି ଆଣି ତଳେପକାଇ ଲିପାପୋଛା କରିଦେଲି ।"

Digitized by srujanika@gmail.com

"ସେ ହାଡ଼ିପିଲା - - - - - - କୁ ଯାଇ ବର୍ତ୍ତମାନ ପଚାରୁଛି ।" ଏହା କହି କଣ୍ଡାକୋଇସ ଦାଣ୍ଡଆଡେ ଚାଲିଗଲେ । ବୁଢ଼ୀ ଓ ନାତୁଣୀ କଥା କଣ ବୁଝି ପାରିଲେ ନାହିଁ ।"

ଭୋଜନ କରିସାରି ସର୍ବରାକାର ଶ୍ୟାମନ୍ନା ଘର ଆଗ ମଣ୍ଡପରେ ପଶା ଖେଳିବାରେ ବ୍ୟସ୍ତ । କଣ୍ଡାକୋଇସ ସିଧା ଯାଇ ମଣ୍ଡପ ଉପରେ ଠିଆ ହୋଇ ଗର୍ଜି କହିଲେ - "ଆବେ ହାରାମଜାଦା, ଲୋକ ପଠାଇ ମୋ ଘର ଉପରକୁ ପଥର ପିଙ୍ଗାଇଥିଲୁ । ମରଦପୁଅ ଯଦି ହୋଇଥାନ୍ତୁ ତେବେ ଦିନବେଳେ ସମସ୍ତଙ୍କ ଆଗରେ ଏକଥା କରାଇଥାନ୍ତୁ । ମତେ କଣ ବୋଲି ଭାବୁଛୁ କି ? ମୁଁ ମରଦପିଲା । ତୋ ବାପ ଚଉଦପୁରୁଷରେ କେହି ମରଦ ନଥିବେ - - - - - ।"

ଏପରି ଅପ୍ରତ୍ୟାଶିତ ଭାବରେ କଣ୍ଡାକୋଇସଙ୍କ ଗର୍ଜନ ଶୁଣି ସମସ୍ତେ ଅବାକ୍ ହୋଇ ଚାହିଁ ରହିଥାନ୍ତି । ଶ୍ୟାମନ୍ନା ମଧ୍ୟ ଡରି ଯାଇଥିଲା । କଣ୍ଡାକୋଇସ ସିଧା ଶ୍ୟାମନ୍ନାର ଘର ଭିତରେ ପଶିଗଲେ । ଘର ଭିତରୁ ପିଟଣା ଠେଙ୍ଗା ଓ ବାଉଁଶ ସିଡ଼ିଟା ନେଇ ଆସିଲେ । ସିଡ଼ି ଲଗାଇ ମଣ୍ଡପ ଛାତକୁ ଚଢ଼ି ଭୁସ ଭାସ ଚାରି ପାଞ୍ଚଥର ଠେଙ୍ଗାରେ ଖପର ବାଡେଇ ଭାଙ୍ଗିବାକୁ ଲାଗିଲେ । ତାପରେ ଘର ଚାଳ ଉପରେ ଚଢ଼ି ଆହୁରି ଖପର ଭାଙ୍ଗିବାକୁ ଲାଗିଲେ । ସେତେବେଳକୁ ଲୋକେ ଦାଣ୍ଡରେ ଜମା ହୋଇ ସାରିଥାନ୍ତି । ଚାଳ ଉପରେ ଭୀମଭଳିଆ ଗଦା ଧରି ପ୍ରହାର କରି ଖପର ଭାଙ୍ଗୁ ଭାଙ୍ଗୁ ତଳେ ଲୋକମାନଙ୍କୁ ଦେଖି କଣ୍ଡାକୋଇସ ଗର୍ଜି ଉଠିଲେ - "ଆରେ ମାଇଚିଆମାନେ, ରହ ତୁମ ସମସ୍ତଙ୍କୁ ଠିକ୍ କରିଦେଉଛି । ତମ ମାଇପମାନଙ୍କୁ ସବୁ ଯଦି ଲଣ୍ଡା ନକରିଛି ତାହେଲେ କହିବ ।" ଏହା କହି ଖପର ଉଠାଇ ଲୋକଙ୍କ ଆଡକୁ ପିଙ୍ଗିବାକୁ ଲାଗିଲେ । ଖପର ବାଜି ଜଣଙ୍କର ମୁଣ୍ଡ ଫାଟିଗଲା । ଆଉ ଜଣଙ୍କର ହାତ ଖଣ୍ଡିଆ ହୋଇଗଲା । ଲୋକେ ଭୟରେ ଧାଇଁ ପଳାଇଲେ । ଶ୍ୟାମନ୍ନା ଏ ସବୁ କାଣ୍ଡ ଦେଖି ପ୍ରଥମେ ଭାବିଲା ଯେ ଚାଳଉପରେ ଚଢ଼ି କଣ୍ଡାକୋଇସଙ୍କୁ ପାନେ ଦେବ ବୋଲି । କାରଣ ସେ ମଧ୍ୟ ବଳରେ କିଛି କମ୍ ନଥିଲା । କିନ୍ତୁ ଏପରି ଅବସ୍ଥାରେ ତାହା ବିପଦ ଜନକ ହୋଇପାରେ ଭାବି ଚୁପ୍ ରହିଲା ।

ଦଶହଜାର ଖପର ତିଆରି କରିବାକୁ କୁମ୍ଭାରକୁ ବୋଧେ କେତେ ମାସ ସମୟ ଲାଗିଥାଇ ପାରେ । କିନ୍ତୁ କଣ୍ଡାକୋଇସଙ୍କ ହାତରେ ଥିବା ମୁଷଳ ଅଧଘଣ୍ଟାରୁ କମ୍ ସମୟରେ ଶ୍ୟାମନ୍ନାର ଘର ଛାତର ସବୁ ଖପର ଭାଙ୍ଗି ଗୁଣ୍ଡ କରିଦେଇଥିଲା । କାମ ସାରି ଚାଳ ଉପରୁ ଧୀରେ ଧୀରେ ଓହ୍ଲାଇଲେ । ଘର ଭିତରୁ ଯେଉଁଠୁ ଠେଙ୍ଗା ଓ ସିଡ଼ି ଆଣିଥିଲେ ସେଠି ନେଇ ରଖି ଦାଣ୍ଡକୁ ବାହାରିଲେ । ସାମନା ପାହି ବାରଣ୍ଡାରେ ଠିଆ ହୋଇଥିବା ଶ୍ୟାମନ୍ନାର ସ୍ତ୍ରୀକୁ ଯାଇ କହିଲେ - "ଦେଖ ଭଉଣୀ, ତୋ ବାପା ମୋର ଗୁରୁ ସମାନ । ସେଥିପାଇଁ ତତେ ସବୁ ଖୋଲି କରି କହୁଛି । ଖାଲି ଗାଁଟାରେ ଏକୁଟିଆ ମୁଁ ରହୁଥିଲି ବୋଲି ତୋ ସ୍ୱାମୀ ରାତି ଅଧରେ ଲୋକ ପଠାଇ ମୋ ଘର ଚାଳଉପରେ ପଥର ପିଙ୍ଗାଇଲା । କିନ୍ତୁ ମତେ ଦେଖ ମୁଁ ଦିନ ଦି'ପହରରେ ଏହାର ପ୍ରତିଶୋଧ ନେଲି । କଣ୍ଡାକୋଇସ ମରଦ ପୁଅ । ତୋ ସ୍ୱାମୀକୁ କହ ଭବିଷ୍ୟତରେ ଯେପରି ଏପରି କାମ ନକରେ । ମରଦ ପୁଅ ଭଳିଆ କାମ କରିବ ।" ଏତକ କହି ନିଜଘର ଆଡକୁ ଚାଲିଲେ । ଶ୍ୟାମନ୍ନାର ସ୍ତ୍ରୀ କାଠ ପରି ଠିଆ ହୋଇଥିଲା ।

Digitized by srujanika@gmail.com

କଣ୍ଠୀକୋଇଲ ଘରେ ପହଞ୍ଚି ଦେଖିଲେ ବାସନା ଚାଉଳ ଭାତ ରନ୍ଧା ହେଉଛି । ଆଉ ଗୋଟିଏ ଚୁଲିରେ ଶାଗ ତରକାରୀ ମଧ୍ୟ ବସିଛି । ବାଡ଼ିପଟ କୂଅରୁ ପାଣି ଦୁଇ ବାଲଟି କାଢ଼ି ସେ ଗାଧୋଇଲେ । ଶୁଦ୍ଧ ସ୍ୱରରେ ସନ୍ଧ୍ୟା ମନ୍ତ୍ର ଉଚ୍ଚାରଣ କରି ଦେହ ପୋଛି ପାଛି ଘର ଭିତରକୁ ଗଲେ । ଠାକୁର ଘରେ ଚନ୍ଦନ ପେଡ଼ାରେ ସୁଗନ୍ଧିତ ଚନ୍ଦନ ଘସି କପାଳରେ ଲଗାଇଲେ ଏବଂ ପୂଜା ସାରି ହାତ ଗୋଡ ଧୋଇ ଭୋଜନରେ ବସିଗଲେ । ସେରେ ଚାଉଳର ଗରମ ଭାତ ରନ୍ଧା ହୋଇଥାଏ । ଘରେ ଅସଲି ଗୁଆ ଘିଅଥିଲା । ତା ସାଙ୍ଗକୁ ଶାଗ ଓ ଆଚାର ମିଶାଇ ଦୁଇଚାରି ମିନିଟରେ ଭୋଜନ ସମାପ୍ତ କଲେ । ଖାଉ ଖାଉ ପଚାରିଲେ - "ଗାଈ ଯେଉଁତକ କ୍ଷୀର ଦେଉଛି ସେଥିରେ ଘରକାମ ଚଳିଯାଉଛି ତ ?" ବୁଢ଼ୀ କହିଲା - "ହଁ, ଆହୁରି ବଳୁଛି । ସେଥିରୁ ଘିଅ ମାରି ଘଡ଼ିଏ ରଖିଛି ।"

"ଆଛା, ଝିଅକୁ ଶାଶୁଘର ପଠାଇଲା ବେଳେ କିଛି ତା ହାତରେ ପଠାଇ ଦେବୁ । ସେଠି ସେ ଆରାମରେ ଖାଇବ । ଜଡ଼ା ତେଲ କରିବାକୁ ଘଣାକୁ ପଠାଇଥିଲୁ କି ?"

"ଆରେ, ଏତେ ଶୀଘ୍ର କଣ ପୋଖତି ମାଇକିନାକୁ ତେଲ ଲଗାନ୍ତି ? ଥଣ୍ଡା ଧରିବ ।"

"କୁନିଝିଅର ନାମକରଣ କରାଇଲ କି ?"

"ହଁ ଚେନ୍ନିଗରାୟ ଆସିଥିଲା । ଝିଅର ନାଁ ପାର୍ବତୀ ରଖାଯାଇଛି ।"

ଭୋଜନ ସାରି ହାକୁଟି ମାରି ମାରି ନଝିଆ ଶୋଇଥିବା ବଖରା ଭିତରକୁ ଗଲେ ଏବଂ କହିଲେ -"ଆଲୋ ଝିଅ ମୋ ନାତୁଣୀ କେଉଁଠି ଅଛି ? ଟିକିଏ ଦେଖାଇଲୁ, କେମିତିକା ହୋଇଛି ଦେଖିବା ।"

ଝିଅକୁ କୋଳରେ ଧରି ଦ୍ୱାର ମୁହଁରେ ବସିଗଲେ । ଝିଅଟି ଗୋରୀ ହୋଇ ସୁନ୍ଦର ଏବଂ ହୃଷ୍ଟପୁଷ୍ଟ ହୋଇଥିଲା ।

"ଆଲୋ ଇଏ ତ ଠିକ୍ ତୋରି ଭଳିଆ ହୋଇଛି । କପାଳଟା ଭାରି ଉଚ୍ଚ । ଜନ୍ମ ରାଶି ନକ୍ଷତ୍ର କଣ ?"

"ଭଟ ପୁରୋହିତ କହିଥିଲେ ଯେ ତୁମେ ଇଆର ଜାତକ ତିଆରି କଲେ ଭଲ ହେବ ।"

"ଆଛା, ଆଛା କାଲି ମତେ ମନେ ପକାଇ ଦେବୁ । ଜନ୍ମ ସମୟ ଠିକ୍ ଭାବେ ଲେଖି ରଖିଛ ତ ? ଝିଅ, ମତେ ଖଣ୍ଡେ ପାନ ଦେବୁ । ସକାଳୁ ଏ ପର୍ଯ୍ୟନ୍ତ ପାନ ଖଣ୍ଡିଏ ଖାଇ ନାହିଁ ।" ତାପରେ ନାତୁଣୀକୁ ଧରି ଶୋଷେଇ ଘର ପାଖରେ ପହଞ୍ଚି କହିଲେ - "ମା, ପୁଅାତି ଘର ପାଇଁ ପଇସା ପତ୍ର ଖର୍ଚ୍ଚ କେଉଁଠୁ କଲୁ ? ଏଥିପାଇଁ ଆଗରୁ ବ୍ୟବସ୍ଥା କରିବାକୁ ମୁଁ ଭୁଲିଯାଇଥିଲି ।" ତାପରେ ଘର ଭିତରକୁ ଯାଇ କୋଟ୍ ପକେଟ୍‌ରୁ ତିରିଶି ଟଙ୍କା ବାହାର କରି ମା କୁ ଦେଲେ - "କାହାଠୁ ଯଦି ଆଉ ଉଧାର ଆଣିଥାଉ ତାହାହେଲେ ଫେରାଇ ଦେ । ମୁଁ ବର୍ତ୍ତମାନ କିଛିଦିନ ଗାଁରେ ରହିବି । ପନ୍ଦର, କୋଡ଼ିଏ ଦିନ ପରେ ହାସନ୍ ଯାଇ କନ୍ଦେଶ ଭଲହୋଇ ଯାଇଥିଲେ ତାକୁ ଗାଁକୁ ନେଇ ଆସିବି ।"

Digitized by srujanika@gmail.com

ଝିଅଠୁ ପାନ ଆଣି ପାଟିରେ ପକାଇ ନାତୁଣୀକୁ ତା କୋଳରେ ରଖିଦେଲେ । ଚାରିପାଖଥର ଖଣ୍ଡେ ବାରଣ୍ଡା ତଳେ ପାନପିକ ପକାଇ ସାରି ଖଟ ଉପରେ ଲମ୍ବା ହୋଇ ଶୋଇଗଲେ । ସନ୍ଧ୍ୟା ବେଳକୁ ଉଠିଲେ ଏବଂ ବିଲ ଆଡେ ଟିକିଏ ବୁଲାବୁଲି କରି, ଗୋଡ ହାତ ଧୋଇ ଆରାମରେ ଶୋଇଗଲେ ।

## 6

ରାତି ଅଧବେଳକୁ ଦୁଆର ଖଡ ଖଡ ଶବ୍ଦ ଶୁଭିଲା, କଣ୍ଠୀକୋଇସ ଉଠିପଡି ପଚାରିଲେ -"କିଏ ରେ ?" ଉତ୍ତର ଶୁଣି ଚକିତ ହୋଇ ରହିଗଲେ -"ଆପଣଙ୍କ ଶ୍ୱଶୁର ଘରୁ ଆସିଛୁ କବାଟ ଫିଟାନ୍ତୁ ।"

"କିଏରେ ଶଳା, ମୁଣ୍ଡ ଖରାପ ନା କଣ ?" ଏକଥା କହି ସେ ଉଠି ଉଠି ଦୁଆର ଫିଟାଇ ଦେଖିଲେ ଯେ ଚାରିଜଣ ପୋଲିସ କନେଷ୍ଟବଳ । ଦୁଆର ଯେମିତି ଫିଟିଛି ଚଟ୍‌କିନା ଆସି ତାଙ୍କ ଦୁଇ ଡେଣାକୁ କଷି କରି ଧରିପକାଇଲେ । ଯେତେ ଚେଷ୍ଟା କଲେ ମଧ୍ୟ କଣ୍ଠୀକୋଇସ ଖସିପାରିଲେ ନାହିଁ । ହାବିଲଦାର ସିଟିବଜାଇ ବାହାରେ ଠିଆ ହୋଇଥିବା ଆଉ ଦୁଇଜଣ କନେଷ୍ଟବଳଙ୍କୁ ଡାକିଲା ।

"ମୋର କି ଦୋଷ ପାଇଁ, ମତେ ନେବାକୁ ଆସିଛ ? ତୁମର କଣ ଅଧିକାର ଅଛି ?" ହାବିଲଦାର କହିଲା - "ଯାହା ପଚାରିବାର କଥା ଥାନାରେ ଯାଇ ପଚାରିବ, ଚାଲ ।" ତାଙ୍କୁ ନେଇ ବାହାରକୁ ଗଲାବେଳେ ବୁଢୀ ଓ ନଷ୍ଟିମାର ନିଦ ଭାଙ୍ଗିଗଲା । ସେମାନେ ଜୋରରେ କାନ୍ଦିବାକୁ ଲାଗିଲେ କଣ୍ଠୀକୋଇସ ତାଙ୍କୁ ବୁଝାଇ କହିଲେ - "ମା' କାନ୍ଦନା, ଏ ସବୁ ଶ୍ୟାମନ୍ନାର କାଣ୍ଡ । ମୁଁ ଚେନ୍ନିରାପଟୀ ଥାନା ପର୍ଯ୍ୟନ୍ତ ଯାଇ ଆସୁଛି ।" ଏହା କହି ସେ ପୋଲିସଙ୍କ ସାଙ୍ଗରେ ଚାଲିଗଲେ । ଗାଁ ବାହାରେ ପୋଲିସ ଗାଡି ରଖାଯାଇଥିଲା । ସେଥିରେ ସମସ୍ତେ ବସି ଚେନ୍ନିରାପଟୀ ଚାଲିଗଲେ ।

ତାପରଦିନ କ୍ଷେତଆଡେ ବୁଲିଗଲା ବେଳକୁ ଅକ୍କାମା ନିଜ ପୁଅର, ଶ୍ୟାମନ୍ନାର ଘର ଖପର ଭଙ୍ଗା ଉପାଖ୍ୟାନ ଶୁଣିଲା । ପୁଅର ରାଗର କାରଣ ମଧ୍ୟ ଜାଣିଲା । ଶ୍ୟାମନ୍ନା ଯେ ପୋଲିସ ଡକାଇ ତା ପୁଅକୁ ବନ୍ଧାଇଛି ଏ କଥା ଜାଣି ତାକୁ ବହୁତ ରାଗ ଲାଗିଲା । ରାତିରେ ଶ୍ୟାମନ୍ନାର ଘର ଆଗରେ ଠିଆ ହୋଇ ତା ବାପ ଅଜା ଚଉଦ ପୁରୁଷ ଉଖାଳିବାରେ ଲାଗିଲା । ବହୁତ ପ୍ରକାର ଗାଳି ଅଭିଶାପ ବର୍ଷଣ କରି ଚାଲିଲା ଏବଂ ତାର ବଂଶନାଶ ପାଇଁ ବାରମ୍ବାର ଦୁହାଇ ଦେଲା । ଲୋକେ ଏସବୁ ଶୁଣି ଏକାଠି ଗୁଣ୍ଡ ହେଲେ । ସମସ୍ତେ ଏହାର କାରଣ ସବୁ ବୁଝିଲେ ସୁଦ୍ଧା ପାଟି ଫିଟାଇଲେ ନାହିଁ । ଶ୍ୟାମନ୍ନା ଭିତର ପଟୁ ଦରଜା ବନ୍ଦ କରି ଦେଇଥାଏ । ବହୁତ ସମୟ ପରେ, ଘରେ ନାତୁଣୀ ଏକୁଟିଆ ଅଛି ବୋଲି ମନେ

Digitized by srujanika@gmail.com

ପଡିବାରୁ ଅକ୍କାମ୍ମା ଆଉ କେତେ ଗୁଡିଏ ଗାଳି ବର୍ଷଣ କରି ଘରକୁ ଫେରି ଆସିଲା ।

ଥାନାରେ ପହଞ୍ଚିଲାରୁ ହାବିଲଦାର କହିଲା -"ରାତିରେ ଏଠି ରହିଯାନ୍ତୁ, ସକାଳ ହେଲେ ସବ୍‌ଇନ୍‌ସପେକ୍ଟର ଆସି ବୟାନ୍ ରିପୋର୍ଟ ନେବେ ।" କଣ୍ଡୀକୋଇସ ମାନିଲେ ନାହିଁ । ଚଢ଼ା ଗଳାରେ ଫାଟିକଲେ - "ନା, ନା ଏବେ ତାଙ୍କୁ ଯାଇ ଡାକ ମୁଁ ତ କିଛି ଚୋରୀ କରିନାହିଁ ଯେ ଥାନା ହାଜତରେ ରହିବି । ତୁମର ଯାହା ପଚାରିବାର କଥା ବର୍ତ୍ତମାନ ପଚାର ।" ସ୍ୱାଙ୍କୁ ମାତ୍ର ମାରି ଚୁପ କରାଇବା ପାଇଁ ମଧ୍ୟ ପୁଲିସ ବାଲା ଡରିଲେ କାରଣ ସ୍ୱାଙ୍କର ବାଘୁଆ ପ୍ରକୃତି ବିଷୟରେ ତାଙ୍କୁ ଜଣାଥିଲା । ସବ୍‌ଇନ୍‌ସପେକ୍ଟର ଶୀଘ୍ର ଆସିଗଲେ । ଶ୍ୟାମନ୍ନା ସର୍ବରାକାର ଥିବା ହେତୁ ସେ ଜଣେ ସରକାରୀ କର୍ମଚାରୀ । ସେ ଥାନାରେ ରିପୋର୍ଟ କରିଥିଲା ଯେ, କଣ୍ଡୀକୋଇସ ତା ଚାଳ ଖପର ଭାଙ୍ଗିଛନ୍ତି ଏବଂ ଘର ଭିତରେ ଜବରଦସ୍ତ ପଶି ସର୍ବରାକାର ଖଜଣା ଅସୁଲି ଖାତା ଆଦି ନେଇଯାଇଛନ୍ତି । ଖାଲି ଖପର ଭଙ୍ଗା ଅଭିଯୋଗରେ ହୁଏତ ପୋଲିସ ଏତେ ଶୀଘ୍ର କେଶ ହାତକୁ ନେଇନଥାନ୍ତେ ଯଦି ସରକାରୀ କାଗଜ ଚୋରୀର ଅଭିଯୋଗ ସାଙ୍ଗରେ କରାଯାଇନଥାନ୍ତା । ଶ୍ୟାମନ୍ନା ଏ ଅଭିଯୋଗର ଏକ ନକଲ, ତାଲୁକା ଅମଲଦାର ସାହେବଙ୍କ ପାଖକୁ ମଧ୍ୟ ପଠାଇଥିଲା ।

"ମୁଁ ଏ ବିଷୟରେ କିଛି ଜାଣିନି । ମୁଁ ଘରକୁ ମୋଟେ ଯାଇନି ।ଏହା ସବୁ ମିଛ," କଣ୍ଡୀକୋଇସ ଏ ପ୍ରକାର ନିଜର ବୟାନ୍ ଦେଲେ । ତା ପରଦିନ ସ୍ଥାନୀୟ ମାଜିଷ୍ଟ୍ରେଟ୍ ଏବଂ ତାଲୁକା ଅମଲଦାର ସାହେବଙ୍କ ଆଗରେ ମଧ୍ୟ ଏହିପରି ବୟାନ୍ ଦେଲେ । ପୋଲିସ କେଶର ରିପୋର୍ଟ କଲେ ଏବଂ କଣ୍ଡୀକୋଇସଙ୍କୁ ମୁନିସିପାଲିଟିର ମେମ୍ବର ହନୁମନ୍ତ ସେଠୀ ଜାମିନ୍‌ରେ ଖଲାସ କଲେ ।ଗାଁକୁ ଫେରି କଣ୍ଡୀକୋଇସ, ଘାଡ଼ି ଘାଡ଼ି ବୁଲି, ନିଶ ମୋଡ଼ି ଘରକୁ ଫେରିଲେ । ତାଙ୍କର ବହୁତ ଇଚ୍ଛା ଥିଲା ଶ୍ୟାମନ୍ନାକୁ ଦାଣ୍ଡକୁ ଭିଡିଆଣି ବାଡିଆ ପିଟା କରିବେ, ହେଲେ କେଶ ହୋଇ ଥିବାରୁ ଚୁପ ରହିଲେ । କିଛିଦିନ ପରେ ନରସୀପୁର ଅଦାଲତରୁ ନୋଟିସ ଆସିଲା ।କଣ୍ଡୀକୋଇସ ପ୍ରସିଦ୍ଧ ଓକିଲ ଭେଙ୍କଟରାୟଙ୍କୁ ତାଙ୍କ ତରଫରୁ ନିଯୁକ୍ତ କଲେ । ଏହାପରେ ତିନିମାସ ପର୍ଯ୍ୟନ୍ତ ହାସନ୍‌ରୁ ହୋଳେନରସୀପୁର ପର୍ଯ୍ୟନ୍ତ ତାଙ୍କୁ ଘୋଡାରେ ଦୌଡିବାକୁ ପଡିଲା ।

ଯେଉଁଦିନ ସାକ୍ଷୀନେବା କଥା ଥିଲା ।' ସେଦିନ ସକାଳୁ ଓକିଲ ତାଙ୍କୁ ଡକାଇଥିଲା । ସେଥିପାଇଁ ପୂର୍ବଦିନ ରାତିଅଧରୁ ଘୋଡାଚଢି ବାହାରିପଡିଲେ । ଚେନ୍ନିରାୟପଟୀ ଡେଇଁ ଦେଖିଲେ ନଦୀରେ ପାଣି ଆସିଛି । କୌଣସି ପ୍ରକାରେ ନଦୀ ପାର ହୋଇ ସକାଳ ପୂର୍ବରୁ ଓକିଲ ଘରେ ପହଞ୍ଚିବା କଥା । ରାତି ଅଧ ହୋଇସାରି ଥିଲା । ଜହ୍ନରାତିରେ ଏତେ ପାଣିରେ ଘୋଡାକୁ ନେଇଯିବା ଠିକ୍ ହେବନାହିଁ । ନଦୀକୂଳରେ ସରକାରୀ ଡାକବଙ୍ଗଳା । ସେଠା ଚଉକିଦାରକୁ ଯାଇ ଉଠାଇ ପଚାରିଲେ - "ଡଙ୍ଗା ବ୍ୟବସ୍ଥା ହୋଇପାରିବ କି ?" ସେ କହିଲା - "ଦି ଦିନ ହେଲା ନଦୀରେ ବଢି ଆସିଛି, ଏବଂ ଏତେ ପାଣିରେ ଡଙ୍ଗା ଫିଟାଇବାକୁ ସମସ୍ତେ ଡରୁଛନ୍ତି ।" ହେଲେ ସେ କଣ ଡରିବା ଲୋକ । ଚଉକିଦାରକୁ ଟଙ୍କାଏ ଦେଇ ଘୋଡା ଉପରେ ନଜର ରଖିବାକୁ କହି ସେଇଠି ବାନ୍ଧି ଦେଲେ । ରୁପା ଟଙ୍କାର ଥଳୀଟାକୁ

Digitized by srujanika@gmail.com

ଅଣ୍ଟାରେ ବାନ୍ଧି ଦେଇ, କମିଜ କୋଟ୍ ଆଦି ଲୁଗାରେ ବାନ୍ଧି ମୁଣ୍ଡରେ ରଖିଲେ ଏବଂ ପହଁରି ପହଁରି ନଦୀ ପାର କରିବାକୁ ପ୍ରସ୍ତୁତ ହେଲେ । ଚଉକିଦାର ମନା କରିବା ସତ୍ତ୍ୱେ, ଗାଁଠାରୁ ଟିକିଏ ଆଗକୁ ଯାଇ ନଦୀରେ ପଶିଲେ । ପହଁରି ପହଁରି, ଅଧମାଇଲିଏ ତଳମୁଅରେ ଯାଇ ଆରପଟ କୂଳରେ ଉଠିଲେ, ଦେହ ଓ ଲେଙ୍ଗୁଟି ଓଦା ସରସର । ମୁଣ୍ଡ ଉପରେ ରଖିଥିବା ଲୁଗା ଗଣ୍ଠିଲିଟା ମଧ୍ୟ ଟିକିଏ ଓଦା ହୋଇଯାଇଥିଲା । କିଛିବାଟ ସେମିତି ଫୁଙ୍ଗୁଳା ଚାଲିବାପରେ ଦେହ ଶୁଖିଗଲା । ଲୁଗାପଟା ପିନ୍ଧିପକାଇ ଆଗକୁ ମାଡି ଚାଲିଲେ । ଆହୁରି ଆଠମାଇଲ ବାଟ ଯିବାକୁ ଅଛି । କୁକୁଡା ଡାକ ଦେବା ଆଗରୁ କଣ୍ଡାଜୋଇସ୍ ନରସାପୁରରେ ପହଞ୍ଚିଗଲେ । ନଦୀକୂଳରେ ନିତ୍ୟକର୍ମ ଏବଂ ସ୍ନାନ ଆଦି ସାରି ସୂର୍ଯ୍ୟୋଦୟ ପୂର୍ବରୁ ଓକିଲ ସାହେବଙ୍କ ଘରେ ପହଞ୍ଚି ସାରିଥିଲେ ।

ସେଦିନ ମୁଖ୍ୟ ସାକ୍ଷୀଙ୍କର ସାକ୍ଷ୍ୟ ଗ୍ରହଣ ହେବାର ଥିଲା । ସେଥିରୁ ଜଣେ ଥିଲା ଶ୍ୟାମନ୍ନାର ସ୍ତ୍ରୀ । କଚେରୀ ଆରମ୍ଭ ହେବା ପୂର୍ବରୁ କଣ୍ଡାଜୋଇସଙ୍କ ଓକିଲ ଶ୍ୟାମନ୍ନାର ସ୍ତ୍ରୀକୁ କଚେରୀ ବାହାରେ ଠିଆ ହୋଇଥିବାର ଖବର ଶୁଣି ତା ପାଖକୁ ଗଲେ । ପାଖରେ ଶ୍ୟାମନ୍ନା ମଧ୍ୟ ଠିଆ ହୋଇଥିଲା । ସାମନାରେ ଠିଆ ହୋଇଥିବା ଷଣ୍ଢର ଦେହ ଛୁଆଁଇ ଶପଥ କରାଇ ଓକିଲ କହିଲେ, "ଦେଖ ମିଛ କହିବୁ ତ, ତୋ ସ୍ୱାମୀ ଏବଂ ପୁଅ ଝିଅ ମରିଯିବେ ।" ଏହାଶୁଣି ଓ ଅକ୍କମ୍ମାର ଅଭିଶାପ କଥା ମନେ ପକାଇ ସେ କାନ୍ଦିବାକୁ ଲାଗିଲା । ତାପରେ କହିଲା, "କଣ୍ଡାଜୋଇସ୍ ଆମ ଘରେ ପଶି ପିଟଣା ନେଇ ଖପର ଭାଙ୍ଗିଛନ୍ତି । କାରଣ ମୁଁ ଶୁଣିଥିଲି ଯେ, ଆମ ସିଏ, ତାଙ୍କ ଘରକୁ ପଥର ଫିଙ୍ଗିବା ପାଇଁ ଦୁଇଚାରିଜଣ ଲୋକ ପଠାଇଥିଲେ ଯେତେବେଳେ କଣ୍ଡାଜୋଇସଙ୍କ ଛଡା ଗାଁରେ କେହି ନଥିଲେ । ସେଥିପାଇଁ ସେ ଆସି ଆମ ଚାଳ ଭାଙ୍ଗିଲେ ।" ଶ୍ୟାମନ୍ନା ଯେତେବେଳେ ତା ସ୍ତ୍ରୀକୁ ଏପରି କଟ୍‌ମଟ୍ କରି ଚାହୁଁଥିଲା ସତେ ଯେପରି ତାକୁ ଖାଇଯିବ । ଓକିଲ ପୁଣି ପଚାରିଲା -"ଭଉଣୀ ସତ ସତ କରି କହ, ତୁ ଭଗବାନଙ୍କ ରାଣ ଖାଇକୁ କଣ ଏହା ସତ ଯେ କଣ୍ଡାଜୋଇସ୍ ତୁମ ଘରେ ଖଜଣା ଆଦାୟ ଖାତା ସବୁ ନେଇଯାଇଛନ୍ତି ?"

"ପୁରା ମିଛ, ସେ କିଛି ନେଇ ନାହାନ୍ତି । ମୁଁ ସେଇଠି ଠିଆ ହୋଇଥିଲି । ପରେ ଖବର ନେବାରେ ଜଣାପଡିଲା ଯେ ସେଦିନ ଗାଁକୁ ଫେରି ଶ୍ୟାମନ୍ନା ତା ସ୍ତ୍ରୀକୁ ଖୁବ୍ ପାନେ ଦେଇଥିଲା ।

ସାକ୍ଷ୍ୟ ଦେବାପାଇଁ ଶ୍ରବଣବେଲଗୋଳ ସହରରୁ ଜଣେ ପୋଲିସ୍ ହାବିଲଦାର ଆସିଥିଲେ । ତାଙ୍କ ଅନୁସାରେ ଏ କାଣ୍ଡ ଘଟିଥିବା ଦିନ କଣ୍ଡାଜୋଇସଙ୍କୁ ଦିନ ତିନିଟା ବେଳେ ସେ ହାସନ୍ ସହରରେ ଦେଖିଥିଲା ଏବଂ କଥାବାର୍ତ୍ତା ହୋଇଥିଲା । ଅଭିଯୋଗ ଅନୁସାରେ ଦିନ ତିନିଟା ବେଳେ କଣ୍ଡାଜୋଇସ୍ ଖପର ଭାଙ୍ଗିଥିଲେ ଏବଂ ହିସାବ ଖାତା ନେଇଯାଇ ଥିଲେ ।

କୋର୍ଟର ନିଷ୍ପତ୍ତି ଶୁଣାଣି ଦିନ ଶ୍ୟାମନ୍ନା ମଧ୍ୟ ଆସିଥିଲା । କଣ୍ଡାଜୋଇସ୍ ତ ଆଗରୁ ଆସିଥିଲେ । ଠିକ୍ ଗୋଟାଏବେଳେ ଜଜ୍ ନିଷ୍ପତ୍ତି ଶୁଣାଇଲେ - "ବାଦୀପକ୍ଷର ସ୍ତ୍ରୀ କହୁଛି ଯେ ଖଜଣା ହିସାବ ଖାତା

Digitized by srujanika@gmail.com

ଆଦି ପ୍ରତିବାଦୀ ମୋଟେ ଛୁଇଁ ନାହିଁ । ବରଂ ପ୍ରତିବାଦୀ ଘରକୁ ପଥର ଫିଙ୍ଗାଇବା କାମ ବାଦୀ କରିଥିଛି । ଏବଂ ତାର ପ୍ରତିବାଦ ସ୍ୱରୂପ ଚାଳରୁ ଖପର ଇତ୍ୟାଦି ଭାଙ୍ଗିଥିବେ । କିନ୍ତୁ ମୁଖ୍ୟ ଅଭିଯୋଗ ହେଉଛି ଖଜଣା ଖାତା ଚୋରି । ଏ ସମ୍ବନ୍ଧରେ ଶ୍ରବଣବେହେରାଗୋଳର ପୋଲିସ୍ ହାବିଲଦାରର ବକ୍ତବ୍ୟ ଅନୁସାରେ ଏ ଘଟଣା ଘଟିବା ସମୟରେ ପ୍ରତିବାଦୀ ହାସନ୍ ସହରରେ ଥିଲା । ଏସବୁ କଥାକୁ ଧ୍ୟାନରେ ରଖି ଅଦାଲତ ଏ ନିଷ୍ପତ୍ତିରେ ପହଞ୍ଚିଛି ଯେ ଏ ଅଭିଯୋଗରେ ତିଳେହେଲେ ସତ୍ୟତା ନାହିଁ । ଏ ଦୁହିଁଙ୍କର ପରସ୍ପର ବିଦ୍ୱେଷ ଯୋଗୁଁ ଏପରି ଛୋଟବଡ କନ୍ଦଳ ସୃଷ୍ଟି ହୋଇଥାଇ ପାରେ । ତେଣୁ ଏ କେଶ୍‌କୁ ଖାରଜ କରାଗଲା ।''

## 7

କଣ୍ଠୀଜୋଇସ୍ ଓକିଲକୁ ଦେବାପାଇଁ ପଚାଶ ଟଙ୍କା ଆଣିଥିଲେ । ଓକିଲ ଘରକୁ ଯାଇ ଟଙ୍କା ଦେବାକଥା । ହୋଟେଲରେ ଖାଇବା ପାଇଁ ବାହାରିପଡିଲେ । ଘୋଡାରେ ବସି କିଛି ବାଟ ଯାଇଛନ୍ତି କି ନାହିଁ, ରାସ୍ତାରେ ଶ୍ୟାମନ୍ନାକୁ ଦେଖି ତାଙ୍କର କ୍ରୋଧଅଗ୍ନି ଜଳି ଉଠିଲା । ପାଟିକରି ଉଠିଲେ -''ଆବେ ଶଳା କେଶ୍‌କରି ମୋର କଣଟା ଓଲଟାଇ ପକାଇଲୁ ?'' ଘୋଡାରୁ ଓହ୍ଲାଇ ତା ସାମନାରେ ଠିଆ ହେଲେ । ଶ୍ୟାମନ୍ନା ସେତେବେଳକୁ ଡରରେ ଥରଥର । କଣ୍ଠୀଜୋଇସ୍ ଡାହାଣ ଗୋଡରୁ ଜୋତା ଖୋଲି ତା ମୁଣ୍ଡ ଉପରେ ପ୍ରହାର କଲେ । ଶ୍ୟାମନ୍ନା ମଧ୍ୟ ହାତ ଉଠାଇଥିଲା । କିନ୍ତୁ କଣ୍ଠୀଜୋଇସ୍ ନିଜର ସାରା ଶକ୍ତି ଲଗାଇ ଜୋରରେ ଧକ୍କା ଦେଲେ ଯେ, ଶ୍ୟାମନ୍ନା ଚଳେ କଟାଡି ହୋଇ ପଡିଲା । ତା ନାକପାଟି ରକ୍ତ ବୋହୁଥାଏ, ଏବଂ ସେ ବେହୋଶ ହୋଇଗଲା, କଣ୍ଠୀଜୋଇସ୍ ରାଗରେ ଅଗ୍ନିଶର୍ମା । କିନ୍ତୁ ରକ୍ତ ଦେଖି ତାଙ୍କର ମଧ୍ୟ ମନରେ ଡର ପଶିଲା । ପଛଆଡୁ ହଠାତ୍ ଶୁଭିଲା -''ଧର, ଧର ମାରିଦେଲା ଲୋକଟାକୁ ।'' କଣ୍ଠୀଜୋଇସ୍ ବୁଲି ଦେଖନ୍ତି ତ ସେଇ ଜଜସାହେବ ଠିଆ ହୋଇଛନ୍ତି । ପୋଲିସ୍ ଦୌଡି ଆସିଲେ । କିନ୍ତୁ ଆଖିପିଛୁଳାକେ କଣ୍ଠୀଜୋଇସ୍ ଘୋଡା ଉପରେ କୁଦିପଡି ଚାବୁକ୍ କଷିକରି ମାରିଲେ । ଘୋଡା ତୀର ବେଗରେ ଛୁଟି ଚାଲିଲା । ପୋଲିସ୍ ଆଉ ଦଶହାତ ଆଗକୁ ଥିଲେ ସେ ପଳାଇପାରିନଥାନ୍ତେ । କିନ୍ତୁ ଘୋଡା ଛୁଟାଇ ପଳାଇଗଲେ ଯେ ଆଉ ପଛକୁ ବୁଲି ଦେଖିନାହାନ୍ତି । ଦିନଯାକ ଘୋଡା ଦୌଡାଇ ସନ୍ଧିବେଳକୁ ବରଗୁରରେ ପହଞ୍ଚିଲେ । ଭାବିଲେ ଏଥର ନିଜେ ଜଜ୍ ସାହେବ ତାଙ୍କ କାଣ୍ଡ ଦେଖିଛନ୍ତି । ତେଣୁ ଓକିଲ ମଧ୍ୟ କିଛି କରିପାରିବ ନାହିଁ । ସେ ବର୍ତ୍ତମାନ ଖୁଣୀ ଏବଂ ଖୁଣୀକୁ ରାଜ୍ୟସାରା ପୋଲିସ୍ ଖୋଜିବେ । ସେ ଭାବିଲେ ସବୁଠୁ ଭଲ ହେବ ଘୋଡାଟା ଛାଡିଦେଲେ, ଏବଂ ତାପରେ ଏ ରାଜ୍ୟ ଛାଡି ଚାଲିଯିବେ । ଫେର ଭାବିଲେ ଘୋଡାଟାକୁ ଛାଡିବେ କେଉଁଠି । ଆଉ କିଛି ଦୂର ଯାଇ ପୁଣି ଭାବି, ନାଗଲାପୁର ଆଡେ ଘୋଡା ମୁହାଁଇଲେ । ଗାଁ ସେଠୁ ଚାରିମାଇଲ ଦୂର ଏବଂ ଘୋଡା ମଧ୍ୟ ରାସ୍ତା ସହିତ ପରିଚିତ । ହାଲିଆ ହେଲେ ମଧ୍ୟ ଘରମୁହାଁ ଯୋଗୁଁ

Digitized by srujanika@gmail.com

ଗାଁରେ ନିଶ୍ଚୟ କୌଣସି ମତେ ପହଞ୍ଚିଯିବ । ସେଇଠି ଘୋଡାକୁ ଗାଁ ଆଡକୁ ବାଟେଇ ଦେଇ, ନିଜେ ଅନ୍ୟ ଦିଗରେ ଚାଲିଲେ । ବାଟରେ ଗାଁଟିଏ ପଡିଲା । ସେଠାରେ ଥିବା ଲୁଗା ଦୋକାନରୁ ହଳେ ନୂଆ ଧୋତି କିଣିଲେ ଏବଂ ପାଖ ଦୋକାନରୁ ଚୂନ ଓ ହଳଦୀ ଗୁଣ୍ଡ କିଣିଲେ ଏବଂ ଗୋଟିଏ ଦିଆସିଲି ମଧ୍ୟ କିଣି, ବିଲ ମଝିରେ ଥିବା ଗୋଟିଏ କୁଅ ମୂଳରେ ନୂଆ ଧୋତି ଦୁଇଟା ବତୁରାଇଲେ ଏବଂ ଚୂନ ହଳଦୀ ମିଶାଇ ଗେରୁଆ ରଙ୍ଗ କରିଦେଲେ । ରାତିସାରା ମୁଣ୍ଡରେ ଓଦା ଲୁଗା ପକାଇ ଚାଲିଲେ । ଶୁଖିଯିବାରୁ ପାଖରେ ଥିବା ନଦୀବାଲିକୁ ଯାଇ ନିଜର କୋଟ ଧୋତି ଆଦି ବଦଳାଇ ଗେରୁଆ ଧୋତି ପିନ୍ଧି ଆରଟା ମୁଣ୍ଡରେ ବାନ୍ଧି ପକାଇଲେ । ପୁରୁଣା ଲୁଗା, କମିଜରେ ଡିଆସିଲି ଜଳାଇ ନିଆଁ ଲଗାଇଦେଲେ । ପୁରା ଜଳି ପାଉଁଶ ହୋଇଯିବାପରେ , ବାଲିରେ ପାଉଁଶଟକ ପୋତି ପକାଇଲେ । ଅଣ୍ଟାରେ ବଳିଥିବା ଟଙ୍କା ତକ ଖୋସି ଆଗକୁ ମାଡି ଚାଲିଲେ । କିଛି ସମୟପରେ 'ଆରସୀକରେ' ରେଳ ଷ୍ଟେସନ୍‌ରେ ଯାଇ ପହଞ୍ଚିଲେ । ପଚାରି ବୁଝିଲେ ଯେ ହୁବଳୀ ଯିବା ପାଇଁ ରେଳ ଗାଡି ପାହାନ୍ତିଆ ବେଳକୁ ଆସିବ । ଗାଡି ଆସିବା ପର୍ଯ୍ୟନ୍ତ ଅପେକ୍ଷା କରି ଟ୍ରେନ୍‌ରେ ବସିପଡିଲେ । ପ୍ରଦେଶର ସୀମା ପାର ହେଲାପରେ ଇଂରେଜ ସରକାରଙ୍କ ରାଜ୍ୟ ଆରମ୍ଭ ହେଲା । ମନେ ମନେ ଭାବିଲେ, "ଆଉ ମୋର କେହି କିଛି କରି ପାରିବେ ନାହିଁ ।"

## 8

ଆଠମାସ ଏକାଦିକ୍ରମେ ଚିକିତ୍ସା ସତ୍ତ୍ୱେ ମଧ୍ୟ କଳେଶର ବାଁ ହାତଟା ଠିକ୍ ହେଲା ନାହିଁ । ସେ ହାତରେ କୌଣସି ଭାରୀ ଜିନିଷ ଉଠାଇ ପାରୁନଥାଏ କିମ୍ବା ଭିତ କାମ କରିପାରୁନଥାଏ । ଗୋଟାଏ ହାତରେ ଠିକ୍‌ଭାବେ ସାଇକେଲ ଚଳାଇ ପାରିଲା ନାହିଁ । ଶାରୀରିକ ଅଯୋଗ୍ୟତା ଯୋଗୁଁ ତାକୁ ପୋଲିସ୍ ଚାକିରୀରୁ ବାହାର କରିଦିଆ ଗଲା । ପୋଲିସ୍ ଚାକିରୀ କଲାଦିନ୍‌ଠୁ ଉପୁରି ପଇସା ଖୁବ୍ ମିଳୁଥିଲା ଏବଂ ଭରି ମଉଜରେ ଦିନ କାଟୁଥିଲା । ବର୍ତ୍ତମାନ ଘରେ ଆସି ପୁଣି ଜମିବାଡି ଚାଷବାସ କଥା ବୁଝିବାକୁ ପଡିବ । ସେତକ ମଧ୍ୟ ଠିକ୍‌ଭାବେ ବୁଝାଶୁଣା କଲେ ତାର ଚିନ୍ତା ରହନ୍ତା ନାହିଁ । ଏ ଭିତରେ ତାକୁ ଖବର ମିଳିଲା ଯେ ତା ବାପା ଶ୍ୟାମନ୍ନାର କେଶ୍ ଜିଣିଯାଇଥିଲେ, କିନ୍ତୁ କେଶର ଶୁଣାଣୀ ପରେ ଶ୍ୟାମନ୍ନାକୁ ମାଡ ମାରି ବେହୋସ୍ କରି କେଉଁଆଡେ ଫେରାର ହୋଇଯାଇଛନ୍ତି । ପ୍ରକୃତରେ କିନ୍ତୁ ଶ୍ୟାମନ୍ନା ମରିନଥିଲା । ଡାକ୍ତର ଆସିବା ପୂର୍ବରୁ ତାର ହୋସ୍ ଫେରିଆସିଥିଲା କିନ୍ତୁ ଯୋଟାମାଡରେ ଛାମୁ ଦାନ୍ତ ଦୁଇଟା ଭାଙ୍ଗି ଯାଇଥିବାରୁ ବହୁତ ରକ୍ତ ବୋହିଥିଲା । କଣ୍ଠୀଜୋଇସ୍ ଭାବିଥିଲେ ଶ୍ୟାମନ୍ନା ମରିଯିବ, ତେଣୁ ଡରିକରି ପଳାଇଲେ । ଏଥର କିନ୍ତୁ, କଣ୍ଠୀଜୋଇସ୍‌ଙ୍କ ଉପରେ କେଶ୍ କରିବାକୁ ଶ୍ୟାମନ୍ନା ରାଜି ହେଲା ନାହିଁ । କେଶ୍ କଲେ ତାଙ୍କୁ ଜେଲ ହୋଇପାରେ, କିନ୍ତୁ ଜେଲରୁ ଫେରି ଯଦି ଘରେ ନିଆଁ ଲଗାଇଦିଏ, ଏହିପରି ଭୟପୂର୍ଣ୍ଣ ଚିନ୍ତା କରି କେଶ୍ କରିବାକୁ ରାଜି ହେଲା ନାହିଁ ।

Digitized by srujanika@gmail.com

ଏଣେ କଣ୍ଡୀକୋଇସ୍ଙ୍କ ଘୋଡା ଗାଁରେ ପହଞ୍ଚିଗଲା । ବୁଢ଼ୀମା' ଓ ନଷ୍ଟିଙ୍କା ମିଶି ତାକୁ ଗୁହ୍ଳାଳରେ ବାନ୍ଧିଲେ । ସେମାନେ ବୁଝିପାରିଲେନି କଣ୍ଡୀକୋଇସ୍ ଗଲେ କୁଆଡେ । କିଛିଦିନ ପରେ କଲ୍ଲେଶ ମଧ୍ୟ ଘରକୁ ଆସିଲା । ଚାକିରୀରୁ ବରଖାସ୍ତ ହେବା ପରେ ସେ ମଧ୍ୟ ବାପାଙ୍କ ବିଷୟରେ କିଛି କହି ପାରିଲା ନାହିଁ ।

ଛଅମାସ ଗଲାପରେ ମଧ୍ୟ କଣ୍ଡୀକୋଇସ୍ଙ୍କର କୌଣସି ଖବର ମିଳିଲା ନାହିଁ । ଏ ମଧ୍ୟରେ କଲ୍ଲେଶର ସ୍ତ୍ରୀ ରତ୍ନମତୀ ହୋଇଯାଇଥିବାରୁ ଆଉ କଣ୍ଡୀକୋଇସ୍ଙ୍କୁ ଅପେକ୍ଷା ନକରି ବୋହୂକୁ ଘରକୁ ନେଇଆସିବା ପାଇଁ ବୁଢ଼ୀମା' ମତଦେଲା । ଦିନ ଠିକ୍ କରାଗଲା । କଲ୍ଲେଶ ରାମଚନ୍ଦ୍ର ଗାଁକୁ ଯାଇ ଉଉଣୀ, ଭିଣୋଇ ଓ ଭାଣିଜିକୁ ଧରି ଆସିଲା । ସମସ୍ତେ ଶଗଡ଼ ଗାଡ଼ିରେ ବସି କଲ୍ଲେଶର ଶ୍ୱଶୁର ଘର ହାସନ୍ ଯିବାପାଇଁ ବାହାରି ପଡ଼ିଲେ ।

ଶ୍ୱଶୁର ଘରକୁ ଆସି କମଳା କଲ୍ଲେଶକୁ ତା' ପାଖରେ ପଶିବାକୁ ଦେଉ ନଥାଏ । ରାତିରେ କଲ୍ଲେଶ ଯେତେ ଫୁସୁଲାଇଲେ ମଧ୍ୟ ତା କଥା ଶୁଣିଲା ନାହିଁ । ଘରର ଗୋଟେ କୋଣରେ ଜାକିଜୁକି ହୋଇ ମୁହଁ ଡଳକୁ କରି ବସିଲା । ତାପର ଦିନ ରାତିରେ ବହୁତ ବାଧ୍ୟ କରି ପଚାରିଲାରୁ କହିଲା- "ମୁଁ ଗାଁରେ ଯାଇ ଚଳି ପାରିବି ନାହିଁ ।" କଲ୍ଲେଶ ତା ମନ କଥା ବୁଝିଲା । ହେଲେ ବର୍ତ୍ତମାନ କ'ଣ କରାଯାଇପାରେ । ତାକୁ ବୁଝାଇ କହିଲା -"ଗାଁ ହେଲେ କଣ ହେଲା ସେଠି ଆମର ଦୁଇ ଦୁଇଟା ଗାଈ ଦୁଧ ଦେଉଛନ୍ତି । ଏଠା ଭଳିଆ ଦୁଧ ଘିଅର ଅଭାବ ନାହିଁ । ଧାନ, ମୁଗ ଫସଲରୁ ବହୁତ କିଛି ମିଳେ । ଏହାଛଡା ଦକ୍ଷିଣାରୁ ମଧ୍ୟ ବେଶ୍ ଆଦାୟ ହୁଏ ।"

"ସେ ଯାହାହେଲେ ମଧ୍ୟ ମୁଁ ଗାଁରେ ରହି ଚଳିପାରିବି ନାହିଁ ।"

"ସରକାରୀ ଚାକିରିଟା ଯଦି ଥାଆନ୍ତା ତେବେ କଣ ସହରରେ ରହିନଥାନ୍ତେ ? କିନ୍ତୁ ଭାଗ୍ୟ କଥା । ଏବେ ଗାଁରେ ଯାଇ ଚାଷବାସ କଲେ ଆରାମରେ ଚଳିବା ।"

"ଆଉ ଅନ୍ୟ କିଛି ସରକାରୀ ଚାକିରି ଖୋଜୁନ କାହିଁକି ?" କାନ୍ଥ ଆଡ଼କୁ ମୁହଁ କରି ତା ସ୍ତ୍ରୀ କମଳି କହିଲା ।

"ଦେଖିବା ଏ ସର୍କଲରେ ସିନା ହାତ ଖରାପ ଥିବାରୁ ବାହାର କରିଦେଲେ, ଅନ୍ୟ କେଉଁ ସର୍କଲରେ ବୁଝିବା ।"

"ସେ କଥା ମୁଁ ଜାଣିନି ।"

କଲ୍ଲେଶ ଏଥର ରାଗ ସମ୍ଭାଳି ନପାରି ସ୍ତ୍ରୀର କାନକୁ ଜୋରରେ ମୋଡ଼ିଦେଲା । ସବୁ ବନ୍ଧୁବାନ୍ଧବ ଘରେ ଥିଲେ, ତେଣୁ ବେଶି ପାଟିତୁଣ୍ଡ କରିବା ଠିକ୍ ହେବ ନାହିଁ ବୋଲି ଭାବିଲା । ଏହା ଛଡା ଭାବିଲା

Digitized by srujanika@gmail.com

ଯେ ସେ ଯେତେବେଳେ ଡାକ୍ତରଖାନାରେ ପଡିଥିଲା ତା ଶାଶୁଘର ଲୋକେ ତାର ବହୁତ ସେବା କରିଥିଲେ । ତାର ହାତଟା ଭଲ କରିବା ପାଇଁ ଶ୍ୱଶୁର କେତେ ଚେଷ୍ଟା ନ କରିଛନ୍ତି । ସେମାନଙ୍କ ମନଦୁଃଖ ହେବ ଭାବି ଆଉ ଗୋଳମାଳ ସୃଷ୍ଟି ନ କରିବା ପାଇଁ ଭାବିଲା ।

ତା'ପରଦିନ ବୋହୂକୁ ନେଇଯିବା ପାଇଁ ଯେତେବେଳେ ସଜବାଜ କରାହେଲା କମଳି ତା ମା ଆଗରେ କହିଲା –"ମୁଁ ସେ ଗାଁକୁ ଯିବି ନାହିଁ ।"

"ଚୁପ୍ କର, ଏମିତି କହନି, ଲୋକେ ହସିବେ ।" ଆଉ କିଛି ତା ମା କହିଲେନି । ସେ ଭାବିଲେ ପ୍ରଥମଥର ଶାଶୁଘରକୁ ଗଲାବେଳେ ଝିଅମାନେ ଏପରି କହିବା ସ୍ୱାଭାବିକ । କମଳିର ବାପା, ମା, ଭାଇ, ଭଉଣୀ ସମସ୍ତେ ମିଶି କମଳିକୁ ନେଇ ନାଗଲାପୁର ଗଲେ । ତାକୁ ସେଠି ଛାଡି ଚାରିଦିନ ପରେ ଫେରିଆସିଲେ । ସେଦିନ ନନ୍ଦିକା ମଧ୍ୟ ତା ସ୍ୱାମୀ ଓ ଝିଅକୁ ଧରି ତା ଶାଶୁଘରକୁ ଫେରିଗଲା । ସେଦିନ ରାତିରେ କମଳି ପୁଣିଥରେ ସହରକୁ ଚାଲିଯିବା ପାଇଁ କହିଲା । କଳେଶ ତାକୁ ବୁଝାଇବା ପାଇଁ କହିଲା - "ତୁ ତ ଦେଖୁଛୁ ଏ ଘରେ କୌଣସି ଜିନିଷର ଅଭାବ ନାହିଁ । ଏତେ ଘିଅ, ଦୁଧ, ଦହି ଏବଂ ପନିପରିବା ତମର ହାସନ୍ ସହରରେ କଣ ମିଳିବ ?"

"ଏକଥା ମୁଁ ଜାଣିନି ।" ଚକ୍ଷୁକୁ ମୁହଁ ପୋଡି ତା ସ୍ତ୍ରୀ କହିଲା । ସ୍ତ୍ରୀର ଏପରି ମନୋଭାବ ଦେଖି କଳେଶ ଖୁବ୍ ରାଗିଗଲା ଏବଂ ତାକୁ ଖୁବ୍ ଜୋରରେ ମାରିଲା, ଘର ଭିତରୁ ଶବ୍ଦ ଶୁଣି ଅକ୍କାମ୍ମା ନିଦରୁ ଉଠି ଡାକିଲା -" ଆରେ କଣ ହେଲା ?"

"ହାରାମଜାଦି, କଣ ବୋଲି ଭାବିଛି କି ନିଜକୁ ? ଆମେ ଯେମିତି ସତେ ଆଉ ସହର ଦେଖିନୁ ?" ଏକଥା କହି ରାଗରେ ତମତମ ହୋଇ ମଶିଣା ଖଣ୍ଡେ ଧରି ବାହାରପାଖ ବାରଣ୍ଡାରେ ଆସି ଶୋଇଲା କଳେଶ । ଅକ୍କାମ୍ମା ତାଠାରୁ ସବୁ ଶୁଣିସାରି କହିଲା, "ଏଠି ତୋର କିଛି ଅଭାବ ରହିବ ନାହିଁ, ତତେ କଣ ଆମେ କଷ୍ଟ ଦେବାକୁ ଆଣିଛୁ କି ? ସୁଖ ଶାନ୍ତିରେ ଚଳିବାକୁ ଚେଷ୍ଟାକର ।"

"ମତେ ଏ ଗାଁଟା ମଶାଣିପରି ଲାଗୁଛି ।" କାନ୍ଦି କାନ୍ଦି କମଳି କହିଲା ।

ଅକ୍କାମ୍ମା ତାକୁ କେମିତି ବୁଝାଇବ ଭାବିପାରିଲା ନାହିଁ । ବିବାହ ପ୍ରସ୍ତାବ ହେଲା ଦିନଠାରୁ ଏମିତି ଅଘଟଣ ହେବ ବୋଲି ସେ ସନ୍ଦେହ କରୁଥିଲା । କିନ୍ତୁ, କଣ୍ଠାତ ନିଜ ମନଇଚ୍ଛା କନ୍ୟା ଠିକ୍ କରିଥିଲା । ବର୍ତ୍ତମାନ୍ କୌଣସି ପ୍ରକାରେ ଚଳାଇ ନେବାକୁ ହେବ । ଅନ୍ୟ ଉପାୟ୍ ନାହିଁ । ଯେତେ ବୁଝାଇଲେ ନ ବୁଝିବାରୁ ଅକ୍କାମ୍ମା ବାହାରକୁ ଆସି ଶୋଇପଡିଲା । କଳେଶକୁ ମଧ୍ୟ ନିଦ ଆସିଗଲା । ସକାଳୁ ଉଠି ଗାଧୋଇ ପାଧୋଇ କଳେଶ ଜଳଖିଆ କରି ବାପାଙ୍କ ଘୋଡାରେ ବସି ଶ୍ରବଣବେଳଗୋଳ ଗାଁକୁ ଯିବାପାଇଁ ବାହାରି ପଡିଲା । ସେ ଗାଁରେ ତାର ଅନେକ ଚିହ୍ନା ପରିଚିତ ଲୋକ ଥିଲେ ।

Digitized by srujanika@gmail.com

# ପଞ୍ଚମ ଅଧ୍ୟାୟ

## 1

ସାବୁ ପାଞ୍ଚମାସ ଗର୍ଭବତୀ ହେଲାପରେ ତା ବାପା ଆସି ତାକୁ ଗାଁକୁ ନେଇଗଲେ । ଏ ଭିତରେ ନନ୍ଦିକା ମଧ୍ୟ ପୁଣିଥରେ ଗର୍ଭବତୀ ହୋଇଯାଇଥାଏ ।

ଚେନ୍ନିଗରାୟଙ୍କୁ ଖଜଣା ହିସାବ କାର୍ଯ୍ୟରେ ସାହାଯ୍ୟ କରିବାପାଇଁ ତିମଲାପୁରର ସର୍ବାଧିକାର ଦ୍ୟାବରୟ୍ୟା ତାଠାରୁ ପଚାଶଟଙ୍କା କରି ନେଉଥିଲେ । ତାଙ୍କ ବୟସ ସେତେବେଳକୁ ଷାଠିଏ ପାର ହୋଇଯିବଣି । ନିଜକାମ ସାରି ରାମଚନ୍ଦ୍ର ଗାଁର ହିସାବ ଲେଖନ୍ତି । ଧିରେ ଧିରେ ଚେନ୍ନିଗାର ପରିବାର ପ୍ରତି ତାଙ୍କ ମନରେ ଗୋଟିଏ ପ୍ରକାର ଆନ୍ତରିକତା ଜାତ ହୋଇଥିଲା । ଦେଖିବାକୁ ଗଲେ ଏ ପରିବାରର ପ୍ରାୟ ସମସ୍ତେ ମୂର୍ଖ କିନ୍ତୁ ବଡ ବୋହୂ ନନ୍ଦିକାର ଗୁଣ ଓ ସ୍ୱଭାବରେ ସେ ଅତ୍ୟନ୍ତ ପ୍ରୀତ ଅନୁଭବ କରୁଥିଲେ ।

ଦିନେ ଘରେ ନନ୍ଦିକା ଛଡା ଆଉ କେହିନଥିଲେ । ଚେନ୍ନିଗା ଗୁଣ୍ଡିପତ୍ର ପାଟିରେ ପକାଇ ସାମ୍ନା ମନ୍ଦିର ବେଢାରେ ମହାଦେବୟ୍ୟାଙ୍କର ଭଜନ ଶୁଣୁଥିଲା । ଅପନ୍ନା କେଉଟ ସାହିରେ କାହା ଦୁଆରେ ବସି ବିଡି ପିଉଥିଲା ଏବଂ ଗଙ୍ଗାମ୍ମା ରାଶି ପେଡେଇବା ପାଇଁ ଚେଲି ଘରକୁ ଯାଇଥିଲା । ଦ୍ୟାବରୟ୍ୟା ନନ୍ଦିକାକୁ ପାଖକୁ ଡାକି କହିଲେ - "ଦେଖ ଝିଅ, ମତେ ଆସି ବହୁତ ବୟସ ହୋଇଗଲାଣି । ଅତିବଡ ହେଲେ ଆଉ ଦୁଇବର୍ଷ ଖଣ୍ଡେ ଏ ହିସାବ କିତାବ କାମ କରିପାରିବି । ଆମ ଚେନ୍ନିଗା ହିସାବପତ୍ର କଥା ତ ଶିଖିଲା ନାହିଁ । କଣ କରିବା କହ ।"

"ମାମୁଁ, ଆପଣ ତାଙ୍କୁ ସବୁ ବିଷୟ ସଫା ସଫା ବୁଝାଇ ଦିଅନ୍ତୁ ।"

"ଆଲୋ ଝିଅ, ଏ ହିସାବ କିତାବରେ ଏମିତି କଣ ଅଛି ଯେ ଆଉ ବୁଝାଇବି ? ଯିଏ ହୋନ୍ନବଳୀ ସୀତାରାମଙ୍କ ପାଖରେ ତିନିବର୍ଷ ପଢି ମଧ୍ୟ କିଛି ଶିଖିପାରିଲା ନାହିଁ ତାକୁ କେହି ଶିଖାଇପାରିବ ନାହିଁ । କେତେବର୍ଷ ହେଲା ମୁଁ ତମର ଏ ଲେଖା ପଢା କରି ଆସୁଛି । କିନ୍ତୁ ଦିନେ ମୋ ପାଖରେ ବସି ଲେଖିବାର ଦେଖିଲିନି । ହିସାବ ଲେଖୁ ଲେଖୁ ସିନା ଶିଖନ୍ତି । ଏମିତି କେତେଦିନ ଅନ୍ୟାକୁ ଟଙ୍କା ଦେଇ

Digitized by srujanika@gmail.com

କାମ କରାଇବେ ?'' ନଷ୍ଟିଳା ମଧ୍ୟ ଏକଥା ବହୁତ ସମୟ ଚିନ୍ତା କରିଛି । କିନ୍ତୁ ସିଏବା କଣ କରିବ । କହିଲା -''ମାମୁଁ ତୁମେତ ମୋ କପାଳ କଥା ଜାଣିଛ । ମୁଁ କଣ କରି ପାରିବି ।''

''ତତେ ତ ଲେଖାପଢା ବେଶ୍ ଆସୁଛି । ତୋର ଗାତ ବହି ମୁଁ ଦେଖିଛି । କେତେ ସୁନ୍ଦର ଗୋଲ ଗୋଲ ଅକ୍ଷରରେ, ଲେଖିଛୁ ତୁ ଯଦି ଚାହୁଁ ମୁଁ ତତେ ଏ ହିସାବ ପତ୍ର ବୁଝାଇ ଦେବି । ଘରେ ବସି ଲେଖିବା କଥା ତ । ହିସାବ ଦାଖଲ ବେଳକୁ ଚେମ୍ପିଗରାୟ ଯାଇ କରି ଆସିବ । ନହେଲେ ଏ ଘରର ଭବିଷ୍ୟତ ବଡ ଅନ୍ଧକାର ମୟ ।''

''ସ୍ତ୍ରୀ ଲୋକମାନଙ୍କର ସରକାରୀ ହିସାବ ପତ୍ର କରିବାର କଣ ଅଧିକାର ଅଛି ?''

ଏ ପ୍ରଶ୍ନର ଉତ୍ତର ଦ୍ୱାବରସୟା ଶୀଘ୍ର ଦେଇପାରିଲେ ନାହିଁ । ସରକାରଙ୍କ ନିୟମ ଏ ବିଷୟରେ କଣ ତାହା ତାଙ୍କୁ ଜଣାନଥିଲା । ତଥାପି କହିଲେ -''ତୁ ତ ସର୍ବରାକାର ହିସାବରେ କାର୍ଯ୍ୟ କରୁନାହୁଁ । କେବଳ ଘରେ ବସି ହିସାବପତ୍ର ଦେଖିବୁ । ହାକିମ କିପରି ଜାଣିବ ଯେ ପୁରୁଷ ଲୋକ ଲେଖିଛି ନା ସ୍ତ୍ରୀ ଲୋକ ଲେଖିଛି । ତୁ କାହାକୁ ନକହି ଏ କାମ ଶିଖିଯା ।''

ଏହାପରେ ଧିରେ ଧିରେ ଦ୍ୱାବରସୟା ନଷ୍ଟିଳାକୁ ରୁଲବାଡି ସାହାଯ୍ୟରେ ଗାର ପକାଇବା ଇତ୍ୟାଦି କାମ ଶିଖାଇଲେ । ପ୍ରଥମେ ତା ହାତରେ ଗାର ଗୁଡିକ ଶୀଘ୍ର ଶୀଘ୍ର ଟାଣି ହେଲା ନାହିଁ । ଦିନେ ସେ ଖାତାରେ ଗାର ପକାଉଛି, ଏ ସମୟରେ ଅପନ୍ନାୟା ଘରକୁ ଆସିଲା, ଭାଉଜକୁ ଖଜଣା ଖାତାରେ ଗାର ପକାଉଥିବା ଦେଖି ଆଶ୍ଚର୍ଯ୍ୟ ହୋଇ ରହିଗଲା । ତାପରେ ତା'ମନରେ ବହୁତ ରାଗ ଆସିଲା । ସିଧା ଚାଲି ଘରକୁ ଯାଇ ମା'କୁ କହିଲା -''ମା ତୋ ବଡ ବୋହୂ ସରକାରୀ ହିସାବ ଖାତା ସବୁ ନଷ୍ଟ କରିଦେଲାଣି । ବସିକରି ସେଥିରେ ଗାର ପକାଉଛି ।'' ଗଙ୍ଗାମ୍ମା ମୁହଁରୁ ସ୍ୱଭାବ ସୁଲଭ ଗାଳି ଗୁଡିଏ ବାହାର କରି ଦୌଡି ଦୌଡି ଏକା ନିଶ୍ୱାସରେ ଘରେ ପହଞ୍ଚିଗଲା । ସେତେବେଳେ ଦ୍ୱାବରସୟା ମଧ୍ୟ ଘରେ ଆସି ବସିଥିଲେ, ଏବଂ ନଷ୍ଟିଳା ଘର ଭିତରେ ବସି ଖାତାରେ ଗାର ପକାଉଥିଲା । ଗଙ୍ଗାମ୍ମା ଗାଳି ଦେଇଦେଇ ଘରକୁ ପଶିଲା ବେଳେ ଦ୍ୱାବରସୟା ପଚାରିଲେ, ''କଣ ହେଲା, ଏମିତି ପାଟି କାହିଁକି କରୁଛ ?''

''ହିସାବଖାତା ଧରି କଣ କରୁଛି ଟିକିଏ ଦେଖନ୍ତୁ ?''

''ନାଇଁ, ଭଉଣୀ, ଖାତାରେ ଗାର ପକାଇବା ପାଇଁ ମୁଁ ତାକୁ କହିଛି । ମୋର ଦେହଟା ଟିକିଏ ଭଲ ଲାଗୁନାହିଁ । କିନ୍ତୁ ହିସାବ ଠିକ୍ ସମୟରେ ଶେଷ କରିବାକୁ ହେବ । ଚେମ୍ପିଗରାୟତ କାମର ନାଁ ଧରୁନାହିଁ ।

''ଏ କାଗଜପତ୍ର ମୋ ସ୍ୱାମୀଙ୍କର । ସେଗୁଡାକ ଏ ପୋଡାମୁହିଁ ଛୁଅନ୍ତା କାହିଁକି ଭଲା ?''

''ଛୁଇଁ ଦେଲେ ବା କଣ ହୋଇଗଲା । ଇଏ ତ ଆପଣଙ୍କର ଘରର ବୋହୂ । ପର ଲୋକତ ନୁହେଁ ?''

Digitized by srujanika@gmail.com

ନଷ୍ଟିମା ଏସବୁ ଶୁଣି କାଗଜ କଲମଛାଡି ବାହାରକୁ ପଳାଇଥିଲା । ତାକୁ ଡାକି ଦ୍ୱାବରସ୍ୱାମୀ କହିଲେ, "ତୁ କାହିଁକି ପଳାଉଛୁ, ଆସ ତୁ ତୋ କାମ କର । ମୁଁ ତୋ ଶାଶୁକୁ ସବୁ ବୁଝାଇ ଦେଉଛି ।"

ଗଙ୍ଗାମା ଏତେବେଳକୁ ମନ୍ଦିର ଭିତରକୁ ଯାଇ ବଡପୁଅକୁ ଘରକୁ ଡାକି ଆଣିଲା । ସେତେବେ-ଳକୁ ନଷ୍ଟିମା ପୁଣି ବସି ଖାତାରେ ଗାର ପକାଉଥିଲା,ତାକୁ ଦେଖାଇ ଗଙ୍ଗାମା କହିଲା - "ଦେଖ ତୋ ସ୍ତ୍ରୀ ତୋ ଭଳିଆ ସର୍ବରାକାର ହେବା ପାଇଁ ସାହସ କରୁଛି ।

ଦ୍ୱାବରସ୍ୱାମୀ ଚେନ୍ନିଗାକୁ କହିଲେ —"ଦେଖନ୍ତୁ ସର୍ବରାକାରେ, ମୋର ସ୍ୱାସ୍ଥ୍ୟ ଠିକ୍ ନାହିଁ । ବସି ବସି ଗୁଲ୍ କାଡିରେ ଗାର ପକାଇବାରୁ ମୋର ଅଣ୍ଠାବାତ ବାହାରିଲାଣି । ଗାର ଟାଣିବା, ଖାତା ବାନ୍ଧିବା ଏବଂ ହିସାବ ଆଦି ଲେଖିବା କାମ କରିବା ପାଇଁ ମୁଁ ଆପଣଙ୍କ ସ୍ତ୍ରୀକୁ କହିଛି । ତାର ଅକ୍ଷର ଗୁଡିକ ଗୋଲ ଓ ସିଧା । ବର୍ତ୍ତମାନ ଠିକ୍ କରି କୁହନ୍ତୁ, ଆପଣ ଏ କାମ ନିଜେ କରିବେ ନା ଆପଣଙ୍କ ସ୍ତ୍ରୀକୁ କରିବାକୁ ଦେବେ । ନ ହେଲେ ଆପଣ ନିଜ ବ୍ୟବସ୍ଥା କରନ୍ତୁ ମୁଁ ମୋ ଗାଁକୁ ଚାଲିଲି ।"

ଚେନ୍ନିଗରାୟ ବଡ ଦ୍ୱନ୍ଦ୍ୱରେ ପଡିଲା । ଟିକିଏ ଭାବି କହିଲା "- ଠିକ୍ ଅଛି, ଏ ପୋଡାମୁହିଁ ହାତରେ ହିଁ କରାନ୍ତୁ । ମୁଁ ଯାଉଛି ଭଜନ ଶୁଣି ।" ବଡ ପୁଅକୁ ଗାଳି ଦେଇ ଦେଇ ମା' ଠେଲି ଘରକୁ ପୁଣି ଚାଲିଗଲା । ସେଠି ଏକୁଟିଆ ବସିବା ନିଜର ଅପମାନ ବୋଲି ଭାବି ଅପନ୍ନାସ୍ୱା ମଧ୍ୟ କେଉଟ ସାହି ଆଡେ ପଳାଇଲା ।

ଦ୍ୱାବରସ୍ୱାମୀ ନଷ୍ଟିମାକୁ କହିଲେ - "ଏ ଘରର ଅବସ୍ଥା ମୁଁ ଭଲ ରୂପେ ଜାଣିଛି । ତୋ ଶ୍ୱଶୁର ଦ୍ୱିତୀୟପକ୍ଷ ବିବାହ କରିଥିଲେ, ତାଙ୍କୁ ଯେତେବେଳେ ଚାଳିଶ ବର୍ଷ ଉପରେ । ସେଥିପାଇଁ ବୋଧହୁଏ ତୋ ଶାଶୁଙ୍କର ସ୍ୱଭାବ ଏପରି ହୋଇଯାଇଛି । ସେ ଯାହା କହନ୍ତୁ ପଛକେ ତୁ ମନ ଲଗାଇ ଏଇ ହିସାବ କିତାବ ଶିଖିଯା ନହେଲେ ଏମାନେ ଉଦ୍ଧାର ହେବେ ନାହିଁ । ତୋ ଶ୍ୱଶୁର ସର୍ବରାକାର ଥିଲାବେଳେ ମତେ ବହୁତ ସାହାଯ୍ୟ କରିଥିଲେ, ତେଣୁ ମୁଁ ଯାହା ଜାଣିଛି ତତେ ସବୁ ଶିଖାଇ ଦେବି ।"

## 2

ତିନିମାସ ପରେ ବର୍ଷ ଶେଷର ହିସାବ ଲେଖିବା କଥା । ଏହା ସର୍ବରାକାରମାନଙ୍କର ସବୁଠୁ ଗୁରୁତ୍ୱ ପୂର୍ଣ୍ଣ ହିସାବ । ଏ ହିସାବ ଠିକ୍ ଠିକ୍ ହୋଇଗଲେ ତାପର ବର୍ଷମାନଙ୍କର ହିସାବରେ ଭୁଲ ହେବାର କମ୍ ସମ୍ଭାବନା ଥାଏ । ଦ୍ୱାବରସ୍ୱାମୀ ନଷ୍ଟିମାକୁ ବହୁତ କିଛି ଶିଖାଇ ସାରି କିଛିଦିନ ପାଇଁ ନିଜ ଗାଁକୁ

Digitized by srujanika@gmail.com

ଚାଲିଗଲେ । ଗଲାବେଳେ କହିଗଲେ - "ତୁ ତ ଖୁବ୍‌ଶୀଘ୍ର ଏ ହିସାବ କାମ ଶିଖିଗଲୁଣି, ମୁଁ ଯେମିତି କହିଛି ସେହିପରି ସବୁ ହିସାବ ଲେଖା ଲେଖି କରୁଥା । ମୁଁ ଫେରିଲେ ବର୍ଷ ଶେଷର ହିସାବ କଥା ତତେ ଶିଖାଇ ଦେବି ।" ବ୍ୟବସାୟୀ ଆସିବା ପୂର୍ବରୁ ନଷ୍ଟିଆକୁ ସବୁ ହିସାବ ପତ୍ର ଠିକ୍ କରି ରଖିବାକୁ ହେବ । ଏଣେ ଛଅମାସ ଗର୍ଭ ଚାଲିଥାଏ । ପୋଖତି ପାଇଁ ସାନ୍ତୁ ବାପ ଘରକୁ ଯାଇଥିଲା । ପୋଖତି ହେଲାଣି କି ନାହିଁ ଏପର୍ଯ୍ୟନ୍ତ ଖବର ଆସିନଥିଲା । ନଷ୍ଟିଆକୁ ଛଅମାସ ଗର୍ଭରେ ମଧ୍ୟ ଘର କାମ ଦାମ ସାରି ହିସାବକିତାବ ଲେଖିବାରେ ବହୁତ କଷ୍ଟ ଉଠାଇବାକୁ ପଡୁଥିଲା । ଗଙ୍ଗାଆ ଘର କାମ ନକରିବାକୁ ସତେ ଯେମିତି ନିୟମ କରିଥିଲା । ସେ କହୁଥିଲା -"ଏତିକି ଥିଲାବୁକି, ମରଦମାନଙ୍କ ଭଳିଆ କାଗଜପତ୍ର ଧରି ହିସାବ ଲେଖୁଛି । ମୁଁ କାହିଁକି ଇଆପାଇଁ ଘରକାମ କରିଯିବି ।" ଦି'ପୁଅ ମଧ୍ୟ ତଦ୍ରୂପ । ଦୁଇଜଣ ଯାକ ବାରଣ୍ଡାରେ ଶୋଇ ଘୁଙ୍ଗୁଡି ମାରୁଥାନ୍ତି । ଗାଈଟାକୁ ଚରାଇ ଆଣିବାକୁ ମଧ୍ୟ କେହି ନାହାନ୍ତି । ତା ଆଗରେ ପାଳ ମୁଠାଏ ପକାଇବାକୁ ମଧ୍ୟ କାହାକୁ ଦିଶୁନାହିଁ । ଗାଈଟା ଦି ଚାରିଥର ଜୋରରେ ବୋବାଳି ଛାଡି ଖୁଣ୍ଟ ଚାରିପଟେ ଡେଇଁବାକୁ ଲାଗିଲା । ନଷ୍ଟିଆ ସ୍ୱାମୀକୁ ଡାକି କହିଲା -"କଣ ଶୁଭୁଛି ନା ନାହିଁ ?"

ତଥାପି ମଧ୍ୟ ତାର ନିଦ ଭାଙ୍ଗିଲା ନାହିଁ । ଅପନ୍ନାସ୍ୱା ମଧ୍ୟ କଡ ଲେଉଟାଇଲା । ନଷ୍ଟିଆ ତାକୁ ଡାକି କହିଲା -"ହଇ କିଏ ଅପନ୍ନା, ଟିକିଏ ଉଠିଲ," ଗୁଁ ଗୁଁ ହୋଇ ଅପନ୍ନାସ୍ୱା ମୁହଁ ଉପରେ ଚଦର ଘୋଡାଇ ଦେଲା । ନଷ୍ଟିଆ କହିଲା -"ଶୋଇପଡ ସମସ୍ତେ, ନିଜ ପେଟ ପୁରିଲେ ହେଲା, ତେଣିକି ଗୋମାତା ଉପବାସ ରହିଲେ କଣ ହୋଇଯାଉଛି କି ? ବାଡିପଟେ ଦି'ଘଣ୍ଟା ଘାସ ଚରାଇ ଆଣିଲେ କଣ ହୁଅନ୍ତା ନାହିଁ । ଅପନ୍ନାସ୍ୱା ପୁଣି ଗୁଁ ଗୁଁ ହେବାର ଶୁଣାଗଲା । କିଛି ସମୟ ଚୁପ ରହି ନଷ୍ଟିଆ ପୁଣି ପାଟିକଲା - "ଦିନକୁ ଦୁଇଥର ଦୁଧ ନ ପିଇଲେ ନ ଚଳେ । କିନ୍ତୁ ଗାଈଟା କଥା ବୁଝିବାକୁ କେହି ନାହିଁ । ଏତେ ଗଣ୍ଡି ଅଳସୁଆ କଲେ ଭଗବାନ ଅନ୍ନ ମଧ୍ୟ ଦେବେ ନାହିଁ ।"

ଏ ସବୁ ଶୁଣି ଗଙ୍ଗାଆ ରାଗ ଜରଜର ହୋଇ କହିଲା -"କଣ ସବୁ ବକି ଯାଉଛୁ କିଲୋ ?"

"ମୁଁ କଣ ମିଛ କହିଲି କି ? ଗାଈଟା ଉପବାସରେ ବନ୍ଧା ହୋଇଛି ବୋଲି ସିନା ମନଟା ମାନୁ ନାହିଁ ?"

"ତତେ ଯଦି କଷ୍ଟ ହେଉଛି ତୁ ଚରାଇ ଆଣେ ।"

"ଏ ହିସାବ କିତାବ କିଏ ଲେଖା ଲେଖି କରିବ ?"

"କଣ କହିଲୁ ଲୋ ପୋଡାମୁହିଁ, କଳିଆଗୋହି । ଖଜଣା ହିସାବ ଲେଖି ଲେଖି କଣ ତୁ ଇଲାକାଦାର ବନିଯିବୁ କି ? ଆଜିଠୁ ତ ମୁଣ୍ଡରେ ଚଢି ବସିଲୁଣି, ଆଉ ତ ଆଗକୁ ଅଛି ।"

ଯେଉଁଦିନଠାରୁ କଣ୍ଟାକ୍ଟର ଫେରାର ହେଲେଣି ଏବଂ ତାଙ୍କର ଫେରିବାର ସମ୍ଭାବନା କମ୍ ଜଣାପଡିଲାଣି ସେଦିନଠୁ ଗଙ୍ଗାଆ ବଡ ବୋହୁକୁ ଗାଳି ଗୁଲଜ କରିବାକୁ ଆଦୌ ଭୟ କରୁନଥିଲା । ନଷ୍ଟିଆ ମଧ୍ୟ ଶାଶୁ ଏବଂ ସ୍ୱାମୀଙ୍କଠାରୁ ଗାଳି ଶୁଣି ଶୁଣି ଏକରକମର ଅଭ୍ୟସ୍ତ

Digitized by srujanika@gmail.com

ହୋଇସାରିଲାଣି । ମା'ର ପାଟି ଶୁଣି ଅପନ୍ନାସ୍ୱାର ନିଦ ଭାଙ୍ଗିଗଲା । ଦ୍ୱିପହରର ଭାତନିଦଟା ଅଧାରୁ ଭାଙ୍ଗିଯିବାରୁ କଡ ଲେଉଟାଉ ଲେଉଟାଉ ରାଗରେ ପଚାରିଲା ଯେ କାହିଁକି ପାଟିତୁଣ୍ଡ କରୁଛନ୍ତି । ମା କହିଲା - "ଆରେ ଦେଖରେ, ଏ ମାଇକିନାପିଲାର ବହପ । କହୁଛି - ମୁଁ ଲେଖାପଢି କରି ହାକିମ ହୋଇ ବସିବି । ତୁମେ ସବୁ ଲେଣ୍ଡା ଗୁଡାକ ପେଟେ ପେଟେ ଖାଇ ଶୋଇଛ ଲାଜ ଲାଗୁନାହିଁ, ଯାଇ ଗାଈକୁ ଚରାଇ ଆଣରେ ରାଣ୍ଡିର ପୁଏ ।"

ଅପନ୍ନାସ୍ୱା ରାଗରେ ଅଗ୍ନିଶର୍ମା ହୋଇ ଉଠିଲା –"ଆରେ ତୋ ମୁଣ୍ଡକୁ ପିତ୍ତ ଚଢିଲାଣି କିଲୋ । ଏମିତି କଣ ସବୁ କହୁଛୁ ?"

"ନାଇଁ ମୁଁ ଏମିତି କିଛି ଖରାପ କଥା କହିନି । ତୁମକୁ ଠାକୁରଙ୍କ ରାଣ, ମା' ଏମିତି ମିଛ ସତ ଜୋଡି କରି କୁହନି ।"

"ଦେଖୁଛୁରେ ପୁଅ, ମତେ ମିଛେଇ ବୋଲି କହୁଛି । ଆରେ, ଆଉ ଚାହିଁଛୁ କଣ ? ମାର ଲାତ ଏ କାଳମୁହିଁକୁ ସ୍ୱାର ଏତେ ବହପ । ଶାଶୁକୁ ମିଛେଇ ବୋଲି କହୁଛି ।" ମା'ର ଆଦେଶ ବାକ୍ୟ ପୂରା ନ ହେଉଣୁ, ଅପନ୍ନାସ୍ୱା ଉଠି ଆସି, ଡାହାଣ ଗୋଡରେ ଭାଉଜର ପିଠିକୁ ଶକ୍ତ ଲାତେ ମାରିଲା । ମାଡଖାଇ ନନ୍ଦିକା ତଳେ ପଡିଗଲା । ପୁଣି ଗୋଇଠା ଉଠାଇ ଅପନ୍ନାସ୍ୱା କହିଲା -"ଫେରେ ଯଦି ମା'କୁ ଏପରି କିଛି କହୁ, ତେବେ ଗାତ ଭିତରେ ପୋତି ଦେବି ।" ଏତେବେଳକୁ ଦାଣ୍ଡପଟେ କେତେଜଣ ପୋଲିସ୍ କନେଷ୍ଟବଲ୍ ଆସି ପହଞ୍ଚିଗଲେ । ମାଟିଆ ପେଣ୍ଟ ସାର୍ଟ, ଟୋପି,ଭାରୀଜୋତା ପିନ୍ଧିଥାନ୍ତି । ସେମିତୁ ଦି'ଜଣ ହାତରେ ଶିକୁଳି ମଧ୍ୟ ଧରିଥିଲେ । ତାଙ୍କୁ ଦେଖି ଅପନ୍ନାସ୍ୱାର ଛାତି ଧଡ ଧଡ ହେଲା, "ମରିଗଲି ଲୋ ମା' କହି" ଏକା ଡିଆଁକେ ଘରୁ ବାହାରି ପଡିଲା । ଦୌଡି ଦୌଡି ପାଖ ସାଇ ରାସ୍ତା ଆଡେ ପଳାଇଲା । ତାକୁ ଏପରି ଚମକି ଦୌଡିବାର ଦେଖି ସାଇର କୁକୁର ସବୁ ଭୁକିବାକୁ ଲାଗିଲେ ।

ଗଙ୍ଗାଳା ମଧ୍ୟ ପୋଲିସ୍ ବାଲାଙ୍କୁ ଦେଖି ଭୟରେ ଜଡସଡ ହୋଇଗଲାଣି । ଅପନ୍ନାସ୍ୱାର ଚିତ୍କାର ଶୁଣି ଚେନ୍ନିଗାର ନିଦ ଭାଙ୍ଗିଗଲା । ସେଆଡେ ଝିଅ ପାର୍ବତୀ ମଧ୍ୟ ନିଦରୁ ଉଠି କାନ୍ଦିବାରେ ଲାଗିଲା । ନନ୍ଦିକା ପୋଲିସ୍‌ବାଲାଙ୍କୁ ଦେଖି ଝିଅକୁ ଧରିବାକୁ ଉଠିଗଲା । କିନ୍ତୁ, ତା ଅଣ୍ଟାରେ ଭୟଙ୍କର ବିନ୍ଧା ଆରମ୍ଭ ହେଲା । ମାଡ ପଡିବାରୁ ବୋଧହୁଏ ଦରଜ ହୋଇଯାଇଥିଲା । ସେମିତି ଛୋଟେଇ ଛୋଟେଇ ଘର ଭିତରକୁ ଗଲା । ଏଣେ ଚେନ୍ନିଗା ଉଠିଯାଇ ଭୟମିଶ୍ରିତ ସ୍ୱରରେ ପୋଲିସ୍‌ବାଲାଙ୍କୁ କହିଲା –"ଆ-ପ-ଣ-ମା-ନେ, ଆସନ୍ତୁ -ବ-ସ-ନ୍ତୁ ।"

"ଆପଣ ଏ ଗାଁର ସର୍ବରାକାର ?"

"ଆଜ୍ଞା ହଁ ।"

"ବର୍ତ୍ତମାନ ଏ ସ୍ତ୍ରୀକୁ ଯିଏ ଲାତ ଗୋଇଠା ମାରୁଥିଲା ସେ କ'ଣ ଆପଣଙ୍କର ଭାଇ ?"

Digitized by srujanika@gmail.com

"ଆଜ୍ଞା ସିଏ ମୋ ସ୍ତ୍ରୀ ।"

"ଆଚ୍ଛା ତାହାହେଲେ, ଭାଉଜଙ୍କୁ ଭାତ ମରାଯାଉଥିଲା ।"

"ନାହିଁ ଆଜ୍ଞା ।"

"ଆପଣ ଜଣେ ସରକାରୀ କର୍ମଚାରୀ ହୋଇ ମିଛ କହୁଛନ୍ତି । ନିଜ ସ୍ତ୍ରୀର ଠିକ୍‌ଭାବେ ଦେଖାଶୁଣା କରିବା ଆପଣଙ୍କ ହାତରେ ହେଉନାହିଁ ?"

ଏସବୁ ଶୁଣି ଗଙ୍ଗାମାର ଯମଝାଳ ବୋହି ଯାଉଥାଏ । ଆଗନ୍ତୁକମାନେ ମଧ୍ୟ ଏ ବିଷୟରେ ଅଧିକ ଚର୍ଚ୍ଚା କଲେ ନାହିଁ । ଚେନ୍ନିଗରାୟ ବାରଣ୍ଡାରେ ମଶିଣାଟିଏ ବିଛାଇ ଦେଇ ସେମାନଙ୍କୁ ବସିବାକୁ କହି, ହାତ ଯୋଡି ଠିଆ ହୋଇଥାଏ । ଗଙ୍ଗାମା ମଧ୍ୟ ଧୀରେ ଧୀରେ ଘରୁ ବାହାରି ଏକା ନିଶ୍ୱାସରେ ଯାଇ ଚନ୍ନୀ ପାଇରେ ହାଜର । ପଚାରି ବୁଝିଲା ଯେ, ମାଟା ଚନ୍ନୀ ଘରେ ଆଟୁ ଉପରେ, ନଡିଆ କତା ଗଦା ଭିତରେ ଅପନ୍ନାୟା ଲୁଚିଛି । ବୁଢୀ ଆଟୁ ଉପରେ ଚଢି, ପୁଅକୁ ଯାଇ କହିଲା, "ଆରେ ପୁଅ ଏ ପୋଲିସବାଲାଙ୍କ ହାତରେ କେତେ ମୋଟା ଲମ୍ବା ଶିକୁଳି ଅଛି । ତତେ ଯଦି ଧରିପକାଇବେ, ତୋର ଗୋଡ ହାତ ବାନ୍ଧିପକାଇ ଗାତ ଖୋଳି ଜିଅନ୍ତା ପୋତି ଦେବେ । ତୋ ଭାଉଜର ଭାଇ ପୋଲିସ୍ ଚାକିରୀ କରିଛି ପରା । ଏମାନେ ତାରି ସାଙ୍ଗ ସାଥୀ ହୋଇଥିବେ । ତୁ ବାଡିପଟ ବିଲବାଟ ଦେଇ ଜୀବନ ବଞ୍ଚାଇ ପଳା, ପାଞ୍ଚଛଅ ମାସ ପର୍ଯ୍ୟନ୍ତ ଗାଁର ନାଁ ଧରିବୁନି ।"

ଅପନ୍ନାୟା ଶଙ୍କିଯାଇ କହିଲା – "ମା' ଲୋ, ମୁଁ ଏବେ କଣ କରିବି ? ମତେ ବୁଦ୍ଧିବାଟ ଦିଶୁନାହିଁ ।"

"ଆରେ ପୁଅ ଶୀଘ୍ର ଏଠୁ ପଳା, କେଜାଣି କେଉଁ ଅଶୁଭ ବେଳାରେ ଏ ବଂଶଖାଇ ଆମଘରେ ପାଦ ରଖିଥିଲା । ଆମକୁ ଶନିଦଶାଠୁ ବଳି ଗଲାଣି ।"

ଅପନ୍ନାୟା ଆଟୁ ଉପରୁ ଓହ୍ଲାଇ ଜଲଦି ଜଲଦି ବାଡିପଟ ରାସ୍ତାରେ ଧାନଗଦା, ନଡିଆ,ତାଳ ଗଦା ସନ୍ଧି ଦେଇ ଲୁଚି ଲୁଚି ପଳାଇଲା । ଗାଁମୁଣ୍ଡ ପୋଖରୀ ହୁଡା ସେପାଖେ ଅଦୃଶ୍ୟ ହେଲା ଯାଏଁ ଗଙ୍ଗାମା ବାଡି ଦୁଆରେ ଠିଆ ହୋଇ ଦେଖିଲା । ତାପରେ ଯାଇ ତା ମନରେ ଦମ୍ଭ ପଡିଲା ।

ଏଣେ ଘରକୁ ଯେଉଁମାନେ ଖାକି ପୋଷାକ ପିନ୍ଧି ଆସିଥିଲେ, ସେମାନେ କିନ୍ତୁ ପୋଲିସବାଲା ନୁହନ୍ତି । ସେମାନେ ଥିଲେ ସରକାରୀ ସର୍ଭେ କର୍ମଚାରୀ । ପ୍ରାଦେଶିକ ସରକାରଙ୍କ ଆଦେଶ ଅନୁସାରେ ବିଭିନ୍ନ ଜିଲ୍ଲାରେ ଜମିବାଡିର ପୁନର୍ବାର ମାପଚୁପ ଏବଂ ହିସାବ କରି ପଟ୍ଟା ପାଉତି ଏବଂ ମାଲିକାନା ସତ୍ତ୍ୱ ଧାର୍ଯ୍ୟ କରିବା ପାଇଁ ଏମାନେ ନିଯୁକ୍ତ ହୋଇଥିଲେ । ପ୍ରାୟ ତିନିମାସ ପର୍ଯ୍ୟନ୍ତ ଏ ବନ୍ଦୋବସ୍ତ କର୍ମଚାରୀମାନେ ରାମସନ୍ଦ୍ର ଗାଁରେ ଡେରା ପକାଇଲେ । ସେମାନଙ୍କର ଖାକି ପୋଷାକ, ଟୋପି ଏବଂ ହାତରେ ଥିବା ଚେନ୍ ଶିକୁଳି (ଯାହାକି ଜମି ମାପଚୁପରେ ବ୍ୟବହୃତ ହୁଏ) ତାକୁ ଦେଖି ଚେନ୍ନିଗରାୟ, ଗଙ୍ଗାମା, ଅପନ୍ନାୟା ଏମାନଙ୍କୁ ପୋଲିସ୍ କର୍ମଚାରୀ ବୋଲି ଭାବି ଡରିଯାଇଥିଲେ ।

Digitized by srujanika@gmail.com

ଚେଙ୍ଗିଗରାୟ୍ ଗାଁର ସର୍ବାଧିକାର ହୋଇଥିବାରୁ ସରକାରୀ ଆଦେଶ ଅନୁସାରେ, ବନ୍ଦୋବସ୍ତ କର୍ମଚାରୀମାନଙ୍କର ରହିବା, ଖାଇବା ପିଇବା ଏବଂ ମୁଲିଆ ଚଉକିଦାର ଯୋଗାଇବା ଭାର ତା ଉପରେ ନ୍ୟସ୍ତ ଥିଲା ।

3

ଏଥର ବୁଢୀମା ଅକ୍କାମ୍ମା ନିଜେ ଶଗଡ ଗାଡିରେ ବସି ନଞ୍ଜାମ୍ମାକୁ ଆସି ଗାଁକୁ ନେଇଗଲା । ନଞ୍ଜାମ୍ମାର ଦ୍ୱିତୀୟ ସନ୍ତାନ ପ୍ରସବର ଦିନ ପାଖେଇ ଆସୁଥାଏ । ଏବେ କନ୍ନେଶର ବାଁ ହାତ ଅନେକାଂଶରେ ଭଲ ହୋଇଯାଇଥିଲା । ସେ ଦି' ହାତରେ ନଡିଆ ଗଛକୁ ଧରି ଚଢିପାରୁଥିଲା ଏବଂ ଚାଷ କାମରେ ମଧ୍ୟ ବେଳେବେଳେ ସାହାଯ୍ୟ କରୁଥିଲା । ତା ସ୍ତ୍ରୀକୁ ଗାଁରେ ରହିବାକୁ ଭଲ ନଲାଗୁଥିଲେ ମଧ୍ୟ ଯେହେତୁ ଚାକିରି ମିଳିନଥିଲା ତେଣୁ ରହିବାକୁ ବାଧ୍ୟ ହୋଇଥିଲା । ତା ସ୍ତ୍ରୀ, କମଳିର ସ୍ୱଭାବ ଲାଗି ଜେଜେମା ଓ ନାତି ଉଭୟେ ବହୁତ ଅସନ୍ତୁଷ୍ଟ ଥିଲେ । ଏଥର ନଞ୍ଜାମ୍ମା ସାଥୀରେ ତା ଝିଅ ପାର୍ବତୀ ମଧ୍ୟ ଆସିଥିଲା । କନ୍ନେଶ ଭାଣିଜୀକୁ ବହୁତ ଭଲ ପାଉଥିଲା । ଦିନେ କନ୍ନେଶ ବିଲକୁ ଗଲା ପରେ ତା ସ୍ତ୍ରୀ କମଳି ମନକୁ ମନ ପାଟିକରି କହିଲା –"ଏମାନଙ୍କୁ ଟିକିଏ ହେଲେ ଲାଜ ଲାଗୁନି । ଘୁଷୁରୀ ଭଳିଆ ପିଲାଜନ୍ମ କରିବାରେ ବ୍ୟସ୍ତ । ହେଲେ ତାଙ୍କ ହାତରୁ କଣ ଯାଉଛି କି ? ବାପଘର ଲୋକେ ତ ଖର୍ଚ୍ଚ କରୁଛନ୍ତି । ଯଦି ସ୍ୱାମୀ ପାଖରେ ପଇସା ନାହିଁ ତେବେ ପେଟରେ ପିଲା ରଖିବ କାହିଁକି ?" ଏକଥା ନଞ୍ଜାମ୍ମା କାନରେ ପଡିଗଲା । ମନଦୁଃଖରେ ଭାବିଲା, କି ପ୍ରକାର ଭାଗ୍ୟ ଯେ, ନା ଶାଶୁ ଭଲ ମିଳିଲା, ନା ଭାଉଜ । ବର୍ତ୍ତମାନ ସାତମାସ ଗର୍ଭ, ଛୁଆ ଜନ୍ମ ହୋଇ ତିନିମାସର ନହେଲା ପର୍ଯ୍ୟନ୍ତ ଯାଇ ହେବ ନାହିଁ । ଅର୍ଥାତ୍ ପାଞ୍ଚ, ଛଅ ମାସ ପର୍ଯ୍ୟନ୍ତ ଏଠାରେ ରହିବାକୁ ପଡିବ । ଭାଉଜର ଏ ପ୍ରକାର ମନ ଜାଣିବା ପରେ ଏଠୁ ଚାଲି ଗଲେ ଭଲହୁଅନ୍ତା । କିନ୍ତୁ ସେଠି ଶାଶୁର କଷ୍ଟ । ଛୁଆ ଜନ୍ମ କରିବା ପୂର୍ବରୁ ଫେରିଗଲେ ଶାଶୁ ହଜାରେ କଥା କହିବେ । ତା ଛଡା ସ୍ୱାମୀ ତ ସପକ୍ଷରେ ପଦେ ହେଲେ କହିବେ ନାହିଁ । ଅପମାନ ହେଉ ପଛେ ଏଇଠି ହିଁ ରହିବାକୁ ପଡିବ । ତା ଆଖିରୁ ଦୁଇ ଟୋପା ଲୁହ ଗଳି ପଡିଲା ।

କମଳିର କଥା ଅକ୍କାମ୍ମା ମଧ୍ୟ ଶୁଣିଥିଲା । ଚୁପଚାପ୍ ସବୁ ଶୁଣି ସହିବା ଝିଅ ନଞ୍ଜାମ୍ମାର ଆଖିରେ ଲୁହ ଦେଖି ତା ମନରେ ରାଗ ଉଠିଲା । କମଳିକୁ ଯାଇ ପଚାରିଲା –

"ତୁ ତ ଏଠାକୁ ଆସିବାର ବର୍ଷେ ହେଲାଣି, ତୁ ଗର୍ଭବତୀ ହୋଇନାହୁଁ, ତୁ ତାହାକୁ ଘୁଷୁରୀ ବୋଲି କହିବାକୁ କିଏ ? ଗାଡିଆରେ ପାଣି ନାହିଁ କି, ଗର୍ଭରେ ପିଲା ନାହିଁ । ଏ ଭଳିଆ ପାପ ଚିନ୍ତା ଯିଏ କରେ ତା ଗର୍ଭଖାଲି ରହେ ।"

Digitized by srujanika@gmail.com

"ଆଲୋ ବୁଢୀ, ତୋ ନାତି ଭଆ ତା ଘରେ ଯାଇ ଶୋଇଲେ, ମୋ ପେଟରେ ପିଲା ରହିବ କେଉଁଠୁ ? ତୁମରି ବଂଶରେ ତ ଏଭଳି ଚରିତ୍ରହୀନ ଜନ୍ମ ହୋଇଛି ।"

"ତତେ ଲାଜ ଲାଗୁନାହିଁ ଏପରି କଥା ପାଟିରେ ଧରିବାକୁ । ସ୍ୱାମୀ ଯଦି ଆଉ କାହାଘରେ ଯାଇ ଶୋଉଛି, ସେଇଟା ତୋର ଭୁଲ । ତୁ ସ୍ତ୍ରୀ ପଣିଆ ଦେଖାଇ ସିନା ତାକୁ ପାଖରେ ରଖନ୍ତୁ ।"

ଏ ସବୁ ଶୁଣି ନଷ୍ଟଜା ଜେଜେମାକୁ କହିଲା, "ଧୀରେ ଧୀରେ କଥାବାର୍ତ୍ତା ହୁଅ । ପାଖ ପଡୋଶୀ ଶୁଣିଲେ କଣ ଭାବିବେ ?"

"ପାଖ ପଡୋଶୀ ? ଏ ଗାଁରେ କିଏ ନ ଜାଣିଛି ଭଆ କଥା । ଏଘରକୁ ଆସିବାର ମାସେ ଭିତରେ, ଇଏ ଆମର ମାନ ସମ୍ମାନ ତଳେ ପକେଇ ଦେଇଛି । ନଈକୁ ପାଣି ଆଣି ଗଲାବେଳେ ତୁଠରେ ସମସ୍ତଙ୍କ ଆଗରେ ଘର କଥା ସବୁ ବଖାଣିଛି । ଭଲ ଘରର ଝିଅ ହୋଇଥିଲେ କଣ ଏକଥା କରିଥାନ୍ତା ?"

"ଆଲୋ ଏ ବୁଢୀ ମାଙ୍କଡୀ, ମୋ ବାପଘରକୁ ଉଲୁଗୁଣା ଦେବାକୁ ତୁ କିଏ ? ଆମ ଗାଧୁଆଘର ନଳାପାଣି ମୁଣ୍ଡରେ ମାରିଲେ ତୁମେ ପବିତ୍ର ହୋଇଯିବ ।"

ନଷ୍ଟଜା ବୁଢୀକୁ ଚୁପକରାଇ ଘର ଭିତରକୁ ନେଇଗଲା । ଏବଂ ଭାଉଜ ପାଖକୁ ଯାଇ କହିଲା, –"ଭାଉଜ, ଏତେ ପାଟିରେ ନ କହିଲେ କଣ ଚଳନ୍ତା ନାହିଁ । ଆମ ଘର କଥା ଶୁଣିଲେ ଲୋକେ ହସିବେ ।"

"ଯାଅ ଯାଅ ଆଉ କାହାକୁ କଥା ଶିଖେଇବ । ଶାଶୁଘରେ ଭାତ ନମିଳିବାରୁ ଏଠିକି ଧାଇଁଆସିଛ ପିଲାଜନ୍ମ କରିବାକୁ ।"

ସେତିକିରେ ନଷ୍ଟଜାର ପାଟିବୁପ । ରାଗରେ ତମତମ ହୋଇ କମଳି ମଧ୍ୟ ଶୋଇବା ଘରେ ମଶିଣା ଉପରେ ମୁହଁମାଡି ପଡିରହିଲା । ଯେପରି ରାଣୀ କୈକେୟୀ କୋପଭବନରେ ପଡିଥିଲେ ସେପରି ବାଳ ମୁକୁଳା କରି କପାଳରୁ ସିନ୍ଦୁର ପୋଛି, ମୁହଁ ଫୁଲାଇ ଚୁପଚାପ ପଡି ରହିଲା । ଦ୍ୱିପହର ବେଳକୁ କଳେଶ ଫେରିଲା । ଗାଧୁଆ ପାଧୁଆ ସାରିଲା । ସ୍ୱାମୀ ଘରକୁ ଆସିବାର ଜାଣି ଶୋଇବା ଘରଭିତରୁ ପାଟିକରି ଗାଳିଦେବା ଆରମ୍ଭ କରିଦେଲା । ଗାଳିଶୁଣି କଳେଶ ଶୋଇବା ଘର ଦୁଆର ପାଖରେ ପହଞ୍ଚିଲା ଏବଂ ତା ସ୍ତ୍ରୀର ମୁହଁରୁ ପ୍ରବଳ ବେଗରେ ବୋହି ଆସୁଥିବା ବଂଶନାଶ ଇତ୍ୟାଦି ଗାଳି ବାକ୍ୟ ଶୁଣି ସେ ରାଗିଗଲା । ବିଲରେ ଖରାରେ କାମ କରି କରି ଆସି ଭୋକିଲା ପେଟରେ ମନର ରାଗ ଆହୁରି ଉପରକୁ ଉଠିଲା । ପାଟିକରି ପଚାରିଲା –"କାହାକୁ ଏ ସବୁ ଗାଳି ଦିଆ

Digitized by srujanika@gmail.com

ଯାଉଛି ?'' ସ୍ୱାମୀ କଥା ନ ଶୁଣି କମଳି ହାତ ଆଙ୍ଗୁଠି ଫୁଟାଇ ଫୁଟାଇ ଗାଳି ଦେବାରେ ବ୍ୟସ୍ତ ଥିଲା । କଲେଶର ରାଗ ସବୁ ଏକାଠି ହୋଇ କମଳିର ପିଠିରେ ଏକ ଶକ୍ତ ବିଧ ହୋଇ ବସିଗଲା । ଏହାପରେ ଗାଳିର ସୁଅ ପରିବାରର ଲୋକଙ୍କଠୁ ଆସି ସ୍ୱାମୀ ଆଡକୁ ବୋହିଚାଲିଲା । ଶୁଣାଗଲା –''ଆରେ ଏ ରାଣ୍ଡର ପୁଅ, ମତେ ପୁଣି ମାରୁଛୁ ? ଗୋଟେ ହାତ ତ ଅକାମୀ ହୋଇଛି, ତୋର ଆର ହାତ ମଧ୍ୟ ପଙ୍ଗୁ ହୋଇଯାଉ । ମୋର ଅଭିଶାପ ତତେ ପଡୁ ।'' ପୂର୍ବ ଭଳି ଶକ୍ତ ଆଉ ଏକ ବିଧ ପଡିଲା । ଏବଂ ତାପରେ ଶୁଣାଗଲା –''ବେମାରରେ ପଡିଥିଲୁ ଯେ ମରିଯାଇଥାନ୍ତୁ । ଆଠମାସ କାଳ ମୋରି ବାପା ସେବା କରି ବଞ୍ଚାଇଲା । ସେଥିପାଇଁ ମୋ ଉପରକୁ ହାତ ଉଠଉଛୁ ? ତୋ ହାତରେ ପୋକ ପଡୁ ।'' ଗାଳି, ମାଡର ଶବ୍ଦ ଶୁଣି ଡରି ଯାଇ ପାର୍ବତୀ ରୋଷେଇ ଘର ଭିତରେ ପଶି କାନ୍ଦିବାକୁ ଲାଗିଲା । ନଷ୍ଟିକା ଦୌଡି ଆସି ଭାଇର ହାତ ଟାଣି ଟାଣି କହିଲା – ''ତୁମର ମୁଣ୍ଡ କଣ ଖରାପ ହୋଇଗଲାଣି ? ନିଜ ସ୍ତ୍ରୀକୁ ଏପରି କିଏ ମାରେ ? କଣ ଟିକିଏ କହିଦେଲା ତ କହିଦେଲା, ସେଥିରେ କଣ ହୋଇଗଲା । ଚାଲ ଚୁପ୍‌ଚାପ୍ ବସି ଭାତ ଖାଇଦିଅ ।''

''ଛୁ ଛାଡ, ମୋ ହାତ । ଆଜି ମାଇକିନାର ମୁହଁ ସିଧା କଲେ ଯାଇ ରକ୍ଷା ।''

କଲେଶ ହାତ ଛଡାଇ ନେଲା । ତେଣେ କମଳି ବିଛଣାରୁ ଉଠି ସ୍ୱାମୀ ଆଡକୁ ପିଠି କରି ଠିଆ ହୋଇ କହିଲା –''ମାରିବୁ ପରା, ମାର୍, ତୋ ହାତ ଭାଙ୍ଗିଲା ପର୍ଯ୍ୟନ୍ତ ମାର୍ । ମତେ ଜୀବନରେ ମାରିଦେ ଯେ ତତେ ଯେମିତି ଫାଶୀ ଦିଆ ହବ । ଆଜି ତ ସବୁ ଶେଷହେବ ଯେତେ ଇଚ୍ଛା ହେଉଛି ମାର ।''

ନଷ୍ଟିକା ଭାଇର ହାତଟା ଜୋରରେ ଧରି ଟାଣି ନେବାକୁ ଚେଷ୍ଟା କରୁଥିଲା । ହାତଟା ଛଡାଇ ନପାରି, କଲେଶ, ଡାହାଣ ଗୋଡ ଉଠାଇ ଜୋରରେ କମଳିର ଅଣ୍ଟାକୁ ଗୋଇଠାଏ ମାରିଲା । କମଳି ସେଇଠି ଲଥ୍ କରି ବସି ପଡିଲା । ରାଗରେ ଟମ ଟମ ହୋଇ କଲେଶ ସେ ଘରୁ ବାହାରି ଗଲା । କମଳି ପଛରୁ ପାଟି କରୁଥାଏ –''ତତେ ଫାଶୀରେ ଚଢାଇବି, ତୋ ମୁଣ୍ଡକାଟ କରାଇବି ।'' ଇତ୍ୟାଦି ଇତ୍ୟାଦି ।

କଲେଶ ଭିତର ପଟେ ବସି ଭାତ ଖାଉଥିଲା । ଆଜି ପରି ଘଟଣା ଏ ଘରେ ନୂଆ ହୋଇ ନାହିଁ । କିନ୍ତୁ କମଳି ଆଜି ସୀମା ଅତିକ୍ରମ କରି ଯାଇଥିଲା । ବାଇଗଣ ପୋଡାଟା ଅଳିଆରେ ଚକଟୁ ଚକଟୁ, ସେ ଭାବୁଥିଲା, ଏ ମାଇକିନାକୁ କିପରି କାବୁ କରାଯିବ । ନଷ୍ଟିକା ପରେ ଖାଇବି,ବୋଲି କହି ବାଡି ଅଗଣାରେ ଲୁଗା ସଫା କରି ବସିଲା, କିଛି ସମୟପରେ ନଷ୍ଟିକା ବାଡି ପଟୁ ଚିତ୍କାର କରି ଉଠିଲା – ''କଲେଶ ଭାଇ, ଦୌଡିଆସ, ଭାଉଜ କୂଅକୁ ଡେଇଁ ପଡିଲେ ।'' କଲେଶ ଏକା ଡିଆଁକେ କୂଅ ମୂଳରେ ହାଜର ହୋଇଗଲା । ଅକୁଳା ମଧ୍ୟ ଛୋଟେଇ ଛୋଟେଇ ଦୌଡି ଆସିଲା । ଅରଟରେ ଦଉଡ଼ି ଓହଳାଇ ଗୋଟେ ମୁଣ୍ଡ ନଷ୍ଟିକାକୁ ମଜବୁତରେ ଧରିବାକୁ କହି କଲେଶ ଆରମୁଣ୍ଡଟା ଧରି ସରସର କୂଅ ଭିତରକୁ ଓହ୍ଲାଇ ପଡିଲା ।ଏଣେ ନଷ୍ଟିକା ଦଉଡିଟାକୁ ଟାଣି ଧରିଥାଏ । ନଷ୍ଟିକାର ଚିତ୍କାର ଶୁଣି ପଡିଶା

Digitized by srujanika@gmail.com

ଘର ସ୍ୱାମୀ ସ୍ତ୍ରୀ ମଧ୍ୟ ଧାଇଁ ଆସିଲେ । ଗାଁ ସାରା ବିଜୁଳି ଭଳି ଖବର ବ୍ୟାପିଗଲା । କିଛି ସମୟ ମଧ୍ୟରେ ସାଇଟାଯାକ ଲୋକ କୂଅ ମୂଳେ ଗଦା ହୋଇଗଲେ ।

ଚେଣେ କମଳି, ପାଣି ପିଇ, ଥରେ ଉପରକୁ ଭାସି ଉଠିଲା ଏବଂ ତାପରେ ପୁଣି ତଳକୁ ବୁଡିଗଲା । ପ୍ରକୃତରେ ଆତ୍ମହତ୍ୟା ଉଦ୍ଦେଶ୍ୟରେ କୂଅକୁ ଡେଇଁ ନଥିଲା । ତାର ଇଚ୍ଛାଥିଲା ଯେ ସ୍ୱାମୀକୁ ଏଥିପାଇଁ ଦଣ୍ଡ ମିଳୁ । କିନ୍ତୁ କୂଅ ଭିତରେ ବୁଡିଗଲା ପରେ, ନାକରେ କାନରେ ପାଣି ପଶିଗଲା । ପରେ ମରଣର ଭୟରେ, ଉପରକୁ ଉଠିବାକୁ ଚେଷ୍ଟାକରି ହାତଗୋଡ ବାଡେଇଲା । କିନ୍ତୁ ପୁଣିଥରେ ପାଣି ଭିତରକୁ ବୁଡ଼ିଗଲା । କିଛି ସମୟପରେ ପୁଣି ଉପରକୁ ଭୁଡୁକି ମାରି ଉଠିଲା । ଏଥର କଳେଶ ତାର ମୁଣ୍ଡବାଳକୁ ଜୋରରେ ମୁଠାଇ ଧରି ପକାଇଲା । ଉପରେ ଜମା ହୋଇଥିବା ଲୋକଙ୍କୁ ପାଟିକରି କଳେଶ କହିଲା -"ଦଉଡି ଧୀରେ ଧୀରେ ଉପରକୁ ଟାଣ ।" ଗୋଟାଏ ହାତରେ ଦଉଡି ଏବଂ ଅନ୍ୟ ହାତରେ କମଳିର ବାଳ ଟାଣିଧରି, ଛାତିଏ ପାଣି ପର୍ଯ୍ୟନ୍ତ ଆସିଲା । ବାଁ ହାତଟା ଦୁର୍ବଳ ଥିବାରୁ କଳେଶ କମଳିର ଓଜନ ବେଶି ସମୟ ପର୍ଯ୍ୟନ୍ତ ସମ୍ଭାଳି ପାରିଲା ନାହିଁ । କିନ୍ତୁ ପରେ କୂଅ କାନ୍ଥରେ ଲାଗିଥିବା ଲୁହା ପାଣିରେ ଗୋଡ ଦେଇ ଠିଆ ହୋଇ ରହିଲା । ଏଣେ ଉପରେ ଥିବା ଲୋକମାନେ ଗୋଟିଏ ଖଟୁଲିରେ ରସି ବାନ୍ଧି ତଳକୁ ପକାଇଲେ । ଖଟୁଲି ତଳେ ପହଞ୍ଚିବାରୁ କଳେଶ କମଳିକୁ ଟେକି ସେଥିରେ ବସାଇ ଦେଲା ଏବଂ ଦଉଡି ଉପରକୁ ଟାଣିବାକୁ କହିଲା । କମଳିର ବିଶେଷ କିଛି ଆଘାତ ହୋଇନଥିଲା, ସେ ପାଟିକଲା– "ଡରଲାଗୁଛି, ପଡିଯିବି ।" କଳେଶ କ୍ଷଣ ଭାବି ନିଜ ଧୋତି ଫିଟାଇ ଖଟୁଲି ଦେହରେ କମଳିକୁ ଟାଣକରି ବାନ୍ଧିଦେଲା ଏବଂ ଅଣ୍ଟାରେ ବନ୍ଧା ହୋଇଥିବା ଗାମୁଛାଟାକୁ ପାଣିଭିତରେ ନିଜେ ପିନ୍ଧି ପକାଇଲା । ତାପରେ ଉପରୁ ଚାରିଜଣ ଲୋକ ଦଉଡି ଧୀରେ ଧୀରେ ଟାଣି କମଳିକୁ ଉପରକୁ ଆଣିଲେ, ତା ପଛେ ପଛେ କଳେଶ ମଧ୍ୟ ଲୁହା ଶାଳ ଧରି ଧରି ଉପରକୁ ଚଢି ଆସିଲା ।

ବିଶେଷ ଖଣ୍ଡିଆ ଖାବରା ହୋଇନଥିଲେ ମଧ୍ୟ କମଳି ପେଟେ ପାଣି ପିଇଦେଇଥିଲା ଏବଂ ତା ପେଟଟା ଫୁଲି ଯାଇଥିଲା । ଭୟ, ଲାଜ, ଦୁଃଖ ଏସବୁ ମିଶି ତାର ଆଖିଦୁଇଟା ଲାଲ ହୋଇଯାଇଥିଲା । ତାକୁ ତଳେ ମୁହଁମାଡି ଶୁଆଇଦିଆଗଲା ଏବଂ ତା ପିଠି ପଟୁ କଳେଶ ଧୀରେ ଧୀରେ ଚିପିବାକୁ ଲାଗିଲା । କିଛି ସମୟପରେ ପାଟିବାଟେ ପିଇଥିବା ପାଣି ଭକ ଭକ ହୋଇ ବାହାରିଲା । କମଳି "ମରିଗଲି ମରିଗଲି" ବୋଲି ପାଟିକରୁଥାଏ, କିଛି ସମୟପରେ କଳେଶ ଜମା ହୋଇଥିବା ଲୋକଙ୍କୁ କହିଲା– "ଏଥର ସବୁଯାଅ, କଣ ଦେଖୁଛ ଏଠି ?" କିନ୍ତୁ କେହି ଗଲେ ନାହିଁ । ପଡିଶାଘର ଲୋକେ ଲୋକଙ୍କୁ ତଡିବାରେ ବ୍ୟସ୍ତ ରହିଲେ । ପଡିଶାଘର ସ୍ତ୍ରୀ କହିଲା -"କମଳି ପାଇଁ ଗରମ ଗରମ କଫି ଆଣି ଦିଅ ।"

"ଏ ବଦ୍‌ମାସ ମାଇକିନିକୁ କଫି ଖୁଆଇବି ? କେବେ ନୁହେଁ ।" ଆହୁରି କଣ ସବୁ ଗାଳି ବକି ଲୁଗା ବଦଳାଇବାକୁ କଳେଶ ଘର ଭିତରକୁ ଗଲା । ନଞ୍ଜମ୍ମା ଧାଇଁ ଯାଇ ଗରମ କଫିରୁ ଗିଲାସେ

Digitized by srujanika@gmail.com

ତିଆରି କରି ଆଣି ଭାଉଜଙ୍କୁ ଦେଲା । ଟିକିଏ ପାଟିରେ ଲଗାଇ ଥୁ ଥୁ କରି ପକାଇଦେଲା ଏବଂ କହିଲା —"ଆଲୋ କେଉଁ ଦିହ୍ନକରେ କଫି ପିଇଥିଲୁ ନା କଣ ? ଏତିକି ଗାଉଁଲୀ, କଫି ଟିକିଏ ମଧ୍ୟ କରି ଆସୁନି ?" ଘର ଭିତରେ କଲ୍ଲେଶର କାନରେ ଏକଥା ପଡିଲା । ରାଗରେ ଧାଇଁ ଆସି ଗିଲାସଯାକ ଗରମ କଫି କମଳି ମୁଣ୍ଡରେ ଅଜାଡି ଦେଲା । କଫି ବିଶେଷ ଗରମ ନଥିଲା । କମଳି କିନ୍ତୁ କିଛି କହିଲା ନାହିଁ । କଲ୍ଲେଶ ଘର ଭିତରକୁ ଗଲା ପରେ ଅକ୍କାମା ନାତୁଣୀ ବୋହୁକୁ କହିଲା —"ଏଥର ଉଠ, ଘରକୁ ଯାଇ ଓଦା ଲୁଗାଟା ବଦଳିପକା ।" ଜଣେ ଦୁଇଜଣ ସ୍ତ୍ରୀ ଲୋକଙ୍କ ଛଡା ଆଉ ସମସ୍ତେ ଯାଇ ସାରିଥିଲେ । କିନ୍ତୁ କମଳି ଠିଆ ହେଲା ନାହିଁ । କୂଅମୂଳେ ସେମିତି ବସି ରହିଲା ।

ସେଦିନ ରାତିରେ କମଳି ଉପାସ ରହିଲା । କଲ୍ଲେଶ କହିବା ଅନୁସାରେ ଅକ୍କାମା ଓ ନଞ୍ଜୁ ବାଡି ଦୁଆର ମୁହଁରେ ରାସ୍ତା ବନ୍ଦ କରି ଶୋଇଲେ । ତାଙ୍କ ମନରେ ଆହୁରି ପାପ ଛୁଉଁଥିଲା ଯେ କାଳେ ରାତିରେ ପୁଣି ଯାଇ କମଳି କୂଅରେ ଡେଇଁ ପଡିବ । କଲ୍ଲେଶ ମଧ୍ୟ ବାରଣ୍ଡାରେ ମଶିଣା ପକାଇ ଶୋଇଗଲା । ମନେ ମନେ ବାପାଙ୍କ ଉପରେ ବିରକ୍ତ ହେଉଥିଲା ଯେ କେଉଁଠୁ ଗୋଟାଏ ଏଭଳି ସ୍ତ୍ରୀ ଆଣି ତାକୁ ବିଭା କରାଇଦେଲେ । ଏମିତି ଭାବୁ ଭାବୁ କେତେବେଳେ ଉଠି ଦେଖିଲା ଯେ ରୋଷେଇ ଘରେ ଆଲୁଅ ଦିଶୁଛି । ପାଦ ଚିପି ଚିପି ଯାଇ ଦେଖିଲା କମଳି ଚୁଲି ମୁହଁରେ ବସି କଣ ଖାଉଛି । ଉଣ୍ଡି ଦେଖିଲା ଯେ ହାଣ୍ଡିରୁ ବଳିଥିବା ତରକାରୀ ଖାଉଛି ଏବଂ ପାଖରେ ଦହି ଆଟିକାଟି ମଧ୍ୟ ଥୁଆ ହୋଇଛି । ପୁଣି ପାଦ ଚିପି ଚିପି ଯାଇ ବାରଣ୍ଡାରେ ଶୋଇପଡିଲା ।

ଏଇ କେତେଦିନ ହେଲା କମଳି ଦିନରେ ଉପାସରେ ରହୁଛି । କିନ୍ତୁ ରାତିରେ ସମସ୍ତେ ଶୋଇପଡିବା ପରେ ଲୁଚି ଲୁଚି ଯାଇ ହାଣ୍ଡିରୁ ଖାଉଛି । ସକାଳୁ ଉଠି ଦେଖେଇ ହୋଇ କହୁଛି ଯେ, "ଏ ସବୋଖାଇମାନଙ୍କ ଲାଗି ତାକୁ ଉପାସରେ ରହିବାକୁ ପଡୁଛି ? ରାତିରେ ହାଣ୍ଡିରୁ ଭାତ, ତରକାରୀ ଉଭାନ୍ ହେବା ଅର୍ଥ, କମଳି ରାତିରେ ଲୁଚି ଲୁଚି ଖାଉଛି । କିନ୍ତୁ ଆଜି କଲ୍ଲେଶ ଏହା ନିଜ ଆଖିରେ ଦେଖିଲା । ମନେ ମନେ ଭାବିଲା, "ଏ ଚୋରଣୀ, ହାଣ୍ଡିଖାଇକୁ ଛାଡି ଆଉ ଗୋଟିଏ ବିଭା ହେବା ଉଚିତ ।"ଏତିକିବେଳେ ଦାଣ୍ଡରେ ମୋଟରକାର୍ ଆସିବା ଶବ୍ଦ ଶୁଣାଗଲା । ଭାବିଲା,"କିଏ ଆସିଛି ?" କାହାଘରକୁ ଆସିଛି ?" ଏତିକି ବେଳେ ତାଙ୍କରି ଦୁଆରେ ଗାଡି ରହିଲା ଏବଂ ଦୁଆର ଖଡ ଖଡ ଶୁଭିଲା । "କିଏ ଡାକୁଛି " କହି କଲ୍ଲେଶ ଉଠିଲା ଏବଂ ଡିବିରି ଜଳାଇ ଦୁଆର ଫିଟାଇଲା । ଦେଖିଲା ଯେ ତା ଶାଶୁ, ଶଶୁର ଏବଂ ସାଙ୍ଗରେ ଚାରିଜଣ ବନ୍ଧୁବାନ୍ଧବ ଧରି ଆସିଛନ୍ତି । ଏମାନଙ୍କୁ ଦେଖି ସେ ବଡ ଆଶ୍ଚର୍ଯ୍ୟ ହେଲା ।

ଶାଶୁ ସକସକ ହୋଇ କାନ୍ଦିକହିଲେ —"ମୋ ଝିଅ କମଳି କୁଆଡେ ଗଲା ?" "ରୋଷେଇ ଘର ଯାଇ ଦେଖ ?" ସେ ଉତ୍ତର ଦେଲା ।

କିନ୍ତୁ, ସେମାନେ ଯାଇ ଦେଖନ୍ତି ତ, ସେ ସେଠାରେ ନାହିଁ । ଦିଅଁ ଖଟୁଲି ଆଗରେ ଦୀପଟି ସଦ୍ୟ

Digitized by srujanika@gmail.com

ଲିଭା ଯାଇଥିବାରୁ ସେଥିରୁ ଧୂଆଁ ବାହାରୁଥିଲା । ସେଠାରୁ ଆସି ଶୋଇବା ଘର ଦେଖିଲାବେଳକୁ କମଳି ମଶିଣାରେ ମୁହଁ ମାଡି ଏମିତି ଶୋଇଛି ସତେ ଯେପରି ଉଠି କୁଆଡେ ଯାଇ ନାହିଁ, ଉପରେ କଳେଶ କହିଲା -"ଦେଖନ୍ତୁ, ଆପଣମାନେ ଆସିଲାବେଳକୁ ରୋଷେଇ ଘରେ ଲୁଚି ଲୁଚି ଖାଉଥିଲା ଏବେ ଦୀପ ଲିଭାଇ ଆଖି ବୁଜି ଏମିତି ଶୋଇଛି ସତେ ?"

"ସମସ୍ତେ ଭଲ ଅଛନ୍ତି ନା ନାହିଁ କହିଲ ?"

"ଆପଣମାନେ ଏତେ ରାତିରେ କିପରି ଆସିଲେ ?" କଳେଶ ପଚାରିଲା । "

"କମଳି କୂଅରେ ପଡିଯାଇଛି ବୋଲି ଖବର ପାଇ ଆମେ ଧାଇଁ ଆସିଲୁ । ତୁମେ ଟେଲିଫୋନ୍‌ରେ ଖବର ପଠେଇଥିଲ ନା ?

"ହଁ ହଁ । ଆଚ୍ଛା କହିଲେ ଫୋନ୍‌ରେ ଆପଣଙ୍କ ସାଙ୍ଗରେ କିଏ କଥା ହେଲା ?" ଶଶୁରଙ୍କ ଠାରୁ ଖବର ପାଇବା ପାଇଁ କଳେଶ ଏପରି ଛଳନା କରିଥିଲା ।

"ଯିଏ ଫୋନ୍ କଲେ ସ୍ୱାଙ୍କର କଣ ଗଲା ?" ଶୋଇବା ଘରୁ କମଳି ପାଟିକଲା ।

ସେ ଯାହାହେଉ ସମସ୍ତେ ଜାଣିଗଲେ ଯେ କମଳି କାହାକୁ କହି ଫୋନ୍ କରାଇଛି । କିନ୍ତୁ ଜଣାପଡିଲାନି ଫୋନ୍ ପ୍ରକୃତରେ କରିଥିଲା କିଏ ? କଳେଶ ମଧ୍ୟ ସେତେବେଳେ ଜୋର କରି ପଚାରିଲା ନାହିଁ । ସିଧା ପଡିଶାଘର ଦ୍ୱାରକୁଯାଇ ଖଡ ଖଡ କଲା । ମଟର ଗାଡି ଶବ୍ଦ ଶୁଣି ପାଖ ପଡୋଶୀଙ୍କର ନିଦ ମଧ୍ୟ ଭାଙ୍ଗିଯାଇଥିଲା, ପଡିଶାଘର ଲୋକ, ତାଙ୍କର ସ୍ତ୍ରୀ ଏବଂ ଆଉ ପାଖ ଘରର ଜଣେ ଲୋକକୁ ଡାକିଆଣି କଳେଶ ଶାଶୁଙ୍କୁ କହିଲା –"ମୁଁ ସିନା କହିଲେ ଆପଣମାନେ ବିଶ୍ୱାସ କରିବେ ନାହିଁ । ଏମାନଙ୍କ କଥା ତ ବିଶ୍ୱାସ କରିବେ । ମାମୁଁ, ଘଟଣା କଣ ସତ ସତ ଏମାନଙ୍କୁ କହିଦିଅ ।"

ପଡୋଶୀ ମାନେ କିନ୍ତୁ, କିଛି କହିଲେ ନାହିଁ । କଳେଶ ଘଟଣା ସବୁ ବର୍ଣ୍ଣନା କଲା । କମଳିକୁ ମାଡ ମାରିବା କଥା କଳେଶ କହିଲା, କିନ୍ତୁ, ଗୋଇଠା ମାରିବା କଥା କହିଲା ନାହିଁ । ପଡୋଶୀମାନେ ସ୍ୱୀକାର କଲେ ଯେ କଳେଶ ଯାହା କହୁଛି ସତ । ସବୁ କଥା ଶୁଣି ଶାଶୁ କହିଲେ –"ଯାହା କହିଲ ସତ ଯେ ଆମେ ଯେଉଁ ଝିଅଟିକୁ ପାଳି ପୋଷି ବଡ କରି ତୁମ ଗାଁକୁ ପଠାଇଛୁ ତାର ଅଭାବ, ଅସୁବିଧା ତୁମେମାନେ ବୁଝିବା କଥା ।" ଶଶୁରଙ୍କୁ ଚୁପ୍ ହୋଇଥିବା ଦେଖି କଳେଶ ପଚାରିଲା– "ବର୍ତ୍ତମାନ ଆପଣ କୁହନ୍ତୁ, ଆପଣଙ୍କୁ ଫୋନ୍‌କିଏ କରିଥିଲା ?" ମୋ ତୁଣ୍ଡରୁ ମିଛ ବାହାରିବ ନାହିଁ । ଫୋନ୍ ଚେନ୍ନାକଟାରୁ ଆସିଥିଲା । ସେଠାରେ ଇଲେକ୍‌ଟ୍ରିକ୍ ଅଫିସ ସାଥୀରେ ହାସନର ଇଲେକ୍‌ଟ୍ରିକ୍ ଅଫିସ ଲୋକେ କଥାବାର୍ତ୍ତା କରିଥିଲେ । ଏବଂ ଖବର ପଠାଇଥିଲେ ଯେ ପୋଷ୍ଟମ୍ୟାନ୍ ରଙ୍ଗନ୍ନାଙ୍କୁ ଶୀଘ୍ର ଖବର ଦିଅ ଯେ ଏପରି ଘଟଣା ହୋଇଯାଇଛି ବୋଲି । ମୁଁ ସବୁଦିନ ସେଇବାଟେ ଚିଠି ବାଣ୍ଟିବାକୁ ଯାଏ । ତେଣୁ ସେ ଅଫିସର ଲୋକେ ମତେ ଚିହ୍ନନ୍ତି । ଇଲେକ୍‌ଟ୍ରିକ୍ ଅଫିସର ଲୋକ ଆସି ଆମକୁ ଖବର ଜଣାଇଲା । ଏହା ଶୁଣି ଗାଡିଟିଏ ପଚାଶଟଙ୍କା ଭଡା କରି ଆମେ ତରବରରେ ପଳାଇ ଆସିଲୁ ।"

Digitized by srujanika@gmail.com

"ଆସି ତ ଗଲେଣି ଏବଂ ସାଙ୍ଗରେ ମଟରଗାଡି ଅଛି । ଆପଣଙ୍କ ଝିଅ ମଧ୍ୟ ଏଠି ବିରକ୍ତ ହୋଇଗଲାଣି । ଆପଣ ତାକୁ ସାଙ୍ଗରେ ନେଇଯାଆନ୍ତୁ ।"

ଶାଶୁ କହିଲେ - "ଭଲ କଥା, ସେଠି ଦିଚାରିଦିନ ରହିଆସିଲେ ମନ ବଦଳିଯିବ ।"

ଶ୍ୱଶୁର କହିଲେ—"ସ୍ୱାମୀ ସ୍ତ୍ରୀର ଝଗଡା ହେଲାବେଳେ ଝିଅକୁ ନେଇଯିବା ଠିକ୍ ହେବ ନାହିଁ । ସେମାନେ ଯେତେବେଳେ ମନ ଖୁସିରେ ଯିବେ ସେତିକିବେଳେ ନେବା ଆଣିବା କଲେ ଭଲ ।"

"କାହିଁକି ମ ? ଆମ ଝିଅକୁ ଆମେ ଘରକୁ ନେଲେ କଣ ହୋଇଯିବ ?" ଶାଶୁ କହିଲେ ।

"ତୁ ତ କଥାଟା ମୋଟେ ବୁଝିବୁନି । ଚୁପ୍ ରହ ।" ତାଙ୍କ ସ୍ୱାମୀ କହିଲେ ।

"ମୁଁ ନିଶ୍ଚୟ ଯିବି ।" ଏକଥା କହି କମଳି ଶେଯରୁ ଉଠି ମା ପାଖରେ ଆସି ଠିଆ ହେଲା । ବାପା ଯେତେ ବୁଝାଇଲେ ସୁଦ୍ଧା ମାନିଲା ନାହିଁ । ରଙ୍ଗନ୍ନା ଉଠି ଠିଆ ହୋଇ କହିଲେ -" ଚାଲ ଚାଲ ସମସ୍ତେ ଗାଡିରେ ବସ ବେଶି ଡେରି ହେଲାଣି । ଗାଁକୁ ଫେରିବାକୁ ହେବ । " ସ୍ତ୍ରୀ ମୁହଁରୁ ଝିଅକୁ ନେବା କଥା ଶୁଣି ପୁଣି କହିଲେ —"ଆଜି ପର୍ଯ୍ୟନ୍ତ ତୁମକଥାରେ ପଡ଼ି ଏପରି ଅବସ୍ଥା ହୋଇଛି । ବେଶି କିଛି ଆଉ କହ ନାହିଁ ।" ସମସ୍ତେ ଯାଇ ଗାଡିରେ ବସିଗଲେ । କମଳି ଗାଡି ଭିତରେ ପଶିବାକୁ ଚେଷ୍ଟା କଲେ ସୁଦ୍ଧା ତା ବାପା ତା ହାତଧରି ବାହାର କରିଦେଲେ । ପରିସ୍ଥିତିକୁ ବୁଝି ଡ୍ରାଇଭର ଗାଡି ଷ୍ଟାର୍ଟ କରିଦେଲା । ରଙ୍ଗନ୍ନାଙ୍କ ପାଟିରୁ ବାହାରି ପଡିଲା —"ପଚାଶହଜାର ପାଣିରେ ପଡିଲା । ଦେଢମାସର ଖର୍ଚ୍ଚ ।"

କୋଡିଏ ଗଜ ଖଣ୍ଡେ ଯାଇ ଗାଡି ରହିଗଲା । ରଙ୍ଗନ୍ନା ଗାଡିରୁ ବାହାରି କଲ୍ଲେଶଙ୍କୁ ଡାକିଲେ । କଲ୍ଲେଶ ପାଖକୁ ଆସିବାରୁ କହିଲେ —"ବେଶି ଗୁଡେ଼ ରାଗିବା ଠିକ୍ ହେବ ନାହିଁ । ମାରଣା ଗାଈକୁ ମଧ୍ୟ ଘାସ ଦେଖାଇ ଆଉଁସା ଆଉଁସି କରି ଗୁହାଳରେ ବନ୍ଧାଯାଏ । ତା କଥା ଧରିବ ନାହିଁ । ମୋ କଥା ରକ୍ଷା କରିବ ।" କହିଲାବେଳେ ତାଙ୍କ ଆଖି ଛଳ ଛଳ ହୋଇଗଲା ତାଙ୍କ ସ୍ତ୍ରୀ ପଛରୁ କହିଲେ —"ମୋ ଝିଅ କଣ ଏମିତି କରି ପକାଇଛି ଯେ ଏତେ କଥା ପଡିଛି ।"

"ଏ ବିଷୟରେ ବେଶି କଥାବାର୍ତ୍ତା କରି ଲାଭ ନାହିଁ ।" ଏକଥା କହି ରଙ୍ଗନ୍ନା ଗାଡ଼ି ଭିତରେ ବସିଲେ ଏବଂ ଡ୍ରାଇଭର ଗାଡ଼ି ଛୁଟାଇ ଦେଲା ।

ପାଖ ପଡ଼ୋଶୀ ଯାଇ ଯେ ଯାହାର ଘରେ ଶୋଇଗଲେ । କଲ୍ଲେଶ ଘରେ ମଧ୍ୟ ସମସ୍ତେ ଶୋଇପଡ଼ିଲେ । କହିବାକୁ ତ ଅନେକ କଥା ଥିଲା କିନ୍ତୁ କେହି କଥା ଉଠାଇଲେ ନାହିଁ । କେବଳ ଅକ୍କା ଥରେ ଦୁଇଥର କହିବାର ଶୁଣାଗଲା —"ପୋଡ଼ାମୁହିଁର କେତେ ବହପ ସତେ । ବାପଘରକୁ ଖବର ଦେଇ ଦେଇଛି ।" ନଞ୍ଜୁ ସବୁଦିନ ପରି ଚୁପଚାପ ରହିଥାଏ । କଲ୍ଲେଶ ମଧ୍ୟ କିଛି କହିଲା ନାହିଁ । ତେଣୁ ଅକ୍କାର ଇଚ୍ଛା ଥିଲେ ମଧ୍ୟ କଥାଟା ବଢେଇ ପାରିଲା ନାହିଁ । କଲ୍ଲେଶର ହାତରେ ଶ୍ୱଶୁରଙ୍କର ଆଖିରୁ ଲୁହଟୋପାଏ ପଡିଯାଇଥିବାରୁ ତା ମନଟା ଖୁବ୍‌ବୁକୁ ହେଉଥାଏ । ତାକୁ ପ୍ଲେଗ ହୋଇଥିଲା ବେଳେ ଶ୍ୱଶୁର ନିଜ ପୁଅଭଳିଆ କେତେ ସେବା କରିଥିଲେ । ତା ମନରେ ସେଥିପାଇଁ ଶ୍ୱଶୁରଙ୍କ ପ୍ରତି ବହୁତ ଶ୍ରଦ୍ଧା ଜନ୍ମିଥିଲା । ସେ ଭାବିଲା— କମଳି ଉପରେ ଏତେ ରାଗ ଆସୁଛି ଯେ ଗୋଇଠା ମାରି ଅଣ୍ଟାଭାଙ୍ଗି ଦେବାକୁ ଇଚ୍ଛା ହେଉଛି, କିନ୍ତୁ ଶ୍ୱଶୁରଙ୍କ କଥା ଭାବି ମନ ପୁଣି ଦବି ଯାଉଛି । କଣ କରିବ ଭାବି କିଛି ଥଳକୂଳ ପାଇଲା ନାହିଁ ।

Digitized by srujanika@gmail.com

# ଷଷ୍ଠ ଅଧ୍ୟାୟ

## 1

ଛଅମାସ ଗଲାପରେ ଦିନେ ଅଧରାତି ବେଳକୁ ଅପନ୍ନାସ୍ୱା ଗାଁକୁ ଫେରିଲା । ସିଧା ଘରକୁ ନଯାଇ, କେଉଟ ସାହିରେ ମାଗା କେଉଟର କବାଟ ବାଡେଇଲା । ମାଗା ଦ୍ୱାର ଖୋଲି ଅପନ୍ନାସ୍ୱାକୁ ଦେଖି ଆଶ୍ଚର୍ଯ୍ୟ ହୋଇ ପଚାରିଲା, "କୁଆଡେ ପଳେଇ ଥିଲେ କି ହଜୁର ?"

"ମତେ ପୁଲିସବାଲା ଖୋଜୁଥିଲେ କି ?"

"କେଉଁ ପୁଲିସ ମ ?"

"ଆରେ ସେଦିନ କଥା ତୋର ମନେ ନାହିଁ ?"

ମାଗାର ମନେପଡିବାରୁ କହିଲା –"ଆଜ୍ଞା, ତମେ ଯାହାକୁ ଡରି ଆମ ଘରେ ଲୁଚିଥିଲ । ସେମାନେ ପୁଲିସ କାହିଁକି ହେବେ ମ ? ସେଗୁଡାକ ପରା ବନ୍ଦୋବସ୍ତ କର୍ମଚାରୀ ଆମ ଗାଁରେ ତିନିମାସ ରହିଲେ । ଆଜ୍ଞା, ଆପଣ ଏତେଦିନ ଯାଏଁ କେଉଁଠି ଲୁଚିଥିଲେ ? ମା' ଆପଣଙ୍କ ପାଇଁ ବହୁତ ବ୍ୟସ୍ତ ।"

"ତାହାହେଲେ ମୁଁ ଘରକୁ ଯିବି ତ?"

"ହଁ ନିଶ୍ଚୟ ।"

"ଭାରି ଡର ଲାଗୁଛି । ତୁ ଟିକିଏ ସାଥୀରେ ଆ," ମାଗା କେଉଟକୁ ସାଙ୍ଗରେ ଧରି ଅଦ୍ଭୁତ ସାହସର ସହିତ ଅପନ୍ନାସ୍ୱା ନିଜ ଘର କବାଟ ଠକ୍ ଠକ୍ କଲା । "କିଏରେ ଏତେ ରାତିରେ ?" ଭିତରୁ ଡାକ ଶୁଣି ମାଗା କେଉଟ ଉତ୍ତର ଦେଲା । ଡିବିରି ଜଳାଇ ଗଙ୍ଗାମ୍ମା କବାଟ ଫିଟାଇଲା । ପୁଅକୁ ଦେଖି ଗଙ୍ଗାମ୍ମା କହିଲା –"କେଉଁଠି ଏତେଦିନ ରହିଲୁରେ ପୁଅ ।" ଆଖିରୁ ଧାର ଧାର ଲୁହ ବୋହିଯାଉଥାଏ । ନଞ୍ଜମ୍ମା ପୋଖତି ଘର ପାଇଁ ନାଗଲାପୁର ଚାଲିଯାଇଥିଲା । ଚେନ୍ନିଗାର ନିଦ ଟିକିଏ ବହଳା । ମା ପୁଅକୁ କେଉଁଠି ରହିଲୁ, କଣ ଖାଇଲୁ, ଆଦି ପ୍ରଶ୍ନ ପଚାରିଲା ।

ପୁଅ ତାର ବୀରତ୍ୱର କାହାଣୀ ଶୁଣାଇବା ଆରମ୍ଭ କଲା – ମା, ମୁଁ ନିର୍ଭୟରେ ବୁଲୁଥିଲି । ଯେଉଁଠିକି ଗଲି ବଡ ଆରାମରେ ଦିନ କଟାଇଲି । ଏଠୁ ତ ସିଧା ଗଲି ଯାବଗଲ ରାସ୍ତାରେ । ଜଣକ

Digitized by srujanika@gmail.com

ଘରେ ଯାଇ ବ୍ରାହ୍ମଣ ବୋଲି ପରିଚୟ ଦେଇ ଚାଉଳ, ଡାଲି, ମାଗିଲି ରାନ୍ଧି ଖାଇବା ପାଇଁ । ସେମାନେ ଦିସେର ଚାଉଳ, କିଛି ପନିପରିବା, ଲୁଣ, ଲଙ୍କା ଏବଂ ତେଲ ଦେଲେ । ରନ୍ଧା ରନ୍ଧି ସାରି ଖାଇପିଇ ଯାହା ବଳିଲା ତାକୁ ଗାମୁଛାରେ ବାନ୍ଧି ଯାବଗଲ ଆଡେ ଚାଲିଲି । ସେଠି ରହିଲି ମାସେ । ସେଠି ଦେଖା ହେଲା ଭେଙ୍କଟରାମର ସ୍ତ୍ରୀ ସାଙ୍ଗରେ । ସେ ଇଆଡୁ ସିଆଡୁ କେତେ କଥା ପଚାରିଲା – କୁଆଡେ ଆସିଛ ? ସାଙ୍ଗରେ ଆଉ କେହି ଆସିନାହାନ୍ତି କାହିଁକି ? ଗାଁରେ ଆଉ ସମସ୍ତେ କିପରି ଅଛନ୍ତି ? ଇତ୍ୟାଦି । ସେଠୁ ଗଲି ଅରସିକେରେ, ବାଣାବର, କୁଡୁରୁ ଏବଂ ସିମୋଗା । ସିମୋଗାରେ ଗୋଟିଏ ମଠରେ ଯାଇ ରହିଲି । କିନ୍ତୁ ସେମାନେ ବ୍ରାହ୍ମଣ ହୋଇନଥିବାରୁ ଅନ୍ୟ ଜାଗାରେ ଖାଇବା ବ୍ୟବସ୍ଥା କଲେ । ସେ ଗାଁର ବ୍ରାହ୍ମଣ ସାହିରେ ଭିକ୍ଷା ମାଗି ବଡ ଆରାମରେ ଖାଏ । ତୁ ଯାହା କହ ମା ଯେତେ ଭଲ କରି ରାନ୍ଧିଲେ ମଧ୍ୟ ଭିକ୍ଷା ଅନ୍ନ ଭଳିଆ ସ୍ୱାଦ ହୋଇପାରିବ ନାହିଁ । ଗଣ୍ଠିରେ ବାନ୍ଧି ଭାତ, ଡାଲି, ତରକାରୀ ନଈକୂଳକୁ ନେଇ ଯାଏ ଏବଂ ଗୋଟିଏ ସଫା ପଥର ଉପରେ ଢ଼ାଳିଇ ମଜାରେ ଖାଏ ।'' ମାଟା କେଉଟ ବୁଝି ନପାରି ପଚାରିଲା -''ଆଜ୍ଞା ଭିକ୍ଷାନ୍ନ ବୋଇଲେ କଣ ?''

''ଖାଇବା ସମୟ ଯେମିତି ହୋଇଯିବ ଦ୍ୱାରଦ୍ୱାର ବୁଲି 'ଭିକ୍ଷା ଦେହି ଭିକ୍ଷା ଦେହି,' ବୋଲି ପାଟିକଲେ ସେମାନେ ମୋ ଗାମୁଛାରେ ଭାତ, ଡାଲି, ଶାଗ, ତରକାରୀ ଆଣି ଢ଼ାଳିଇ ଦିଅନ୍ତି । ତାପରେ ତାକୁ ସବୁ ଏକାଠି ଗୋଳେଇ ଖାଇଲେ ଯେଉଁ ମଜା ନା, କଣ କହିବି ?''

''ମଜା କାହିଁକି ନଲାଗିବ । କଥାରେ ଅଛି ପର ମାଗି ଆଣିଲା ତିଅଣ ସ୍ୱାଦ ।'' ଖାଦ୍ୟ ପଦାର୍ଥର ନାଁ ଶୁଣି ମାଟାର ପାଟିରୁ ଲାଳ ବାହାରିଲା ।

''ମା' ସିମୋଗାରେ ସବୁବେଳେ ଭାତ, ଡାଲି, ତରକାରୀ ଖାଇ ଖାଇ ବିରକ୍ତ ହୋଇଯାଇଛି, ମୋ ପାଇଁ ମାଣ୍ଡିଆ ଜାଉ ଥରୁଟିଏ କରିଦେ । ଭାରି ଭୋକ । ଆଜି ରାତିରେ କିଛି ଖାଇନି ।''

''ଆରେ ଘରେ ସିନା ଦି ବୋହୂ ଯାକରୁ ଜଣେ ଥିଲେ ରାନ୍ଧିବେ ବୋଲି କହନ୍ତି । କେହି ହେଲେ ନାହାନ୍ତି । ଆରେ ଅପନ୍ନା ତୋ ସ୍ତ୍ରୀ ଝିଅଟେ ଜନ୍ମ କରିଛି ବୋଲି ଶୁଣିଲି । ନାମକରଣ ପାଇଁ ଡକେଇ ପଠେଇଥିଲେ । ଚାରିମାସ ହୋଇଗଲାଣି । ଏଥର ଯାଇ ଡାକି ଆଣ । ରନ୍ଧାରନ୍ଧି କାମ କରି ମୁଁ ହାଲିଆ ହୋଇଗଲିଣି ।'' ଏକଥା କହି କହି ଗଙ୍ଗାମ୍ମା ଉଠି ରୋଷେଇ ଘରକୁ ଗଲା ।

Digitized by srujanika@gmail.com

ତାପରେ ଚାରିଦିନ ପର୍ଯ୍ୟନ୍ତ ଗର୍ବରେ ମୁଣ୍ଡ ଟେକି ଅପନ୍ନାୟା ଗାଁସାରା ବୁଲିଲା । ଦିନେ ବୁଡା ଗୁଡ ବାନ୍ଧି, ସ୍ତ୍ରୀ ଓ ଝିଅକୁ ଆଣିବା ପାଇଁ ଶଶୁର ଘର ଗାଁକୁ ଯିବାକୁ ବାହାରି ପଡିଲା । ଚାଲି ଚାଲି ଚିପଟୁର ପର୍ଯ୍ୟନ୍ତ ଯାଇ ସେଠାରୁ ରେଳଗାଡିରେ ବସି କଟୁର ପର୍ଯ୍ୟନ୍ତ ଗଲା । ଏବଂ ତାପରେ ନଅ ମାଇଲ ଚାଲି ଚାଲି ଯାଇ ଶଶୁର ଘର ଗାଁ ନୁଗଗିକେରେ ରେ ପହଞ୍ଚିଲା । ଝିଅକୁ ଚାରିମାସ ହୋଇଯାଇଥିଲା, ଏବଂ ତାର ନାମ ରଖାଯାଇଥିଲା 'ଜୟଲକ୍ଷ୍ମୀ' ।

ସେଦିନ ପହଞ୍ଚିଲା ବେଳକୁ ସନ୍ଧ୍ୟା ହୋଇଯାଇଥିଲା । କୁନିଝିଅ ସାଙ୍ଗରେ ଅନେକ ସମୟ ଖେଳିଲା । ସ୍ତ୍ରୀ ସାଙ୍ଗରେ ମଧ୍ୟ କଥାବାର୍ତ୍ତା ହେଲା । ରାତିରେ ଖିଆପିଆ ସାରି ଶଶୁରଙ୍କ ବିଛଣା ପାଖରେ ଜୋଇଁଙ୍କ ଶେଯ ପଡିବା ଦେଖି ଅପନ୍ନାର ମନଟା ବିରକ୍ତ ହୋଇଗଲା । ଶେଯରେ ବସୁବସୁ ଶଶୁର ପ୍ରଶ୍ନ ପଚାରିବା ଆରମ୍ଭ କରିଦେଲେ ।

"ନାମକରଣ ବେଳକୁ ଡକାଇଥିଲି, କେହି ଆସିଲେ ନାହିଁ । କୁଆଡେ ଯାଇଥିଲ କି ?"

"ସିମୋଗା, ନାଇଁ ନାଇଁ ଯାବଗୋଳ ।"

"ସ୍ତ୍ରୀର ପ୍ରସବ ଦିନ ପାଖେଇ ଆସୁଛି ବୋଲି ଜଣ ଜାଣି ନଥିଲ ଯେ, କାହାକୁ କିଛି ନ କହି ଗାଁ ଛାଡି ଚାଲିଗଲ ?"

"ହଁ, ହଠାତ୍ ସେମିତି କାମ ପଡିଗଲା ।"

ପାଖ ବଖରାରେ ଶୋଇଥିବା ସ୍ତ୍ରୀ ସାତୁ ପଚାରିଲା –"ଇମିତି କଣ କାମ ପଡିଗଲା ? ମିଛ କାହିଁକି କହୁଛ ? ସତକଥା କହିଦେଉନ ଯେ, ଭାଉଜକୁ ଗୋଇଠା ମାରି କାଳେ ପୋଲିସ୍ ଧରିବ ବୋଲି ଡରି ଗାଁ ଛାଡି ଲୁଚି ପଳାଇଲ ।"

ଅପନ୍ନାୟାର ମୁହଁରୁ କଥା ବାହାରିଲା ନାହିଁ । ମୁହଁକୁ ତଳକୁ କରି ବସିଥାଏ । ସାତୁ ପୁଣି କହିଲା, –"ତୁମ ମା'ଙ୍କ କଥାରେ ଭାଉଜକୁ ଗୋଇଠା ମାରିଲ ନା? ସେ କଳିହୁଡି ବୁଢୀଟା ନ ମରିଲା ଯାଏଁ ତୁମେ ନିଜ ବୁଦ୍ଧିରେ କାମ କରିବ ନାହିଁ ।"

ମା'କୁ ଗାଳିଦେବା ଶୁଣି ଅପନ୍ନାୟା ମନରେ ରାଗ ଉଠିଲେ ମଧ୍ୟ କିଛି କହି ନପାରି ଚୁପ ରହିଲା । ସେ ଜାଣିଥିଲା ତା ସ୍ତ୍ରୀର ସ୍ୱଭାବ । ଭାଉଜ ଭଳିଆ ଶାନ୍ତ ନୁହେଁ । ସାତୁ ପୁଣି କହିଲା –"ତୁମ ମା ସାଙ୍ଗରେ ଏକୁଟିଆ ମୁଁ ରହିପାରିବି ନାହିଁ । ତୁମଘର ପଛଆଡେ ଯେଉଁ ଖାଲି ଜାଗା ଅଛି ସେଇଠି ଗୋଟିଏ ଛୋଟ ବଖରା ତିଆରି କରି ଆମେ ଅଲଗା ରହିବା । ଘର ତିଆରି ସରିଲେ ଯାଇ ମୁଁ ପିଲାକୁ ଧରି ଯିବି ।"

Digitized by srujanika@gmail.com

"ଏକଥା କେମିତି ହେବ ?" ଗଳା ସଫାକରି ଅପନ୍ନାସ୍ୱା କହିଲା ।

"କାହିଁକି ହେବ ନାହିଁ ? ଆମେ ରହିବା ପାଇଁ ଛୋଟ ବଖରାଏ ଘର ତିଆରି କରାଅ । ଭାଇଙ୍କଠାରୁ ଭିନ୍ନେ ନହେଲେ ମଧ୍ୟ ଚଳିଯିବ । ମୁଁ ତୁମ ଭାଉଜଙ୍କ ସାଙ୍ଗରେ ସାଙ୍ଗ ହୋଇ ରହିବି । କିନ୍ତୁ ମାଙ୍କୁ ଅଲଗା ରଖିବାକୁ ପଡିବ । ତାଙ୍କ ପାଇଁ ଅଲଗା ଘର କରିଦିଅ । ତାହାହେଲେ ଯାଇ ମୁଁ ତୁମ ଘରକୁ ଯିବି ।"

ମା'କୁ ଗାଳି ଦେବାରୁ ଅପନ୍ନାସ୍ୱା ରାଗରେ ଲାଲ ପଡିଆସୁଥିଲା । ତାର ରୂପ ଦେଖି ଶାଶୁ କହିଲେ, –"ଆମ ଅପନ୍ନାସ୍ୱା ଭାରି ଭଲ ପିଲା । ସାତୁ ତ ସବୁବେଳେ କହେ ଯେ ତାର ବର ଖାଣ୍ଟି ସୁନା । ଯଦି ଶାଶୁ ବୋହୂରେ ପଡୁନାହିଁ, ତେବେ ଅଲଗା ରୁହ । ଯଦି କହିବ ସାତୁ ତୁମ ମାଙ୍କୁ ତାଙ୍କ ଘର କାମରେ ସାହାଯ୍ୟ କରିବ ।" ଏକଥା ଶୁଣି ଅପନ୍ନାସ୍ୱାର ମୁହଁଟା ଟିକିଏ ପ୍ରସନ୍ନ ଦେଖାଗଲା । ଶଶୁର କହିଲେ, –"ତୁମେ ସ୍ୱାମୀ, ସ୍ତ୍ରୀ ପରସ୍ପରର ସୁଖ ଦେଖିବା ପ୍ରଥମ କର୍ତ୍ତବ୍ୟ । ସକାଳୁ ଉଠୁ ଉଠୁ ପୋଡାମୁହିଁ ରାଣ୍ଡ ଇତ୍ୟାଦି ଗାଳିଦେବା ବନ୍ଦ କର । ଆମର ତ ଗୋଟିଏ ବୋଲି ଝିଅ । ତାର ସୁଖପାଇଁ ସବୁ ବ୍ୟବସ୍ଥା କରିସାରିଲା ପରେ ତାକୁ ନିଜ ଘରକୁ ନିଅ ।"

ଅପନ୍ନା ଶଶୁରଘରେ ଆଠଦିନ ରହିଲା । ସ୍ତ୍ରୀକୁ ଗାଳିମନ୍ଦ ନଦେଇ ମନ ଆନନ୍ଦରେ ଝିଅକୁ କୋଳରେ ଧରି ଖେଳାଉଥିଲା । କିନ୍ତୁ ବେଳେବେଳେ ତାର ଅକାରଣ ରାଗ କାହାରିକୁ ଭଲ ଲାଗୁ ନଥିଲା । ଦିନେ ନଡିଆ ଭାଙ୍ଗୁ ଭାଙ୍ଗୁ ଅଶ୍ଳୀଳ ଶବ୍ଦ ଅଭ୍ୟାସ ବଶତଃ ପାଟିରୁ ବାହାରିପଡିଲା । ଆଉ ଦିନେ ଗାଈଟା ମୁଣ୍ଡ ହଲାଇଦେବାରୁ ତାକୁ ମଧ୍ୟ ଅକଥ୍ୟ ଭାଷାରେ ଗାଳିଦେଲା । ଶାଶୁ ଏସବୁ ଶୁଣି ଭାବିଲେ – ଏ ପ୍ରକାର ଜନ୍ତୁକୁ କିଏ ସୁଧାରିବ ? ସବୁ ଝିଅର କପାଳ ବୋଲି ଭାବି ଚୁପ ରହିଲେ ।

ଗାଁକୁ ଫେରିଲା ଦିନ ସାତୁ ପୁଣିଥରେ ଭିନେ ହେବା କଥା ଉଠାଇଲା । ଅପନ୍ନା 'ହଁ'ଟେ ମାରି ନିଜଗାଁକୁ ଯିବାପାଇଁ ବାହାରି ପଡିଲା । ତିପଟୁରରେ ରେଳ ଗାଡିରୁ ଓହ୍ଲାଇ ଆଗକୁ ଆଠକୋଶ ବାଟ ଚାଲିବାକୁ ପଡିବ । ଏ ରାସ୍ତାରେ ସପ୍ତାହକୁ ଦୁଇଦିନ ବସ ଚାଲେ । ଆଗକୁ ଥରେ ଅପନ୍ନାସ୍ୱା ବସରେ ବସିବା ମଜା ରଖିଛି । କିନ୍ତୁ, ଆଜି ବସ ଦିନ ନଥିବାରୁ ମନ ଟିକିଏ ଦବିଗଲା । ସନ୍ଧ୍ୟା ହୋଇଯିବାରୁ ଗାଁକୁ ନଯାଇ ତିପଟୁରରେ ରହିଗଲା । ସକାଳୁ ଗାଧୁଆ ପାଧୁଆ ସାରି ହୋଟେଲରେ ଜଳଖିଆ କରି ଗାଁ ରାସ୍ତା ଧରିଲା । ବାଟରେ ଶୋଷ ଲାଗିବାରୁ ଜଣକ ବାଡିରେ ପଶି ନଡିଆ ଗଛରେ ଚଢ଼ି ତିନୋଟି ପଇଡ ତୋଳିଲା । ପଇଡ଼ ପାଣିତକ ପିଇ ପୁଣି ଗାଁ ଆଡ଼କୁ ଚାଲିଲା । ଗଉଡ଼ ଟୋକାଙ୍କଠାରୁ ବିଡି ମାଗି ପିଇଲା । ଆଖୁବାଡିରେ ନିଆଁ ଲାଗିବା ଦିନଠାରୁ ସେ ବିଡିପିଇବା ଛାଡି ଦେଇଥିଲା କିନ୍ତୁ ମାଗଣିଆ କିଏ ଯଦି ଯାଚି ଦେଉଥିଲା ତାହାହେଲେ ଛାଡୁ ନଥିଲା ।

Digitized by srujanika@gmail.com

ଅପନ୍ନାସ୍ୱାମୀ ଗାଁରେ ପହଞ୍ଚିଲା ବେଳକୁ ଉପରବେଳା ଚାରିଟା ବାଜି ସାରିଥିଲା । ସେ ଘରେ ପହଞ୍ଚିବାର ଅଳ୍ପ ସମୟପରେ, ଗାଁ ମୁଖିଆ, ଶିବ ଗୌଡ ଏବଂ ପୂର୍ବତନ ସର୍ବରାକାର ଶିବଲିଙ୍ଗ ଗୌଡ ଆସି ହାଜର ହେଲେ । ଶିବଲିଙ୍ଗ ଗଙ୍ଗାମ୍ମାକୁ ଡାକି କହିଲା –"ଠିକ୍ ସମୟକୁ ଅପନ୍ନାସ୍ୱାମୀ ମଧ୍ୟ ଆସି ପହଞ୍ଚିଛି । ମୋ ଟଙ୍କା ଫେରାଇବା କଥା କଣ ହେଲା ? ଭୁଲିଗଲ କି ?" ଦୁଇମିନିଟ ଖଣ୍ଡେ ଗଙ୍ଗାମ୍ମା ମନେପକାଇବାକୁ ଚେଷ୍ଟା କଲା ଯେ ସେ କେଉଁ ପଇସା କଥା କହୁଛି । ଶିବ ଗୌଡ ମନେପକାଇ ଦେଲା ଯେ - "ମୂଳଧନ ଦୁଇହଜାରର ସାତବର୍ଷର ସୁଧ ଦେଇନାହିଁ । ସେ ହିସାବରୁ ଆଉ ଛଅଶହ ଟଙ୍କା ଅଧିକ । ଏପରି ସବୁ ମିଶି ଚାରିହଜାର ଛଅଶହ ଅଶୀ ଟଙ୍କା ତୁମ ଉପରେ ହେଉଛି, ଆଜିଠାରୁ ମାସେ ଭିତରେ ମୋ ଟଙ୍କା ଫେରାଇ ଦିଅ । ସମୟ ବହୁତ ଗଡିଗଲାଣି । ନହେଲେ ମତେ କୋର୍ଟ କଚେରୀ ଯିବାକୁ ପଡିବ ।"

ଗଙ୍ଗାମ୍ମା କହିଲା –"ପୁଅମୋର ଅଜାଣତରେ କେତେବେଳେ କଣ କରିପକାଇଥିଲା, ସେ ସେଥିପାଇଁ ଏତେଟଙ୍କା କେଉଁଠୁ ଆଣିବ କହିଲ ?"

"ତାହାହେଲେ ମୁଁ ଯେଉଁ ଟଙ୍କାତକ ଦେଇଛି ସେଇଟା କଣ ମିଛ ? ତୁମେ ଏପରି କଣ କହୁଛ ? ଆରେ ଚେନ୍ନିଗା ତୁ ତ ସର୍ବରାକାରୀ କରୁଛୁ । ତୁ କହ ମୁଁ ଟଙ୍କା ଦେବାଟା ସତ ନା ମିଛ ।" ଚେନ୍ନିଗରାୟ ଚୁପଚାପ ବସିଥିଲା । "ଆଜିଠୁ ଆଠଦିନ ଭିତରେ ଯଦି ଟଙ୍କା ନ ଫେରାଅ ତେବେ ମୁଁ କେଶ କରିବାକୁ ବାଧ୍ୟ ହେବି । ସେତେବେଳେ କହିଲେ ମୁଁ ଆଉ କିଛି ଶୁଣିବି ନାହିଁ ।" ଏହା କହି ଶିବଲିଙ୍ଗ ଶିବ ଗୌଡକୁ ଧରି ଉଠି ଚାଲିଗଲା ।

ଗଙ୍ଗାମ୍ମା ପୁଅକୁ ପଚାରିଲା – "ଏବେ କଣ କରିବାରେ ଚେନ୍ନିଗା ?"

"ମୁଁ କଣ କହିବି ମା ?" ଚେନ୍ନିଗା କହିଲା ।

"ତୁ ପରା ସର୍ବରାକାର ହୋଇଛୁ ? ଆଉ ଜାଣିନୁ ବୋଲି କଣ କହୁଛୁ ?"

ଅପନ୍ନାସ୍ୱାମୀ କହିଲା –"ଆରେ ଆମଠୁ କେମିତି ସିଏ ଟଙ୍କା ନେଇଯିବ ଦେଖିବି ? ତାକୁ କହିଦେ ଆମେ ଦେବୁନି ।"

"କହିଦେବି ତାହାହେଲେ ।"

"ହଁ ମା' କହିଦେ । ମା' ମତେ ଭାରି ଭୋକ । ଖାଇବାକୁ ଶୀଘ୍ର ବାଢ । ସେ କ'ଣ ଆମଠୁ ନବ ପରେ ସେକଥା ବୁଝିବା ।"

ଗଙ୍ଗାମ୍ମା ଭାତ ବାଢିବାକୁ ଘରଭିତରକୁ ଚାଲିଗଲା ।

Digitized by srujanika@gmail.com

ଗଙ୍ଗାମ୍ମା ମନେମନେ ଭାବିଲା – ଏ ସମ୍ବନ୍ଧରେ କାହାକୁ ପଚାରିଲେ ଠିକ୍ ହେବ । ତାର ରେବଣ ସେଠୀ କଥା ମନେ ପଡିଲା । ସେ ଗାଁରେ ଓକିଲ ନାମରେ ପରିଚିତ ଥିଲା । ସଦାବେଳେ ଏାର ପ୍ରକାର କେଶ ପାଇଁ ସେ ତିପଟୁର ଯିବା ଆସିବା କରେ । ଲୋକ କହନ୍ତି ଯେ ତା ସାଙ୍ଗରେ ବଡ ବଡ ଓକିଲ ମଧ୍ୟ କଥା କହି ପାରନ୍ତି ନାହିଁ । ଗଙ୍ଗାମ୍ମା ସିଧା ରେବଣ ସେଠୀ ଘରକୁ ଗଲା । ସେଠୀର ସ୍ତ୍ରୀ କହିଲା – "ସେ ପାଖ ଗାଁକୁ ଯାଇଛନ୍ତି, ତାସ ଖେଳିବାକୁ ।" ଗଙ୍ଗାମ୍ମା ପାଇଁ ମଶିଣାଟିଏ ପକେଇ ଦେଇ ବସିବାକୁ କହିଲା । ଗଙ୍ଗାମ୍ମା ଶିବ ଗୌଡ ପାଖରେ ଜମି ବନ୍ଧକ ରଖିବା କଥା ଏବଂ ସେ ଆସି ଟଙ୍କା ପରିଶୋଧ କରିବା ପାଇଁ ଧମକାଇବା କଥା ମଧ୍ୟ କହିଲା । ସେଠୀର ସ୍ତ୍ରୀ କହିଲା "ଜମି ବନ୍ଧା ରଖିବା କଥା ତ ଗାଁସାରା ସମସ୍ତେ ଜାଣନ୍ତି । ତୁମେ ତା ଟଙ୍କା ଆଜି ଯାଏ ନ ଫେରେଇ ଚୁପ୍ ହୋଇ ବସିଛ କାହିଁକି ?"

"ଆଲୋ କଣ ଅଳ୍ପ ପଇସା ହେଲେ ହୋଇଥାନ୍ତା, ଏତେ ଟଙ୍କା କେଉଁଠୁ ଆଣିବୁ ?" ଗଙ୍ଗାମ୍ମା କହିଲା ।

ସେଠିଆଣୀ ଏ ଟଙ୍କା ପଇସା ଛନ୍ଦମନ୍ଦ କାରବାର କଥା ବୁଝି ପାରିଲାନାହିଁ । ତାର ବୟସ ପ୍ରାୟ ତିରିଶ ଏବଂ ପାଞ୍ଚଟା ପିଲାର ମା । ଅପନ୍ନାମ୍ମା ଆଖି କିଆରୀରେ ନିଆଁ ଲଗାଇବା ଦିନ ରେବଣ ସେଠୀ ଆଖିକିଆରୀରେ ନିଆଁ ଲାଗିବା ଯୋଗୁଁ ପଚିଶ ଟଙ୍କା ଅସୁଲ କରିଥିଲା । ସେଠିଆଣୀକୁ ଏକଥା ଭଲ ଲାଗିନଥିଲା ।

କିଛି ସମୟପରେ ରେବଣ ସେଠୀ ଆସିଲା । ଫିନ୍ ଫିନ୍ ଧଳା ଧୋତି, ପାଦରେ ଗଙ୍ଗୀନ ରବର ଚପଲ, ଇସ୍ତ୍ରୀକରା କମିଜ ଏବଂ ବେକରେ ସୁନା ଚେନ୍, ହାତ ଆଙ୍ଗୁଠିରେ ତିନୋଟି ନାଲି ପଥର ବସା ମୁଦି ଚକ୍‌ଚକ୍ କରୁଥାଏ । ପ୍ରଜାପତିଆ ନିଶ । ରେବଣ ସେଠୀର ଚେହେରା ଦେଖି ଗଙ୍ଗାମ୍ମା ବିଶ୍ୱାସ ହୋଇଗଲା ଯେ ସେ ଶିବ ଗୌଡ଼ ବିରୁଦ୍ଧରେ କେସ୍ ଜିଣିଗଲା ।

ସବୁକଥା ଶୁଣିସାରି ସେଠୀ କହିଲା –"ସେ ଗୌଡ ପୁଅକୁ କହିଦିଅ, ଟଙ୍କା ଗୁଡାକ କଣ ଗଛରେ ଫଳୁଛି କି ? କଚେରୀରେ ନାଲିଶ କରିବ ବୋଲି କହୁଛି ନା, ତାକୁ କହିଦିଅ ଯେଉଁଠି ଇଚ୍ଛା ତାର ସେଇଠି କେଶକରୁ । ମୁଁ ମଧ୍ୟ ତିପଟୁରରେ ବଡ ବଡ ଓକିଲଙ୍କୁ ଜାଣିଛି ।"

ଗଙ୍ଗାମ୍ମାର ଛାତିରେ ଦମ୍ଭ ପଶିଲା –"ତାହାହେଲେ ତାକୁ ମୁଁ ଏଇଆ କହିଦେବି ତ ?"

"ହଁ ହଁ ଡରିବାର କାରଣ କିଛି ନାହିଁ । ତାପରେ ମୁଁ ସବୁ ବୁଝିନେବି ।"

"ତୁ ମଧ୍ୟ ମୋ ସାଙ୍ଗରେ ଚାଲ ।"

"ନାଇଁ ନାଇଁ ମୁଁ ଯିବାଟା ଠିକ୍ ହେବନି । ମୁଁ ପଛରେ ରହି ସବୁ କାମ କରିବାକୁ ହେବ । ତୁମେ କାହିଁକି ଡରୁଛ ଯେ ? ସମସ୍ତେ କହନ୍ତି ଯେ ଗଙ୍ଗାମ୍ମାର ସାହସ ଆଖପାଖ ଚଉଷଠୀ ଖଣ୍ଡ ଗାଁରେ କେଉଁ ମରଦ ପୁଅର ନଥିବ । ତୁମେ ଆଉ ଡରୁଛ କାହିଁକି ?"

Digitized by srujanika@gmail.com

ଏ ପ୍ରଶଂସା ଗଙ୍ଗାମ୍ମାର ଛନକା ମନରେ ଔଷଧ ପରି କାମ କଲା । ସାଙ୍ଗେ ସାଙ୍ଗେ ଉଠି କହିଲା – "ସତକଥା ମୁଁ କଣ ଏତେ ତରୁଆ ହୋଇଛି ଯେ ମତେ ଆଖି ଦେଖାଇବ ।" ତାପରେ ସିଧା ଶିବଗୌଡ ଘର ଆଗରେ ଠିଆ ହୋଇ କହିଲା –

"ଆରେ ମୋ ମରଦ ବଞ୍ଚିଥିଲା ବେଳେ ତୁମେ ସବୁ ଦାଣ୍ଡରେ ଲଙ୍ଗଳା ହୋଇ ବୁଲୁଥିଲ । ଆଜି ମୁଣ୍ଡକୁ ହାତ ପାଇଗଲା ଯେ ଅନ୍ୟାୟରେ ଆମକୁ ଦଣ୍ଡ ଦେଉଛ ? କେଶ କରିବାର ଧମକ ଦେଉଛ ? କଚେରୀ କୁ ଯା, କି ଦେବାନ୍‌ଙ୍କ ପାଖକୁ ଯା, ମୁଁ ମଧ୍ୟ ଓକିଲ କରିବି । ତୁମକୁ କଉଡିଟେ ସୁଦ୍ଧା ମିଳିବ ନାହିଁ । ମତେ ମାଇକିନା ଦେଖି ତରେଇ ଦେବ ବୋଲି ଭାବିଛ ନା ?"

ଶିବ ଗୌଡ ଘରୁ ବାହାରି ପଚାରିଲା – "ଆଲୋ ଗଙ୍ଗାମ୍ମା ଏସବୁ କଣ ? ଏବେ ତ ଦିଘଣ୍ଟା ଆଗରୁ ତ ଧୀରସ୍ଥିର ହୋଇ କଥା କରୁଥିଲୁ ।"

"କାହିଁକି ନ କହିବି ? ଆମକୁ ସାହାଯ୍ୟ କରିବା ଲୋକ କେହିନାହାନ୍ତି ବୋଲି ଭାବୁଛୁ ନା କଣ ? ମୁଁ ବି ଏଇ ଗାଁର ଲୋକ । ଆଉ କୁଆଡୁ ଉଡି ଆସିନି ।" ଏହା କହି ଗଙ୍ଗାମ୍ମା ଘରକୁ ଫେରିଲା ।

ରେବଣ ସେଠୀ ଆଗରୁ ଆସି ଘରେ ବସିଥିଲା । ଗଙ୍ଗାମ୍ମାର ରାଗ-ତମତମ ମୂର୍ତ୍ତି ଦେଖି ସେ ବୁଝିଗଲା ଯେ ଶିବ ଗୌଡକୁ ପାନେ ଦିଆ ହୋଇଛି । ସେ କହିଲା –"ଗଙ୍ଗାମ୍ମା ତୁମେ ଦି'ପୁଅଙ୍କୁ ସାଙ୍ଗରେ ଧରି ତିପଟୁର୍ ଥରେ ଦିଥର ଯିବାକୁ ପଡିବ । ଜଜ୍ ସାହେବଙ୍କ ଆଗରେ ଏହା ଘୋର ଅନ୍ୟାୟ ବୋଲି ପାଟିକରି କହିଲେ – ଏ କେଶରେ ତୁମେ ନିଶ୍ଚୟ ଜିଣିଯିବ । ସବୁ ଖର୍ଚ୍ଚ ମିଶି ପାଞ୍ଚଶହ ଲାଗିବ ।

"ତିପଟୁର୍ ଗଲେ ଖିଆପିଆ କେଉଁଠି କରିବା ? ଅପନ୍ନାମ୍ମା ପଚାରିଲା ।"

"ସେଠି କଣ ହୋଟେଲ ନାହିଁ କି ?"

ହୋଟେଲର ନାଁ ଶୁଣି ଅପନ୍ନାମ୍ମାର ପାଟିରୁ ଲାଳ ବାହାରିଲା । ବିଭିନ୍ନ ପ୍ରକାର ତରକାରୀ ଓ ଜଳଖିଆ କଥା ତାର ମନେ ପଡିଲା । ନିଷ୍ପତ୍ତି ଶୁଣାଇଲା ଭଳି ସ୍ୱରରେ କହିଲା - "ମା ତିପଟୁରରେ କେଶ କରିବା କଥା ଏଙ୍କୁ କହିଦେ ।"

"ସର୍ବ ରାକାଙ୍କ ମତ କଣ ?" ମା ପଚାରିଲାରୁ ଚେନ୍ନିଗରାୟ କହିଲା – "କୌଣସି ଜାଣିବା ଶୁଣିବା ଲୋକଙ୍କୁ ପଚାରିବା କଥା ।"

ଶିବ ଗୌଡ ପ୍ରକୃତରେ ମକଦ୍ଦମା କଲା । ମା, ପୁଅ ତିନିହେଁ ରେବଣ ସେଠୀ ସାଙ୍ଗରେ ତିପଟୁର୍ ଯାଇ, ସେ ଯେଉଁ ଓକିଲ ପାଖକୁ ନେଇଗଲା ତାଙ୍କୁ ମକଦ୍ଦମା ଲଢ଼ିବାପାଇଁ ନିଯୁକ୍ତ କରାଗଲା ।

Digitized by srujanika@gmail.com

ରେବଣ ସେଠୀ ଓକିଲକୁ କହିଲା – "ଗାଁର କେତେ ଜଣ ଦୁଷ୍ଟ ଲୋକ ମିଶି ଆଖୁ କିଆରୀରେ ନିଆଁ ଲଗାଇଦେଲେ ଏବଂ ଏ ନିରୀହ ଲୋକମାନଙ୍କ ଉପରେ ଜୋରିମାନା କରି ଟଙ୍କା ପଇସା ମାଗିଲେ । ଜୋରିମାନା କାଗଜ ଉପରେ ଏଙ୍କର ନାବାଳକ ପୁଅଙ୍କ ଦସ୍ତଖତ କରାଇଲେ ଏବଂ ପୈତୃକ ସମ୍ପତ୍ତି ବନ୍ଧକ ରୂପେ ରଖିନେଲେ । କାଗଜପତ୍ର ଲେଖାଇ, ଜମି ବନ୍ଧକ ରଖାଇବା ଲୋକ ସୁଦେଇ, ଶିବ ଗୌଡର ଶଳା । ଏପ୍ରକାର ଘଟଣାରେ ଏମାନେ କଣ କେଶ ଜିଣିବେ ନାହିଁ ହଜୁର ?"

ଓକିଲ କହିଲେ, "ନିଶ୍ଚୟ ଜିତିବେ ।"

"ପ୍ରଥମଦିନର ଖର୍ଚ୍ଚପାଇଁ ଘରର ସୁନା ଅଳଙ୍କାର ବିକି ଦୁଇଶହ ଟଙ୍କା ଆଣିଥିଲେ । ସେଥିରୁ ଶହେ ପଞ୍ଚସ୍ତରୀ ଟଙ୍କା ରେବଣ ସେଠୀ ନେଲା ଯେ, ଓକିଲ ସାହେବ ସମସ୍ତଙ୍କ ଆଗରେ ପଇସା ନିଅନ୍ତି ନାହିଁ । ଏକୁଟିଆ ତାଙ୍କ ଘରକୁ ଯାଇ ଏହିସାବ ତୁଟାଇ ସେଠୀ ଫେରିଲା । ଅପନ୍ନାୟ୍ୟା ଏବଂ ଚେନ୍ନିଗା ହୋଟେଲରେ ବସି ପେଟଭର୍ତ୍ତି ଖାଇଲେ । ବିଧବା ଗଙ୍ଗାମ୍ମା ଗାଁରୁ ଆଣିଥିବା ଛତୁଆରେ ଚାରିଟା କଦଳୀ ମିଶାଇ ଖାଇଲା ।

4

ଠିକ୍ ସମୟରେ ନଞ୍ଜମ୍ମାର ପୁଅଟିଏ ଜନ୍ମ ହେଲା । ଏଥର ନାମକରଣ ପୂଜାକୁ ଚେନ୍ନିଗରାୟ ଆସି, ଗଙ୍ଗାମ୍ମାର କହିଥିବା ଅନୁସାରେ ସ୍ୱର୍ଗତ ପିତାଙ୍କ ନାମ ଅନୁଯାୟୀ ପୁଅର ନାମ ରଖିଲା 'ରାମନ୍ନା' । ଏଥର କିନ୍ତୁ ଶଶୁର ଘରେ ବେଶୀ ଦିନ ରହିଲା ନାହିଁ । କାରଣ ଶଳା କଲ୍ଲେଶକୁ ଦେଖି ତାକୁ ଭାରି ଡର ଲାଗୁଥାଏ । ଏହାଛଡା ଶଳାଭାଉଜ କମଳି ମଧ୍ୟ ଭାରି ଚିଡ଼୍ ଚିଡ଼୍ ହେଉଥିଲା ।

ପୁଅକୁ ତିନିମାସ ହେବାପରେ ନଞ୍ଜମ୍ମା ଶାଶୁଘରକୁ ଆସି ଶିବ ଗୌଡ କେଶ କରିବା କଥା ଜାଣିଲା । ଶିବ ଗୌଡ ଠାରୁ ଉଧାର ନେବା କଥା ସେ ଆଗରୁ ଜାଣିଥିଲା । ଜମିବନ୍ଧା ରଖି ତାଠୁ ଦୁଇହଜାର ଟଙ୍କା ନେଇ ଆଖୁବାଡିରେ ନିଆଁ ଲଗାଇବାର ଦଣ୍ଡ ସ୍ୱରୂପ ଗାଁ ଲୋକଙ୍କୁ ଜୋରିମାନା ଦିଆଯାଇଥିଲା । ନୂଆ ନୂଆ ବୋହୁ ହୋଇ ଆସିବାର ମାସେ ଭିତରେ ପୋଖରୀ ତୁଠରେ ଏସବୁ କଥା ଶୁଣିଥିଲା । ଘରେ ଏକଥା ପଚାରିବାକୁ ସାହସ କରିନଥିଲା । ଦିନେ ସ୍ୱାମୀଙ୍କୁ ପଚାରିବାରୁ ଉତ୍ତର ମିଳିଲା –" ଏତେ ଓକିଲାତି ତତେ କିଏ ଶିଖାଇଲା ? ଚୁପ୍ ରହ ।"

ଯେଉଁଦିନ ଠାରୁ ଖଜଣା ଅସୁଲ ଖାତା ଆଦିରେ ହିସାବ ପତ୍ର ଶିଖିଲା ନଞ୍ଜମ୍ମାର ଧାରଣା ହେଲା ଯେ ଜମିବାଡି ବନ୍ଧା ପକାଇଲେ ପରିଣାମ କଣ ହୋଇପାରେ । ସେ ଭାବୁଥିଲା ଯେ, ଦିନେ ଘରେ

Digitized by srujanika@gmail.com

ସମସ୍ତଙ୍କୁ ବସାଇ ଏକଥା ବିଚାର କରିବ । କିନ୍ତୁ ସେତିକି ବେଳକୁ ଅପନ୍ନା ଅଣ୍ଟାରେ ଲାତମାରି ଗାଁ ଛାଡି ପଳାଇଥିଲା । ତାପର ଠାରୁ ଡରରେ ଏକଥା ଉଠାଇ ନଥିଲା ଏବଂ କିଛିଦିନ ପରେ ସନ୍ତାନ ପ୍ରସବ ପାଇଁ ବାପ ଘରକୁ ଚାଲିଗଲା । କିନ୍ତୁ ବର୍ତ୍ତମାନ ତ କେଶ ଆରମ୍ଭ ହୋଇଗଲାଣି । ଏକ ଉପାୟ ପାଞ୍ଚି ସ୍ୱାମୀଙ୍କୁ ପଚାରିବାରୁ ସେ ଭାରି ଦମ୍ଭରେ କହିଲା - "ଗୋଟିଏ ଫଟା ପାହୁଲା ମଧ୍ୟ ଶିବ ଗୌଡ ପାଇବ ନାହିଁ । ଓଲଟି ସେ ମୋତେ ପଇସା ଦେବ ।"

"ତୁମକୁ କିଏ କହିଲା ଯେ ତୁମେ କେଶରେ ଜିଣିଯିବ ?"

"ରେବଣ ସେଠୀ ।"

"ତା କଥାରେ କିପରି ବିଶ୍ୱାସ କରିଗଲ । ତୁମେ କଣ ଜାଣିନାହଁ ସେ ଗୋଟେ ଟାଉଟର ।"

"ଆଲୋ ତାକୁ ଗାଳିଦେଉଛୁ ? ତୁ ଜାଣିଥା କାଲି ତାକୁ କହିଦେବି ଯେ ତୁ ତାକୁ ଗାଳି ଦେଉଥିଲୁ ।"

ସ୍ୱାମୀଙ୍କର ବୁଦ୍ଧିଶୁଦ୍ଧି ଯେ କମ୍ ଏ କଥା ତାକୁ ଜଣାଥିଲା । କିନ୍ତୁ ଏତେ କମ୍ ବୋଲି ଜାଣି ତା ଆଖିରେ ଲୁହ ଭରିଗଲା । ଏପରି ସ୍ଥଳରେ କଥା ବଢେଇ ଲାଭ ବା କଣ ? ମନ ଭିତରଟା କିନ୍ତୁ ଘାଣ୍ଟି ହେଉଥାଏ । ସେ ଶୁଣିଥିଲା ଯେ ରେବଣ ସେଠୀ ଜୁଆ ଖେଳେ, ମଦ ପିଏ ଏବଂ ରାସ୍ତାରେ ଯାଉଥିବା ସ୍ତ୍ରୀ ଲୋକଙ୍କ ପ୍ରତି ଅସଦ୍ ବ୍ୟବହାର କରେ । ଗାଁଟା ସାରା ସମସ୍ତଙ୍କୁ ରେବଣ ସେଠୀର ପ୍ରକୃତି ଜଣାଥାଏ । ତାପରଦିନ ପୋଖରୀ କୂଳରେ ରେବଣ ସେଠୀର ବଡ ଝିଅ ରୁଦ୍ରାଣୀକୁ ଦେଖି ନଞ୍ଜମ୍ମା ପଚାରିଲା – "ତୁମ ମା' ଘରେ ଅଛନ୍ତି କି ?"

"ହଁ ଅଛି ?"

"ଆଉ ବାପା ?"

"କୋଡିହଳ୍ଳୀ ଗାଁକୁ ଯାଇଛନ୍ତି ।"

ସମସ୍ତେ ଜାଣନ୍ତି ଏହାର ଅର୍ଥ ସେ ଜୁଆ ଖେଳିବାକୁ ଯାଇଛି ।

"ତୁ ଶୀଘ୍ର ଯାଇ ତୋ ମା'କୁ ଡାକି ଆଣ । କହିବୁ ମୁଁ ଡକେଇ ପଠେଇଛି ।"

ପ୍ରାୟ ଦଶମିନିଟ୍ ପରେ ସେଠିଆଣୀ ଆସିଲା । ପରସ୍ପର କୁଶଳ ପଚାରି ସାରିଲାପରେ ନଞ୍ଜମ୍ମା ଚାରିପଟକୁ ଥରେ ଚାହିଁ କେହି ନଥିବାର ଜାଣି ନିଶ୍ଚିତ ହୋଇ ପଚାରିଲା –"ମୁଁ ଗୋଟିଏ ଗୁପ୍ତ କଥା ପଚାରିବି କହିବ ?"

"କି କଥା ?"

"ତୁମ ସ୍ୱାମୀ ଆମ କେଶରେ ସାହାଯ୍ୟ କରିବେ ବୋଲି ବିଶ୍ୱାସ ଦେଇଛନ୍ତି । ଏଥିରେ କଣ ଆମେ ସତରେ ଜିଣିପାରିବୁ ?"

Digitized by srujanika@gmail.com

"ନଷ୍ଟିଳ୍ପା, ପୁରୁଷ ଲୋକଙ୍କ କଥା ଆମେ କଣ ଜାଣିବା ?"

"ତୁମେ ଯାହା ଜାଣିଛ କୁହ ?"

ସେଠିଆଣୀ ମଧ୍ୟ ଏପଟ ସେପଟ ଚାହିଁ କହିଲା – "ମୋ ସ୍ୱାମୀ ଜାଣିଲେ ମତେ ଜୀବନରେ ମାରିଦେବେ । ଆଗ ଠାକୁରଙ୍କ ରାଣ ପକାଇ କୁହ ଯେ କାହା ଆଗରେ କହିବ ନାହିଁ ।"

"ଠାକୁରଙ୍କ ରାଣ ପକାଇ କହୁଛି କାହାକୁ କହିବି ନାହିଁ ।" ନଷ୍ଟିଳ୍ପା ପୋଖରୀ ପାଣି ଆଞ୍ଜୁଳାରେ ଟେକି କହିଲା । ସେଠିଆଣୀ ତାପରେ କହିଲା କିପରି ତା ସ୍ୱାମୀ, ଭାଇ ଭାଇରେ କଳି, ଜମିବଣ୍ଟା ଇତ୍ୟାଦି କେଶ୍‌ରେ ଜିଣାଇଦେବି ବୋଲି କହି ଲୋକଙ୍କ ପାଖରୁ ପଇସା ଆଦାୟ କରନ୍ତି । ତାପରେ ଯେଉଁମାନେ ହାରିଯାଆନ୍ତି ସେମାନେ କିପରି ଆସି ଗାଳି ଗୁଲଜ କରି ଯାଆନ୍ତି । ଏସବୁ ଉପରି ପଇସା ଜୁଆ ଖେଳରେ ଉଡାଇ ଦିଅନ୍ତି । ନଷ୍ଟିଳ୍ପା ବର୍ତ୍ତମାନ ଭାବିବାରେ ଲାଗିଲା – କେଶ୍‌ପରେ ଯେଉଁ ଜମିତକ ବଞ୍ଚିବ ସେତକ କିପରି ହାତରୁ ଖସି ନଯାଏ । ସେଠିଆଣୀ ଦୀର୍ଘନିଶ୍ୱାସ ଛାଡି କହିଲା – "ନଷ୍ଟିଳ୍ପା, ତୁମର ଓ ମୋର ଏକ ପ୍ରକାର ଭାଗ୍ୟ । ମୋ ସ୍ୱାମୀ ପରଘର ଭାଙ୍ଗିବାରେ ବୁଦ୍ଧି ଜୁଟାନ୍ତି ଏବଂ ତୁମ ସ୍ୱାମୀଙ୍କ ମୁଣ୍ଡରେ ବୁଦ୍ଧି ହିଁ ନାହିଁ । ଦୁଇଜଣ ଯାକଙ୍କ ଜୀବନରେ ସୁଖ ନାହିଁ । ଠାକୁରଙ୍କ ରାଣ ଖାଇଛଟି, ମୁଁ ଯାହା କହିଲି କାହାରି ଆଗରେ କହିବ ନାହିଁ ।" ଏହାପରେ ଦୁଇଜଣ ଯେ ଯାହାର ଘରକୁ ଚାଲିଗଲେ ।

ନଷ୍ଟିଳ୍ପାକୁ ସେଦିନ ରାତିଯାକ ନିଦ ହେଲା ନାହିଁ । ସକାଳୁ ଉଠି ଭାଇ କଳେଶ ପାଖକୁ ଚିଠି ଲେଖି ବସିଲା –"ଏଠାକାର ସବୁ ଜମିବାଡି ବନ୍ଧା ପଡିଛି । ବର୍ତ୍ତମାନ କେଶ୍ ଚାଲିଛି । ତୁମେ ଶୀଘ୍ର ଏଠାକୁ ଆସ ।" ଚିଠି ଧରି ଗରା କାଖେଇ ପୋଖରୀ କୂଳରେ ପହଞ୍ଚିଲା । ଭାବୁଥିଲା ତାଙ୍କ ଗାଁ ଆଡେ ଯଦି କେହି ଯାଉଥିବେ ଚିଠିଟି ନେଇ ଯିବାକୁ କହିବ । କିନ୍ତୁ ସେପରି କେହି ମିଳିଲେ ନାହିଁ । କିଛି ସମୟପରେ ମନ୍ଦିରର ମହାଦେବୟା ଫୁଲ, ବେଲପତ୍ର ଧରି ସେବାଟେ ଆସିଲେ । ତାଙ୍କୁ ନଷ୍ଟିଳ୍ପା ଭାରି ଭକ୍ତି କରୁଥିଲା । ଆଜିକାଲି ଘରକୁ ବେଶି ଅସୁନଥିଲେ ସୁଦ୍ଧା ନଷ୍ଟିଳ୍ପାକୁ ସେ ବହୁତ ଆଦର କରୁଥିଲେ । ନଷ୍ଟିଳ୍ପା ତାଙ୍କୁ ପାଖକୁ ଡାକି ଅଣ୍ଟାରେ ଖୋସିଥିବା ଚିଠିଟି ତାଙ୍କୁ ଦେଇ କହିଲା – "ଆପଣ ଚିଠିଟି ପଢନ୍ତୁ ବୁଝିଯିବେ । କୌଣସି ପ୍ରକାରେ ମୋ ଭାଇ ପାଖରେ ପହଞ୍ଚାଇ ଦିଅନ୍ତୁ । କେହି ଯେପରି ଏକଥା ନ ଜାଣନ୍ତି ।" ଚଉତା ହୋଇଥିବା ଚିଠିଟି ମହାଦେବୟା ନିଜ ଗେରୁଆ କୁରୁତାର ପକେଟ୍ ଭିତରେ ରଖି "ଆଛା ଭଉଣୀ ଯାଉଛି' କହି ଫୁଲ ବେଲପତ୍ର ଚକ ଧରି ମନ୍ଦିର ଭିତରକୁ ଗଲେ । ସେଦିନ ମହାଦେବୟା ଗାଁରେ ସବୁଦିନ ପରି ବୁଲିବାର ଦେଖାଗଲା ନାହିଁ । କେହି କେହି ତାଙ୍କୁ କିଛି ଦୂରରେ ଥିବା ଶିବଗିରି ଗାଁ ଆଡେ ଯିବାର ଦେଖିଥିଲେ ।

ତା ଆରଦିନ ଦ୍ୱିପହରକୁ କଳେଶ ଭଉଣୀ ଘରେ ପହଞ୍ଚିଗଲା । ନିରୋଳାରେ ଭାଇ ସାଙ୍ଗରେ କଥାହେବା ପାଇଁ ସୁବିଧା ମିଳିଲା ନାହିଁ । ନଷ୍ଟିଳ୍ପା ପରେ ଠିକକଲା ସମସ୍ତଙ୍କ ସାମନାରେ କଥା ପକାଇଲେ ଠିକ୍ ହବ । ଯାହା ଯାହା ହୋଇଥିଲା ସବୁ କହିଲା ପରେ କଣ କରିବାକୁ ହେବ ଭାଇକୁ

Digitized by srujanika@gmail.com

ପଚାରିଲା । ଗଙ୍ଗାଳା ମନରେ ପାପ ଛୁଇଁଲା, "ଇଏ କଣ ଆଉ କାହା ହାତରେ ଖବର ପଠାଇ ଭାଇକୁ ଡାକାଇଛି କି ?" କିନ୍ତୁ ପୂର୍ବ ଚନ ପୁଲିସ୍ କନେଷ୍ଟବଲ କଳେଶ ସାମନାରେ କିଛି କହି ନପାରି ଚୁପ ରହିଲା । ଚେନ୍ନିଗାକୁକୁ ଜାଣାଥିଲା ଯେ ବନ୍ଧକ ଦଲିଲରେ କଣ କଣ ଲେଖାଯାଇଥିଲା । ଶଙ୍କା ପଚାରିଲାରୁ ସେ କହିଲା –"ମୁଁ କିଛି ଜାଣିନି ଶିବଲିଙ୍ଗା ତ ନିଜେ ଲେଖିଛି ।"

"କିଛି ନଜାଣି ତୁମେ ମକଦ୍ଦମା କିପରି କରିଦେଲେ ?"

"ରେବଣ ସେଠୀ ଓ ଓକିଲବାବୁ ସବୁ ଜାଣିଛନ୍ତି । ସେମାନେ କଣ ଆଉ ମିଛ କହୁଛନ୍ତି ?"

ନଞ୍ଜିମ୍ମା ସମସ୍ତଙ୍କ ଆଗରେ ରେବଣ ସେଠୀର କାର୍ଯ୍ୟକଳାପ ଓ ଚରିତ୍ର ବିଷୟରେ ବର୍ଣ୍ଣନା କରି କହିଲା –"ତାଙ୍କ ଉପରେ ବିଶ୍ୱାସ କଲେ ଏ ପରିବାର ନଷ୍ଟ ହୋଇଯିବ । ବର୍ତ୍ତମାନ ପରବୁଦ୍ଧିରେ ନଚଳି ଆମେ ନିଜ ବିବେକ ଅନୁସାରେ କାମ କରିବାକୁ ହେବ । "ଚେନ୍ନିଗରାୟ୍ ତୁମେ ମୋ ସାଙ୍ଗରେ ଆସ ଶିବଗୌଡ ଘରକୁ ଯାଇ ବନ୍ଧକ କାଗଜରେ କଣ ସବୁ ସର୍ତ୍ତ ଅଛି ପଚାରି ଆସିବା ।" କଳେଶ କହିଲା ।

କିନ୍ତୁ ତା ଘରକୁ ଯିବା ପାଇଁ ସର୍ବ ରାକାରଙ୍କର ସାହସ ହେଉନଥାଏ । ତାର ଶଙ୍କା ହେଉଥିଲା କାଳେ ସେ କହିଦେବ, ଏବେ ମୋ ଦୁଆରକୁ କାହିଁକି ଆସିଛ ? ଯାହା କିରିବା କଥା କଚେରୀରେ ଯାଇ କର । ତେଣୁ ଚେନ୍ନିଗା କହିଲା –"ତା ପାଖକୁ ଆମେ କାହିଁକି ଯିବା ? କେଶ୍ ଆମେ ନିଶ୍ଚୟ ଜିଣିବୁ । ମୁଁ କଣ ଏସବୁ ବୁଝି ବିଚାରି ନକରିଛି ବୋଲି ଭାବୁଛ ?"

କଳେଶ ଏକୁଟିଆ ଶିବଗୌଡ ଘରକୁ ଗଲା । କିନ୍ତୁ, ତାର ଯାହା ଆଶଙ୍କା ହେଉଥିଲା ସେପରି ଉତ୍ତର ଦେଇ ଫେରାଇ ଦେଲା । ନଞ୍ଜିମ୍ମା କହିଲା – "ତିମଲାପୁରର ଦ୍ୟାବରସ୍ୟାଙ୍କୁ ଯାଇ ପଚାର । କଳେଶ ତିମଲାପୁରକୁ ବାହାରିପଡିଲା । ତାର ଯିବାର ଦିଶମିନିଟ୍ ହୋଇଛି କି ନାହିଁ, ଗଙ୍ଗାଳା ବୋହୁକୁ ପଚାରିଲା –"ହଇଲୋ କା' ହାତରେ ଖବର ପଠାଇ ଭାଇକୁ ଡକାଇ ଆଣିଲୁ ? ପାଖରେ ଶୁଆଇବୁ ବୋଲି ନା କଣ ?"

ଏହା ଶୁଣି ଅତ୍ୟନ୍ତ କ୍ରୋଧ ଏବଂ ସାହସର ସହିତ ନଞ୍ଜିମ୍ମା କହିଲା –"ତୁମ ଇଚ୍ଛା ହେଉଛି ଯଦି ତୁମେ ସେପରି କର । ସେଥିପାଇଁ ତୁମ ମୁହଁକୁ ଏକଥା ବାହାରୁଛି । ମୁହଁ ସମ୍ଭାଳି କଥା କହିବା ଶିଖ । ପିଲାଦିନରୁ ସିନା ଭଲ କଥା କହିବା ଶିଖିଥିଲେ ହୁଅନ୍ତା । ସେଇଥିଲାଗି ତୁମେ ଓ ତୁମ ପୁଅମାନେ ଏପରି ଗୁଣର ହୋଇଛନ୍ତି । ଲାଜ ନାହିଁ ଟିକିଏ ତୁମମାନଙ୍କୁ ।"

"ଆରେ ଚେନ୍ନିଗା, ଶୁଣୁଛିଟି କି, ଏ ହାରାମଜାଦିର କଥା ଗୁଡାକ । ଯ୍ୱାର ଅଣ୍ଟାକୁ ପଜା ପାହାରେ ।"

"ହଁ ହଁ ଯାହା କରିବା କଥା ବୁଝି ବିଚାରି କର । ମୋ ଭାଇ ସନ୍ଧ୍ୟା ବେଳକୁ ଆସି ପହଞ୍ଚିବ ।"

Digitized by srujanika@gmail.com

ଜନନୀଙ୍କର ଆଦେଶ ସତ୍ତ୍ୱେ, ସାହସ ଅଭାବରୁ କିମ୍ବା ଆଳସ୍ୟ ଯୋଗୁଁ ଚେନ୍ନିଗା ସ୍ତ୍ରୀକୁ ପାହ୍ନାରେ ଦେବାପାଇଁ ବସିବା ଯାଗାରୁ ଉଠିଲା ନାହିଁ । ଗଙ୍ଗାମ୍ମା ସାନପୁଅକୁ ଆଦେଶ ଦେଲେ ନାହିଁ । କହିଥିଲେ ସୁଦ୍ଧା ଆଉଥରେ ସେପରି କାର୍ଯ୍ୟ କରିବାପାଇଁ ଅପନ୍ନାଯ୍ୟା ଦୁଃସାହସ ବୋଧହୁଏ କରିନଥାନ୍ତା ।

କହ୍ଳେଶ ତା ପରଦିନ ପର୍ଯ୍ୟନ୍ତ ମଧ୍ୟ ଫେରିଲା ନାହିଁ । ଦୁଇଦିନ ପରେ ଦ୍ୱାବରସଯ୍ୟା ମହାଶୟଙ୍କୁ ସାଙ୍ଗରେ ଧରି ପହଞ୍ଚିଲା । ପୁଣି ତାଙ୍କୁ ନେଇ ତିପଟୁର ଯାଇ ଓକିଲଙ୍କ ସାଙ୍ଗରେ ମଧ୍ୟ କଥାବାର୍ତ୍ତା କରାଇଲା । ଶିବଗୌଡର ଓକିଲଠାରୁ ବୁଝିଲା ଯେ ଚେନ୍ନିଗାର ସାରା ଜମିବାଡି ବନ୍ଧକ ରଖାଯାଇଛି । ଯଦି ମୂଳ ସୁଧ ଏବଂ ମକଦ୍ଦମା ଖର୍ଚ୍ଚ ଦେଇ ଆପୋଷ ମିମାଂସା କରାଇବାକୁ ରାଜି ହେବ ତେବେ ମକଦ୍ଦମା ଉଠାଇନେବ ବୋଲି କହିଲା ।

ଘରେ ଆସି ଗଙ୍ଗାମ୍ମା, ଚେନ୍ନିଗା ଏବଂ ଅପନ୍ନାଯ୍ୟାକୁ ଏକାଠି ବସାଇ କହ୍ଳେଶ କହିଲା –"ଆରେ ଭାଇ ମୂଳଧନ କେହି କେବେହେଲେ ଛାଡିବେ ନାହିଁ, ଏବଂ ମକଦ୍ଦମା ଖର୍ଚ୍ଚ ମଧ୍ୟ ଦେବାକୁ ପଡିବ । କେବଳ ସୁଧ ହିସାବରେ କମ୍ କରିବାକୁ ଅନୁରୋଧ କରାଯାଇପାରେ । ଯଦି ସବୁ ମିଶି ପାଞ୍ଚହଜାର ଟଙ୍କାରେ ତୁଟି ଯାଉଥାନ୍ତା ତେବେ ବଡ ଜମିଖଣ୍ଡେ ବିକି ଏ ଋଣମୁକ୍ତ ହୋଇଯାଆନ୍ତେ । ଚାଲ ଶିବଗୌଡ ଘରଆଡେ ଯିବା କଥାବାର୍ତ୍ତା କରିବା ପାଇଁ ।"

ଚେନ୍ନିଗା ଏକଥାରେ ରାଜି ହେଲା ନାହିଁ । କହ୍ଳେଶ ଜିଦ୍ ଧରିଲା । ଦ୍ୱାବରସଯ୍ୟା ଚେନ୍ନିଗାକୁ ବହୁତ ବୁଝାଇଲେ । ଶେଷରେ ସମସ୍ତେ ମିଶି ଶିବଗୌଡ ଘରକୁ ଗଲେ । ତା ଦ୍ୱାରକୁ ସମସ୍ତେ ଆସିବା ଦେଖି ଶିବଗୌଡ ମୁହଁ ଉପରକୁ ହୋଇଗଲା । ପ୍ରତିଶୋଧ ନେବାର ସୁଯୋଗ ପାଇ ଶିବଗୌଡ ଗଙ୍ଗାମ୍ମା ଆଡେ ଚାହିଁ କହିଲା,"କଣ ମତେ ଗାଳି ଦେଉଥିଲୁ ନା ? ଫଟା ପାହୁଲା ଟାଏ ସୁଦ୍ଧା ନ ଦେବାକୁ କହୁଥିଲୁ ନା ? ଶେଷକୁ ମୋରି ଦ୍ୱାରେ ଠିଆ ହେଲୁ । ତତେ ଲାଜଥିଲେ ସିନା ହୁଅନ୍ତା ।"

ଦ୍ୱାବରସଯ୍ୟା ଗଙ୍ଗାମ୍ମାକୁ ଯେତେ ବୁଝାଇବାକୁ ଚେଷ୍ଟାକଲେ ସୁଦ୍ଧା ଗଙ୍ଗାମ୍ମାର ସ୍ୱଭାବ ସୁଲଭ କଳିହୁଡି ଗୁଣକୁ ଶିବଗୌଡର କଥା ସବୁ ଖଟେଇ ହେଲା ପରି ଲାଗିଲା । ବୁଢୀ ଆଉ ସହିନପାରି ପାଟିକରି ଉଠିଲା – "ଆରେ ଗଉଡ, ତୁ ହାତି ଘର ପିଲା ମତେ ଆଖି କଣ ଦେଖାଉଛୁ ରେ ? ଆମକୁ କଣ ବୋଲି ପାଇଛୁ କି ?"

"ଆଚ୍ଛା, ଏପରି କଥା ? ତେବେ କେମିତି ମୋଠୁ ଜମିବାଡି ଫେରାଇ ନେବୁ ମୁଁ ଦେଖିବି ।"

"ଆରେ ତୁ ନ ଦେଲେ ମକଦ୍ଦମାରେ ଛଡେଇ ନେବି । ତୋର ଏତେ ବହପ । ତୁ ଚଣ୍ଡାଳ ମତେ ପୁଣି 'ତୁ', 'ତା' କରି ଗାଳି ଦେଉଛୁ ? ଆରେ ଅପନ୍ନା, ଚେନ୍ନିଗା, ଶୀଘ୍ର ଉଠି ଚାଲିଆସ ।"

ଅପନ୍ନାଯ୍ୟା ତୁରନ୍ତ ଉଠି ମା ପାଖରେ ଆସି ଠିଆ ହେଲା । ଚେନ୍ନିଗା ନ ଉଠିବାର ଦେଖି ବୁଢୀ

Digitized by srujanika@gmail.com

ପାଟିକଲା –"କିରେ ତୁ କଣ ଏମିତି ବସିଥିବୁ ? ତୁ ତୋ ବାପର ପୁଅ ନୁହଁ କି ? ମାଇଚିଆ କେଉଁଠିକାର । ଉଠି ଠିଆ ହୁଅ ।"

ଗାଳିଶୁଣି ସର୍ବ ରାକାର ଚେନ୍ନିଗରାୟଙ୍କର ସ୍ୱାଭିମାନ ଜାଗ୍ରତ ହୋଇ ଉଠିଲା । ସିଏ ଯେ ନିଜ ବାପର ପୁଅ ଏକଥାର ପ୍ରମାଣ ତାଙ୍କୁ ଦେବାକୁ ପଡିବ, ତାହା ପୁଣି କଲ୍ଲେଶ, ହ୍ୱବରସଯ୍ୟା, ପ୍ରତିପକ୍ଷ ଶିବଗୌଡ, ଭିତର ଦ୍ୱାର ପଛରେ ଥିବା ତା ସ୍ତ୍ରୀ, ଏବଂ ପାଖରେ ଠିଆ ହୋଇଥିବା ହଳିଆ ମୁଲିଆଙ୍କ ଆଗରେ । ତେଣୁ ସେ ମଧ୍ୟ ପାନଖାଇ ଏବଂ ମା ସାଙ୍ଗରେ ଘରକୁ ଯିବା ପାଇଁ ବାହାରିଲା । କଲ୍ଲେଶ ଏବଂ ହ୍ୱବରସଯ୍ୟା ତାଙ୍କ ସାଙ୍ଗରେ ନଯାଇ କଥାଟାକୁ ତୁଟାଇବା ପାଇଁ ଯେତେ ଚେଷ୍ଟା କଲେ ସୁଦ୍ଧା ଶିବଗୌଡ ସିଆଡେ କାନେଇଲା ନାହିଁ ।

"ଏ ନିର୍ଦ୍ଦୀଗିଳା ମାଇକିନାର ଯଦି ଏତେ ଗର୍ବ ତେବେ ମୁଁ କଣ କରିବି ? ଏ ହାରାମଖୋର୍ ବଂଶକୁ ଦାଣ୍ଡରେ ବୁଲାଇ ଯଦି ଭିକ ନମଗାଇଛି ତେବେ ମୁଁ ବାପର ପିଲା ନୁହେଁ । ଯଦି ମୁଁ କେଶ ନଜିଣିବି ତେବେ ମତେ ଯୋତାରେ ବାଡେଇବ । ହାଇକୋର୍ଟ ପର୍ଯ୍ୟନ୍ତ କଥାଯାଉ । ସେ ରେବଣ ସେଠୀର ସାହସରେ ମୋ ସାଙ୍ଗରେ ଲଢିବା ପାଇଁ ଆସିଛନ୍ତି ? ମୁଁ ଭଗବାନଙ୍କ ରାଣ ଖାଇ କହୁଛି, ଏମାନଙ୍କୁ ପାଣେ ନିଶ୍ଚୟ ଚଖେଇବି ।"

ସମାଧାନର ସମ୍ଭାବନା ନ ଦେଖି ମଧ୍ୟସ୍ଥି ଦୁହେଁ ଘରକୁ ଫେରିଆସିଲେ, ଗଙ୍ଗାମ୍ମା ବାରଣ୍ଡାରେ ବସି ଛାତି ଫୁଲାଇ ନିଜର ଗାରିମାଗାନ କରୁଥିଲା । ସର୍ବ ରାକାର ମହାଶୟ ଚୁନଗୁଣ୍ଡି ପାଟିରେ ଦେଇ ବସିଥାନ୍ତି । ମାତୃଭକ୍ତ ଅପନ୍ନାସ୍ୱା ଶିବଗୌଡ ସ୍ତ୍ରୀର ମୁଣ୍ଡବାଳ ଲଣ୍ଡା କରିବା ପାଇଁ ପ୍ରତିଜ୍ଞା କରୁଥିଲା । କଲ୍ଲେଶର ରାଗ ପଞ୍ଚମରେ । ବାରଣ୍ଡା ଉପରେ ଠିଆ ହୋଇ କହିଲା –"ତୁମେ ସବୁ ଏତିକି ମୂର୍ଖ ? ଟିକିଏ ହେଲେ ଅକଲ ନାହିଁ ସମାଧାନର ଉପାୟ ଖୋଜିଲାବେଳକୁ ତୁମ ଦେହସୁଦ୍ଧା ହେଉନାହିଁ । ତୁ ଯେଉଁ ବୁଢୀଖଣ୍ଡେ ହେଇଛୁ, ତୋର ପ୍ରାଣ ନଗଲା ପର୍ଯ୍ୟନ୍ତ ଏବଂଶର ଉଦ୍ଧାର ହେବ ନାହିଁ । ତତେ ଖାଲି ଜୋତାରେ ମାଡ ଦରକାର ।"

ଗଙ୍ଗାମ୍ମାର ରକ୍ତ ତ ଆଗରୁ ଗରମ ଥିଲା । ଏପରି ବନ୍ଧୁଠାରୁ ଅପମାନ ପାଇ ରାଗରେ ବାଟାଳ ହୋଇ ଉଠିଲା – "ଆରେ ରାଣ୍ଡୀ ପୁଅ, ଭିକାରୀ ପିଲା, ମତେ ଏପରି କଥା କହୁଛୁ ? ତୋର ଏତେ ସାହସ ! ତୁ ଆମଘର କଥାରେ ଦଖଲ ଦେବାକୁ କିଏ ? ତତେ କିଏ ଏଠିକି ଡାକିଛି ? ଯିଏ ତତେ ଡାକିଛି ଯା ତାରି ପାଖରେ ଶୋଇବୁ ।"ଅରେ ଅପନ୍ନା ଦେଖୁଛୁ କଣ ମ ? ଦେ ଯ୍ୱା ମୁଣ୍ଡକୁ ପାହାରେ । ଅପନ୍ନାର ସାହସ ହେଲା ନାହିଁ । କଲ୍ଲେଶ ଉତ୍ତେଜିତ ହୋଇ କହିଲା – "ପାପୀ ବୁଢୀ ତୋର ବୁଦ୍ଧି ଭ୍ରଷ୍ଟ ହେଲାଣି । ଉପକାରୀକୁ ମାରିବା ପାଇଁ କହୁଛୁ ? ସର୍ବ ରାକାର କାମ ଯେତେବେଳେ ଶିବଲିଙ୍ଗା ଛାଡୁନଥିଲା ସେତେବେଳେ ଆମ ଗୋଡତଳେ ପଡୁଥିଲୁ ନା ? ସେତେବେଳେ କୁଆଡେ ଥିଲା ତୁମ ବୀରପଣିଆ ?" ଘର ଭିତରକୁ ଯାଇ ଭଉଣୀକୁ କହିଲା –"ଆଲୋ ନଷ୍ଟି ଏ ରାଣ୍ଡି ବୁଢୀ ପାଖରେ

Digitized by srujanika@gmail.com

ରହି କେମିତି ସଂସାର ଚଳାଉଛୁ ? ପିଲାମାନଙ୍କୁ ଧରି ମୋ ସାଙ୍ଗରେ ଚାଲ । ଭଗବାନ ଆମକୁ ଯେତିକି ଦେଇଛନ୍ତି ସେତିକିରେ ମିଳିମିଶି ପେଟ ପୋଷିବା । ଶାନ୍ତ ସ୍ୱରରେ ନଷ୍ଟକା କହିଲା – "ଭାଇ ରାଗିକରି କୌଣସି କଥା କରିବା ଭଲ ନୁହେଁ । ଆସ ବସ ।"

"ଏ ଡାହାଣୀ ଘରେ ପାଣି ମଧ୍ୟ ଆଉ ଛୁଇଁବା କଥା ନୁହେଁ ।" ଏହା କହି ନିଜର ଲୁଗାପଟା ଧରି ଘରୁ ବାହାରି ପଡିଲା । ନଷ୍ଟକା ଯେତେ ଡାକିଲେ ସୁଦ୍ଧା ଶୁଣିଲା ନାହିଁ । ଦ୍ୱିବରସଯ୍ୟା ମଧ୍ୟ ଅନ୍ୟ ଉପାୟ ନ ଦେଖି ନିଜ ଗାଁକୁ ଫେରିଗଲେ ।

5

ନଷ୍ଟକା କିନ୍ତୁ ଆଶା ଛାଡିନଥାଏ । ଭାବିଲା ଯଦି ସତୁର ବାପାଙ୍କୁ ଖବର ପଠାଯାଏ ତେବେ ବୋଧହୁଏ ଏମାନଙ୍କୁ ବୁଝେଇପାରବେ । କିନ୍ତୁ ଚିଠି ଲେଖିବ କିପରି ? କଲେଶ ସିନା ନିଜ ଭାଇ ବୋଲି ତାପାଖକୁ ଲେଖିଦେଲା । ପୁଣି ଭାବିଲା ସିଏ ତ ତା' ବାପା ସମାନ, ଲେଖିଲେ କିଛି ଦୋଷ ନାହିଁ । ତେଣୁ ଦିନେ ଦ୍ୱିପହରରେ ସମସ୍ତେ ଖାଇ ପିଇ ଶୋଇଥିଲା ବେଳେ କାଗଜ କଲମ ଧରି ଲେଖି ବସିଲା । ତାଙ୍କର ଡାକ ଠିକଣା ତାକୁ ଜଣାଥିଲା । ସପ୍ତାହକୁ ଥରେ ପୋଷ୍ଟମ୍ୟାନ୍ ବାସପପା ରାମଚନ୍ଦ୍ର ଗାଁକୁ ଆସୁଥିଲା ଏବଂ ଗାଁକୁ ଆସିବାର ପ୍ରମାଣ ସ୍ୱରୂପ ସର୍ବରାକାର ଚେନ୍ନିଗରାୟଙ୍କ ଠାରୁ ଖାତାରେ ଦସ୍ତଖତ କରାଇନେଉଥିଲା । ତେଣୁ ନଷ୍ଟକା ତାକୁ ଚିହ୍ନିଥିଲା । ଏଥର ସେ ଯେତେବେଳେ ଗାଁକୁ ଆସିଲା, ଘରେ ବଡଲୋକ କେହି ନଥିବାରୁ ସୁବିଧା ଦେଖି ନଷ୍ଟକା ତାକୁ କହିଲା –"ମୋର ଗୋଟିଏ ଇଫାପା ଦରକାର, କିନ୍ତୁ ମୋ ପାଖରେ ପଇସା ନାହିଁ । ଗୁଡ ହାଣ୍ଡିଟିଏ ଦେବି ଚଳିବ ତ ?" "ଭଉଣୀ ମୁଁ ଯେତେବେଳେ ଆସେ ମତେ କିଛି ନା କିଛି ଖାଇବାକୁ ଦେଉଛ ? ଏବେ ଇଫାପା ଗୋଟିଏ ପାଇଁ ଗୁଡ ହାଣ୍ଡି ନେବି ? ମୁଁ କଣ ଏତେ ଅକୃତଜ୍ଞ ? ହେଇ ନିଅ ।"

"ଆପଣ କିନ୍ତୁ କାହାରିକୁ କହିବେ ନାହିଁ । ଆମର ମକଦ୍ଦମା କଥା ତ ଆପଣ ଜାଣନ୍ତି ସେଥିପାଇଁ ମୋ ଦିଅରଙ୍କ ଶଶୁରଙ୍କ ପାଖକୁ, ଏଠାକୁ ଆସିବା ପାଇଁ ଚିଠି ଲେଖୁଛି ।" ଏହା କହି ନଷ୍ଟକା ଲେଖିଥିବା ଚିଠିଟି ଇଫାପାରେ ପୁରାଇ ଠିକଣା ଲେଖି ତାକୁ ଦେଲା । ବାସପପା ଚିଠିଟି ପକେଟରେ ରଖି ଚାଲିଗଲା । ପୋଷ୍ଟମ୍ୟାନ୍ ଚାଲିଗଲା ପରେ ନଷ୍ଟୁ ଭାବିଲା ଚିଠି ଲେଖିବାଟା ବୋଧହୁଏ ଠିକ ହେଲା ନାହିଁ । କାରଣ ଶଶୁରେ ଅପନ୍ନାଯ୍ୟାକୁ ରାଗି କହିଯାଇଥିଲେ ଯେ ସ୍ତ୍ରୀ ପିଲାଙ୍କୁ ସେ ମା' ଠାରୁ ଭିନ୍ନ ହେଲେ ଯାଇ ପଠାଇବେ । ଅପନ୍ନା ଏକଥା ମାକୁ କହି ଦେଇଥିଲା । ତାପରେ ଅନେକ ଦିନ ପର୍ଯ୍ୟନ୍ତ ଗଙ୍ଗାମ୍ମା ସମୁଦିଙ୍କ ଉପରେ ଅଭିସଂପାତ ବର୍ଷଣ କରିଥିଲା । ଯଦି ଏପରି ଅବସ୍ଥାରେ ସେ

Digitized by srujanika@gmail.com

ଏଠାକୁ ଆସନ୍ତି ତେବେ ଶାଶୁ କଣ ଛାଡିବେ । ନନ୍ଦିନୀ ଭାବିଲା ଶଶୁରଙ୍କୁ ଡକେଇ ସେ କିଛି ଭଲ କାମ କଲା ନାହିଁ । ପୁଣି ଭାବିଲା ଯାହା କରିଛି ଠିକ୍ କରିଛି ।

ଚିଠି ପଠାଇବାର ବାରଦିନର ସଞ୍ଜବେଳକେ ଅପର୍ଣ୍ଣାଙ୍କ ଶଶୁର ଶ୍ୟାମଭଞ୍ଜ ଏକୁଟିଆ ଆସି ପହଞ୍ଚିଲେ । ଗଙ୍ଗାମା ସେତେବେଳକୁ ବାଡିଆଡେ ପୋଖରୀରୁ କଳମ ଶାଗ ତୋଳିବାକୁ ଯାଇଥିଲା । ଅପର୍ଣ୍ଣା ମଧ୍ୟ ମା ସାଙ୍ଗରେ ଥିଲା । ଚେମ୍ପିଗା କିନ୍ତୁ ଘରେ ଥିଲା । ଅତିଥିଙ୍କୁ ହାତମୁହଁ ଧୋଇବା ପାଇଁ ପାଣି ଦେଇ ତାଙ୍କ ପାଇଁ କିଛି ଖାଇବାର ବ୍ୟବସ୍ଥା କରି ନନ୍ଦିନୀ ତାଙ୍କୁ ସବୁକଥା ଗୋଟି ଗୋଟି ଶୁଣାଇଲା । କଳେଶ ଓ ଦ୍ୱାବରସଦ୍ୟାଙ୍କ କଥା ମଧ୍ୟ କହିଲା । ଏ ସବୁ ଶୁଣି ଚେମ୍ପିଗାକୁ ରାଗ ଆସିଲେ ପୁଷ୍ପା ଭାଇର ଶଶୁର ଆଗରେ ସ୍ତ୍ରୀକୁ ଗାଳିଦେବାର ସାହସ ହେଲା ନାହିଁ । ଅଗଣାରେ ବସି ପାନ ଚୋବାଇବାରେ ଲଗିଥାଏ ।

ଶ୍ୟାମଭଞ୍ଜ ଖାଇସାରି ହାତରେ ଗୁଣ୍ଡି ମକଚିଲା ବେଳକୁ ବାଡିଆଡୁ ଗଙ୍ଗାମା ଶାଗ ଚାଙ୍ଗୁଡି ଧରି ଆସିଲା । ପଛେରେ ଅପର୍ଣ୍ଣା । ସମୁଦି ଦେଖୁ ଦେଖୁ ଗଙ୍ଗାମା ପୂର୍ବକଥା ମନେ ପକାଇ ପାଟିକରି ଉଠିଲା, –"ହଇରେ ଘରଭଙ୍ଗା ରାଣ୍ଡର ପୁଅ ମୋ ପୁଅକୁ ଭିନେ ହେବାକୁ ବତାଉଛୁ ? ହଇରେ ଦାନଖିଆ ବ୍ରାହ୍ମଣ, ଲାଜ ଲାଗୁନି ଆମ ଘରେ ଆସି ବସିଛୁ ?

ଶ୍ୟାମଭଞ୍ଜ ଜାଣିଥିଲେ ଯେ ତାଙ୍କ ସମୁଦୁଣୀଙ୍କ ମୁହଁରେ ଲଗା ନାହିଁ କି ପଘା ନାହିଁ, କିନ୍ତୁ ଏପରି ଯେ ମୁହଁ ଆଗରେ ଲଗାମ ଛଡା ହୋଇ ପାଟିତୁଣ୍ଡ କରିବେ ଏହା ବିଶ୍ୱାସ କରିପାରୁନଥିଲେ । କିଛିକ୍ଷଣ ଚୁପ ରହି କହିଲେ –"ଦେଖନ୍ତୁ, ଆପଣ ବୁଝି ବିଚାରି କଥାବାର୍ତ୍ତା କରନ୍ତୁ । ଆପଣଙ୍କ ପୁଅ ଆପଣଙ୍କ ସାଙ୍ଗରେ ରହିଲେ ମୋର କିଛି ଅସୁବିଧା ହେବ ନାହିଁ, କିନ୍ତୁ ମୋର ଆସିବାର କାରଣ ହେଉଛି ଯେ, ଆପଣମାନେ ଅକାରଣରେ ପୈତୃକ ସପତ୍ତିଟା ମକଦ୍ଦମାରେ ଉଡାଇ ନ ଦିଅନ୍ତୁ । ମୂର୍ଖଙ୍କ ଭଳିଆ କାମ କରନ୍ତୁ ନାହିଁ ।"

ପୁରାକଥା ଶୁଣିବା ପୂର୍ବରୁ ହିଁ ଗଙ୍ଗାମା ସମୁଦିଙ୍କର ଆଗମନର କାରଣ ବୁଝିଗଲା ଏବଂ ରାଗରେ ତମତମ ହୋଇ ରୋଷେଇ ଘର ସାମନାରେ ନନ୍ଦିନୀ ଆଡକୁ ଚାହିଁ କହିଲା – "ଆଲୋ ଦୋଚାରୁଣୀ, ଆଗ ତ ଭାଇକୁ ଡକାଇ ପାଖରେ ଶୁଆଇଲୁ ଏବେ ଏ ପୁରୋହିତକୁ ମଧ୍ୟ ଡକାଇଛୁ ? ଇଆ ସାଙ୍ଗରେ କେଳି କରିବୁ ନା କଣ ? ଭାରି ରସିକିଆଣି ହେଲୁଣି ତ ?" ସେପଟୁ ବୁଲି ବଡ ପୁଅକୁ କହିଲା– "ଆରେ ଦେଖୁଛୁ ? ତୋ ମାଇପର କାଣ୍ଡ, ଯାହାକୁ ମନ ତାହାକୁ ଚିଠି ଲେଖି ଘରକୁ ଡକାଇ ଆଣୁଛି । ଘରେ ତୁ ଭେଣ୍ଡିଆ ଥାଉଥାଉ, ବାହାର ଲୋକଙ୍କ ସାଙ୍ଗରେ ଭାବ ପ୍ରୀତି । ଛି ଛି ।"

ଏସବୁ ଶୁଣି ଶ୍ୟାମଭଞ୍ଜ କାନରେ ହାତ ଦେଇଦେଲେ । ଏବଂ ଆଶ୍ଚର୍ଯ୍ୟ ହୋଇ ସମୁଦୁଣୀ ଆଡେ ଚାହିଁ ରହିଲେ । ଗଙ୍ଗାମା କିଛି ସମୟପରେ ଅପର୍ଣ୍ଣାକୁ ଧରି ରେବଣ ସେଠୀ ଘର ଆଡେ ଗଲା ।

Digitized by srujanika@gmail.com

ସେମାନେ ଯିବା ପରେ ଶ୍ୟାମଭଇ ଚେମ୍ନିଗରାୟଙ୍କୁ କହିଲେ –"ଆପଣ ଏ ଘରର ମୁରବୀ । ତେଣୁ ଆପଣଙ୍କୁ କହୁଛି । ଘରର ବଡ ବଡ ଯଦି ଏଭଳି କଥାବାର୍ତ୍ତା କରନ୍ତି, ଆପଣଙ୍କ ଘର ସଂସାର ଚଳିବ କିପରି ? ମୋ ଝିଅ ସାବୁ କହୁଥିଲା, ଆପଣଙ୍କ ସ୍ତ୍ରୀ ଗୁଣବତୀ, ଏବଂ ବୁଦ୍ଧି ମତୀ । ଏଭଳି ଗୁଣବତୀ ବୋହୂକୁ ମୋରି ସାମନାରେ ଯଦି ଏଭଳି ଗାଳି ଦେଇପାରୁଛନ୍ତି, ଏଥିରୁ ମୁଁ ଜାଣିପାରୁଛି ମୋ ଝିଅକୁ କଣ ନକହୁଥିବେ ? ଏପରି ଜାଣିଥିଲେ ମୁଁ ଏଘରେ ଝିଅ ଦେଇନଥାନ୍ତି । କିନ୍ତୁ ବର୍ତ୍ତମାନ ଆପଣମାନେ କିପରି ଶାନ୍ତିରେ ଚଳନ୍ତୁ, ଏହା ମୋର ଭାବନା । କ'ଣ ମୋର କଥା ବୁଝୁଛନ୍ତି ?"

"ଆଲୋ ଆଉ ପାନ ଦି ଖଣ୍ଡ ଆଣେ ।" ଚେମ୍ନିଗା ସ୍ତ୍ରୀକୁ ପାନ ଆଣିବାକୁ କହି ଭାଇର ଶଶୁର କଥାରେ ଖାଲି ହୁଁ ହାଁ ମାରୁଥିଲା ।

"ଆପଣମାନେ ଭିନ୍ନେ ହୋଇଯାଆନ୍ତୁ, ଏହା ମୁଁ ଚାହେଁ ନାହିଁ । କିନ୍ତୁ ଏ ଘରର ମୁରବୀ ହିସାବରେ ଆପଣ ବୁଝି ସୁଝି କାର୍ଯ୍ୟ କରିବା ଉଚିତ । ଆପଣମାନେ ସେ ଶିବ ଗୌଡ ସାଙ୍ଗରେ ଶତ୍ରୁତା ନ କରି ଆପୋଷ ବୁଝାମଣା କଲେ ଭଲ ହେବ । ନଞ୍ଜୀକା କହିବା ଅନୁସାରେ ଖଣ୍ଡେ ବିଲ ବିକି ଋଣ ପରିଶୋଧ କରିଦିଅ ଏବଂ ବନ୍ଧକ ଦଲିଲ ଫେରସ୍ତ ନେଇଆସ । ବାକି ଯେଉଁତକ ଜମି ବଳିବ ସେଥିରେ କଷ୍ଟେ ମଷ୍ଟେ ଚଳିବାକୁ ଚେଷ୍ଟା କର ।"

ଚେମ୍ନିଗରାୟ ମୁହଁରେ ପାନ ପିକ ଧରି ଚୁପଚାପ ବସିଥିଲା । ଶଶୁର ପଚାରିବାରୁ ପାନପିକ ଦେହରେ ପଡିଯିବା ଭୟରେ ଉପରକୁ ମୁହଁକରି କ'ଣ କ'ଣ ଗୁଙ୍ଗୁ ଫୁଙ୍ଗୁ ହେଲା । ତାପରେ ଉଠି ପାନ ପିକ ପକାଇ ସାରି ମଧ୍ୟ କିଛି ନକହି ଚୁପଚାପ ହୋଇ ବସିରହିଲା । କିଛି କହିବାକୁ ଡର ଲାଗୁଥିଲା । ଶେଷରେ ବଡ କଷ୍ଟରେ କହିଲା –"ମୁଁ କିଛି ଜାଣିନାହିଁ । ଆପଣ ଅଛନ୍ତି । ମା'ତ ଅଛି । ଆପଣମାନେ ବୁଝନ୍ତୁ ।" ଏହା କହି ବାହାରକୁ ଚାଲିଗଲା ।

"ଦେଖିଲୁ ଝିଅ ଏହାଙ୍କ କଥା ।" ଶ୍ୟାମଭଇ କହିଲେ । ନଞ୍ଜୀକା ବାହାରକୁ ଆସି କହିଲା "ଏହାଙ୍କର ସ୍ୱଭାବ ଆପଣ ଜାଣନ୍ତି ନାହିଁ । ଆପଣଙ୍କର ଜ୍ୱାଇଁକୁ ପଚାରନ୍ତୁ । ଅପନାସ୍ୱା ଯଦି କିଦ୍‌କରେ ଯେ ଅତିକମ୍‌ରେ ଜମି ଭାଗ କରି ଦିଆଯାଉ କରଜ ମଧ୍ୟ ଆମେ ଦି ଭାଇ ଅଧା ଅଧାକରି ପରିଶୋଧ କରିବୁ, ଏମିତି ହେଲେ ଏମାନେ ଜାଣେ ବୁଝିଯାଆନ୍ତେ ପରା ।"

"ତୁ କଣ ଜାଣି ନାହୁଁ ତାହାର ଯୋଗ୍ୟତା କେତେ ? ଏ ମକଦ୍ଦମା କଥା ମୁଁ ଆଗରୁ ଜାଣି ନଥିଲି । କିନ୍ତୁ ଆଗରୁ ଆମେ ଏଭଳି ହିଁ ଠିକ୍ କରିଥିଲୁ । ଆମର ତ ଗୋଟିଏ ବୋଲି ଝିଅ । ଏଭଳି ଶାଶୁ ପାଖକୁ ଝିଅକୁ କିପରି ଜାଣି ଜାଣି ଛାଡିବୁ ? ତେଣୁ ତୁଆ ଜନ୍ମ ପରେ ମଧ୍ୟ ଆମ ଘରେ ରଖିବୁ ।"

ନଞ୍ଜୀକା ମୁଣ୍ଡରେ କିଛି ବୁଦ୍ଧି ପଶିଲା ନାହିଁ । ଚୁପ୍ ହୋଇ ଠିଆ ହୋଇଥାଏ । ଏତିକିବେଳେ ଘରକୁ ପଶି ଗଙ୍ଗାକ୍କା ବୋହୂକୁ ଦେଖି ପାଟିକରି ଉଠିଲା –"ଆଲୋ ଖାଲକି । ସ୍ୱାମୀ ଯାଇ ମନ୍ଦିରରେ ବସିଛି ।

Digitized by srujanika@gmail.com

ଆଉ ତୁ ଏ ଭେଣ୍ଡିଆ ସାଙ୍ଗରେ ମଉଜ କରୁଛୁ ?'' ନଷ୍ଟିଆ ରାଗିଯାଇ କହିଲା –''ତୁମେ ସିନା ଏପରି କାମ କର ବୋଲି ତୁମକୁ ଏକଥା ଦିଶୁଛି । ଏପରି କଥା କହିଲା ବେଳକୁ ତୁମର ଜିଭ ଛିଣ୍ଡି ଯାଉନି ? କେତେବେଳେ ହେଲେ ଚୁପ୍ ରହିପାରିଲ ନାହିଁ ।''

''ମୋ କଥାରେ ପୁଣି ଉତ୍ତର ଦେଉଛୁ ? ବଡ ପୁଅକୁ କହି ତୋ ହାଡ କାଚ ଯଦି ନ ଉତାରିଛି ତେବେ ମୁଁ ବାପର ପିଲା ନୁହଁ ?'' ଗର୍ଜି ଗର୍ଜି ଗଙ୍ଗାମା ସାମନା ମନ୍ଦିର ଭିତରକୁ ଗଲା । ବଡ ପୁଅକୁ କହିଲା – ''ଆରେ ତୁ ଏଠି ବସିଛୁ । ତେଣେ ତୋ ସ୍ତ୍ରୀ ମତେ ମାର ନମାର କଲାଣି । ଯଦି ବାପର ପୁଅ ହୋଇଥିବୁ ତାହାହେଲେ ଶୀଘ୍ର ଯାଇ ତୋ ମାଇକିନାର ବତିଶ ଦାନ୍ତ ଝଡାଇ ଦେବୁ ।'' ଗଙ୍ଗାମାର ଚିତ୍କାର ଶୁଣି ମହାଦେବଯ୍ୟା ଭଜନ ଗାଇବା ବନ୍ଦ କରିଦେଲେ । ଚେନ୍ନିଗରାୟ୍ୟ ନିଜ ଜନ୍ମର ପବିତ୍ରତା ପ୍ରମାଣ କରିବା ପାଇଁ କିଛି ସମୟ ଭାବମଗ୍ନ ରହିଲା । ତାପରେ ସାହାସ ସଞ୍ଚୟ କରି ଠିଆ ହେଲା । ମହାଦେବଯ୍ୟା ଜୋରରେ ତାର ହାତ ଟାଣି ବସାଇ ଦେଇ କହିଲେ –''ଆଜି ପର୍ଯ୍ୟନ୍ତ ଏତେ ପୁରାଣ, ଭଜନ ଶୁଣିଲ, ହେଲେ ତୁମ ବୁଦ୍ଧିଯାକ କୁଆଡେ ଗଲା ?'' କିଛି ବୁଝି ନପାରି ଚେନ୍ନିଗରାୟ୍ୟ କହିଲା– ''ଆଜ୍ଞା ହେଉ ଛାଡ ଛାଡ, ତୁମେ ଭଜନ ଗାଇବା ଆରମ୍ଭ କଲ ।'' ଗୋପୀ ଯନ୍ତ୍ର ଧରି ମହାଦେବଯ୍ୟା ପୁଣି ଭଜନ ଗାଇବା ଆରମ୍ଭ କଲେ ।'' ଗଙ୍ଗାମା ପାଟି କରି ଉଠିଲା –''ଏ ରାଣ୍ଡର ପୁଅ ଭିକାରୀର କଥା ଶୁଣୁଛୁ । ମୋ କଥା କାହିଁକି ରଖିବୁ ? ଜନ୍ମକଲା ମା' ପାଇଁ ଟିକିଏ ହେଲେ ଖାତିର ନାହିଁ ।'' ଏହା କହି ରେବଣ ସେଠୀ ଘରଆଡେ ଚାଲିଗଲା ।

ଏଣେ ଶ୍ୟାମଭଟ୍ଟ ନଞ୍ଜିମାକୁ କହିଲେ –''ଝିଅ ମୋର ଏଠିକି ଆସିବାଦ୍ୱାରା କିଛି ଲାଭ ହେଲା ନାହିଁ । ମୁଁ ଏବେ ଚାଲିଲି । ମୋର ସିଆଡେ ଅଠର ଖଣ୍ଡ ଗାଁରେ ଯଜମାନୀ କାମ । ଅଛତା ଝିଅ ଓ ନାତୁଣୀ କଥା ବୁଝିବାକୁ କେହି ନାହାନ୍ତି । ଯାହା ହେବାକୁ ଥିବ ତାହା ନିଶ୍ଚୟ ହେବ ।'' ଏହା କହି ଛତା ବାଡି ଧରି ଯିବା ପାଇଁ ବାହାରିଲେ । ନଞ୍ଜିମା କହିଲା – ''ସାବୁକୁ ପଠାଇଦେବେ ।'' ସେ କହିଲେ –''କାହିଁକି ପଠାଇଦେବି ? ତୁ ତ ସବୁକଥା ଜାଣିଛୁ ।''

ନଞ୍ଜିମା ପାଦଦ୍ୱୟଁ ମୁଣ୍ଡିଆ ମାରିଲା । ଏବଂ କହିଲା –''ତିପଟୁର ପାଖରେ ତିମଲାପୁର ଗାଁ । ସେଇ ଗାଁର ସର୍ବରାକାର ହାବରସୟ୍ୟା ! ଆଜି ରାତିରେ ତାଙ୍କ ଘରେ ରହିଯିବେ । ଅନ୍ଧାରରେ ତିପଟୁର ଯିବେ ନାହିଁ । ରାସ୍ତାରେ ଚୋର ଖଣ୍ଡ, ବାହାରୁଛନ୍ତି ।''

Digitized by srujanika@gmail.com

# ସପ୍ତମ ଅଧ୍ୟାୟ

## 1

ପୁଅକୁ ଦେଢବର୍ଷ ହେଲାବେଳକୁ ନଈମା ପୁଣି ଗର୍ଭବତୀ ହେଲା । ବର୍ତ୍ତମାନ ସେ ଭଲରୂପେ ବୁଝିସାରିଥିଲା ଯେ ମକଦ୍ଦମାରେ ସବୁ ଜମିବାଡ଼ି ହାତରୁ ଚାଲିଯିବ । ତେଣୁ ବେଳେବେଳେ ଏସବୁ କଥା ଭାବି ହତାଶ ହୋଇପଡୁଥିଲା ଯେ – ଏଇ ପରିବାରକୁ ତ ସମ୍ଭାଳିବା କଷ୍ଟ ହୋଇପଡୁଛି, ପୁଣି ଆଉ ଛୁଆ ଜନ୍ମ ହେଲେ କେତେ ଅସୁବିଧା ନହେବ ? ପୁଣି ଭାବେ ଯେ ତା' ବଡ଼ଭାଇର ବିଭାଘର ହେବାର ଅନେକ ବର୍ଷ ହୋଇଯାଇଥିଲେ ସୁଦ୍ଧା ପୁଅଝିଅ କିଛି ହୋଇନାହାନ୍ତି । ଏସବୁ ଭଗବାନଙ୍କର କୃପା ଏବଂ ଛୁଆ ହେବାଟାକୁ ଘୃଣା କରିବା ଠିକ୍ ନୁହେଁ । ଏମିତି ଭାବି ମନକୁ ମନ ସାନ୍ତ୍ୱନା ଦିଏ ।

ଏହି ସମୟରେ ଦିଟା ଘଟଣା ଘଟିଗଲା । ପ୍ରଥମ ହେଲା ଗାଁରେ ପ୍ଲେଗ ରୋଗ ବ୍ୟାପିବା । ଅବଶ୍ୟ ଏହା କିଛି ନୂଆ କଥା ନୁହେଁ । ଦୁଇତିନି ବର୍ଷରେ ଥରେ ପ୍ଲେଗ ଆସିଲେ ଗାଁ ଘର ଛାଡି ବିଲରେ କୁଡ଼ିଆ କରି ରହିବା ଅଭ୍ୟାସ ଲୋକମାନଙ୍କର ହୋଇଯାଉଥାଏ । ଦ୍ୱିତୀୟ ଘଟଣା ଟା ଅବଶ୍ୟ ଆଗରୁ କେବେ ଘଟିନଥିଲା । ଘଟଣାଟା ହେଲା କାଶୀବଦ୍ରି ସାହୁକାର ଗାଁକୁ ଆସି କରଜ ଦେବା ବ୍ୟବସାୟ ଆରମ୍ଭ କରିବା । ସୁନା, ରୁପା, ପିତଳ, ତମ୍ବା, ବାସନ ଆଦି ବନ୍ଧା ରଖି କରଜ ଦିଏ ଏବଂ ସୁଧ ଟଙ୍କା ପ୍ରତି ଦିନକୁ ପଇସେ । ଏ ମହାଜନ ମାଲବାର ପ୍ରଦେଶର ମୁସଲମାନ୍ । ହେଣ୍ଡିତମାନଙ୍କ ଭଳି ଲୁଙ୍ଗି ପିନ୍ଧେ ଏବଂ ମୁଣ୍ଡରେ ଟୋପି । ମହାଜନର ବୟସ ପ୍ରାୟ ପଚାଶବର୍ଷ । "ପଇସେ ସୁଧ ବେଶୀ ନୁହେଁ, ତା ଛଡା ଦରକାର ବେଳେ ଟଙ୍କାତ କରଜ ଦେଉଛି ।" ଏକଥା କହି ଶିବଗୌଡ ସାହୁକାରର ପ୍ରଶଂସା କଲା । ଏବଂ ବିଦେଶୀ ମହାଜନକୁ ରହିବା ପାଇଁ ଜାଗା କରିଦେଲା । ସାହୁକାର, ଲୁହାର ଗୋଟେ ବଡ ସିନ୍ଧୁକ ରଖି ବେପାର ଆରମ୍ଭ କରିଦେଲା । ଶିବଗୌଡକୁ ସେ ମାସକୁ ଘରଭଡା ପଚାଶ ଟଙ୍କା ଦିଏ ।

ମହାଜନ ଗାଁକୁ ଆସିବାର ଦିମାସ ନହେଉଣୁ ପ୍ରାୟ ସାରା ଗାଁ ତାଠାରୁ କରଜ ନେଇସାରିଥିଲେ । ଲୋକେ କହନ୍ତି ଦରକାର ବେଳେ ଶିବଗୌଡ ମଧ୍ୟ ଏ ମହାଜନ ଠାରୁ ଉଧାର ନେଉଥିଲା । ମହାଜନ-ର ବ୍ୟବହାର ମଧ୍ୟ ଭାରି ଭଲ । ହିସାବରେ ଗଣ୍ଡୋଗୋଳ କରେ ନାହିଁ । ଟଙ୍କା ପ୍ରତି ଦିନକୁ ପଇସେ ସୁଧ ।ପ୍ଲେଗ୍ ବ୍ୟାପିବା ସମୟରେ କାଶୀବଦ୍ରି ସାହୁକାର ମଧ୍ୟ ଗାଁ ଛାଡି ତାର ଲୁହା ବାକ୍ସ ଧରି ବିଲ ମଝିରେ ଶିବଗୌଡର କୁଡ଼ିଆ ପାଖରେ କୁଡ଼ିଆ କରି ରହୁଥିଲା ।

Digitized by srujanika@gmail.com

ଗଙ୍ଗାମ୍ମାର ପରିବାର ଆଗରୁହିଁ ଗାଁ ଛାଡି ବିଲ କୁଡିଆରେ ରହିଥିଲେ । ନଞ୍ଜାମ୍ମାର ସେତେବେଳକୁ ତିନିମାସ ଗର୍ଭ । ହେଲେ ମଧ୍ୟ ଘରର ଜିନିଷପତ୍ର ବନ୍ଧାବନ୍ଧି କରି କୁଡିଆକୁ ନେବାକାମ ତାରି ଉପରେ ପଡିଲା । ମହାଦେବୟ୍ୟା ମଧ୍ୟ ମନ୍ଦିର ଛାଡି ପଳାଇଲେ । ଗାଁ ଠାରୁ ଦୂରରେ ଥିବା ଚେନ୍ନେଶ୍ୱର ମନ୍ଦିର ପଥରରେ ତିଆରି । ଏବଂ ତା ଭିତରେ ଭଗବାନ ମହାଦେବଙ୍କ ଲିଙ୍ଗ ସ୍ଥାପନ କରାଯାଇଥିଲା । ସମସ୍ତେ କହନ୍ତି ଏ ମନ୍ଦିର କର୍ଣ୍ଣାଟକ ରାଜ୍ୟର ବିଖ୍ୟାତ ଶିଳ୍ପୀ ଯାକଣାଚାରୀଙ୍କ ଦ୍ୱାରା ତିଆରି ହୋଇଥିଲା । ଏ ମନ୍ଦିର ଭିତରେ ଅନେକ ସାପ ରହୁଥିବାର ମଧ୍ୟ ଶୁଣାଯାଏ । "ସାପ ମୋର କଣ କରିବେ ?" ସେ ପରା ଶିବଙ୍କ ଗଳାର ହାର " ଏହା କହି ମହାଦେବୟ୍ୟା ତାଙ୍କର ଝୁଲାମୁଣି ଆଉ ଏକତାରା ଧରି ସେ ମନ୍ଦିରରେ ରହିବାକୁ ଗଲେ । ଗଙ୍ଗାମ୍ମାର କୁଡିଆ ଏଠାରୁ ବହୁତ ଦୂର ହୋଇଥିବାରୁ ଚେନ୍ନିଗରାୟ୍ୟ ଏଠାକୁ ଭଜନ ଶୁଣିବାକୁ ଆଉ ବେଶୀ ଆସୁନଥିଲା । କାଶୀବନ୍ତୀ ସାହୁକାର ଗୁଣ୍ଡିପତ୍ର ଖାଆନ୍ତି ବୋଲି ଜାଣି ଚେନ୍ନିଗରାୟ୍ୟ ତାର କୁଡିଆରେ ଯାଇ ବସୁଥିଲା । ସେଠିକି ଶିବଗୌଡ ମଧ୍ୟ କେବେ କେବେ ଆସେ । ଗାଁ ମକଦ୍ଦମା ସତ୍ତ୍ୱେ ମୁଖିଆ ଓ ସର୍ବରକାର ମହାଶୟଙ୍କ ମଧ୍ୟରେ କଥାବାର୍ତ୍ତା ବନ୍ଦ ହୋଇନଥାଏ । ତାଛଡା ଗଙ୍ଗାମ୍ମା ସିନା ଶିବଗୌଡକୁ ଗାଳିଗୁଲଜ କରିଥିଲା, କିନ୍ତୁ ଗଙ୍ଗାମ୍ମା ଯେତେବେଳେ ଜାଣେ ଯେ ପୁଅ ଯାଇ ଶିବଗୌଡ ସାଙ୍ଗରେ ବସାଉଠା କରୁଛି, ପୁଅକୁ ମନବୋଧ ହେଲା ପର୍ଯ୍ୟନ୍ତ ଅସରାଏ ଗାଳି ବରଷି ଦିଏ ।

ଏଥର ପ୍ଲେଗ ଲାଗିବା ପରେ ଲୋକେ ଗାଁ ଛାଡିବା ପୂର୍ବରୁ ଛଅଜଣ ଲୋକ ଏବଂ ଦୁଇଟି ପିଲା ମରିଯାଇଥିଲେ । ତୁରନ୍ତ ଗାଁ ଖାଲି କରିଦିଆ ଗଲା । ଏବଂ ପ୍ଲେଗ ମାତାଙ୍କର ପୂଜାବିଧି କରାଗଲା । ଯେତେ କଷ୍ଟ ହେଲେ ସୁଦ୍ଧା ଜୀବନ ବଞ୍ଚାଇବା ପାଇଁ ଲୋକମାନେ ଘରଛାଡି କୁଡିଆରେ ଯାଇ ରହୁଥିଲେ ।

ଏ ଭିତରେ ଗଙ୍ଗାମ୍ମା ଓ ଶିବଗୌଡର ମକଦ୍ଦମା ଶୁଣାଣୀ ଶେଷ ହେବା ଉପରେ, ଦୁଇପକ୍ଷର ଓକିଲ ସାକ୍ଷୀ ଜେରାପରେ ନିଜ ନିଜର ଯୁକ୍ତି ଜଜ୍ ସାହେବଙ୍କ ଆଗରେ ଉପସ୍ଥାପିତ କଲେ । "ଆମ ଓକିଲଙ୍କ ଯୁକ୍ତି ଶୁଣି ଜଜ୍ ସାହେବ ମଧ୍ୟ ମୁଣ୍ଡ ହଲାଇଲେ ।" ରେବଣ ସେଠୀ ଠାରୁ ଏକଥା ଗଙ୍ଗାମ୍ମା ଶୁଣି ଗାଁ ଯାକ ପ୍ରଚାର କରିଦେଲା । ଏହାର ପ୍ରତିରୋଧ କରି ଶିବଗୌଡ କହିଲା –"ଆମ ଓକିଲ ଏମିତି ପଏଣ୍ଟ ବାହାର କଲା ଯେ ଗଙ୍ଗାମ୍ମାର ଓକିଲର ମୁହଁ ବନ୍ଦ ହୋଇଗଲା ।" ଉଭୟ ପକ୍ଷର ସମର୍ଥକ ମାନେ ବଡ ଉତ୍ସାହର ସହିତ ତିପଟୁର ଯାଉଥାନ୍ତି । ଅପରାହ୍ନ ତିପଟୁରରେ ପହଞ୍ଚିଲା ମାତ୍ରେ କଚେରୀକୁ ନଯାଇ ପ୍ରଥମେ ସିଧା ଯାଉଥିଲା ହୋଟେଲ ଭିତରକୁ । ବଡ ଭାଇ ଚେନ୍ନିଗରାୟ୍ୟ ବା ସାନଭାଇ ଠାରୁ ପଛରେ ରହିବେ କାହିଁକି ? ଶିବଗୌଡ ମାଣ୍ଡିଆ ଚକୁଳି ଏବଂ ଚଟଣି ବାନ୍ଧି ନେଇଯାଉଥିଲା, ଏବଂ କଚେରୀ କାମ ସାରି ଘରକୁ ଫେରୁଥିଲା ।

ଯେଉଁଦିନ ମାଜିଷ୍ଟ୍ରେଟ୍ ଫଇସଲା ଶୁଣାଇବା କଥା ସେଦିନ ଉଭୟ ପକ୍ଷରୁ ଲୋକ ଶଗଡରେ ବସି ଯାଇଥିଲେ । ଗଙ୍ଗାମ୍ମା ଛାତିରେ ହାତ ରଖି ଡରି ଡରି ହାକିମଙ୍କ ଆଦେଶ ଶୁଣିଲା – "ଶିବଗୌଡ

Digitized by srujanika@gmail.com

ଠାରୁ ଏମାନେ ଟଙ୍କା ଧର ହିସାବରେ ନେଇଛନ୍ତି । ତାର ସୁଧ ଓ ସୁଧର ସୁଧ ଏବଂ ମକଦ୍ଦମା ଖର୍ଚ୍ଚ ମିଶି ସମୁଦାୟ ସଢେ ପାଞ୍ଚହଜାର ଟଙ୍କା ଅଦାଲତରେ ଜମା କରିବାକୁ ହେବ । ଏହା ନକଲେ ଅଦାଲତ ତାଙ୍କ ଜମିବାଡି ନିଲାମ କରି ଟଙ୍କା ଅସୁଲ କରି ସାହୁକାରକୁ ପରିଶୋଧ କରାଇବ ।'' ଜଜ୍ ସାହେବଙ୍କର ଏ ପ୍ରକାର ଆଦେଶ ଶୁଣି – ''ତୋ ମାଇପ ରାଣ୍ଡ ହେଉ'' ଇତ୍ୟାଦି ଗାଳି ଗଙ୍ଗାମାର ଜିଭ ଅଗକୁ ଆସି ରହିଗଲା । କାରଣ ଅଦାଲତ ବାହାର ବାରଣ୍ଡାରେ ପୁଲିସ ଠିଆ ହୋଇଥିଲେ ।

କଚେରୀ ବାହାରକୁ ଆସିଲା ପରେ ଗଙ୍ଗାମା ପକ୍ଷର ଓକିଲ କହିଲା –''ଏ ଅଦାଲତର ନ୍ୟାୟ ବିରୁଦ୍ଧରେ ହୁମକୁର ଅଦାଲତରେ ଅପିଲ କରାଯାଇପାରେ । ଟଙ୍କା ଆଣିଛ କି ?'' ଗଙ୍ଗାମା କହିଲା –''ଓକିଲ ବାବୁ, ମୋ ଘର ସୁନା, ରୁପା, କଂସା ବାସନ ଯାହା ଥିଲା ସବୁ ବନ୍ଧା ରଖିସାରିଛି । ଆଉ ଟଙ୍କା କେଉଁଠୁ ଆଣିବି ?''

ଶିବଗୌଡର ଓକିଲ ମଧ୍ୟ ଆସି ପହଞ୍ଚିଲା । ଉଭୟ ପକ୍ଷର ଓକିଲ କଣସବୁ ଇଂରାଜୀରେ କଥାବାର୍ତ୍ତା ହେଲାପରେ ଗଙ୍ଗାମାକୁ ତାଙ୍କ ଓକିଲ କହିଲା –'' ଦେଖ ଭଉଣୀ ତୁମେ ଶିବଗୌଡ ଠାରୁ ଆଉ କିଛି ଟଙ୍କା ନେଇ, ସାରା ଜମିବାଡି ତା ନାଁରେ କରିଦିଅ । ନହେଲେ କେଉଁଠୁ ଟଙ୍କା ଆଣି ଏସବୁ ଉଧାର ଶୁଝିବ ?''

''ଆରେ ଜମିବାଡି ତକ ଦେଇଦେଲେ ଆମେ ପାଞ୍ଚପ୍ରାଣୀ ଖାଇବୁ କଣ ?'' ଚେନ୍ନିଗା ମୁହଁରେ ପାନପିକ ଥିବାରୁ କଥାବାର୍ତ୍ତାରେ କିଛି ଯୋଗ ଦେଇପାରୁନଥିଲା । ଓକିଲ ପୁଣି କହିଲେ – ''ଯଦି ଜମି ନଦେବ ତେବେ ଉପର ଅଦାଲତକୁ ଯାଇ ଅପିଲ କରିବାକୁ ପଇସା ଥିବା ଦରକାର । ଯଦି ଟଙ୍କା ଯୋଗାଡ କରିପାରିବ ତେବେ ଭଲକଥା ।''

ଆଉ କିଛି ଉପାୟ ମଧ୍ୟ ନଥିଲା । ତେଣୁ ଶିବଗୌଡକୁ ଡକାଗଲା । ସେ ସଙ୍ଗେ ସଙ୍ଗେ ପାଖରେ ଥିବା ନଡିଆ ମହାଜନ ଠାରୁ ଦୁଇହଜାର ଟଙ୍କା ଆଣି ଗଙ୍ଗାମା ହାତରେ ଦେଲା । ସିଏ ମଧ୍ୟ ଡରୁଥିଲା ଯେ ଗାଁରେ ଗଙ୍ଗାମାର ଜମି ନିଲାମ କରାଗଲେ ଏତିକି କମ୍ ଟଙ୍କାରେ ମିଳିବ ନାହିଁ । ଅନ୍ୟଲୋକେ ଅଧିକ ଟଙ୍କା ଡାକିଦେବେ । ଗଙ୍ଗାମା ବୁଦ୍ଧିଶୂନ୍ୟ ହୋଇଯାଇଥିଲା । ଉଭୟପକ୍ଷର ଓକିଲ ଜମିବାଡି ହସ୍ତାନ୍ତର କରିବା କାଗଜ ପତ୍ର ଲେଖାଲେଖି କରିଦେଲେ । ଓକିଲ ତାଙ୍କର ଶେଷଦିନ ବାବଦକୁ ଶହେ ଟଙ୍କା ମାଗିବାରୁ ଗଙ୍ଗାମା କହିଲା – ''ତୁମକୁ ଦେବାପାଇଁ ଆଠଶହ ଟଙ୍କା ମୁଁ ଦେଇସାରିଛି । ଯେଉଁ ନିୟମ କହିବ କରିବି ।''

''ମତେ କେବଳ ଦେଢଶହ ଟଙ୍କା ମିଳିଛି ।'' ଓକିଲ କହିଲା । ସେଦିନ ରେବଣ ସେଠୀ ଅଦାଲତକୁ ଆସିନଥାଏ । ସକାଳୁ ବାହାରିଲା ବେଳକୁ ଡାକିବାରୁ କହିଲା ,''ତୁମେ ସବୁ ଶଗଡ ଗାଡିରେ ଯାଅ । ମୁଁ ମଟରଗାଡିରେ ବସି ପଛରେ ଯାଉଛି ।'' ତାପରେ କିନ୍ତୁ ତାର ଆଉ ଦେଖାନାହିଁ । ତେଣୁ

Digitized by srujanika@gmail.com

ଓକିଲଙ୍କୁ ବାଧ୍ୟ ହୋଇ ବର୍ତ୍ତମାନ ଶହେ ଟଙ୍କା ଦେବାକୁ ପଡ଼ିଲା । ତାପର ଦିନ ଜମିବାଡିର କାଗଜପତ୍ର ରେଜିଷ୍ଟ୍ରି କରାଇ ଶଗଡ ଗାଡିରେ ବସି ସମସ୍ତେ ଗାଁକୁ ଫେରିଲେ । ଗଙ୍ଗାମ୍ମା ହାତରେ ନଅଶହ ଟଙ୍କା ଜଙ୍ଘ ଉପରେ କନାରେ ବାନ୍ଧି ରଖିଥିଲା । ରାସ୍ତାଯାକ ଆଖି ପଲକ ସୁଦ୍ଧା ପକାଇଲା ନାହିଁ ।

ଗାଁକୁ ଆସି ମକଦ୍ଦମାରେ ହାରିବା ବିଷୟ ସେ ଗାଁରେ କାହାକୁ କହିଲା ନାହିଁ । କିନ୍ତୁ ଶିବଗୌଡ କଣ ଚୁପ୍‌ରହିବା ପିଲା ? ଏକଥା ଶୁଣି ଯିଏସବୁ ଗଙ୍ଗାମ୍ମାକୁ ଦଶ ପଚାଶ ଉଧାର ଦେଇଥିଲେ ଟଙ୍କା ନେବାକୁ ତା'ଘର ପାଖରେ ହାଜର ହେଲେ । ସମସ୍ତଙ୍କର ପଇସା ମିଶାଇ ଆଠଶହ ଟଙ୍କା ଧାର ପରିଶୋଧ କଲା । ବାକି ଟଙ୍କା ଚକ ମୁଣ୍ଡ ତଳେ ରଖି ରାତିରେ ଗଙ୍ଗାମ୍ମା ଶୋଉଥାଏ । ଦିନେ ରେବଣ ସେଠୀ ଘରକୁ ଯାଇ ପଚାରିଲା –"ହାଇରେ ଓକିଲ କଣ କହୁଥିଲା ସବୁ ଟଙ୍କା ପାଇଲା ନାହିଁ ବୋଲି ମୋଠୁ ଆହୁରି ଶହେ ଟଙ୍କା ନେଲା ।"

"କଣ ହେଲା, ସେ ଶଳା ଚୋରପିଲାର ଏତେ ସାହସ । ମୋରି ହାତରୁ ଟଙ୍କା ନେଇ ଏମିତି କହୁଛି ? ମୋ ଆଗରେ କହିଲେ ତା ମୁହଁ ବଙ୍କା କରିଦେବି । ସେ ମତେ କଣ ବୋଲି ଭାବିଛି କି ?" ରାଗ ତମ୍‌ତମ୍ ହୋଇ ରେବଣ ସେଠୀ ନାଲି ଆଖି କରି ଏପରି କହିବାରୁ ଗଙ୍ଗାମ୍ମା ଡରିକରି ହେଉ ବା ହତାଶ ହୋଉ, ଆଉ କିଛି କହିଲା ନାହିଁ । କେବଳ କହିଲା –"ଆରେ ଓକିଲ କହୁଥିଲା ଆମେ କେଶ ଜିଣିବା ବୋଲି । କାହିଁକି ହାରିଗଲେ ?"

"ମୁଁ ପଛରେ ଶୁଣିଲି ଯେ ଶିବଗୌଡ ଜଜ୍‌ସାହେବଙ୍କୁ ଲାଞ୍ଚ ଦେଇଥିଲା । ପ୍ରଥମଦିନରୁ ତାଙ୍କୁ ଦୁଇହଜାର ଟଙ୍କା ଦେଇଥିଲା । ତାପରେ ଜଜ୍‌ମେଣ୍ଟ ଶୁଣାଣୀ ଦିନକ ଆଗରୁ ତିପ୍‌ଟୁର୍ ଯାଇଥିଲା । ମତେ ଏସବୁ ଖବର ମିଳିଯାଇଥିଲା । କିନ୍ତୁ ଆମ ପାଖରେ ସିନା ଏତେ ଟଙ୍କା ଥିଲେ ଜଜ୍‌ସାହେବଙ୍କୁ ଦେଇଥାନ୍ତେ । ଟଙ୍କା ନାହିଁ ବୋଲି ଜାଣି ମୁଁ ଶେଷ ଶୁଣାଣୀ ଦିନ ଗଲି ନାହିଁ ।"

ଗଙ୍ଗାମ୍ମା ଚୁପ୍‌ଚାପ୍ ଘରକୁ ଫେରିଆସିଲା ।

## 2

ଏ ଭିତରେ ଅନେକ ଲୋକ ଗଙ୍ଗାମ୍ମାର ଘରକୁ ଆସି ସହାନୁଭୂତି ଦେଖାଇଲେ ଏବଂ ଶିବଗୌଡ ତଥା ଜଜ୍‌ସାହେବଙ୍କୁ ଗାଳି ମଧ୍ୟ ଦେଇଗଲେ । ଦିନେ ସକାଳୁ ଶାସ୍ତ୍ରୀ ପୁରୋହିତେ ଆସି ପହଞ୍ଚିଲେ । ଶିବଗୌଡଙ୍କୁ ଗାଳି ଇତ୍ୟାଦି ଦେଇସାରି କହିଲେ – "ଗଙ୍ଗାମ୍ମା ଶାସ୍ତ୍ରୀଆଣୀ ତୁମ ସାଙ୍ଗରେ କଣ ସବୁ

Digitized by srujanika@gmail.com

କଥା ହେବ ବୋଲି ଡକାଇ ପଠାଇଛି । ଆମଘରକୁ ଟିକିଏ ଚାଲ ।'' ଘରେ ଗଙ୍ଗାମ୍ମାକୁ ନେଇ ପଦ୍ମଷ୍ଟିବାପରେ ଶାସ୍ତ୍ରୀଆଣୀ ଶିବଗୌଡକୁ ଅଭିସମ୍ପାତ ବର୍ଷଣ କଲେ ଏବଂ ଶାସ୍ତ୍ରୀ ପୁରୋହିତ ପାଞ୍ଜି ଆଦି ଦେଖି ଭବିଷ୍ୟତ ବାଣୀ କଲେ ଯେ, କକ୍ଷପାହେବ, ତା ସ୍ତ୍ରୀ ଏବଂ ପିଲାପିଲି ଖୁବ୍ ଶୀଘ୍ର ମରିଯିବେ । ପୁରୋହିତ ଗଙ୍ଗାମ୍ମାକୁ କହିଲେ – ''ତୁମେ ଆଜି ଆମଘରେ ଖାଇବ । ମଠ ଖଣ୍ଡେ ପିନ୍ଧି ପକାଇବ ଯେ ଦୋଷ ଲାଗିବ ନାହିଁ ।'' ଶାସ୍ତ୍ରୀଆଣୀ ବାଧ୍ୟ କରିବାରୁ ଖାଇବାକୁ 'ହଁ'କରି ଗଙ୍ଗାମ୍ମା ନିଜର ବଡବୋହୂକୁ ଗାଳିଦେବା ଆରମ୍ଭ କରିଦେଲା – ''ଏ ଚାଣ୍ଡାଳୀ ରାକ୍ଷସୀ ଯେଉଁ ଦିନଠୁ ମୋ ଘରକୁ ଆସିଲା, ଆମ ଭାଗ୍ୟ ଖରାପ ପଡିଲା । ଏବେ ସବୁଯାକ ଜମିବାଡି ମଧ୍ୟ ଗଲା । ଏତିକି କରମ ପୋଡି ଆମରି ଭାଗ୍ୟକୁ ଥିଲା ।''

ଗଙ୍ଗାମ୍ମା ସ୍ନାନ ସାରି ମଠା ଖଣ୍ଡିକ ପିନ୍ଧି ତିନିଥର ଆଚମନ କରିସାରିଲା ବେଳକୁ, ପୁରୋହିତ ଅପନ୍ନାସ୍ୱାକୁ ମଧ୍ୟ ଡାକିଆଣିଥିଲେ । ତାଛଡା ପୁରୋହିତଙ୍କର ବଡ ଜକେଇଙ୍କର ଭାଇର ପୁଅ ଅନ୍ନାଜୋଇସ ମଧ୍ୟ ଆସି ଯାଇଥିଲେ । ସମସ୍ତେ ଭୋଜନ ପାଇଁ ବସିଗଲେ । ମାଣ୍ଡିଆ ଜାଉ, ବଡି ତରକାରୀ, ଭାତ ଏବଂ ଦହି କଦଳୀ ପତ୍ରରେ ପରଷି ଦିଆଗଲା । ଖାଉ ଖାଉ କଥା ଆରମ୍ଭ କରି ଅନ୍ନାଜୋଇସ୍ କହିଲେ -''ରାମନ୍ନା ମହାଶୟଙ୍କ ଆଉ କିଛି ବର୍ଷ ବଞ୍ଚିଥିଲେ ଭଲ ହୋଇଥାନ୍ତା । ତାଙ୍କର ସବୁକଥା କେତେ ସୁନ୍ଦର । ତାଙ୍କ କଥାଟା ମନେ ପଡି ବେଳେବେଳେ ମନଟା କେତେ ଘାଣ୍ଟି ହୁଏ । ସେ ମରିଗଲା ଦିନଠୁଁ ଆମ ଗାଁର 'ଶ୍ରୀ' ତୁଟି ଗଲା ବୋଲି ଜାଣ ।''

ଗଙ୍ଗାମ୍ମା କହିଲା –''ଏଭଳି ପୋଡାମୁହିଁ ବୋହୂଟ ଆମରି ଭାଗ୍ୟରେ ଥିଲେ, ତେଣୁ ସେ'ବା କିପରି ବଞ୍ଚନ୍ତେ ।'' ପୁରୋହିତେ କହିଲେ – ''କଣ କରିବା ସବୁ ଭାଗ୍ୟ କଥା । ତୁମେ ତ ସବୁପ୍ରକାର ଦାନ ଧର୍ମ ପୂଜା ପାଠ କରୁଛ । ତେବେ ଋଷିପଞ୍ଚମୀ ବ୍ରତଟା ମଧ୍ୟ ପାଳନ କଲେ ବହୁତ ରିଷ୍ଟ କଟିଯାଆନ୍ତା ।''

ଅନ୍ନାଜୋଇସ ବହୁତ ମନ୍ତ୍ର ମୁଖସ୍ଥ କରିଥିଲେ । ବିଭିନ୍ନ ମନ୍ତ୍ର ପାଠକରି ଋଷିପଞ୍ଚମୀ ବ୍ରତର ମହିମା ଗଙ୍ଗାମ୍ମାକୁ ବୁଝାଇଲେ । ପୁରୋହିତଙ୍କ ସ୍ତ୍ରୀ ମଧ୍ୟ ଅନେକ ବାଧ୍ୟ କଲେ –''ଗଙ୍ଗାମ୍ମା ତୁମେ ଏ ପୂଜାଟା କରାଅ । ଯାହାହେଉ ପଛେ, ଏ ବ୍ରତଟା କରିପକାଅ । ବହୁତ ଫଳ ମିଳିବ । ଯାହା ସାହାଯ୍ୟ ଦରକାର ମୁଁ କରିବି । ଆମରି ଘର ପାଖରେ ଛାମୁଣ୍ଡିଆ ବାନ୍ଧି ସୁବିଧା କରାଇ ଦେବୁ । କାରଣ ତୁମ କୁଡିଆ ପାଖରେ ଭଲ ଭାବରେ ଲୁଗା ଲୁଇଁ ଇତ୍ୟାଦି ନାହିଁ । ଏଇଠି ଆମ ପାଖରେ କଲେ ଭଲ ହେବ ।''

''କଣରେ ଅପନ୍ନା; କଣ କହୁଛୁ, ପୂଜା କରିବି ? ନା କ'ଣ,'' – ହାତରେ ଦହି ଗୋଳାଉ ଗୋଳାଉ ଗଙ୍ଗାମ୍ମା ପୁଅକୁ ପଚାରିଲା ।

ଚେନ୍ନହଲ୍ଲୀ ଗାଁର ଭେଙ୍କଟାଚଲୟାଙ୍କ ମା' ଯେଉଁ ଋଷିପଞ୍ଚମୀ ବ୍ରତ ଏବଂ ବ୍ରାହ୍ମଣ ଭୋଜନ

Digitized by srujanika@gmail.com

କରାଇଥିଲେ ସେଠାକୁ ଅପନ୍ନାୟ୍ୱା ଯାଇଥିଲା । ଅରୁଆ ଅନ୍ନ, ଆମ୍ବଖଟା, ତରକାରୀ ଆଦି ଏତେ ସୁନ୍ଦର ତିଆରି ହୋଇଥିଲା ଯେ ସେକଥା ମନେ ପଡିଲେ ପାଟିରୁ ଲାଳ ବାହାରି ପଡେ । ଅପନ୍ନାକୁ ମା'ର କଥା ଶୁଣି ସାମନାରେ ଥିବା କଦଳୀ ପତ୍ରରେ ଅନେକ ପ୍ରକାର ସୁସ୍ୱାଦୁ ବ୍ୟଞ୍ଜନ ବଢାଯାଇଥିବାର ଦୃଶ୍ୟ ଦେଖାଗଲା । ତେଣୁ ଖୁସିରେ କହିଉଠିଲା –"ହଁ ମା' ଆମେ ନିଶ୍ଚୟ ଋଷିପଞ୍ଚମୀ ବ୍ରତ କରିବା । ଆମେ କଣ ସେ ଭେଙ୍କଟାଚଲୟ୍ୱାଙ୍କଠାରୁ କେଉଁ ଗୁଣରେ କମ୍ କି ?"

ତେଣୁ ବ୍ରତବିଧି କରିବା ଠିକ୍ କରାଗଲା । ପୁରୋହିତଆଣୀ କହିଲା – "ଗଙ୍ଗାମ୍ମାକୁ କଣ ବୋଲି ପାଇଛି କି ? ସେ ଯାହା କରିବାକୁ ଠିକ୍ କରିବ, ବ୍ରହ୍ମା ହେଲେ ସୁଦ୍ଧା ସେଥିରୁ ଟାଳି ପାରିବେ ନାହିଁ ।"

ଗଙ୍ଗାମ୍ମା ମଧ୍ୟ ନିଜ ନିଷ୍ପତ୍ତିରେ ଅଟଳ ରହିଲା । ତା ନାଁ ଗଙ୍ଗାମ୍ମା ଟି । ତେଣୁ ଖଇଘାରି ହାତପୋଛି, ଅନ୍ନାଜୋଇସ ପାଞ୍ଜି ଦେଖି ପୂଜାର ତିଥିବାର ଆଦି ଠିକ୍ କଲେ । ଚେନ୍ନହଲ୍ଲୀ ଗାଁର ଭେଙ୍କଟାଚଳୟ୍ୱାଙ୍କ ମା'ଯେତେ ଆୟୋଜନ କରିଥିଲେ ତାଠାରୁ କମ୍ ଆୟୋଜନରେ ବ୍ରତବିଧି କଲେ ଗଙ୍ଗାମ୍ମାର ଇଜ୍ଜତ କମିଯିବ, ତେଣୁ ଅଧିକ ଜିନିଷପତ୍ର ଯୋଗାଡ କରାଗଲା । ପୁରୋହିତେ କାଗଜ କଲମ ଧରି ପୂଜା ଏବଂ ଭୋଜି ତାଲିକା କଲେ । ଗାଁର ପୁରୋହିତଙ୍କ ପାଇଁ ମଠା ଧୋତି ଏବଂ ଚାଦର ଓ ତାଙ୍କ ସ୍ତ୍ରୀମାନଙ୍କ ପାଇଁ ପଚାଶ ଟଙ୍କାର ଶାଢୀ ଅଣାଯିବ । ଦାନ ପାଇଁ ଘରେ ଯେଉଁ ଗାଈ ଅଛି କାମ ଚଳିଯିବ । ଏହାଛଡା ସରୁ ଅରୁଆ ଚାଉଳ,ଡାଲି, ଗୁଡ, ଫଳମୂଳ ଆଦି ମଧ୍ୟ ଦରକାର । ଏ ସବୁ ଜିନିଷପତ୍ର କିଣା କିଣି ପାଇଁ ଶଗଡ କରି ତିପ୍‌ଟୁର୍ ଯିବାକୁ ପଡିବ । ଠିକ୍ କରାଗଲା ଯେ ସାଙ୍ଗରେ ପୁରୋହିତେ ଏବଂ ଅନ୍ନାଜୋଇସ ମଧ୍ୟ ତିପ୍‌ଟୁର୍ ଯିବେ । ଅପନ୍ନାୟ୍ୱାକୁ ପୁଣିଥରେ ତିପ୍‌ଟୁର୍ ସହର ଯିବାର ସୁଯୋଗ ମିଳିଲା ।

3

ବହୁତ ଧୂମ୍‌ଧାମରେ ଋଷିପଞ୍ଚମୀ ପୂଜା କରାଗଲା । ବର୍ତ୍ତମାନ ପ୍ଲେଗର ପ୍ରାଦୁର୍ଭାବ ସମ୍ପୂର୍ଣ୍ଣ ରୂପେ ଚାଲିଯାଇଥିବାରୁ ସମସ୍ତେ ବିଲ ଭିତରେ କୁଡିଆ ଛାଡି ଗାଁ ଘରମାନଙ୍କୁ ଫେରିଯିବାକୁ ଠିକ୍ କଲେ । ଗଙ୍ଗାମ୍ମା କୁଡିଆରେ ପୂଜାପାଇଁ ଅଣାଯାଇଥିବା ଜିନିଷରୁ ଘିଅ, ଗୁଡ, ନଡିଆ, ଚାଉଳ ଇତ୍ୟାଦି କିଛି କିଛି ବଳି ପଡିଥିଏ । ଦିନେ ବୁଢୀ ବଡ ବୋହୂକୁ କହିଲା –"ଯେଉଁ ଦିନଠୁ ତୁ ଏ ଘରେ ଗୋଡ ରଖିଲୁଣି ସେ ଦିନଠୁଁ ଆମର ସର୍ବନାଶ ହେବାକୁ ବସିଲାଣି । ସବୁ ଜମିବାଡି ଚକ ଚାଲିଗଲା । ଏଥର ଗାଁ ଘରକୁ ଫେରିଗଲା ପରେ ତୁ ତୋ ପିଲାଙ୍କୁ ଧରି ଅଲଗା ରହ । ଆମେ ଆମ ଘରେ ଅଲଗା ରହିବୁ ।" ନଞ୍ଜମ୍ମା ହଠାତ୍ କିଛି ନ ବୁଝିପାରି ପଚାରିଲା –"ଅଲଗା ରହିବ ? କେଉଁଘରେ

Digitized by srujanika@gmail.com

ରହିବ ?'' ''କେଉଁ ଘରେ ? କାହିଁକି ମୋ ସ୍ୱାମୀ ଯେଉଁ ଘର କରିଛନ୍ତି ।''

ନନ୍ଦିକା ମନେ ମନେ ଭାବିଲା ଶିବ ଗୌଡ ଘର ଭିତରକୁ ଛାଡିଲେ ସିନା ଯିବ । କିନ୍ତୁ ଚୁପ୍ ରହିଲା । ସେ ବହୁତ ଆଗରୁ ବୁଝିପାରିଥିଲା ଯେ ମକଦ୍ଦମାରେ ଜମିଗୁଡ଼ିକ ଚାଲିଯିବ । ସେ ଏକଥା ଭାବିପାରି ନଥିଲା ଯେ ଶିବ ଗୌଡ ଆଉ ଦୁଇହଜାର ଟଙ୍କା ଦବ । ଏସବୁ ଜାଣିଲା ପରେ ଏମାନଙ୍କୁ ଉପଦେଶ ଦେବା ନିରର୍ଥକ ବୋଲି ଭାବି ଚୁପ୍ ରହିଥାଏ । କହିଲେ ପୁଣି ବେକାରରେ ଝଗଡା । ବର୍ତ୍ତମାନ ତାର ଗର୍ଭ ଛଅମାସ । ପିଲାଦିନେ ଶୁଣିଥିଲା ଯେ ଗର୍ଭ ସମୟରେ କଳି, ଝଗଡା ଏବଂ ଖରାପ କଥା ଶୁଣିବା ଠିକ୍ ନୁହେଁ, ସବୁବେଳେ ଭଲକଥା କହିବା ଉଚିତ ଏବଂ ମନ ଆନନ୍ଦରେ ରହିବା ଉଚିତ । ପ୍ରଥମ ଦ୍ୱିତୀୟ ଗର୍ଭରେ ଏ ବିଷୟରେ ଧ୍ୟାନ ଦେଇନଥିଲା । କିନ୍ତୁ ଏଥର କାହିଁକି ଏକଥା ବାରମ୍ବାର ମନକୁ ଆସୁଥାଏ । ତେଣୁ ପ୍ରତିଦିନ ମନେ ମନେ ପୁରାଣ କଥାରୁ ଧ୍ରୁବ ଚରିତ୍ର, ଭକ୍ତ ପ୍ରହ୍ଲାଦ ଏବଂ ରାମ ଅଭିଷେକ ଇତ୍ୟାଦି ବିଷୟ ମନକୁ ମନ ଗୁଣୁଗୁଣୁ ହେଉଥାଏ ।

ସେଦିନ ଦ୍ୱିପହରରେ ସ୍ୱାମୀଙ୍କୁ ଶାଶୁଙ୍କ ଅଲଗା ରହିବା ଆଦେଶ ଶୁଣାଇ କହିଲା —''ବର୍ତ୍ତମାନ କୁଆଡେ ଯିବା ? କଣ କରିବା ଏକଥା ଭାବୁନ କାହିଁକି ?''

''ତୋ ଗୁଣ ଜାଣି ମା ସେପରି କରିଛି । ତୁ ତୋ ପିଲାଙ୍କୁ ଧରି ଯୁଆଡେ ଯାଉଛୁ ଯା ।''

''ମୋ ଗୁଣ କଥା ତ ସମସ୍ତେ ଜାଣନ୍ତି । କିନ୍ତୁ ବର୍ତ୍ତମାନ ଆଗକୁ କଣ କରିବାକୁ ହେବ ସେ କଥା ବିଚାର କର ।''

''ମୁଁ ତ ମୋ ମା' ସାଙ୍ଗରେ ରହିବି ।''

ରାଗରେ ନନ୍ଦିକା ପଚାରିଲା —''ତୁମ ମୁଣ୍ଡ ଖରାପ ହେଇନି ତ ?''

''ଆଲୋ ଯା, ବେକାର କଥାରେ ମତେ ବ୍ୟସ୍ତ କରନା ।''

ନନ୍ଦିକା ଆଉ କିଛି କହିଲା ନାହିଁ । ଭିନେ ହୋଇ ରହିବା ବିଷୟ ପ୍ରଥମରୁ ନିଶ୍ଚୟ କରିଥିଲେ ହେଁ ସେ କଳ୍ପନାରେ ପୁଣ୍ଡା ଭାବିନଥିଲା ଯେ ତା ସ୍ୱାମୀ ମଧ୍ୟ ତାଠାରୁ ଅଲଗା ରହିବା କଥା ଚିନ୍ତା କରିବେ । ପୁଣି ଭାବିଲା – ଜମି ବାଡିତ ସବୁ ଗଲାଣି, ଦେଖିବି ପୁଅମାନଙ୍କୁ ନିଜ ପାଖରେ ବୁଢୀ କେତେଦିନ ରଖିପାରିବ । ସେ ଜାଣିପାରିଲା ଯେ ବର୍ତ୍ତମାନ ପରିବାରର ସମସ୍ତ ଭାର ତା' ଉପରେ । କିନ୍ତୁ ସେ ବୁଝିପାରୁନଥିଲା କିପରି ଏମାନଙ୍କୁ ଚଳାଇବି । ଏତେ ଚିନ୍ତା ସତ୍ତ୍ୱେ ଗର୍ଭ ଉପରେ କାଳେ ଖରାପ ପ୍ରଭାବ ପଡିଯାଉ ସେଥିପାଇଁ ମନକୁ ବିଚଳିତ କରାଉନଥିଲା ।

ତେନ୍ନିଗରାୟ ଶୋଇସାରିବା ପରେ ନନ୍ଦିକା ପୁଅ ରାମନ୍ନାକୁ ଉଠାଇ କାନ୍ଧ ଉପରେ ପକାଇ ଧୀରେ ଧୀରେ ଯାଇ ମନ୍ଦିର ପାଖରେ ପହଞ୍ଚିଲା । ମହାଦେବୟା ଗାଧୋଇ ସାରି ଲୁଗା ଶୁଖାଉଥାନ୍ତି । ତେଣେ ଇଟାଚୁଲିରେ ଭାତ ଫୁଟୁଥାଏ । ନନ୍ଦିକାକୁ ଦେଖି କହିଲେ ''ଆସ ଭଉଣୀ ବସ । ମୁଁ ତୁମରି

Digitized by srujanika@gmail.com

କୁଡ଼ିଆ ପଟେ ଆସିବି ବୋଲି ଭାବୁଥିଲି । କିନ୍ତୁ ତୁମ ଶାଶୁ କାଳେ କଣ କହିବେ ବୋଲି ଡରି ଗଲି ନାହିଁ ।''

''ଏବେ ଶାଶୁ ଆଉ କଣ କହିବେ ?''

ଏ ପରିବାରର ଏପରି କୌଣସି କଥା ନାହିଁ ଯାହା ମହାଦେବଯ୍ୟା ଜାଣନ୍ତି ନାହିଁ । ଗାଁ ସାରା ଏମାନଙ୍କ ଅବସ୍ଥା ଜାଣନ୍ତି । ତେଣୁ ନଞ୍ଜମ୍ମା ଶାଶୁଙ୍କର ଅଲଗା ରହିବା ଆଦେଶ କଥା ଏବଂ ସ୍ୱାମୀଙ୍କର ଉତ୍ତର ମହାଦେବଯ୍ୟାଙ୍କୁ ଜଣାଇଲା ।

''ଦୁଇହଜାର ଟଙ୍କା ମିଳିଥିଲା ନା । ସେଥିରୁ ପରା ଋଣ ପରିଶୋଧ କଲାପରେ ଆଉ ହଜାରେ ଟଙ୍କା ବଳିଥିଲା । ପୁରୋହିତ କଥାରେ ପଡ଼ି କେତେ ଗୁଡ଼ାଏ ଟଙ୍କା ପଞ୍ଚମୀ ବ୍ରତ ପୂଜାରେ ନଷ୍ଟ କଲେ । ତୁମେ କିଛି କହିଲ ନାହିଁ କାହିଁକି ?''

''ମୋ କଥାରେ କଣ ଅଛି ? ସବୁତ ଗଲାଣି ଆଉ ଏ ଟଙ୍କାତକ କେତେଦିନ ?''

''ହଁ ତୁମକଥା ମଧ୍ୟ ଠିକ୍ ।'' ମହାଦେବଯ୍ୟା ଅଳିନ୍ଦରେ ଛାତରଖି ଖାଇ ବସିଲେ, ସେଦିନ ସୋମବାର ହୋଇଥିବାରୁ ଦୂର ଗାଁକୁ ଭିକ୍ଷା ପାଇଁ ଯାଇଥିଲେ, ଏବଂ ଆସୁ ଆସୁ ଡେରି ହୋଇଗଲା । ସେ ନଞ୍ଜମ୍ମା ଓ ପାର୍ବତୀକୁ ନଡ଼ିଆ ଏବଂ ଗୁଡ଼ ଖାଇବାକୁ ଦେଲେ । ଏବଂ ନିଜେ ଗଭୀର ଚିନ୍ତାରେ ବୁଡ଼ି ରହିଲେ ।

''ତୁମେ ମୋ ବାପଘରର କଥା ଶୁଣିଛ କି ନାହିଁ ମୁଁ ଜାଣିନି । ନିଜଘର କଥା କାହା ଆଗରେ କହି କଣ ଲାଭ ବୋଲି ଭାବି ମୁଁ କହି ନାହିଁ । ମୋ ଭାଉଜର ସ୍ୱଭାବ ମଧ୍ୟ ଭଲ ନୁହେଁ । ଏଥର ମୋର ବୁଆ ଜନ୍ମ ପାଇଁ, କିମ୍ବା କୌଣସି କଥା ପାଇଁ ମୁଁ ଆଉ ଆମ ଘରକୁ ଯିବି ନାହିଁ । ଜେଜେମା'କୁ ଏଠିକି ଡକାଇ ଆଣିବି । ତା ବୟସ ମଧ୍ୟ ପଞ୍ଚସ୍ତରୀ ଟପିଲାଣି । ବେଶୀକାମ କରିନପାରିଲେ ମଧ୍ୟ ଅନେକ କିଛି ସାହାଯ୍ୟ କରିବ । କିନ୍ତୁ ରହିବା ପାଇଁ କୁଡ଼ିଆ ଖଣ୍ଡିଏ ଏବଂ ଖାଇବା ପାଇଁ ଚାଉଳତ ଦରକାର । ଏପରି ସମୟରେ ଏ ମହାଶୟ ମତେ କରଛଡ଼ା କଲେ ମୁଁ କଣ କରିବି ?''

ମହାଦେବଯ୍ୟା ଚିନ୍ତା କରି କହିଲେ – ''ଚେନ୍ନିଗା'ତ ଦୁଇଟା ଦିନରେ ବୁଲି ବୁଲି ତୁମପାଖରେ ପହଞ୍ଚିଯିବ । ତା ଚିନ୍ତା କରନାହିଁ । କୁରୁବରହଲ୍ଲୀ ଗାଁର ମୁଖିଆ ଗୁଣ୍ଡ ଗୌଡ଼ଙ୍କୁ ଜାଣିଛ ଟି ? ସିଏ ଯଦି ଚାହିଁବେ ତୁମକୁ ସାହାଯ୍ୟ କରିପାରିବେ । ତା'ନହେଲେ ଏ ଗାଁରେ ତୁମର ଭଲ ଚିନ୍ତା କରିବାକୁ କେହି ନାହାନ୍ତି ।''

''କୁରୁବରହଲ୍ଲୀ ଯାଙ୍କର ସର୍ବାଧିକାରୀ ସୀମା ଭିତରେ ଥିଲା ।'' ସେ ଗାଁର ଚାଳିଶିଘର ଜାତିରେ ଗୋଲ୍ଲା । ଗୁଣ୍ଡଗୌଡ଼ ଗତ ଚାଳିଶି ବର୍ଷ ଧରି ଗାଁ ମୁଖିଆ ରହିଆସିଛନ୍ତି । ଆଖପାଖ ଗାଁରେ ବଡ଼

Digitized by srujanika@gmail.com

ନ୍ୟାୟବନ୍ତ ଲୋକ ବୋଲି ତାଙ୍କର ନାଁ ଥାଏ । ନଷ୍ଟିକା ମଧ୍ୟ ଶୁଣିଥିଲା । ଶୁଣାଯାଏ ଯେଉଁଦିନ ଠାରୁ ସେ ମୁଖିଆ ହୋଇଛନ୍ତି ସେ ଦିନଠାରୁ ଆଜି ଯାଏ ସେ ଗାଁରେ ନା ଚୋରୀ ହୋଇଛି ନା ବ୍ୟଭିଚାର ଏବଂ ପେଟ ଭୋକରେ ଗାଁ ଛାଡି କେହି ଚାଲିଯିବାର ମଧ୍ୟ ଶୁଣାଯାଇ ନାହିଁ ।

ମହାଦେବୟା କହିଲେ,"ତାଙ୍କର ବାଡିପଟେ ବଖରାଏ ଘର ଖାଲି ପଡିଛି । ସେଠାରେ ରହିବାକୁ ଅନୁରୋଧ କଲେ ମନା କରିବ ନାହିଁ ବୋଲି ମୋର ଆଶା ।"

ନଷ୍ଟିକାର ମଧ୍ୟ ମନେପଡିଲା । ରାମଚନ୍ଦ୍ର ଗାଁରେ ମଧ୍ୟ ଗୁଣ୍ଡଗୌଡ଼ଙ୍କର ଘର ଅଛି, ଓ ସେଥିରେ କେହି ରହନ୍ତି ନାହିଁ । ସେଇଟା ମିଳିଗଲେ ଘରଚିନ୍ତା ଦୂର ହୋଇଯାଆନ୍ତା । ସେ ତାଙ୍କୁ ଦେଖିଛି କିନ୍ତୁ ବେଶି ପରିଚୟ ନାହିଁ । ତାଙ୍କରି ସର୍ବରାକାରୀ କ୍ଷେତ୍ର ଭିତରେ ଜଣେ ଗାଁ ମୁଖିଆ ହୋଇଥିବାରୁ କେତେଥର ଘରକୁ ଆସିଛନ୍ତି । ନଷ୍ଟିକା ମଧ୍ୟ ଅନେକଥର ତାଙ୍କୁ ଖାଇବାକୁ ଦେଇଛି । ପାଚିଲା ଗହଳନିଶ, ଚଉଡା ଚେହେରା, ଡାହାଣ ହାତରେ ସୁନାଚେନ୍ ଘଡି, ଗୋଡରେ ମୋଜା, ଚପଲ ଓ କୋଟ୍ ପିନ୍ଧିଥାନ୍ତି ।

"କାଲି ସକାଳେ ତୁମେ କୁରୁବରହଲ୍ଲୀ ଚାଲ । ମୁଁ ମଧ୍ୟ ଭିକ୍ଷା ପାଇଁ ସେଇ ଗାଁକୁ ଯାଉଛି । ତୁମେ ଘର ପାଇଁ ମୁଖିଆ ଗୌଡଙ୍କୁ କହ । ମୁଁ ମଧ୍ୟ କହିବି । ସେ ମନା କରିବେ ନାହିଁ । ଚେନ୍ନିଗା ତ' ମା' ପାଖରେ ରହୁଛି ବୋଲି କହିବ ନାହିଁ । ମହାଦେବୟାଙ୍କ ଠାରୁ ଏକଥା ଶୁଣି ନଷ୍ଟିକା ନିଜ କୁଡିଆକୁ ଗଲା ।

"ଆଲୋ ରାଣ୍ଡି, କେଉଁ ବଜାର ବୁଲି ଯାଇଥିଲୁ ?" ଗଙ୍ଗାକାର ଏ ଗାଳି ଶୁଣି ମଧ୍ୟ ନଷ୍ଟିକା ପାଟି ଫିଟାଇଲା ନାହିଁ ।

ତାପରଦିନ ସକାଳୁ ଉଠି, ଗାଧୁଆ ସାରି ପିଲାଙ୍କୁ ସଫା ଜାମା ପିନ୍ଧାଇଲା । ପିଲାଙ୍କୁ ଖୁଆଇ ପିଆଇ ଏବଂ ନିଜେ ଖାଇ ରାମଣ୍ଣାକୁ କାନ୍ଧରେ ବସାଇ ପାର୍ବତୀର ହାତ ଧରି କୁଡିଆରୁ ବାହାରି ପଡିଲା । ରାସ୍ତାରେ ଗଙ୍ଗାକା ଦେଖି ପଚାରିଲା –"କିଲୋ କେଉଁ ଭେଣ୍ଡିଆ ପାଖକୁ ଯାଉଛୁ ?" ନଷ୍ଟିକା କିଛି ନ କହି ଚାଲିଗଲା । କିଛି ବାଟ ଯାଇ ଘରକୁ ବୁଲି ଦେଖିଲା ଯେ ତା ସ୍ୱାମୀ ଦିଅର ଆସୁନାହାନ୍ତି ତ ?

କୁରୁବରହଲ୍ଲୀ ତାଙ୍କ ଗାଁଠାରୁ ଦୁଇମାଇଲ ବାଟ । ରାସ୍ତାରେ ଗୋଟେ ଛୋଟ ମୁଣ୍ଡିଆ ପଡେ । ନଷ୍ଟିକାକୁ ଏକୁଟିଆ ଯିବାକୁ ଡର ଲାଗୁନଥିଲା । କିନ୍ତୁ ଗର୍ଭବତୀ ହୋଇଥିବାରୁ ପିଲାଟିକୁ କାନ୍ଧ ଉପରେ ବସାଇ ମୁଣ୍ଡିଆ ଚଢିବାରୁ ଧଇଁସଇଁ ହୋଇଗଲା । ଛୋଟ ଝିଅ ପାର୍ବତୀ ମଧ୍ୟ ହାଲିଆ ହୋଇଗଲା, କିନ୍ତୁ କାନ୍ଦି କାନ୍ଦି ମା'ର ହାତ ଧରି ଚାଲିଥାଏ । ନଷ୍ଟିକାର ଛାତିରେ କୋହ ଉଠିଲା ଓ ସେ କାନ୍ଦି ପକାଇଲା । ଥକ୍କା ମାରି ବସି ମନଇଚ୍ଛା କାନ୍ଦିଲା । ତାପରେ ଲୁଗା କାନିରେ ମୁହଁ ପୋଛି ଭାବିଲା – କେଉଁ କୁଅ

Digitized by srujanika@gmail.com

ପୋଖରୀରେ ପିଲାଟିକୁ ଫିଙ୍ଗି ଦେଇ ନିଜେ ମଧ୍ୟ ବୁଡି ମରିବ । ପୁଣି ଭାବିଲା ଗର୍ଭାବସ୍ଥାରେ ଏପରି ଦୁଃଶ୍ଚିନ୍ତା କରିବା କଥା ନୁହେଁ । ତାପରେ ସାହସ ଧରି ଉଠି ଠିଆହେଲା । ପୁଅକୁ କାନ୍ଧରେ ବସାଇ ପାର୍ବତୀର ହାତ ଧରି ଆଗକୁ ଚାଲିଲା । ମୁଣ୍ଡିଆ ଉପରୁ କୁରୁବରହାଳଙ୍କୀ ଗାଁ ଦିଶେ । ଗାଁ ମଝିରେ ନନ୍ଦୀ ଦେବତାଙ୍କ ମନ୍ଦିର । ମନ୍ଦିରକୁ ଲାଗି ଗୁଣ୍ଡ ଗୌଡଙ୍କର ଘର । ନଞ୍ଜମ୍ମା ସେ ଆଡକୁ ଚାହିଁ ମନେ ମନେ ପ୍ରାର୍ଥନା କଲା – "ହେ ଭଗବାନ ଗୌଡଙ୍କ ମନରେ ଆମ ପ୍ରତି ଦୟା ଜାଗ୍ରତ କରାଅ ।"

ଗୁଣ୍ଡ ଗୌଡ ସେତେବେଳକୁ ବାରଣ୍ଡାରେ ବସି ପାନ ଖାଉଥିଲେ । ନଞ୍ଜମ୍ମାକୁ ଦେଖିଲା ମାତ୍ରେ ଚିହ୍ନିପାରିଲେ ଏବଂ ଉଠିଯାଇ କହିଲେ – "ଆସ ଭଉଣୀ ଏତେ ଖରାରେ ପିଲାକୁ ଧରି ଆସିଛ ? ଆମର ଆଜି କେତେ ଭାଗ୍ୟ । ସାକ୍ଷାତ୍ ଲକ୍ଷ୍ମୀ ଆଜି ଆମଘରକୁ ଆସିଛନ୍ତି । ଆରେ, ଏ ଲଡୁଆ, ଆମ ସର୍ବରାକାରଙ୍କ ସ୍ତ୍ରୀ ଆସିଛନ୍ତି । ତାଙ୍କ ପାଇଁ ଶୀଘ୍ର ମଶିଣା ପକାଅ ।" ନଞ୍ଜମ୍ମାକୁ ଘର ଭିତରକୁ ନେଇଯାଇ ବସାଇଲେ । ତାଙ୍କ ସ୍ତ୍ରୀ, ପାର୍ବତୀ ହାତରେ ଗୁଡ ନଡିଆ ଦେଲେ ।

"ଆମ ଘରର ସବୁକଥା ଜାଣିଛନ୍ତି ତ ?"

"ହଁ ଭଉଣୀ ତୁମ ଘରର କାହାଣୀ ଏ ଅଞ୍ଚଳରେ କିଏ ବା ନଜାଣେ ? ତୁମ ଶଶୁରଙ୍କ ଭାଗ୍ୟ ଖରାପ ଯେ ସେ ଦ୍ୱିତୀୟ ବିବାହ କରିଥିଲେ । ଯେଉଁ ଦିନଠୁ ସେ ମାଇକିନା ଘରକୁ ପଶିଛି ସେ ଘରର ଶାନ୍ତି ଯାଇଛି । ବର୍ତ୍ତମାନ ଯାହା କିଛି ସମ୍ପତ୍ତି ଅଛି ତୁମେ ରକ୍ଷା କରିବ ।" ଏକଥା କହି ଗୁଣ୍ଡଗୌଡ ନିଜ ସ୍ତ୍ରୀ ପଟକୁ ଚାହିଁ କହିଲେ – "ସର୍ବରାକାରୀର ସବୁ କାମ ହିସାବ କିତାବ ଏଇ ଭଉଣୀ କରନ୍ତି । ସେ ଚେନ୍ନିଗା ହାତରେ କଣ ଖଡା ଶିଖିବ ? ସିଏ ତ ଅଳସୁଆଙ୍କ ସର୍ଦ୍ଦାର । ତାକୁ ଯଦି କହିବୁ ଘାସ ଖାଇବୁ ଷଣ୍ଢ ? ସେ କହିବ 'ହଁ' । ଆଉ ଯଦି କହିବ 'ହଳ କରିବୁ ଷଣ୍ଢ, 'ନାହିଁ ନାହିଁ' କରି ଶିଙ୍ଗ ହଲାଇ ଦୌଡି ପଳାଇବ । ତୁମ ସ୍ୱାମୀଙ୍କ ବିଷୟରେ ଏପରି କହୁଛି ବୋଲି ମତେ ଖରାପ ଭାବିବନି ଭଉଣୀ ।"

"ଖରାପ ଭାବିବାର କଣ ଅଛି । ତାଙ୍କ ପ୍ରକୃତି ତ ସେୟା ।" ଗୌଡଙ୍କ ସ୍ତ୍ରୀ କହିଲେ ।

ଏସବୁ କଥାବାର୍ତ୍ତା ହେବା ଭିତରେ ଲକ୍କମ୍ମା ରନ୍ଧାଘର ଭିତରକୁ ଯାଇ ତିନି କଂସା ଗରମ ଦୁଧ ଏବଂ ସେଥିରେ ଗୁଡ ପକାଇ ଆଣି ରଖିଲେ, "ମୁଁ ଦୁଧ ପିଇବି ନାହିଁ " ନଞ୍ଜମ୍ମା କହିବାରୁ ଲକ୍କମ୍ମା କହିଲେ– "ଗର୍ଭବତୀ ସ୍ତ୍ରୀ ଦୁଧ ପିଇବାକୁ ମନା କରିବା କଥା ନୁହେଁ । ପିଇଦିଅ ।"

"ଆପଣଙ୍କୁ ଦୁଧପିଇବାକୁ ମନା କରିବି ନାହିଁ, କିନ୍ତୁ ଆପଣଙ୍କୁ ମତେ ସାହାଯ୍ୟ କରିବାକୁ କଥା ଦେବାକୁ ପଡିବ ।"

"କଥା କଣ କହୁନ ।"

"ମୋ ଶାଶୁ ମତେ ଘରୁ ବାହାର କରିଦେବାକୁ କହୁଛନ୍ତି । ମୋ ପାଇଁ ବର୍ତ୍ତମାନ କୌଣସି ଆଶ୍ରୟ ନାହିଁ ।"

Digitized by srujanika@gmail.com

"ଏଥିପାଇଁ ଚିନ୍ତା କଣ ? ତୁମ ଗାଁରେ ମୋର ଗୋଟିଏ ଘର ଅଛି ସେଇଠି ରହିବ । ନିଅ ପ୍ରଥମେ ଦୁଧଟକ ପିଇଦିଅ ।"

ନଷ୍ଟିକା ଯାହା ମାଗିବାକୁ ଆସିଥିଲା ପଚାରିବା ପୂର୍ବରୁ ତାକୁ ମିଳିଗଲା । ତାର ଯାହା ଆଶଙ୍କା ଥିଲା ଯେ ଭଲମନ୍ଦ ଶୁଣିବାକୁ ପଡିବ ସେମିତି କିଛି ହେଲା ନାହିଁ । ଗୁଣ୍ଡ ଗୌଡ ପ୍ରସନ୍ନ ମନରେ ତାଙ୍କ ଘର ଦେବାପାଇଁ ରାଜିହୋଇଗଲେ । ନଷ୍ଟିକା ପିଲାଙ୍କୁ ଦୁଧ ପିଆଇ ନିଜେ ମଧ୍ୟ ପିଇଲା । ଗୌଡ ତାଙ୍କ ସ୍ତ୍ରୀକୁ କହିଲେ – "ତୁମକୁ ମୁଁ କହୁନଥିଲି, ଏ ଭଉଣୀ ଭାରି ଲକ୍ଷ୍ମୀବନ୍ତ । ଦେବୀ ସୀତାଙ୍କ ପରି ଏହାଙ୍କ ମୁହଁରେ ଶାନ୍ତିର ଲହରି ଖେଳୁଛି ।"

ମହାଦେବୟ୍ୟା ମଧ୍ୟ ଭିକ୍ଷା ମାଗିବା ପାଇଁ ସେଠାରେ ପହଞ୍ଚିଗଲେ । ନଷ୍ଟିକାକୁ ବସିଥିବାରୁ ଦେଖି ସେ ମଧ୍ୟ ବସିଗଲେ । ଲକ୍ଷ୍ମୀକା ତାଙ୍କ ପାଇଁ ପିଢା ଖଣ୍ଡିଏ ଦେଲା । ନଷ୍ଟିକାକୁ ଏ ଗାଁକୁ ଆସିବାର କାରଣ ପଚାରିଲେ, ସତେ ଯେପରି ସେ କିଛି ଜାଣନ୍ତି ନାହିଁ । ନଷ୍ଟିକା ଠାରୁ ରହିବା ପାଇଁ ଘର ମିଳିବା କଥା ଶୁଣି ମହାଦେବୟ୍ୟା କହିଲେ – "ଗୌଡେ ସିନା ଆଶ୍ରୟ ଦେଲେ, କିନ୍ତୁ ପେଟ ପୋଷିବା ପାଇଁ କଣ କରିବ ? ସେ ଘରେ ଲୋକ ଉପବାସରେ ପଡିଥିବ କି ?"

"କାହିଁକି ସର୍ବରାକାର କାମ ତ ପୁଣି ଅଛି । ପରିଶ୍ରମୀ ଲୋକ ପାଇଁ ଏ କାମଠୁ ବଳି ଆଉ କଣ ବା ସମ୍ପତ୍ତି ଥାଇପାରେ ?" ଗୌଡ କହିଲେ ।

"ସିଏ କେମିତି ପରିଶ୍ରମୀ ଲୋକ ଆପଣ କଣ ଜାଣନ୍ତି ନାହିଁ ?"

"ସେ ଶିଖଣ୍ଡୀର ପୁଅ, ତାକୁ କଣ ମୁଁ ଜାଣିନି ?" ନଷ୍ଟିକା ଆଡକୁ ବୁଲି କହିଲେ –"ତାକୁ କହ ତୁମ କଥା ମାନି ଚଳିବ, ତାହାହେଲେ ପେଟ ପୋଷିବାକୁ କିଛି ଅଭାବ ରହିବ ନାହିଁ ।"

"ସିଏ କ'ଣ ମାନିବା ଜନ୍ତୁ ?" ମହାଦେବୟ୍ୟା କହିଲେ ।

"ଯାହା କପାଳରେ ଯାହା ଲେଖା ହୋଇଛି ସେକଥା ଭୋଗିବାକୁ ପଡିବ !" ଲକ୍ଷ୍ମୀକା କହିଲା । ଖରା ଆସି ମୁଣ୍ଡ ଉପରେ ହେଲାଣି । ନଷ୍ଟିକା ଏବଂ ପିଲାମାନଙ୍କୁ ନ ଖୁଆଇ ଛାଡିବା ପାଇଁ ଗୌଡେ ଓ ତାଙ୍କ ସ୍ତ୍ରୀ ରାଜି ହେଲେ ନାହିଁ । ମହାଦେବୟ୍ୟାକୁ ମଧ୍ୟ ଖାଇସାରି ଯିବାକୁ ବାଧ୍ୟ କଲେ । ଲକ୍ଷ୍ମୀକା ପିତଳ ବାସନ ଓ ଗରା ଆଣିଦେଲା । ସେମାନଙ୍କୁ ରାନ୍ଧି ଖାଇବା ପାଇଁ ସବୁପ୍ରକାର ବ୍ୟବସ୍ଥା କରିଦେଲା । ମନ୍ଦିର ବେଢାର ଗୋଟେ କଡକୁ ଇଟା ଚୁଲି ପକାଇ ଅଲଗା ଅଲଗା ଭାତ ବସାଇଲେ, ଭାତ, ନଡିଆ ଚଟଣି, ଏବଂ ଦହି ଭୋଜନ କଲେ । ପିଲାଙ୍କୁ ଦୁଧ ଆଣି ପିଆଇଲା । ଗୁଣ୍ଡ ଗୌଡ ତାଙ୍କର ଖଟଡଗାଡି ସଜକରାଇ ଗର୍ଭବତୀ ନଷ୍ଟିକା ଓ ତା ପିଲାଙ୍କୁ ସେଥିରେ ବସାଇ ଛାଡିଲେ । ମହାଦେବୟ୍ୟା ମଧ୍ୟ ଝୁଲିମୁଣାଧରି ଖଟଡଗାଡିରେ ବସିଗଲେ ।

Digitized by srujanika@gmail.com

ଗଙ୍ଗାଜ୍ଜା କୁଡିଆ ଛାଡି ଗାଁ ଘରକୁ ଆସିଲା । ନିଜ ପୁରୁଣା ଘରକୁ ଯାଇ ଦ୍ୱାର ପିଟାଇ ଅପନ୍ନା ସାଙ୍ଗରେ ମିଶି ଘର ଓଳାଓଳି କଲାବେଳକୁ ଶିବ ଗୌଡର ହଳିଆ ଗୋଟିଏ ବଡ ତାଲା ଧରି ହାଜର ହୋଇଗଲା । କହିଲା, "ସାହୁକାର କହିଛନ୍ତି, ତୁମେ ଜିନିଷପତ୍ର ଧରି ଏଠୁ ବାହାରିଯାଅ । ଘର ବନ୍ଦ କରି ତାଲା ପକାଇବା ପାଇଁ ମତେ କହିଛନ୍ତି ।"

"କେଉଁ ରାଣ୍ଡର ପୁଅ ସିଏ ତତେ ପଠେଇଛି ରେ ?"

"ଶିବ ଗୌଡ ।"

"ଆରେ ତା ଘର ବୁଡିଯିବ । ତା ବଂଶନାଶ ହେବ । ବିଲବାଡିତକ ତ ସବୁ ନେଲା ଏବେ ଘରଟା ମଧ୍ୟ ନେଇଯିବ । ଏଇଟା କଣ ତା ବାପ ସମ୍ପତ୍ତି ?" ଗଙ୍ଗାଜ୍ଜା ସେଠାରୁ ସିଧା ଯାଇ ଶିବଗୌଡ ଘର ଆଗରେ ପାଟିକଲା । "ଆରେ ହେ ଗୌଡ ମୋ ଘରଟା କଣ ତୋ ବାପ ସମ୍ପତ୍ତି ? କଚେରୀରେ ଜମିବାଡି କଥା ସିନା ନିଷ୍ପତ୍ତି ହେଲା । ଘରକଥା ତ ନୁହେଁ ?"

"ତୋ ବଂଶ ବୁଡୁରେ ଗୌଡ । ଆମେ ଏବେ କେଉଁଠି ରହିବୁ ? ତୁ ତ ଗାଁର ମୁଖିଆ ତୁ କହ ।"

"ଘରବୁଡାଙ୍କୁ ଆଶ୍ରୟ ଦେବା ମୋ କାମ ନୁହେଁ । ଚୁପଚାପ ଏଠୁ ଚାଲିଯାଅ ।" ଏକଥା କହି ଗୌଡ ଭିତରକୁ ଯାଇ ଧଡ୍ କିନା କବାଟ ପକାଇଦେଲା ।

ଅନେକ ସମୟ ପର୍ଯ୍ୟନ୍ତ ଗଙ୍ଗାଜ୍ଜା ଏଣୁ ତେଣୁ ଭଡଭଡ ହେଲା ଯଥା- ଇଆର ଘର ବୁଡୁ । ବଂଶନାଶ ହେଉ ଏବଂ ଘରଭଙ୍ଗା ରାଣ୍ଡର ପୁଅ ନରକକୁ ଯାଉ । "ମତେ ବି ସାହାଯ୍ୟ କରିବାକୁ ଲୋକ ଅଛନ୍ତି ।" କହି ଗଙ୍ଗାଜ୍ଜା ରେବଣ ସେଠୀ ଘରେ ପହଞ୍ଚିଲା । ଏସବୁ କଥା କହି ତାକୁ ପଚାରିଲା – "ତୋ ଗୁହାଳ ପାଖରେ ଆଉ ଦିଖଣ୍ଡ ଛାମ୍ପତା ଘେରେଇ ଦେ, ସେଇଠି ମୁଁ ଓ ମୋ ଦି ପୁଅ ରହିବୁ ।"

"ଗଙ୍ଗାଜ୍ଜା ଆଉ କିଛିଦିନ ଗଲେ ମୋ ମଇଁଷି ପିଲାଜନ୍ମ କରିବ । ତାକୁ ବାନ୍ଧିବାକୁ ଆମର ଯାଗା ନାହିଁ । ତୁମକୁ କେଉଁଠୁ ଯାଗା ଦେବି ? ତୁମେ ଆୟ୍ୟା ଶାସ୍ତ୍ରୀକୁ ଯାଇ ପଚାର ।" "ଆରେ, ରାଣ୍ଡର ପୁଅ, ମୋ ସମ୍ପତ୍ତି ଖାଇବୁ ବୋଲି ମୋ ପଛରେ ଜାହାଜେଲେ ତୁ ଲାଗିଥିଲୁ ?" ସେଠୁ ଯାଇ ଗଙ୍ଗାଜ୍ଜା ଆୟ୍ୟାଶାସ୍ତ୍ରୀଙ୍କ ଘରେ ପହଞ୍ଚିଲା । ତାଙ୍କ ବାଡିରେ ମଧ୍ୟ ଜାଗା ମିଳିଲା ନାହିଁ । "ଯେ ପର୍ଯ୍ୟନ୍ତ ମୋଠାରୁ ଖାଇବାକୁ ମିଳୁଥିଲା ଆମ ଘରକୁ ଦୌଡୁ ଥିଲୁ, ଭିକମଗା ପୁରୋହିତ ଏବେ କହୁଛି ଆମପାଇଁ ଟାଇଁଣ୍ଟତ ଜାଗା ନାହିଁ ।" ରାସ୍ତାରେ ଠିଆ ହୋଇ ଅନେକ ସମୟ ପର୍ଯ୍ୟନ୍ତ ଗାଳି ଶୁଣାଇଲା ।

Digitized by srujanika@gmail.com

ପୁରୋହିତ ବଡ ବ୍ୟସ୍ତ ହୋଇପଡିଲେ । କିନ୍ତୁ କୌଣସି ମତେ ତାଙ୍କ ବାଡିରେ ଜାଗା ଦେବା ପାଇଁ ଚାହୁଁନଥିଲେ । ଗଙ୍ଗାମ୍ମାକୁ ଆସି ଉପାୟ ବତାଇଲେ ଯେ ଅନ୍ନାଜୋଇସ ପାଖକୁ ଯାଅ ସେ କିଛି କରିଦେଇପାରେ । ଗାଁ ପୂର୍ବକୋଣରେ ହନୁମାନଙ୍କ ମନ୍ଦିର । ଚାରି ବଖରା ଇଟା ତିଆରି ଘର ବି ଅଛି । ଅନ୍ନାଜୋଇସ ହନୁମାନ ମନ୍ଦିରର ପୂଜାରୀ, ମା' ଏବଂ ଦି' ପୁଅ ସେଠି ରହିପାରନ୍ତି, କିନ୍ତୁ ଗାଁ ମହାଜନ ଠାରୁ ସ୍ୱୀକୃତି ନେବା ଦରକାର । ଗାଁ ମହାଜନ ହେଲେ ମୁଖ୍ୟ ମୁଖ୍ୟ ଘର ଯଥା – ସର୍ବରାକାର, ମୁଖିଆ, ପଞ୍ଚାୟତ, ମେମ୍ବର ଏବଂ ସରପଞ୍ଚ । ଆଉ ସମସ୍ତେ ମାନିଯିବେ କିନ୍ତୁ ଶିବଗୌଡ ମାନିବା ମୁସ୍କିଲ । ସେ ମୁଖିଆ ଏବଂ ସରପଞ୍ଚ ଉଭୟ । ଶାସ୍ତ୍ରୀ ପୁରୋହିତେ ବୁଝାଇଲେ –"ଗଙ୍ଗାମ୍ମା ତୁ ଡଗିରଖି କଥାବାର୍ତ୍ତା କର । ଦାଣ୍ଡରେ ଠିଆ ହୋଇ ବାରପ୍ରକାର କୁ-ବାକ୍ୟ କହି ଶିବଗୌଡକୁ ଗାଳି ଦେ ନାହିଁ ।" କିନ୍ତୁ ଗଙ୍ଗାମ୍ମା ବୁଝିବା ମାଇକିନା ? ସେ କହିଲା – "ମୁଁ କେଉଁ ରାଣ୍ଡର ପୁଅକୁ ଡରିନି ।"

ଦୁଇ ପୁରୋହିତେ ଶିବଗୌଡକୁ ଅନୁରୋଧ କରିବାକୁ ପହଞ୍ଚିଲେ । ଗୌଡ ବୋଧହୁଏ ରାଜି ହୋଇନଥାନ୍ତା । କିନ୍ତୁ ତା' ସ୍ତ୍ରୀ ଗଙ୍ଗାମ୍ମାର ଗାଳିକୁ ଭାରି ଡରେ । ରାଣ୍ଡୀ ବ୍ରାହ୍ମଣୀ ରାସ୍ତାରେ ଠିଆ ହୋଇ ବାଉଁଶ ବୁଡି ଅଭିଶାପ ଦିଏ । ତା ଛଡା ବ୍ରାହ୍ମଣ ଲୋକ ହନୁମାନ ମନ୍ଦିରରେ ରହିଲେ ଆପତ୍ତି ବା କଣ ? ସ୍ୱାମୀକୁ ଘର ଭିତରକୁ ଡାକି ଗୌରମ୍ମା ସବୁକଥା ବୁଝାଇଲା । ଶିବଗୌଡ ବାହାରକୁ ଆସି କହିଲା – "ଠିକ୍ ଅଛି ସେମାନେ ମନ୍ଦିରରେ ରହନ୍ତୁ ।"

ଗଙ୍ଗାମ୍ମା ହନୁମାନ ମନ୍ଦିରରେ ରହିବାକୁ ଅନ୍ନାଜୋଇସକୁ ଭାରି ସୁବିଧା ହେଲା । ଏ ମନ୍ଦିରର ପୂଜାରୀ ହିସାବରେ ସେ ପାଞ୍ଚ ଏକର ଜମି ଭୋଗ କରୁଥିଲା । କିନ୍ତୁ ସବୁଦିନ ଆସି ମନ୍ଦିର ସଫା କରିବା ଏବଂ ପୂଜା କରିବା ତାକୁ ଭଲ ଲାଗୁନଥିଲା । ଦାନ ଦକ୍ଷିଣା ପାଇଁ ପାଖ ଆଖ ଗାଁକୁ ଗଲେ ଦିନେ ଦିନେ ହନୁମାନଙ୍କ ମୂର୍ତ୍ତିକୁ ଗାଧେଇ ଦେବା ପାଇଁ କେହିନଥାନ୍ତି । ମନ୍ଦିର ଭଲ କରି ସଫା ନ ହେବାରୁ ଚେମେଣି, ପାରା ଆଦିଙ୍କ ଗୁହ୍ନରେ ଭଣଭଣ ଗନ୍ଧାଉଥିଲା । ଗାଁ ମୁଖିଆ ଏ ବିଷୟରେ ପୁରୋହିତଙ୍କ ବିରୁଦ୍ଧରେ ଅଭିଯୋଗ ମଧ୍ୟ କେତେଥର କରିଥିଲା । ପୁରୋହିତ ଯେଉଁଦିନ ହନୁମାନଙ୍କ ଉପରେ ଫୁଲ ଚନ୍ଦନ ନଦିଏ ସେ ଦିନ ଗାଁ ଲୋକେ ତାକୁ ବହୁତ ଗାଳି ଦିଅନ୍ତି ।

ଏବେ ଅନ୍ନାଜୋଇସ, ଅପନ୍ନାୟ୍ୟାକୁ କହିଲା –"ଦେଖ ଭାଇ ମୁଁ ତୁମକୁ ରହିବା ପାଇଁ ଜାଗା ଦେଉଛି, କିନ୍ତୁ ତୁମକୁ ମନ୍ଦିର, ମନ୍ଦିର ବେଢା ଆଦି ସଫାକରି ପରିଷ୍କାର ରଖିବାକୁ ପଡିବ । ପବିତ୍ର ଶରୀରରେ ହନୁମାନଙ୍କ ପୂଜା ମଧ୍ୟ କରିବାକୁ ପଡିବ । କିନ୍ତୁ କେହି ଯେପରି ନଜାଣନ୍ତି ଯେ ତୁମେ ପୂଜା କରୁଛ । ଯଦି କାହାକୁ କହିବ ତେବେ ମନ୍ଦିରରୁ ବାହାର କରିଦେବି । ମୁଁ ମଧ୍ୟ ମଝିରେ ମଝିରେ ଆସି ପୂଜା କରିଦେଇ ଯାଉଥିବି ।"

ଅପନ୍ନାୟ୍ୟା ରାଜିହେଲା । ଗଙ୍ଗାମ୍ମା ମଧ୍ୟ ପୂଜାପାଠକୁ ନାହିଁ କରେ ନାହିଁ, ତାର ଭଗବାନଙ୍କ ଉପରେ ବହୁତ ବିଶ୍ୱାସ । ଚେନ୍ନିଗରାୟକୁ ତ ପୂଜାପାଠ ମଧ୍ୟ କିଛି ଜଣାଥିଲା ।

Digitized by srujanika@gmail.com

ନନ୍ଦିକା ଶାଶୁଘରକୁ ଆସିଲାବେଳେ ଅଳ୍ପକିଛି ଅଳଙ୍କାର ଆଣିଥିଲା । ସେସବୁ ଘରର ବଡ ସିନ୍ଧୁକ ଭିତରେ ସର୍ବରାକାରୀ କାଗଜ ପତ୍ର ତଳେ ଲୁଚାଇ ରଖିଥିଲା । ସେ ଚାହୁଁଥିଲା ଯେ,ତା'ର ସେ ସବୁ ଅଳଙ୍କାର ପତ୍ର ତାକୁ ମିଳିବା କଥା । ସ୍ୱାମୀଙ୍କୁ କହିଲାରୁ ସେ ଯାଉସାଉ କଣ ଗୁଡେ କହିଲା । ପୁଣିଥରେ ପଚାରିବାରୁ କହିଲା –" ତୋ ବାପ ଦେଇଥିଲା ବୋଲି କଣ ସେ ସବୁ ତାଙ୍କର କି ? ସବୁ ଖର୍ଚ୍ଚ ହୋଇଯାଇଛି ।"

"ଖର୍ଚ୍ଚ କିପରି ହୋଇଗଲା ?"

"ମକଦ୍ଦମାରେ ଖର୍ଚ୍ଚ ହୋଇଗଲା । "

"କଣ ହେଲା ?"

"କାଶୀବଦ୍ରୀର ସାହୁକାର ପାଖରେ ପଚାଶଟଙ୍କାକୁ ବନ୍ଧକ ରଖା ହୋଇଛି, ଯଦି ଦରକାର ଟଙ୍କା ଦେଇ ନେଇଆସ ।"

"କେତେଦିନ ହେଲା ବନ୍ଧା ଦେଲଣି ?"

"ଗତ ଦୀପାବଳୀ ଅମାବାସ୍ୟା ଠାରୁ ।"

"ତାମାନେ ସାତମାସ ହୋଇଗଲାଣି । ସୁଧ ମଧ୍ୟ ପଚାଶଟଙ୍କାରୁ ଅଧିକ ହୋଇଗଲାଣି । ଏବେ ଶହେଟଙ୍କା କେଉଁଠୁ ଆସିବ ଯେ ଅଳଙ୍କାର ତକ ମୁକୁଳାଇ ଆଣିବ ?" ନନ୍ଦିକା ପଚାରିଲା – "ମୋ ବାପ ଘର ଜିନିଷ ମତେ ନପଚାରି କିପରି ବନ୍ଧା ରଖିଦେଲ ।"

"ମା କହିଲାରୁ ମୁଁ ଦେଇଦେଛି ।"

ନନ୍ଦିକାର ଧୈର୍ଯ୍ୟ ରଖିବାର ସୀମାକୁ ରହିପାରିଲା ନାହିଁ । ଘରର ବାସନକୁସନରୁ ତ ଖଣ୍ଡିଏ ଶାଶୁ ଦେଲେ ନାହିଁ । ସେ ବାପଘରୁ ଆଣିଥିବା ବାସନ ମଧ୍ୟ ମାଗିଲାରୁ ଶାଶୁ ସଫା ମନାକରିଦେଲେ । ଅତିକମରେ ସୁନାଟକ ଘରେଥିଲେ ଏ ଅଦିନରେ ତ କିଛି ସାହାଯ୍ୟ ହୋଇଥାନ୍ତା । ଏବେ କଣ ନେଇ ଅଲଗା ଘର କରିବ । ଘରେ ପିଲାଙ୍କ ପାଇଁ ମୁଠେ ମାଣ୍ଡିଆ ଚୁନା ମଧ୍ୟ ନାହିଁ । ତା ଉପରେ ପୁଣି ତାର ଗର୍ଭ ସମସ୍ୟା । ପିଲାଙ୍କନ୍ନ ପାଇଁ ବାପଘରକୁ ଯିବାକଥା ମନରୁ ଛାଡିଦେଇଥିଲା । ଭାଇର ସ୍ତ୍ରୀ କଥା ତା'ର ସବୁବେଳେ ମନେପଡେ ।

ବର୍ତ୍ତମାନ ରାଗରେ ତମ୍‌ତମ୍ ହୋଇ ସ୍ୱାମୀଙ୍କୁ ଶୁଣାଇଲା – "ମରଦ ପୁଅର କାମ ହେଉଛି ରୋଜଗାର କରି ସ୍ତ୍ରୀ ପାଇଁ ଗହଣାଗାଣ୍ଠି ତିଆରି କରିଦେବା । ସେକଥା କୁଆଡେ ଗଲା, ମୋ ବାପଘରୁ ଆଣିଥିବା ଅଳଙ୍କାର ତକ ତୁମେ ମା ପୁଅ ଦୁହେଁ ମିଶି ଉଡାଇ ଦେଲ । ଲାଜ ଲାଗୁନାହିଁ ତୁମକୁ ?

Digitized by srujanika@gmail.com

ଏବେ ପିଲାଙ୍କୁ ଖାଇବାକୁ ଦେବି ? ଶୁଆ ଭଳିଆ ଘୋଷେଇ ଘୋଷେଇ ଯେତେ କହିଲେ ମଧ୍ୟ କଚେରୀକୁ ଯାଇ ସବୁ ଜମିବାଡି ହାତରୁ ଗଲା ।''

ସ୍ତ୍ରୀର କଥାରେ କୌଣସି ଉତ୍ତର ନ ପଇଟିବାରୁ ଚେନ୍ନିଗା ରାଗିଗଲା । ଗାଳିଦେବାକୁ ଇଚ୍ଛା ହେଲା, କିନ୍ତୁ ନୂଆ ପ୍ରକାର ଗାଳି ମନେ ନପଡିବାରୁ ''ଅଲକ୍ଷଣୀ ଅଲକ୍ଷଣୀ'' ତିନିଥର ସାଦା ରୀତିରେ ଏବଂ ଆଉ ଦୁଇଥର ବିଶେଷ ରୀତିରେ ପ୍ରୟୋଗ କରି ସେଠାରୁ ଚାଲିଗଲା । ନଞ୍ଜମ୍ମା ରାଗରେ ଫୁଲି ଫୁଲି ଦଶ ମିନିଟ ଖଣ୍ଡେ କାନ୍ଦିଲାରୁ ତାର କ୍ରୋଧ ଶାନ୍ତ ହେଲା ।

ସେଦିନ ମହାଦେବୟା ଠାରୁ ପାଞ୍ଚ ଟଙ୍କା ଉଧାର ଆଣିଲା । ନଞ୍ଜମ୍ମା ତାପରଦିନ ସକାଳୁ ପିଲା ଦୁଇଟାଙ୍କୁ ସ୍ୱାମୀ ପାଖରେ ଛାଡି, ନଜର ରଖି ଥିବାକୁ କହିଲା ଏବଂ ତନ୍ତ୍ରୀ ସାହିର ପୁଟ୍‌ଟବ୍ବା ସାଥିରେ ସ୍ୱର୍ଣ୍ଣହଲ୍ଲୀ ଗଲା । ତିନି ମାଇଲ ଦୂର ଏ ଗାଁଟିରେ କେବଳ କୁମ୍ଭାରମାନେ ରହନ୍ତି । ସେଠାରୁ ଘରଚଳା ପାଇଁ ହାଣ୍ଡି, ଆଟିକା, ମାଠିଆ, ଏବଂ ପଲମ ଆଦି କିଣିଲା । ପୁଟ୍‌ଟବ୍ବା ଦର ଛିଣ୍ଡେଇ ସବୁଜିନଷ ବାରଅଣାରେ କିଣେଇ ଦେଲା । ତାପରେ ତିନିଭାଗ ଜିନିଷ ପୁଟ୍‌ଟବ୍ବା ଧରିଲା ଏବଂ ବାକିତକ ନଞ୍ଜମ୍ମା ଧରି ଗାଁରେ ପହଞ୍ଚିଲା ବେଳକୁ ଦି'ପହର ଗଡି ଗଲାଣି । ଜିନିଷ ଗୁଣ୍ଡଗୌଡଙ୍କ ଘରେ ରଖି ତାଲା ପକେଇ ଦେଲା । ତାପରେ କୁଡିଆକୁ ଗଲା । ସେତେବେଳକୁ ଶାଶୁ ଓ ଦିଅର ଜିନିଷ ତଳ ହନୁମାନ ମନ୍ଦିରକୁ ନେଇସାରିଥିଲେ । କୁଡିଆ ସାମନାରେ ରାମନ୍ନା ଗଡି କାନ୍ଦୁଥିଲା । ପାର୍ବତୀର ଦେଖା ନାହିଁ । ପୁଅକୁ ଉଠେଇ ପୋଖରୀରେ ହାତ ମୁହଁ ଧୁଆଇଲା । ଭାଗ୍ୟଭଲ ଯେ ପିଲାଟି ପୋଖରୀ କୂଳକୁ ଆସିନି । ଏକଥା ମନେ ପଡିବାରୁ ନଞ୍ଜମ୍ମା ପାର୍ବତୀ କଥା ଭାବିଲା – ଝିଅଟା ଗଲା କୁଆଡେ ? ସମସ୍ତେ କୁଡିଆମାନ ଛାଡି ଗାଁ ଘରକୁ ଜିନିଷ ପତ୍ର ବୋହୁଥିଲେ । ଏ ପିଲାଟା ଗଲା କୁଆଡେ ? ଜନ୍ମକଲା ବାପ ତ ପିଲାର ଭଲ ମନ୍ଦ ବିଚାର କଲାନାହିଁ । ପୁଅକୁ ଧରି ଗାଁ ଭିତରକୁ ଆସିଲା । ମହାଦେବୟା ଗାଁଭିତରକୁ ଜିନିଷ ନେଉଥିଲେ । ଚେନ୍ନିଗରାୟ ମନ୍ଦିର ପାଖ ପାହାଚରେ ଗୁଡାଖୁ ଘଷୁ ଥିଲା । ନଞ୍ଜମ୍ମା ପାଖକୁ ଆସି ପଚାରିଲା – ''ପାର୍ବତୀ କୁଆଡେ ଗଲା ?''

''ମୁଁ କେମିତି ଜାଣିବି ? ତୁ ଯାଇ ଦେଖ ।''

''ଦେଖନ୍ତୁ, ପିଲାଙ୍କୁ ଯାଙ୍କ ପାଖରେ ଛାଡିଦେଇ ମୁଁ କୁମ୍ଭାରଗାଁ ଗଲି ଯେ ଆସିଲାବେଳକୁ ଝିଅଟା ନାହିଁ, ପଚାରିବାରୁ କହୁଛନ୍ତି କ'ଣ ନା ମୁଁ କେମିତି ଜାଣିବି ?'' ମହାଦେବୟା ପଚାରିଲେ - ''କିଓ ପିଲାଟା ଗଲା କୁଆଡେ ?''

''କୁଆଡେ ସେ ପୋଡାମୁହିଁ ଗଲା କେଜାଣି । ଗୋଟେ ଜାଗାରେ ଧୀରସ୍ଥିର ହୋଇ ବସିଲେ ସିନା ହୁଅନ୍ତା ।''

ଗାଁର ଗୋଟେ ପଟେ ନଞ୍ଜମ୍ମା ଖୋଜିବାକୁ ଗଲା ଏବଂ ଅନ୍ୟପଟେ ମହାଦେବୟା । କିଏ

Digitized by srujanika@gmail.com

ଜଣେ କହିଲା ଯେ,"ଝିଅଟି ତେଲି ସାହିରେ ବୁଲୁଥିଲା ।"ନକ୍ଷତ୍ରା ସେଠି ପହଞ୍ଚି ଦେଖିଲା ଯେ ଝିଅଟା ଗୋଟେ କୁଡିଆର ବାରଣ୍ଡାରେ ବସି ପାଦ୍ଧା ଧରି କାନ୍ଦୁଛି । ସମସ୍ତେ ନିଜ ନିଜ ଜିନିଷ ପତ୍ର ବୁଝାବୁଝି କରିବାରେ ବ୍ୟସ୍ତ । ତେଣୁ ଇଏ କାହାଝିଅ, କାହିଁକି କାନ୍ଦୁଛି, କେହି ଧ୍ୟାନ ଦେଉନଥିଲେ ।

ଝିଅର ହାତଧରି ନକ୍ଷତ୍ରା ଘରକୁ ଆସିଲା । ଘର ବିଷୟରେ ପରିଚିତ ଥିବାରୁ ମହାଦେବୟା ଦି'ସେର ଖଣ୍ଡେ ମାଣ୍ଡିଆ ଚୂନା, କିଛି ବିରି ଡାଲି, ଲୁଣ, ଲଙ୍କା ମରିଚ, ତେନ୍ତୁଳି ଓ ଶୁଖିଲା ନଡିଆ କେତଟା ନକ୍ଷତ୍ରାକୁ ଦେଲେ । ଭୋକରେ ଦୁଇଟା ଯାକ ପିଲା ଆଉଟୁ ପାଉଟୁ ହେଉଥିଲେ । ତାକୁ ମଧ୍ୟ ଭାରି ଭୋକ ଲାଗୁଥିଲା । ଖରାରେ ଚାରିମାଇଲ ବାଟ ଚାଲି ସେ ଥକି ଯାଇଥିଲା । ତା ଛଡା ଗର୍ଭ ସମୟ ।

ହାଲିଆ ହେଲେ ମଧ୍ୟ ବସିପଡିବାକୁ ତର ନାହିଁ । ନୂଆ ମାଠିଆଟାରେ କୂଅରୁ ପାଣି ଆଣିଲା । ଘର ଭିତର ଚୁଲିକୁ ଲିପା ପୋଛା କଲା । ମହାଦେବୟା ଶୁଖିଲା ନଡିଆ ବାହୁଙ୍ଗା କେତେଖଣ୍ଡେ ଗୋଟେଇ ଆଣି ଦେଲେ । ନୂଆ ହାଣ୍ଡିଟାକୁ ଧୋଇ ସେଥିରୁ ଗୋଟାକରେ ଡାଲି ଏବଂ ଆଉ ଗୋଟାକରେ ମାଣ୍ଡିଆ ଜାଉ ବସାଇଲା । ଦିନ ଚାରିଟା ବେଳକୁ ଯାଇ ଖାଇବାକୁ ସବୁ ତିଆରି ହେଲା । ବିଚାରି ପାର୍ବତୀ ଅସହ୍ୟ ଭୋକରେ ଛଟପଟ ହେଉଥିଲା ତେଣୁ ଆଖିବୁଜି ମାଣ୍ଡିଆ ଜାଉ ଓ ଡାଲି ଗିଳିଦେଇ ଗଲା । ରାମନ୍ନାକୁ ଏସବୁ ଜିନିଷ ରୁଚିଲା ନାହିଁ । ଦି'ବର୍ଷର ପିଲାଟା ମାଣ୍ଡିଆ ଚୂନାର ଜାଉ ଖାଇପାରୁନଥାଏ । ମାଣ୍ଡିଆ ଚୂନା ଗୋଳେଇ ପିଠା ଭଳିଆ ଗୋଟେ ସେକି ଦେଲା । ସେଥିରୁ ଖଣ୍ଡେ ଡାଲି ସାଙ୍ଗରେ ଖାଇବା ପରେ ଯାଇ ସେ ଚୁପ ରହିଲା । ପିଠାରୁ ଆଉ ଖଣ୍ଡେ ବଳିଥାଏ ।

ଏତିକି ବେଳକୁ ସ୍ୱାମୀ ଘରକୁ ଆସିଲେ । ରୋଷେଇଘର କବାଟ ପାଖରେ ଚାହିଁ ଦେଇ ଚାଲିଗଲେ ଏବଂ କିଛି ସମୟପରେ କା' ବାଡ଼ିରୁ କଦଳୀ ପତ୍ର ଖଣ୍ଡେ ତୋଳି ଚୁଲି ପାଖରେ ଆସି ଚକା ପକାଇ ବସିଗଲେ । ରାନ୍ଧିଲା ବେଳେ ନକ୍ଷତ୍ରା ସ୍ୱାମୀଙ୍କ ଖାଇବା ବିଷୟ ଭାବି ନ ଥିଲା । ଭୋକିଲା ପିଲାଟିକୁ ଦେଖି ସେ ସବୁ ଭୁଲିଯାଇଥିଲା । ବର୍ତ୍ତମାନ ସ୍ୱାମୀ ବସିବାର ଦେଖି ଭାବିଲା - ଇଏ କାହିଁକି ଏଠାକୁ ଆସିଛନ୍ତି । ମା' ସାଙ୍ଗରେ ପରା ରହୁଥିଲେ । କାହିଁକି ମା' ଘରେ ଚୁଲି ଲାଗି ନାହିଁ କି ? ନା ମା' କହିଛି ଯେ ଯା ସ୍ତ୍ରୀ ହାତରୁ ଖାଇବୁ । ଆଉ କଣ ନିଜେ ନିଜେ ଏଠାକୁ ଆସିଯାଇଛନ୍ତି ? କିନ୍ତୁ ସକାଳୁ ଆସି ଟିକିଏ ପଚାରିପାରିଲେ ନାହିଁ । ବଞ୍ଚିଛି ନା ମରିଛି । ପିଲାଙ୍କ କଥା ବୁଝିବା ତ ଦୂରେ ଥାଉ । ମହାଦେବୟା ମାଣ୍ଡିଆ ଜାଉ ଦେଇଥିଲେ ବୋଲି ପିଲେ ଖାଇଲେ । କୂଅରୁ ପାଣି ମାଠିଆଟେ କାଢ଼ିଦେବା ପାଇଁ ମଧ୍ୟ ଇଏ ଆସିନଥିଲେ । ବର୍ତ୍ତମାନ କେବଳ ନିଜପାଇଁ ପତ୍ର ଖଣ୍ଡେ ଧରି ଆସି ବସିଯାଇଛନ୍ତି ଖାଇବା ପାଇଁ । କିନ୍ତୁ ନକ୍ଷତ୍ରା କିଛି ଠିକ୍ କରିପାରିଲା ନାହିଁ । ସ୍ୱାମୀଙ୍କୁ ଖାଇବାକୁ ଦେବ ନା ନାହିଁ । ପିଲା ଦି'ଟାକୁ ଧରି ଚୁଲିମୁଣ୍ଡରୁ ଉଠି ଚାଲିଆସିଲା ।

ପେଟ ପୂରିଯାଇଥିବାରୁ ପିଲାଦି'ଟାକୁ ନିଦ ଲାଗିଆସୁଥିଲା । ତାଙ୍କୁ ଶୁଆଇବା ପାଇଁ ମଧ୍ୟ ଘରେ

Digitized by srujanika@gmail.com

ପଟିଖଣ୍ଡିଏ ନଥିଲା । ନିଜର ପୁରୁଣା ଶାଢ଼ୀ ଖଣ୍ଡେ ତଳେ ପକାଇ ପିଲାଙ୍କୁ ଶୁଆଇଦେଲା ଓ ତାଙ୍କରି ପାଖରେ ନିଜେ ମଧ୍ୟ ଗଡ଼ି ପଡ଼ିଲା । ଭାବିଲା ସ୍ୱାମୀ ଯଦି ଡାକିବେ ତାହାହେଲେ ଯାଇ ଖାଇବାକୁ ଦେବ । ସକାଳୁ ହାଲିଆ ହୋଇ ଯାଇଥିବାରୁ ଏବଂ ଭୋକିଲା ପେଟ ଯୋଗୁଁ ଖୁବ୍ ଶୀଘ୍ର ତାକୁ ମଧ୍ୟ ନିଦ ଲାଗିଗଲା ।

ଘଣ୍ଟାଏ ପରେ ନିଦ ଭାଙ୍ଗିବାରୁ ସ୍ୱାମୀ କଥା ମନେପଡ଼ି ଉଠିପଡ଼ିଲା । ରୋଷେଇଘରକୁ ଯାଇ ଦେଖେତ ହାଣ୍ଡିଗୁଡ଼ିକ ପ୍ରାୟ ଖାଲି । ତାଙ୍କ ଖାଇବା ପତ୍ରଟା ପଡ଼ିଥାଏ । ମାଣ୍ଡିଆ ଜାଉରୁ ଅଧ ଉପରେ ଖାଇ ଦେଇଥିଲା । ଡାଲି ହାଣ୍ଡି ତଳିରେ ଟିକିଏ ବଳିଥିଲା । ନକ୍ଷତ୍ରା ଭାବିଲା - ମୋପାଇଁ ଏତକ ଛାଡ଼ିଦେଲେ ନା ପେଟରେ ଯାଗା ହେଲାନି । ତା ପେଟ ମଧ୍ୟ ଭୋକରେ ଜଳୁଥିଲା । ବାକି ବଳିଥିବା ଖାଦ୍ୟତକ ଖାଇବା ପାଇଁ ହାତ ନେଲା ବେଳକୁ, ରାତିରେ ପିଲା କଣ ଖାଇବେ ଏଇ ଚିନ୍ତା ମୁଣ୍ଡରେ ପଶିଲା । ଏବେ ମଧ୍ୟ କିଛି ମାଣ୍ଡିଆ ଚୁନା ବଳିଥିଲା । ଯେଉଁଥିରେ ରୁଟି ତିଆରି କରାଯାଇ ପାରନ୍ତା । କିନ୍ତୁ କିଏସେ ପାରୁଛି । ବାରଣ୍ଡାକୁ ଆସି କାନ୍ଥକୁ ଆଉଜି ବସିଗଲା ।

ସନ୍ଧ୍ୟା ସମୟ ଆସି ହେଲାଣି । ଶୋଇବା ଠିକ ନୁହେଁ ବୋଲି ପିଲାଙ୍କୁ ଉଠାଇ ଦେଲା । ତାର ମନେ ପଡ଼ିଲା ଯେ ଆଜି କେହି ସକାଳେ ଗାଧୋଇ ନାହାନ୍ତି । କୁମ୍ଭାର ଗାଁରୁ ଆସି ତାକୁ ମୁହଁ ଧୋଇ ସିନ୍ଦୁର ଟିକିଏ ଲଗାଇବାକୁ ତର ନଥିଲା । ସିନ୍ଦୁର ଫରୁଆଟା ମଧ୍ୟ ଶାଶୁ ଦେଲେ ନାହିଁ । ରାତିରେ ଜଳାଇବା ପାଇଁ ଡିବିରିଟିଏ ମଧ୍ୟ ନଥିଲା । ହାତରେ ଚାରିଟଙ୍କା ଚାରିଅଣା ବଳିଥାଏ । ଦୁଆରେ ତାଲା ପକାଇ ପିଲାଙ୍କୁ ଧରି ଦୋକାନ ଘର ପାଖରେ ପହଞ୍ଚିଲା । ଦୁଇଟା ମାଟିର ଡିବିରି, ବୋତଲେ କିରାସିନି ଏବଂ ଗୋଟିଏ ଦିଆସିଲି ପେଡ଼ିଧରି ଘରକୁ ଫେରିଲା । ସବୁ ମିଶି ସାଢ଼େ ତିନିଅଣା ଖର୍ଚ୍ଚ ହେଲା । ପିଲାଙ୍କ ହାତରେ ଗୁଡ଼ ଖଜା ଖଣ୍ଡିଏ ଲେଖାଏଁ ଧରାଇ ଦେଲା । ଘରକୁ ଆସି ଶାଢ଼ୀ କଣରୁ ଖଣ୍ଡେ ଚିରି ସେଥିରେ ଡିବିରି ପାଇଁ ବତୀ ବଳିଲା । ଦୁଇଟି ଯାକ ଡିବିରିରେ ତେଲ ପକାଇ ବତୀ ପକାଇଲା । ଏବଂ ଗୋଟିଏ ଡିବିରି ଜଳାଇଲା । ତାକୁ କିଛି ବୁଦ୍ଧି ଦିଶୁ ନଥିଲା ଯେ ଏବେ କଣ କରିବ ? ଖମ୍ବକୁ ଆଉଜି ବସିଥିଲା । ପିଲା ଦୁଇଟି ଜଙ୍ଘ ଉପରେ ମୁଣ୍ଡ ରଖି ଶୋଇ ପଡ଼ିଲେ । ନୂଆ ଘର ହୋଇଥିବାରୁ ତାକୁ ମଧ୍ୟ ଟିକିଏ ସଙ୍କୋଚ ଲାଗୁଥାଏ ।

କିଛି ସମୟପରେ ପିଲାଙ୍କୁ ଧରି ଘର ଭିତରକୁ ନେଇଗଲା । ବଳିଥିବା ମାଣ୍ଡିଆ ଚକୁଳିରୁ ଖଣ୍ଡେ ପୁଅ ରାମନାଥକୁ ଏବଂ ବଳିଥିବା ଜାଉ ଝିଅକୁ ଦେଲା । ପୁଅ ଚକୁଳିରୁ ଖଣ୍ଡେ ଖାଇଲା ଏବଂ ଝିଅ ମଧ୍ୟ ଅଳ୍ପ ଟିକିଏ ଖାଇଲା । ନକ୍ଷତ୍ରାର ପେଟ ଭୋକରେ ଆଉଟି ହେଉଥାଏ । ବାକି ଯାହା ବଳିଲା ସେ ତାକୁ ଉଦରଗ୍ରସ୍ତ କଲା । ବାକି ଯାହା ମାଣ୍ଡିଆ ଚୁନା ଥିଲା ସେଥିରେ ରୁଟି ତିଆରି କରି ଖାଇବାକୁ ଭାବିଲା । କିନ୍ତୁ କିପରି ଏକ ଘୃଣା ଭାବରେ ଉଠି, ଡିବିରି ଧରି ପିଲାଙ୍କୁ ଧରି ମଝିଘରକୁ ଆସିଲା । ସେ ଭାବୁଥିଲା ଯେ ପିଲାଙ୍କୁ କେଉଁଥିରେ ଶୁଆଇବ । ଏତିକିବେଳେ ସ୍ୱାମୀ ଶେଯପତ୍ର ମୁଣ୍ଡାଇ ଆସି ପହଞ୍ଚିଗଲା । ଏ ଚିନ୍ତାରୁ ମୁକ୍ତି ମିଳିବାରୁ ନକ୍ଷତ୍ରା ସନ୍ତୋଷ ହେଲା । ଶେଯ ଫିଟାଇ ଦେଖିଲା ଯେ ତା ଭିତରେ ସେ

Digitized by srujanika@gmail.com

ବାପଘରୁ ଆଣିଥିବା ଦୁଇଟା କମ୍ବଳ, ତକିଆ, ଦୁଇଟା ଦରୀ ଏବଂ କଳାଶାଲ ଖଣ୍ଡିଏ ଥିଲା । ଗୋଟିଏ କମ୍ବଳ ପିଲାଦୁଇଟାଙ୍କ ମୂତରେ ସଢ଼ି ପତଳା ହୋଇ ଯାଇଥିଲା । ଆଉ କମ୍ବଳଟା ମଧ୍ୟ ଛିଣ୍ଡି ଆସୁଥିଲା । ପିଲାଙ୍କୁ ଗୋଟିଏ କମ୍ବଳରେ ଶୁଆଇ ତାଙ୍କ ପାଖରେ ନିଜପାଇଁ ଦରୀଟିଏ ବିଛାଇ ତକିଆଟିଏ ପକାଇଲା । ସ୍ୱାମୀଙ୍କ ପାଇଁ ପାଖଘରେ ଶେଯ ପକାଇଲା ।

ସ୍ୱାମୀ ଠିଆହୋଇ ଦେଖୁଥିଲା । କହିଲା - "ମୋ ଶେଯ କାହିଁକି ତୋ'ରପାଖରେ ପକାଇଲୁ ନାହିଁ !" ସେ କିଛି ଉତ୍ତର ଦେଲା ନାହିଁ । ରାମନ୍ନା ପିଠିରେ ଥାପୁଡ଼ାଇ ଶୁଆଇ ଦେଲା ।

"ମୁଁ କଣ ଏତେ କଷ୍ଟରେ ଶେଯ ମୁଣ୍ଡାଇ ଆସିଛି ଅଲଗା ଶୋଇବା ପାଇଁ ?" ନଞ୍ଜମ୍ମା ସେମିତି ଚୁପ ରହିଥାଏ । "ଆଲୋ ଅଲକ୍ଷଣୀ ମୁହଁରୁ କଣ କଥା ବାହାରୁନି କି ?" ଧୈର୍ଯ୍ୟ ଧରି ନଞ୍ଜମ୍ମା କହିଲା, - " ମୋର ଛଅମାସ ଗର୍ଭ ।"

"ସେଥୁ କଣ ହେଲା ?" କହି ଚେନ୍ନିଗା ନିଜର ଶେଯ ପତ୍ନୀର ଶେଯ ପାଖରେ ଆଣି ପକାଇଲା । ଡିବିରି ଧରି ରୋଷେଇଘରେ ଯାଇ ଦେଖିଲା ଏବଂ ସେଇଠୁ ପାଟିକରି କହିଲା "ମୋ ପାଇଁ କିଛି ଖାଇବାକୁ ରଖିନୁ କାହିଁକି ?" "ଦିପହରରେ ଖାଇଲାବେଳକୁ ମୋ ପାଇଁ ଖାଇବାକୁ କେତେ ଛାଡ଼ି ଯାଇଥିଲ ?"

ଚେନ୍ନିଗା ଏହାର ଉତ୍ତର ବା କଣ ଦେବ ? ମାଣ୍ଡିଆ ଚୂନା ଟକ ଆଣି ଲୁଣ ଟିକିଏ ପକାଇ ପାଣିରେ ଗୋଳାଇଲା । ଚୁଲି ଜଳାଇ ତାୱା ବସାଇ ଦିଟା ମୋଟା ମୋଟା ଚକୁଳି ସେକିଲା । ଗରମ ଗରମ ଚକୁଳି ଖାଇ ମାଠିଆରୁ ପାଣି ପିଇଲା । ସ୍ତ୍ରୀ ମଧ୍ୟ ଆଖିବୁଜି ପଡ଼ିଥାଏ । ଚେନ୍ନିଗା ନିଜର କମ୍ବଳ ଶେଯରେ ଗଡ଼ିପଡ଼ିଲା । ନଞ୍ଜମ୍ମାକୁ ନିଦ ଆସୁନଥାଏ । ଆସିବ ବା କିପରି ? ସକାଳୁ ପେଟରେ କିଛି ପଡ଼ିନଥିବାରୁ ପେଟ ଜଳୁଥିଲା । ଦ୍ୱନ୍ଦ ଏବଂ ଆତୁରତା ମଧ୍ୟରେ ସେ ଛଟପଟ ହେଉଥିଲା । ପାପୀ ପେଟରେ ଯେ କେତେ କଟାଳ, ସେ ଭାବୁଥିଲା । ଏତେ ଭୋକରେ ମଧ୍ୟ ପେଟଟା ଭାରୀ ଲାଗୁଥାଏ । "ଗର୍ଭବତୀକୁ ଭୋକରେ ରହିବା କଥା ନୁହେଁ । ଆମେ ସିନା ରହିଯିବା, ହେଲେ ଗର୍ଭରେ ପିଲାଟାକୁ ଖାଦ୍ୟ କେଉଁଠୁ ମିଳିବ ? ମୁଁ ହେଲେ ମାଣ୍ଡିଆ ଚୂନାଟକ ଚକୁଳି କରି ଖାଇଦେଇଥାନ୍ତି ।" ପରେ ଭାବିଲା ଯେ, "ମୁଁ ଯଦି ଖାଇପାରିଥାନ୍ତି ତେବେ ପିଲାମାନେ ଭୋକରେ ରହିଥାନ୍ତେ । ବଳିଥିବା ମାଣ୍ଡିଆ ଚୂନାକୁ ଚକୁଳି କରି ଖାଇଦେବି ତ କାଲି ସକାଳେ ପିଲେ ମାଗିଲେ କ'ଣ ଖାଇବାକୁ ଦେବି ? ଏବେ ସେଇ ଅଟାଟକ ତାଙ୍କରି ଜନ୍ମକଲା ବାପ ନିଜେ ଖାଇଦେଲା । ଓପରଓଳି ସେତକ ଖାଇଯାଇଥିଲେ, ଏତେବେଳକୁ ଏତେ ଭୋକ ହେଲା କିପରି ? ଲୋକଙ୍କର କିପରି ଏତେ ଜଲଦି ହଜମ ହୁଏ କେଜାଣି ? ଦିପହରରେ ଚକା ପକାଇ ଖାଇଲାବେଳେ ମୋକଥା ଟିକିଏ ଭାବିଲେ ନାହିଁ । ଏବେ ମଧ୍ୟ ପଚାରିଲେ ନାହିଁ । ଖାଇସାରି ପାଖରେ ଆସି ଶୋଇଗଲେଣି । ଦେହ କିପରି ଅଛି ! କଣ ଖାଇଲ କି ନାହିଁ ? ଦୁର୍ବଳ ଲାଗୁଛି କି ? କିଛି ପଚାରିଲେ ନାହିଁ ମଧ୍ୟ ।" ମନରେ ଭାବିଲା କହିଦେବ ଯେ, "ଆମ ପାଖକୁ ଆସିବା ଦରକାର ନାହିଁ ।"

Digitized by srujanika@gmail.com

ଏଇ ସ୍ୱାମୀ ତ ମା ପାଖରେ ରହିବ ବୋଲି କହିଥିଲା । କିନ୍ତୁ ଦିପହରରେ ଏଠି ଭୋଜନ କରି ରାତିରେ ଚକୁଳି ଖାଇ ମୋ ପାଖରେ ଶୋଇବାକୁ ଶେଯ ଧରି ଆସିଛି । ଯାଙ୍କୁ ପାଖରେ ନରଖିଲେ ପୁଣି ଆମକୁ ଛାଡ଼ି ମା ପାଖକୁ ପଳାଇବ । ମା' ପାଖରେ କଣ ଏ ରହିପାରିବେ । ନଳିନୀ ଚୁପ ରହିଲା ଯେ ପରିବାରର ରକ୍ଷାପାଇଁ ତାକୁ ଏହା ମଧ୍ୟ ସହିବାକୁ ପଡ଼ିବ । ଅବଶ୍ୟ ହୋଇ ଶେଯରେ ପଡ଼ିରହିଲା । ଚେନ୍ନିଗରାସ୍ତୁକୁ ହାଲିଆ କାହିଁକି ବା ଲାଗିବ ?

ନଳିନୀ ନିଜର ବାପକଥା ମନେ ପକାଇଲା । ବାପ ରାକ୍ଷସ ପ୍ରକୃତିର । କାହାପାଇଁ ଚିନ୍ତା ନାହିଁ । ରାଗିଲେ ମା, ସ୍ତ୍ରୀ ପୁଅ କେହି ତାଙ୍କ କବଳରୁ ରକ୍ଷା ପାଆନ୍ତି ନାହିଁ । କିନ୍ତୁ ପରେ ରାଗ ଥଣ୍ଡା ହେଲେ ସେତିକି ଦୁଃଖ ମଧ୍ୟ ପ୍ରକାଶ କରନ୍ତି । ଶୁଣାଯାଏ କଲେରା ବେମାର ପଡ଼ିଥିଲା ବେଳେ ରାତିସାରା ତା ମୁଣ୍ଡ କୋଳରେ ରଖି ବସି ରହନ୍ତି । ହେ ଭଗବାନ୍, ସ୍ତ୍ରୀକୁ ସ୍ୱାମୀ ମାରିଲେ ମଧ୍ୟ ଏତେ କଷ୍ଟ ହେବନି - ସେ ଖାଉଛି କି ନଖାଉଛି, ପିଲାଙ୍କ ଖାଇବା ନଖାଇବା କଥା, ଏହା ଯଦି ସ୍ୱାମୀ ନ ପଚାରେ, ତା' ସାଙ୍ଗରେ କିପରି ଦିନ କଟାଇବ ? ଏଭଳି ପରିବାରରେ ବଞ୍ଚି କି ଲାଭ ? ଏଭଳି କେତେ ପ୍ରଶ୍ନ ତା ମନରେ ଉଠୁଥିଲା । ବୁଢ଼ୀ ମା କଥା ମନେ ପଡ଼ିଲା । ମା' ମରି ଯାଇଥିଲା । ବୁଢ଼ୀ ସବୁ କଷ୍ଟ ସହି ତାକୁ ପାଳିଥିଲା । "ମୋ ପ୍ରତି ଯଦି କାହାର ସ୍ନେହ ଥାଏ ତ ବୁଢ଼ୀ ମା'ର ।" ତାକୁ ପଞ୍ଚସ୍ତରୀ ବର୍ଷ ହେଲାଣି । ତାକୁ ଡକାଇ ଦେବା ଦରକାର । କିନ୍ତୁ ଆମ ପେଟକୁ ଦାନା ନାହିଁ, ତାକୁ ଡାକିଲେ କ'ଣ ଦେବି ? ସେ ନ ଆସିଲେ ପୋଖତୀ କିଏ କରାଇବ । ମୋର ନାଗଲାପୁର ଯିବାଟା ବନ୍ଦ ହୋଇଗଲା ବୋଲି ଜାଣ । ବୁଢ଼ୀମା ଆସିଲେ ମାସେ ଖଣ୍ଡେ କଅଁଳା ପିଲାକୁ ତେଲ ଘଷାଘଷି କରିଦିଅନ୍ତା । କିନ୍ତୁ କଣ କରିବି ? ଏପରି ଭାବୁଭାବୁ ମନେ ପଡ଼ିଲା ଯେ କାଲି ସକାଳପାଇଁ ମଧ୍ୟ କିଛି ଖାଇବାକୁ ଘରେ ନାହିଁ । ପିଲାଙ୍କୁ କଣ ଦେବି ? ତାକୁ ନିଜକୁ ମଧ୍ୟ ଭୋକ ଲାଗୁଥିଲା । ଗୋଟାଏ କଡ଼ରେ ଅନେକ ସମୟ ପଡ଼ିରହିବାରୁ ଡାହାଣ କଡ଼ଟା କାଟିଲା । ବାଁ ପଟକୁ ବୁଲିଲା ବେଳକୁ ସେପଟେ ସ୍ୱାମୀ ଗୋଡ଼ହାତ ଲମ୍ବାଇ ଘୁଙ୍ଗୁଡ଼ି ମାରୁଥିଲେ । ନଳିନୀକୁ ଏହା ଅସହ୍ୟ ବୋଧ ହେଲା । ସେ ନିଜର ଦରୀ ଓ ତକିଆ ଉଠାଇ ପିଲାଙ୍କ ଆରପଟକୁ ଉଠିଯାଇ ଶୋଇଲା ।

6

ସକାଳୁ ଉଠି ପାଣି ମାଠିଆରେ ଭରିଲା । ପିଲାଙ୍କ ହାତ ମୁହଁ ଧୋଇ ଖାଦ୍ୟରେ ପୋଙ୍ଗା ପୋଛି କଲା । ରୋଷେଇଘରକୁ ଯାଇ ଚୁଲିରୁ ପାଉଁଶ କାଢ଼ିଲା । କାଲିର ବାସୀ ହାଣ୍ଡିସବୁ ସଫାକଲା । ସେପର୍ଯ୍ୟନ୍ତ ସ୍ୱାମୀଙ୍କର ନିଦ ଭାଙ୍ଗିନଥାଏ । ମଝିଘରର କବାଟଟା ଅଧା ଖୋଲି ପାଣି ପକାଇ ଦୁଆର

Digitized by srujanika@gmail.com

ମୁହଁ ପୋଛି ପକାଇଲା । ପଡ଼ୋଶୀ ଘରୁ ମୁରୁକ ଆଣି ଦୁଆର ମୁହଁରେ ଚିତା ଦେଲା । ବର୍ତ୍ତମାନ ସେ ଭାବିପାରୁନଥିଲା ଯେ ଆଜି ପେଟଭୋକ ମାରିବା ପାଇଁ କଣ କରାଯିବ ?

ଦାଣ୍ଡରେ ଗୋଟିଏ ମଇଁଷି ହମ୍ବାଳିବାରୁ ଚେନ୍ନିଗାର ନିଦ ଭାଙ୍ଗିଗଲା । ମନେ ମନେ ମଇଁଷିକୁ ଗାଳିଦେଇ ଉଠିଲା । ଶେଯରେ ବସି ଗୁଣୁଗୁଣୁ ହୋଇ ଶ୍ଳୋକ ବୋଲିଲା - "କୌଶଲ୍ୟା ସୁପ୍ରଜା ରାମ . . . -ପଞ୍ଚକନ୍ୟା ସ୍ମରେ ନିତ୍ୟମ୍ ।" ଶ୍ଳୋକ ବୋଲି ମୁଣ୍ଡିଆ ଚଳଆଡ଼େ ନିତ୍ୟକର୍ମ ସାରିବାକୁ ଗଲା । ନଞ୍ଜକ୍କା ଶେଯ ଗୋଟାଇ ରଖିଲା ବେଳକୁ ମହାଦେବୟ୍ୟା ମୁଣ୍ଡରେ କିଛି ଧରି ଆସିଲେ । ଖମ୍ବପାଖରେ ମୁଣ୍ଡା ରଖି କହିଲେ, "ମୁଁ ଭିକ୍ଷା ପାଇଁ ଦୂର ଗାଁକୁ ଯାଉଛି । ଏଥିରେ କୋଡ଼ିଏ ସେର ମାଣ୍ଡିଆ ଓ ଚାରିସେର ବିରିଡାଲି ଅଛି । ତୁମେ ଏହାକୁ ବ୍ୟବହାର କର ।"

ନଞ୍ଜକ୍କା କହିଲା - "ତୁମେ କାଲି ମଧ୍ୟ ମାଣ୍ଡିଆ ଇତ୍ୟାଦି ଦେଇଥିଲ । ଆଜି ମଧ୍ୟ ଦେଉଛ । ତୁମେ ତ ଗାଁ ଗାଁ ଯାଇ ଭିକ୍ଷା ମାଗି ଆଣୁଛ । କିନ୍ତୁ ମୁଁ କିପରି ଏସବୁ ପରିଶୋଧ କରିବି ?"

"ଭଉଣୀ ତୁମେ ତ ଜାଣିଛ ମୋ ନିଜପାଇଁ କେତେ ଦରକାର । କେତେବେଳେ ସାଧୁସନ୍ଥ ଆସିଲେ ଖାଇବାକୁ ଦିଏ । ତୁମର ଏହା ଆଠଦଶଦିନ ଯିବ । ବର୍ତ୍ତମାନ ଏହାକୁ ଖାଅ । ଆଗକୁ ଭଗବାନ କିଛି ନା କିଛି ରାସ୍ତା ଦେଖାଇବେ ।"

ଏହା କହି ସେ ଚାଲିଗଲେ ।

ସେ ଘରେ ଥିବା ଘୋରଣାରେ ନଞ୍ଜକ୍କା ଦିସେର ମାଣ୍ଡିଆ ବୁରି ବସିଲା । କିନ୍ତୁ ପାଏ ଖଣ୍ଡେ ଚୂନା କରିଛି କି ନାହିଁ ଖୁବ୍ ଥକିଗଲା । କାଲିଠୁ କିଛି ଖାଇନାହିଁ ବୋଲି ମନେ ପଡ଼ିବାରୁ ପାଞ୍ଚମିନିଟ୍ ଆରାମ କରିବାକୁ ବସିଗଲା । ଏତିକିବେଳକୁ ଚେନ୍ନିଗା ଆସିଗଲା ଯେ - "ମାଣ୍ଡିଆ କେଉଁଠୁ ଆଣିଲ ? କି କଣ କରିବ ?" ଟିକିଏ ମଧ୍ୟ ପଚାରିଲା ନାହିଁ । ଚୁପଚାପ୍ କାନ୍ଥକୁ ଆଉଜି ବସି ଅଣ୍ଟାରୁ ଚୂନ, ଧୂଆଁପତ୍ର ବାହାରକରି ହାତରେ ମଳିବାକୁ ଲାଗିଲା ।

"ମତେ ଭାରି ହାଲିଆ ଲାଗୁଛି । ତୁମେ ଟିକିଏ ସାହାଯ୍ୟ କରିବ ?" ନଞ୍ଜକ୍କା ପଚାରିବାରୁ ଚେନ୍ନିଗା କିଛି କହିଲା ନାହିଁ । ପୁଣିଥରେ ପଚାରିବାରୁ ଗର୍ଜିକରି କହିଲା - "ମରଦ ପୁଅ ହୋଇ ଘୋରଣାରେ ଚୂନା କରିବି । ମତେ କଣ ବୋଲି ଭାବୁଛୁ କି ?"

ନଞ୍ଜକ୍କା ନିଜର ପୂର୍ବ ସଙ୍କଳ୍ପ ଅନୁସାରେ ଧୈର୍ଯ୍ୟଧରି ଚୁପ ରହିଲା । ଚନ୍ଦ୍ରୀ ପାଇଁ ଯାଇ ପାଟୁବ୍ବାକୁ ଡାକି ଆଣିଲା । ଦୁଇପଇସାକୁ ସେତକ ମାଣ୍ଡିଆ ଚୂନା କରାଇଲା । ନଞ୍ଜକ୍କା ଚେନ୍ନସେଠୀର ଦୋକାନକୁ ଯାଇ ତେଲ, ଲୁଣ, ମସଲା ଆଦି ନେଇ ଆସିଲା । ଘରକୁ ଆସି ରାନ୍ଧିବାକୁ ଲାଗିଲା । ଦିନ ଏଗାରଟା ବେଳକୁ ମାଣ୍ଡିଆଜାଉ, ବିରିଡାଲି, ଏବଂ ରାମନ୍ନା ପାଇଁ ରୁଟି ତିଆରି ହେଲା । ସେ କାଲି ମଧ୍ୟ

Digitized by srujanika@gmail.com

ଗାଧୋଇ ନଥିଲା । କୁଅରୁ ପାଣି ବାହାର କରି ପିଲାଙ୍କୁ ଗାଧୋଇ ଦେଲା ଓ ସେ ନିଜେ ମଧ୍ୟ ଗାଧୋଇଲା । ଶାଢ଼ୀ ବଦଳାଇବାକୁ ଘରକୁ ଆସିଲା । ଦେଖିଲା ସ୍ୱାମୀ ଚେନ୍ନିଗରାୟ୍ ଗତକାଲି ଭଳି ପତ୍ର ପକାଇ ମାଣ୍ଡିଆଜାଉ ଓ ବିରିଡାଲି ଗିଳିଯାଉଥିଲେ । ଏହାଦେଖି ମଧ୍ୟ ନଞ୍ଜମ୍ମା ପିଲାଙ୍କ ପାଇଁ ଖାଇବାକୁ କିଛି ରଖ ବୋଲି କହିଲା ନାହିଁ । ନିଜ ପେଟ ପୂରିବା ପରେ ଚେନ୍ନିଗା ଉଠିଗଲା । ନଞ୍ଜମ୍ମା ପିଲାଙ୍କୁ ନେଇ ଖାଇ ବସିଲା । ରାମନ୍ନା ମାଣ୍ଡିଆ ରୁଟି ଖାଇଲା ବେଳକୁ ମଝିରେ ମଝିରେ ପାଣି ପିଇ "ଭାତ ଖାଇବି" ବୋଲି କାନ୍ଦୁଥାଏ । ନଞ୍ଜମ୍ମା ଭାବିଲା ଛଅ ପଇସାର ସେରେ ଚାଉଳ ଆଣିଥିଲେ ପିଲାଟା ପାଇଁ ଭାତ ରାନ୍ଧିଥାନ୍ତି । ପେଟରେ ଜାଉ ପଡ଼ିବାରୁ ବାନ୍ତି ବାନ୍ତି ଲାଗୁଥାଏ । ନଞ୍ଜମ୍ମା ବାରଣ୍ଡାରେ ଦରୀ ପକାଇ ଶୋଇଗଲା ।

ରାତିରେ ରାନ୍ଧିବା ପାଇଁ କାଠ ନଥିଲା । କାଲି ମହାଦେବୟ୍ୟା ଯାହା ନଡ଼ିଆ ବାହୁଙ୍ଗା ଆଣି ଦେଇଥିଲେ ସକାଳେ ସରିଗଲା । ସ୍ୱାମୀ ମଧ୍ୟ ବିଶ୍ରାମ କରୁଥିଲେ । ନଞ୍ଜମ୍ମା ତାକୁ କହିଲା, "ବାହାରକୁ ଯାଇ କାଠ ଦି'ଖଣ୍ଡ ଆଣିଲେ ହୁଅନ୍ତା ନାହିଁ ?"

"ମୁଁ ଯିବି କାଠ ଆଣି, ଆଲୋ ଯା, ଯା ।"

"ନ ହେଲେ କିପରି ଚଳିବ । ବାଡ଼ିଆଡ଼କୁ ଯାଇ ଶୁଖିଲା ନଡ଼ିଆ ବାହୁଙ୍ଗା କେତେ ଖଣ୍ଡ ମାଗିଆଣ ।"

"ଯଦି ଦରକାର, ତୁ ନିଜେ ଯା, ମୋ ଦ୍ୱାରା ଏହା ହୋଇପାରିବ ନାହିଁ ।" ଏହା କହି ଶୋଇବାର ଉପକ୍ରମ କଲା ।

ନଞ୍ଜମ୍ମା କାଠମାଗିବାକୁ କାହା ଘରକୁ ଗଲା ନାହିଁ । ପଡ଼ୋଶୀ ଘର ସ୍ତ୍ରୀକୁ କହିବାରୁ ସେ ଗୋଟେ ବଡ଼ ବୋଝରେ ନଡ଼ିଆ କତା ଏବଂ ଶୁଖିଲା ନଡ଼ିଆ ପତ୍ର ଗୋଛାଏ ଓ ଶୁଖିଲା ବାହୁଙ୍ଗା ଆଣିଦେଲା । ତାପରେ ସେଠି ଦୋକାନକୁ ଯାଇ ଚାରିଅଣାକୁ ତିନିସେରେ ମୋଟା ଚାଉଳ ଆଣିଲା । ସେଥିରୁ ଅଧସେରେ ପୁଅପାଇଁ ଭାତ ବସାଇଲା । ପାର୍ବତୀ ଓ ରାମନ୍ନା ବଡ଼ ଖୁସିରେ ସନ୍ଧ୍ୟାବେଳେ ଭାତ ଖାଇଲେ । ପଡ଼ୋଶୀଘର ଅଧ ଆଟିକା ଖଣ୍ଡେ ଜାଉ ଦହି ଦେଇଥିଲେ । ସେଥିରୁ ପିଲାଏ କିଛି କିଛି ପିଇଲେ । ପିଲାଏ ଖାଇ ସାରିବା ପରେ ଚେନ୍ନିଗରାୟ୍ ଖାଇବାକୁ ଆସିଗଲେ । ନହେଲେ ବାପଙ୍କ ଠାରୁ ବଳିଥିଲେ ଯାଇ ପିଲାଙ୍କ ପେଟରେ ପଡ଼ିଥାନ୍ତା ।

ମହାଦେବୟ୍ୟା ଯେତକ ଦେଇଛନ୍ତି, ଆଠଦିନ ଚଳିଯିବ । ତାପରେ କଣ ହେବ ଭାବି ନଞ୍ଜମ୍ମା ମନରେ ବଡ଼ କଷ୍ଟ ହେଲା । କୌଣସି ଉପାୟ ଦେଖାଗଲା ନାହିଁ । ପରେ ଭାବିଲା କାଲି ଗାଁରେ ହାଟ ବସିବ । ଖଣ୍ଡେ ଦି'ଖଣ୍ଡ ବାସନ କିଣି ଆଣିଲେ ଭଲ ହୁଅନ୍ତା । ତାପର ଦିନ ସକାଳେ ଭୋଜନ ସାରି ଦିପହର ବେଳକୁ ପିଲାଙ୍କୁ ଧରି ହାଟପଦା ଆଡ଼େ ବାହାରିଲା । ହାଟପଦା ପ୍ରାୟ କୋଶେ ଦୂର । ସେଠି

Digitized by srujanika@gmail.com

ଟିପଟୁର ମୁସଲମାନମାନେ ଭଲ ଅଲୁମିନିୟମ ବାସନ ବିକି ଆଣନ୍ତି । ଖାଇବା ପାଇଁ ଥାଳି, ପିଇବା ପାଇଁ ଗ୍ଲାସ୍ ଚାରିଟା, ଗୋଟେ କରେଇ ଏବଂ ଗାଧୋଇବାପାଇଁ ଗୋଟେ ଗରା ମଧ୍ୟ କିଣିଲା ! ସବୁ ମିଶି ଟଙ୍କାଏ ଚାରିଅଣା ଖର୍ଚ୍ଚ ହେଲା । ପିଲାଙ୍କୁ ବୁଝାଇବା ପାଇଁ ଅଧ ପାଜୁଲାରେ ଗୁଡ଼ ମିଠେଇ ଏବଂ ଗୋଟାଏ ଲେଖାଏଁ ଝୁମୁକା କିଣାଇ ଦେଲା । ଫେରିଲାବେଳକୁ ରାସ୍ତାରେ ଗୁଣ୍ଡଗୌଡ଼ଙ୍କ ସାଙ୍ଗରେ ଭେଟ ହେଲା । ସେ ଘରର କୁଶଳ ପଚାରିଲେ । "ହଁ ଠିକ୍ ଚାଲିଛି । ଆପଣ ଘରକୁ ଟିକିଏ ଆସନ୍ତୁ ।" ନଞ୍ଜମ୍ମା କହିଲା । ଗୌଡ଼େ ନଞ୍ଜମ୍ମା ହାତରୁ ବାସନ ତକ ଧରି ତା ସାଙ୍ଗରେ ଚାଲିଲେ । ରାମନ୍ନାକୁ କାନ୍ଧରେ ବସାଇ ନଞ୍ଜମ୍ମା ପଛରେ ପଛରେ ଚାଲିଲା । ଘରେ ପହଞ୍ଚି ଗୌଡ଼େ ପଚାରିଲେ - "ପେଟ ପୂଜା ପାଇଁ କଣ ସବୁ ବ୍ୟବସ୍ଥା କରିଛ ।"

"ମୁଁ ଏ ବିଷୟରେ ଆପଣଙ୍କୁ କହିବି ବୋଲି ଭାବିଥିଲି ।"

"ସେଇଦିନ କହିଥିଲେ ତ କୋଡ଼ିଏ ପଚିଶ ସେର ମାଣ୍ଡିଆ ଶଗଡ଼ରେ ଲଦି ଦେଇଥାନ୍ତି ।"

"ସେଥିରେ କେତେଦିନ ବା ଯାଆନ୍ତା । ଆପଣଙ୍କୁ ମୁଁ ଗୋଟିଏ କଥା କହୁଛି ସେଥିରେ ଆପଣଙ୍କୁ ମଧ୍ୟ କଷ୍ଟ ହେବନି ଏବଂ ଆମର ଉପକାର ହୁଅନ୍ତା ।"

"କଣ କହୁନ ?"

"ଆପଣଙ୍କର ମୋଟ ଖଜଣା କେତେ ? ଅଶୀ ଟଙ୍କା ନା ?"

"ହଁ କଣ ହେଲା ?"

"ଗୋଟିଏ କାମ କରନ୍ତୁ । ଏଇ ବର୍ଷର ଖଜଣା ବାବଦକୁ ପଚାଶ ଟଙ୍କାର ରସିଦ୍ ଏହାଙ୍କ ଠାରୁ ଲେଖାଇ ନିଅନ୍ତୁ । ସେଇ ଟଙ୍କାରେ ଆମକୁ ମାଣ୍ଡିଆ, ବିରି, ଧାନ ଆଦି କିଛି ଦେଇ ଦିଅନ୍ତୁ । ଆମର କାମ ଚଳିଯିବ ।"

"ଏବେ ରସିଦ୍ ଲେଖାଇ ଦେଲେ ପରେ ସରକାରଙ୍କୁ ଟଙ୍କା କିଏ ଦେବ ?"

"ଆମକୁ ଖଜଣା ଅସୁଲି ପାଇଁ ଯେଉଁ ଶହେ କୋଡ଼ିଏ ଟଙ୍କା ମିଳୁଛି ସେଥିରୁ ସରକାର କଟାଇ ଦିଅନ୍ତେ ।"

ଗୌଡ଼ଙ୍କୁ ଏକଥା ପସନ୍ଦ ହେଲା । କହିଲେ - "ଭଉଣୀ ତୁମ ମୁଣ୍ଡରେ କେତେ ବୁଦ୍ଧି ଅଛି ସତେ ।"

ନଞ୍ଜମ୍ମା ଜାଣିଥିଲା ଯେ ଚେନ୍ନିଗା ମନ୍ଦିର ମଣ୍ଡପରେ ବସି ଗୁଣ୍ଡିପତ୍ର ଖାଉଥିବ । ପାର୍ବତୀକୁ ତାଙ୍କୁ ଡକାଇବାକୁ ପଠାଇଲା । ଚେନ୍ନିଗା ଘରକୁ ଆସି ଗୁଣ୍ଡଗୌଡ଼ଙ୍କ ଠାରୁ ଚୂଡଣଲୁଣ୍ଡି ନେଇ ପାଟିରେ ପକାଇଲା । ଗୌଡ଼ ପଚାରିଲେ,"ତୁମର ରସିଦ୍ ଖାତା ବାହାର କର ।" ଚେନ୍ନିଗା କହିଲା - "ଏଠି ତ ନାହିଁ ।"

"ତେବେ କେଉଁଠି ଅଛି ?"

Digitized by srujanika@gmail.com

"ମା' ପାଖରେ ଅଛି ।"

"ଆରେ ସର୍ବରାକାର କାମକୁ ତୁମେ କଣ ପିଲା ଖେଳ ଭାବିଛ ନା କଣ ? ତୁମେ ଯେଉଁଠି ରହିବ, ନିଜପାଖରେ ସେ ଖାତାପତ୍ର ରଖିବା ଦରକାର । ମୁଁ ତୁମକୁ ସେ ଖାତାପତ୍ର ରଖିବା ପାଇଁ ସିନା ଘର ଦେଇଛି । ସରକାରୀ ନିୟମ କଣ ତୁମକୁ ଜଣା ନାହିଁ ? ଏବେ ଶୀଘ୍ର ଯାଇ ଖାତାପତ୍ର ଏଠାକୁ ଆଣି ଆସ ?"

ସର୍ବରାକାର ହନୁମାନ ମନ୍ଦିରକୁ ଗଲେ । କିନ୍ତୁ ଗଙ୍ଗାମ୍ମା ହିସାବ ଖାତାର ଗଣ୍ଡିରା ଦେଲା ନାହିଁ । ଗୁଣ୍ଡ ଗୌଡ଼ର ନାଁ ଧରିବାରୁ ସେ ନିଜେ ଆସିଲା । ଯେତେବେଳେ ତାକୁ କୁହାଗଲା ଯେ ଏହା ସରକାରୀ ନିୟମ,ସେତେବେଳେ ଗଙ୍ଗାମ୍ମା କହିଲା - "ମୁଁ ମଧ୍ୟ ଏଠି ଆସି ରହିବି ।"

"ରହିଲେ ରହ ମୋର କଣ ଯାଉଛି ।" ଚେନ୍ନିଗା କହିଲା । କିନ୍ତୁ ନଞ୍ଜମ୍ମା କହିଲା - "ସେ କଥା ହେବ ନାହିଁ । ମତେ ଯେତେବେଳେ ଘରୁ ଧକ୍କା ଦେଇ ବାହାର କରିଥିଲ, ସେ କଥା କଣ ମନେ ନାହିଁ । ଆମେ ଅଲଗା ରହିବୁ ।"

"ଦେଖ, ଗୌଡ଼ ପୁଅ, ଏ ଅଲକ୍ଷଣୀ ବଉଁଶ ବୁଢ଼େଇର କଥା ।"

"ଗଙ୍ଗାମ୍ମା ଦେଖ, ମୁଁ ଏ ଘର, ହିସାବ କାଗଜପତ୍ର ରଖିବା ପାଇଁ ଏ ଭଉଣୀକୁ ଦେଇଛି, ଆଉ କାହାକୁ ନୁହେଁ । ତୁମେ ତୁଚ୍ଛାଟାରେ ତାକୁ ଗାଳି କାହିଁକି ଦେଉଛ ?" ଏ କଥା ଶୁଣି ଗଙ୍ଗାମ୍ମା ଆହୁରି ଗାଳି ବକିବାରେ ଲାଗିଲା ଏବଂ ହନୁମାନ ମନ୍ଦିର ଫେରିଗଲା । ଖାତାପତ୍ର ମୁଣ୍ଡାଇ ଚାରିଥରରେ ଅଣାଗଲା । ଗଙ୍ଗାମ୍ମା କିନ୍ତୁ ସିନ୍ଦୁକଟା ଦେଲାନାହିଁ ।

ସବୁ ଅଣାଯିବା ପରେ ଗୌଡ଼ ପଚାରିଲେ - "ଆରେ ଅଳସୁଆଙ୍କ ସର୍ଦ୍ଦାର, ଏତେ ବର୍ଷ ହେଲା ସର୍ବରାକାର ରହିଲଣି ଯେ ଏତିକି ମଧ୍ୟ ଆଜିପର୍ଯ୍ୟନ୍ତ ଜାଣିଲନି ଯେ ଗାଁ ଚଉକିଆ ଖାତାପତ୍ର ବୋହିବା ପାଇଁ ରଖାଯାଇଛି ।"

ସର୍ବରାକାରେ ଚୁପ ରହିଲେ । ଗୌଡ଼ ପଚାରିଲେ,"ଏ ସବୁ ଖାତା ତୁମେ ମୁଣ୍ଡରେ ଲଦି ଆଣିଲ ନା ? ଚଉକିଆକୁ କହି ପାରିଲ ନାହିଁ । ତୁମେ ନିଜର ଅଧିକାର କଣ ମଧ୍ୟ ଜାଣିନାହଁ । ହଉ କାଗଜ ପେନ୍‌ସିଲ୍ ବାହାର କରି ଲେଖ । ହଁ ଭଉଣୀ କଣ ଲେଖିବା କଥା କହିଲେ, ଯେ଼ ଲେଖିବେ ।"

ସର୍ବରାକାର ଲେଖନୀ ଧରିଲେ । ସ୍ୱୀ ଡାକି ଚାଲିଲେ । "ରାମସନ୍ଦ୍ର ଉପବିଭାଗର କୁରୁବରହଲ୍ଲୀ ଗାଁର ମୁଖିଆ ଶ୍ରୀ ଗୁଣ୍ଡ ଗୌଡ଼ଙ୍କ ଠାରୁ ତାଙ୍କର ବାର୍ଷିକ ଖଜଣା ବାବଦକୁ ପଚାଶ ଟଙ୍କା ଅଗ୍ରୀମ ବୁଝିନେଲୁ । ଖଜଣା ଆଦାୟ ସମୟରେ ଆପଣଙ୍କ ହିସାବକୁ ଏହା କାଟି ନେବୁ । ଦସ୍ତଖତ ଶ୍ରୀ ଚେନ୍ନିଗରାୟ ସର୍ବରାକାର । ତାରିଖ ।"

Digitized by srujanika@gmail.com

ଚେନ୍ନିଗରାଯ୍ କାଗଜଟି ଗୌଡ଼ଙ୍କ ହାତରେ ଦେଲା । ଦଶ ମିନିଟ୍ ପର୍ଯ୍ୟନ୍ତ ସେ ବୁଝି ପାରିଲା ନାହିଁ ଯେ ଏପରି ଲେଖିବା କାରଣ କଣ ? ଫେର ଭାବି କହିଲା - "ଟଙ୍କା ଦିଅନ୍ତୁ ।"

"ଆରେ ଟଙ୍କା ନେଇ ମୁଁ କଣ କୁଆଡ଼େ ପଳାଉଛି । ଏତେ ତରତର କାହିଁକି ?"

ତାପରଦିନ ଗୌଡ଼ ଶଗଡ଼ରେ ମାଣ୍ଡିଆ, ଧାନ ଆଦି ଲଦି ପଠାଇ ଦେଲେ । ନଞ୍ଜମ୍ମାକୁ କହିଲେ - "ଭଉଣୀ କୋଡ଼ିଏ ବସ୍ତା ମାଣ୍ଡିଆକୁ ଚବିଶ ଟଙ୍କା, ବସ୍ତାଏ ବିରି ଡାଲି ଆଠଟଙ୍କା, ଏବଂ ମନ୍ଦଣେ ଲଙ୍କାମରିଚ ତିନିଟଙ୍କା । ସବୁମିଶି ହେଲା ପଞ୍ଚତିରିଶ ଟଙ୍କା । ଏଇ ପାଞ୍ଚଟଙ୍କା ନିଅ । ଏମିତି ହେଲା ଚାଳିଶ ଟଙ୍କା । ବାକି ଦଶଟଙ୍କାର ନଡ଼ିଆ ଆଣିଦେବି । ଆମ ଘରେ ଏତେ ଧାନ ବଳକା ନଥିଲା, ତୁମେ ଦୋକାନରୁ କିଣିନେବ ।"

ନଞ୍ଜମ୍ମା ମନରେ ଦମ୍ଭ ଆସିଲା । ପାଞ୍ଚଟଙ୍କା ନେଇ ଆଗରୁ ପାଖରେ ଥିବା ଦୁଇଟଙ୍କା ମିଶାଇ ଗୋଟିଏ କନାରେ ବାନ୍ଧି ଗୋଟିଏ ଜାଗାରେ ଲୁଚାଇ ରଖିଲା ।

7

ସେତେବେଳକୁ ନଞ୍ଜମ୍ମାର ଗର୍ଭ ଆଠମାସ । ଦିନେ ଦିପହରେ ନଞ୍ଜମ୍ମା ବସିବସି ଖାତାରେ ଗାର ପକାଉଥିଲା । ପେଟ ବଢ଼ିଯାଇଥିବାରୁ ଠୁଙ୍କ ହୋଇ ବସି ଗାର ଟାଣିବାକୁ ସୁବିଧା ହେଉନଥିଲା । ତଥାପି ମଧ୍ୟ କାମ କରି ଚାଲିଥାଏ । ଚେନ୍ନିଗା ପାଖ ବଖରାରେ ଶୋଇ ଘୁଙ୍ଗୁଡ଼ି ମାରୁଥିଲା ।

ଗଙ୍ଗାମ୍ମା ଏକା ନିଶ୍ୱାସରେ ଘର ଭିତରକୁ ପଶି ଆସିଲା । ଗୁଣ୍ଡଗୌଡ଼ ହିସାବଖାତା ମଗାଇବା ଦିନଠାରୁ ସେ ଏଘରକୁ ଆସି ନଥିଲା । ଏବେ ମଧ୍ୟ ଆସିଲା ଯେ କାହାକୁ କିଛି କହିଲା ନାହିଁ । ସିଧା ଯାଇ ଯେଉଁଠି ମାଣ୍ଡିଆ ରଖାହୋଇଥିଲା, ମନକୁ ମନ ଆଣିଥିବା ଗୋଟାଏ ମୁଣାରେ ଭର୍ତ୍ତି କରିବାକୁ ଲାଗିଲା । ନଞ୍ଜମ୍ମା ଦେଖି ପଚାରିଲା - "ଏସବୁ କଣ ହେଉଛି ?"

"ଦିଶୁ ନାହିଁ କି ତତେ, ମାଣ୍ଡିଆ ନେଉଛି । ତୁ ମତେ ପଚାରିବାକୁ କିଏ ଲୋ ?"

"ପ୍ରଥମେ ମୁଣାଟା ଏଠି ରଖ, ତାପରେ କଥାବାର୍ତ୍ତା କର । ଆମଘରକୁ ଆସି ନ ପଚାରି ମାଣ୍ଡିଆ ନେଇଯିବ ?"

"କାହାର ଘର କିଲୋ ? ତୋ ବାପ କରିଥିଲା କି ? ଆରେ ଏ ଭେଣ୍ଡା ଶୁଣୁଛୁଟି କି ? ଆଜି

Digitized by srujanika@gmail.com

ଘରେ କିଛି ନାହିଁ ବୋଲି ମାଣ୍ଡିଆ ନେବାକୁ ଆସିଛି । ଏ ମାଇକିନା କଣ ସବୁ କହିଯାଉଛି । ଏ ମାଣ୍ଡିଆ କଣ ଯା ବାପ ପଠାଇ ଦେଇଛି । ଗୁଣ୍ଡଗୌଡ଼ ଆମ ସର୍ବରାକାରୀ ସୀମା ଭିତରେ ଜଣେ ଗାଁ ମୁଖିଆ, ତୋ ମରଦ ନୁହେଁ ଯେ ମାହାଳିଆ ଏ ମାଣ୍ଡିଆ ଆଣି ଦେଇଛି ।' ପାଟି ତୁଣ୍ଡ ଶୁଣି ଚେନ୍ନିଗରାୟୁର ନିଦ ଭାଙ୍ଗି ଯିବାରୁ ବିରକ୍ତ ହୋଇ କହିଲା - "ଆଲୋ ନେବ ତ ନେଉ । କେତେ ଖଟ୍ ଖଟ୍ ଲଗେଇଛନ୍ତି ଏଗୁଡ଼ାକ ।"

"ଏ ଗୁଡ଼ାକ କଣ ମାହାଳିଆ ମିଳିଛି କି ? ଖନ୍ଦଣ ଆଦାୟ ପଇସାରୁ କାଟି ପରା ମୁଁ ମଗେଇଛି ।"

"ସର୍ବରାକାର କାମ ମୋ ସ୍ୱାମୀର, ତୋ ବାପର ନୁହଁ, ବୁଝିଲୁଲୋ ପୋଡ଼ା ମୁହିଁ ।" ଶାଶୁ କହିଲା ।

"ଘୋଡ଼ାରେ ବସି ଆସି ମୋ ବାପ ଏ କାମ ଛଡ଼ାଇ ଆଣିଥିଲା । ନହେଲେ କଣ ତୁମ ବଂଶ ଫେରି ପାଇଥାନ୍ତେ ? ଏବେ ରାତି ଉଜାଗର ରହି ମୁଁ ହିସାବ ଲେଖୁଛି । ମୋ ଘରକୁ ପଶି ଧାନ ମାଣ୍ଡିଆ ଛୁଇଁଲେ ଗୁଣ୍ଡଗୌଡ଼କୁ ଯାଇ କହିବି ।"

"ଆଜି ସକାଳୁ ପେଟରେ କିଛି ପଡ଼ିନାହିଁ, କଣ ଖାଇବିରେ ଚେନ୍ନିଗା ?"

"ଶିବଗୌଡ଼କୁ ଯାଇ ପଚାର, ନହେଲେ ରେବଣ ସେଠୀକୁ ଯାଇ ମାଗ ।" ନଞ୍ଜମ୍ମା ଉତ୍ତର ଦେଲା ।

ନଞ୍ଜମ୍ମାର ବ୍ୟଙ୍ଗ ଗଙ୍ଗାମ୍ମା ବୁଝିପାରିଲା ନାହିଁ । ମୁଣ୍ଡ ସେଇଠି ରଖି ସିଧା ଶିବଗୌଡ଼ର ଘରେ ପହଞ୍ଚିଲା । ବୁଢ଼ୀ ଯିବା ପରେ ନଞ୍ଜମ୍ମାକୁ ଖରାପ ଲାଗିଲା । ସକାଳୁ କିଛି ଖାଇ ନାହାନ୍ତି । ତାଙ୍କୁ ଖାଲି ହାତରେ ଛାଡ଼ିବା କଥା ନଥିଲା । ଏହାଭାବି ଗୋଟାଏ ଗଣ୍ଡିଲାରେ ତୁଇତିନି ସେର ମାଣ୍ଡିଆ ଚୂନା ରଖି ତାଙ୍କ ଘରେ ଦେଇ ଆସିବାକୁ ସ୍ୱାମୀଙ୍କୁ କହିଲା । ପୁଅ ଗଣ୍ଡିଲା ଧରି ମା ଘରକୁ ଗଲା ।

ଗଙ୍ଗାମ୍ମା ଶିବଗୌଡ଼ ଘରକୁ ଯାଇ ପଚାରିଲା - "ଆରେ ମୁଖିଆ ଆଜି ସକାଳୁ ଘରେ କିଛି ଖାଇବାକୁ ନାହିଁ । ପଚିଶି ସେର ମାଣ୍ଡିଆ ଦେ ।"

"ତୋ ମୁଣ୍ଡ ପୁଣି ଖରାପ ହେଲାଣି କି ? କେଉଁଠୁ ଆଣିବି ପଚିଶ ସେର ମାଣ୍ଡିଆ ।"

"ମୋ ଜମିବାଡ଼ି ଟିକ ସବୁ ନେଇ ପୁଣି ଏପରି କହୁଛୁ ? ତୋ ବଂଶ ନିଶ୍ଚୟ ନାଶ ହେବ ।"

"ଆଲୋ ଛତରଖାଇ ତୋ ଜମିବାଡ଼ି ତ ମୁଁ ମାହାଳିଆ ନେଇ ନାହିଁ । ମୁହଁ ସମ୍ଭାଳି କଥା କହ, ହେଲେ ଧକ୍କାମାରି ନିକାଳି ଦେବି ।"

ଶିବଗୌଡ଼ର ସ୍ତ୍ରୀ ଗୌରମ୍ମା ଆସି ସ୍ୱାମୀଙ୍କୁ କହିଲା - "ତୁମେ ଏପରି ଖରାପ ଭାଷାରେ କୁହ

Digitized by srujanika@gmail.com

ନାହିଁ ।'' ଗୌରଙ୍ଗା ଭୟ କରୁଥିଲା କାଳେ ବୁଢ଼ୀ ବ୍ରାହ୍ମଣୀର ଅଭିଶାପରୁ ବିପତ୍ତି ଆସିପାରେ । ସ୍ୱାମୀଙ୍କୁ ଅନ୍ୟଆଡ଼େ ପଠାଇ ଦେଇ ଗୌରଙ୍ଗା ଗୋଟିଏ ଡାଲାରେ କିଛି ମାଣ୍ଡିଆ ଏବଂ ବିରି ଆଣି ଗଙ୍ଗାମାଙ୍କୁ ଦେଲା । କହିଲା,''ଆପଣ ଏତକ ନେଇ ଯାଆନ୍ତୁ , ତାଙ୍କ କଥା କିଛି ଧରନ୍ତୁ ନାହିଁ ।''

ରାଗରେ ଲାଲ ହୋଇଯାଇଥିବା ଗଙ୍ଗାମା ଏତକ ନେବ କି ନାହିଁ ବୁଝିପାରୁନଥିଲା । କିନ୍ତୁ ଗୌରଙ୍ଗା ଆଉଥରେ କହିବାରୁ ତାଲାକୁ ମୁଣ୍ଡ ଉପରେ ରଖି ହନୁମାନ ମନ୍ଦିର ଆଡ଼େ ଚାଲିଲା ।

ଡେଣ୍ଟିଗରାଯ୍ ମାଣ୍ଡିଆ ଚୂନାତକ ଅପନ୍ନାସ୍ୱାଙ୍କୁ ଦେଇ ମନ୍ଦିର ପାଖରେ ଯାଇ ବସିଗଲା । ନଷ୍ଟିଙ୍ଗା ତଳକୁ ମୁହଁ ପୋତି ହିସାବ ଖାତାରେ ଗାର ପକାଉଥିଲା । କିଏ ଆସିଲା ବୋଲି ଉପରକୁ ଚାହିଁ ଦେଖେତ ଗଙ୍ଗାମା ମାଣ୍ଡିଆ ଚୂନାତକ ଧରି ଠିଆ ହୋଇଛି । କିଛି ପଚାରିବା ପୂର୍ବରୁ ମାଣ୍ଡିଆ ଚୂନାର ଗଣ୍ଠିଲିଟା ନଷ୍ଟିଙ୍ଗା ଉପରକୁ ପକାଇ ଦେଇ କହିଲା - ''ତୁ କଣ ଭାବିଛୁ ଯେ ତୋ ଘରୁ ଭିକ ନେଇ ଖାଇବି । ତୁ ଗଙ୍ଗାମାକୁ କଣ ବୋଲି ଭାବିଛୁ କି ?'' ଏତିକି କହି ଚାଲିଗଲା ।

ନଷ୍ଟିଙ୍ଗାର ମୁଣ୍ଡ, ହାତ, ଗୋଡ଼, ଖାତା ଏବଂ ସାହି ଦୁଆତ ସବୁ ମାଣ୍ଡିଆ ଚୂନାରେ ପୋତି ହୋଇଗଲା । ସିଏ ଭାବିଲା ଶାଶୁକୁ ଧରିନେଇ କେତେ ଜଣ ଭଦ୍ରଲୋକଙ୍କୁ ଏକଥା ଦେଖାଇବ । ପୁଣି ଲୋକ ହସା ହେବ ବୋଲି ଭାବି ଚୁପ ରହିଲା । ଉଠି ଦେହ ମୁଣ୍ଡ ଝାଡ଼ି ହେଲା । ଭାଗ୍ୟକୁ ସବୁଯାକ ଚୂନା ବସିଥିବା ପଟି ଉପରେ ପଡ଼ିଥିଲା । ଖାତାପତ୍ର ଝଡ଼ା ଝଡ଼ି କରି ସବୁ ଅଟାତକ ଗୋଟେଇ ରଖିଲା । ଗାଧୋଇ ପାଧୋଇ ଦୁଆତ ଏବଂ କଲମ ଧୋଇ ସଫା କଲା । ସେଠୀ ଦୋକାନରୁ ପାହୁଲାଙ୍କୁ ସାହି ଦିପୁଡ଼ା ଆଣି ସାହି ତିଆରି କରି ପୁଣି ଖାତାରେ ଗାର ପକାଇଲା ।

୪

ଏଇ ଘଟଣାର ଦୁଇଦିନ ପରେ ଦିନେ ସକାଳେ ଦଶଟା ବେଳେ ରୋଷେଇ ଘର ଭିତରେ ଥାଇ ନଷ୍ଟିଙ୍ଗା ଶୁଣିଲା କିଏ ଜଣେ ବାହାରୁ ନଷ୍ଟୁ ବୋଲି ଡାକୁଛି । ଭାବିଲା ବୁଢ଼ୀମାର ଡାକ ହୋଇଥିବ । ବାହାରକୁ ଆସି ଦେଖେତ ମୁଣ୍ଡରେ ଗଣ୍ଠିଲି ଧରି ବୁଢ଼ୀ ଅକ୍କମ୍ମା ଠିଆହୋଇଛି । ତା ପଛରେ ଦିଜଣ ହଳିଆ ବସ୍ତାଟିଏ ବୋହି ଠିଆ ହୋଇଛନ୍ତି । ନାତୁଣୀକୁ ଦେଖି ଅକ୍କମ୍ମା ହଳିଆଙ୍କୁ ବସ୍ତା ଘର ଭିତରେ ରଖିବାକୁ କହିଲା । ନଷ୍ଟିଙ୍ଗାକୁ କହିଲା - ''ତୁ ଗର୍ଭ ଖବର କାହିଁକି ଦେଲୁନି ? ସୁଖଦୁଃଖ ଖବର ଜଣାଇବା କଣ ଖରାପ ?''''ମୁଁ ଖବର ପଠାଇବି ବୋଲି ଭାବୁଥିଲି, ଚାଲ ଭିତରକୁ ଚାଲ, ଲୁଗା ବଦଳାଇ ପକାଅ ।'' ''ମୁଁ ପଛେ ଲୁଗା ବଦଳେଇବି , ଯଦି ରନ୍ଧାରନ୍ଧି ହୋଇସାରିଲାଣି ଏ ହଳିଆ ଦୁଇଟାଙ୍କୁ ଖାଇବାକୁ ଦେଇଦେ ସେମାନେ ଗାଁକୁ ଫେରିଯିବେ ।''

Digitized by srujanika@gmail.com

ଚାଲି ବସିଥିଲା । ମାଣ୍ଡିଆ ଜାଉ ରନ୍ଧାହୋଇ ନଥାଏ । ରୋଷେଇ ଘରକୁ ଯାଇ ନଣିନ୍ଦା ସବୁ ସଜାଡ଼ି ଦେଲା । ହଳିଆକୁ ଖାଇବାକୁ ଦେଲାବେଳେ ବୁଢ଼ୀମା ପଚାରିଲା, "ଘରେ ଦହି ନାହିଁ କି ?"

"କେଉଁଠୁ ଆସିବ ?"

ହଳିଆ ଖାଇସାରିବା ପରେ ବୁଢ଼ୀ ସେଥିରୁ ଜଣକୁ କହିଲା - "ଦେଖ ଘରକୁ ଗଲା ମାତ୍ରେ କଳେଶକୁ କହିବୁ, ଯେ ଏଠି ପୋଷତୀ ମାଇକିନା ପାଇଁ ଦୁଧର ବ୍ୟବସ୍ଥା ନାହିଁ । ଆମର ଯେଉଁ ଧଳା ଗାଈଟା ବାଛୁରୀ ଜନ୍ମ କରିଛି ତାକୁ ପଠେଇ ଦେବ । ସେ ଗାଈ ନଣିନ୍ଦାର ବିଭାଘର ବେଳେ ଦାନ ଦିଆ ହୋଇଥିଲା । ଏ ପର୍ଯ୍ୟନ୍ତ ପଠା ହୋଇ ନଥିଲା । ପୁଅକୁ କହିବ ଶୀଘ୍ର ସେ ଗାଈ ପଠାଇବ ।"

ହଳିଆ ଫେରିଗଲେ । ବୁଢ଼ୀମା ଥଣ୍ଡା ପାଣିରେ ସ୍ନାନସାରି ଓଦାଲୁଗା ପିନ୍ଧି ମୁଣ୍ଡରେ ଚନ୍ଦନ ଲଗାଇ ପୂଜାପାଠ ସାରି ରୋଷେଇ ଘରେ ଆସି ବସିଲା । ନଣିନ୍ଦା ପଚାରିଲା - "ତୁମକୁ ଖବର କିଏ ଦେଲା ?" ବୁଢ଼ୀ କହିଲା - "ଆମ ଗାଁର ଚନ୍ତ୍ରୀ ଚମାସ୍ଯ ଏଇ ଗାଁରୁ ଗୋଟିଏ ଝିଅ ବିଭା ହୋଇଛି । ସାତ ଆଠ ଦିନ ତଳେ ପୋଖରୀକୁ ଗାଧୋଇ ଗଲାବେଳେ ସେଇ ଝିଅ ସାଙ୍ଗରେ ଦେଖା ହେବାରୁ ତୋ ବିଷୟରେ ସବୁକଥା କହିଲା ଯେ, ଶାଶୁ ଠାରୁ କିପରି ଅଲଗା ହୋଇ ରହିବୁ ଏବଂ ଶାଶୁ ତତେ ବାସନ ଖଣ୍ଡେ ଦେଇନାହିଁ ମଧ୍ୟ । କଳେଶ ଠାରୁ ଆଗରୁ ତ ଶୁଣିଥିଲି ଯେ ଜମିବାଡ଼ି ଚକ ଯିବା ଉପରେ ।"

"ତୁମେ ଗାଁରୁ କେତେବେଳେ ବାହାରିଲ ?"

"କାଲିଠାରୁ ବାହାରିଲୁଣି । ସଂଧ୍ୟାବେଳେ ଯୋରବର୍ଷା ହେବାରୁ ଅଧାବାଟରେ ତୁବିନ୍ଦାହଳୀ ଗାଁର ମୁଖିଆ ଘର ବାରଣ୍ଡାରେ ରାତିଟା କଟାଇଲୁ । ମୁଖିଆ ଘର ହଳିଆ ଦୁଇଟାକୁ ଖାଇବାକୁ ଦେଲେ ଏବଂ ମୋ ପାଇଁ ଜଳଖିଆ ମଧ୍ୟ ଦେଲେ ।"

ପିଲାଦିଟା ବାହାରେ ଖେଳୁଥିଲେ । ସେମାନେ ଘରକୁ ଆସିବାରୁ ପାର୍ବତୀ ଆଈକୁ ଚିହ୍ନିଲା । ରାମନ୍ନା ପ୍ରଥମେ ଟିକିଏ ଦୂରେଇ ଦୂରେଇ ରହିଲା କିନ୍ତୁ ଅଧଘଣ୍ଟାଏ ପରେ ଦୁଇ ଭାଇ ଭଉଣୀ ବୁଢ଼ୀ ସାଙ୍ଗରେ ଖେଳିବାକୁ ଲାଗିଲେ । ଖାଇବା ସମୟକୁ ଚେନ୍ନିଗା ଘରକୁ ଆସିଲା । ଆଈଶାଶୁକୁ "ଭଲ ଅଛନ୍ତି ?" ଛଡ଼ା ଆଉ କିଛି ପଚାରିଲା ନାହିଁ । ବୁଢ଼ୀ ମଧ୍ୟ ତାଆଡ଼େ ନଜର ଦେଲା ନାହିଁ । ଖାଇସାରି ଚେନ୍ନିଗା ଘରେ ନଶୋଇ ମନ୍ଦିର ବାରଣ୍ଡାକୁ ଚାଲିଗଲା । ବୁଢ଼ୀ ଅକ୍କୁଳା ସାଙ୍ଗରେ ଆଣିଥିବା ଗଣ୍ଠିଲି ଖୋଲିଲା । ଗୋଟାକରେ ତମ୍ବା ପିତଳ ବାସନ ସବୁ ଥିଲା । ଆଉ ଗୋଟାକରେ ବୁଟଭଜା, ବାରମଜା, ଗୁଡ଼ଖଜା, ପାମ୍ପଡ଼ ଇତ୍ୟାଦି ଥିଲା । ଏହାଛଡ଼ା ପ୍ରାୟ ପନ୍ଦର ସେର ଖଣ୍ଡେ ବାସନା ଚାଉଳ ଥିଲା ।

"ଏସବୁ କାହିଁକି ଆଣିଲ ?"

କଳେଶ କହିଲା, "ପିଲାଛୁଆ ଘର, ଖଜା ପିଠା କିଛି ତିଆରି କରି ନେଇ ଯାଅ । ଆଖୁ ଘଣା ପଡ଼ିଥିଲା । ଘରେ ଗୁଡ଼ ଗଦା ହୋଇଛି । ତେଣୁ ସେଇ ଗୁଡ଼ରୁ କିଛି ଏବଂ ଭଲ ଚାଉଳ କିଛି ନେଇ ଆସିଛି ।"

Digitized by srujanika@gmail.com

"ଆଉ ଏ ବାସନ କୁସନ ।"

"ଆଲୋ କଳେଶ ଯେତେବେଳେ ପୁଲିସ୍ ଚାକିରୀ କରୁଥିଲା, ସେତେବେଳେ ପୁରୋହିତ ବାମଙ୍କ ଦାନରୁ ମିଳିଥିବା କଂସା ବାସନ ସବୁ ମୁଁ ହାଣ୍ଡି ଭିତରେ ପୂରାଇ ଆଟୁ ଉପରେ ଲୁଚାଇ ଦେଇଥିଲି, କେହି ଜାଣି ନଥିଲେ । ତୋ କଥା ଶୁଣିଲା ଦିନଠାରୁ କଳେଶର ସ୍ତ୍ରୀ ଯେତେବେଳେ ଘରେ ନଥାଏ ଖଣ୍ଡେ ଦିଖଣ୍ଡ ଲେଖାଏଁ ବାସନ କାଢ଼ି ଆମ ହାଡ଼ିଆ ଘରକୁ ପଠାଇ ଦେଉଥିଲି । ଏବେ ଆସିଲା ବେଳେ କାହାକୁ ନ କଣାଇ ହୁବିନ୍‌ହାଡ଼ିଙ୍କା ପର୍ଯ୍ୟନ୍ତ ଆଣି ହାଡ଼ିଆ ଏତକ ଦେଇଗଲା ।"

"ତଥାପି ଏସବୁ ଆଣିବା ଦରକାର ନଥିଲା । କଳେଶ ଭାଇ ଜାଣିଲେ କଣ ଚୁପ ରହିବେ ?"

"ତାଙ୍କୁ ତ ଜଣା ପଡ଼ିବ ନାହିଁ । ତୁ ଚୁପ ରହ । ଏସବୁ ତୋ ବାପାଙ୍କୁ ଦାନରେ ମିଳିଥିଲା ।" ଏତକ କହିଲା ବେଳକୁ ପୁଅକଥା ମନେ ପଡ଼ି ବୁଢ଼ୀ ଆଖିରୁ ଲୁହ ଗଡ଼ିଗଲା । ପୁଣି କହିଲା - "ସେ ବଦମାସ କୁଆଡ଼େ ଯାଇଛି ଯେ କିଛି ଖବର ନାହିଁ । ଘରେ ଶାନ୍ତିରେ ଦି'ମୁଠା ଖାଇବା ତା କପାଳରେ କେବେ ହେଲା ନାହିଁ ।"

ବାପାଙ୍କ କଥା ଶୁଣି ନନ୍ଦିନୀ ମଧ୍ୟ ଦୁଃଖିତ ହୋଇ ପଚାରିଲା - "ବାପାଙ୍କର ସତରେ କଣ କିଛି ଖବର ନାହିଁ ?"

"କିଛି ଜଣା ନାହିଁ, ଲୋକେ କହୁଛନ୍ତି ସିଏ କଣ ଆଉ ଜୀବନରେ ଥିବ । କିନ୍ତୁ ମୁଁ ଜାଣିଛି ସେ ମରି ପାରିବ ନାହିଁ । ସବୁବେଳେ ରାଜା ଭଳିଆ ରହିବା ଲୋକ ସିଏ ।"

"ନାଇଁମ ଲୋକେ ଯାହା କହୁଛନ୍ତି ସବୁ ମିଛ ।" ନନ୍ଦିନୀ ବୁଢ଼ୀକୁ ସାନ୍ତ୍ୱନା ଦେଲା ।

ବୁଢ଼ୀ ବାଟଚାଲି ହାଲିଆ ହୋଇଯାଇଥିଲା । ଘରେ ଚଳେ ପକାଇବାପାଇଁ କିଛି ନଥିଲା । ଏବଂ ଟାଳପତ୍ର ତଟେଇରେ ବୁଢ଼ୀ ଶୁଏ ନାହିଁ । ତେଣୁ କିଛି ନପକାଇ ତଳେ ଶୋଇଗଲା । ନନ୍ଦିନୀ ବୁଢ଼ୀକୁ ଭାଉଜ କଥା ପଚାରିଲା ।

"ଆଲୋ ତୋ ବାପର ତରବରିଆ ପ୍ରକୃତି ଲାଗି ଏତେ କଥା ହେଲା । ଆଗକୁ ପଛକୁ ଦେଖିବ ନାହିଁ କି, ଚାରିଯାଗାରେ ପଚାରିବ ନାହିଁ । ଏଠିକି ଆସିଲା ତଡ଼େ ଦେଇଦେଲା । ସେଠିକି ଗଲା ତାଙ୍କୁ ନେଇ ଆସିଲା । ସିଏ ଭାରି ମଜାରେ ଅଛି । ମୁଁ ଯେତେ ଦୁଧ ଦହି କରି ରଖୁଛି ସବୁ ଚୋରେଇ ଖାଉଛି । ଲହୁଣୀଟକ ସବୁ ଲୁଚି ଲୁଚି ଖାଉଛି । ତାର ଯେତେ ସେବା କଲି କିନ୍ତୁ ତାର ଗର୍ଭ ରହିଲା ନାହିଁ ।"

"ସ୍ୱାମୀ-ସ୍ତ୍ରୀ ରେ କିପରି ପଡୁଛି ?"

"ପଡ଼ିବ ଆଉ କଣ ? ଚାରିଦିନ ଶାନ୍ତିରେ ରହିଲେ ଚାରିଦିନ ମାଡ଼ଗୋଳ । ମତେ ସବୁବେଳେ ଅଭିଶାପ ଦେଉଛି ଯେ, ମୁଁ କୁଆଡ଼େ ନାତିକୁ କହି ମାଡ଼ ଦିଆଉଛି । କଳେଶକୁ କହିଲେ ସେ କହୁଛି ମାଡ଼ ନଦେଲେ ଭଅଙ୍କୁ ସିଧା କରି ହେବ ନାହିଁ । ତୁ କେମାକୁ ଜାଣିଛୁ ତ ? ସେଇ ପେଙ୍ଗ ଅଡ଼ବ ଘର ଝିଅ । ଲୋକେ କହୁଛନ୍ତି କଳେଶ ତାକୁ ଧରି ଆଖୁ କିଆରୀ ଭିତରେ କଣ ସବୁ ଲୀଳା କରୁଛି । ଟାଙ୍ଗିଆ ଚେଲି ସନ୍ଧିରେ ଆଉ କାହା କାହା ଘରେ ଯାଇ ବସି ରହୁଛି । ଲୋକେ ସବୁ କିଏ କେତେ କଥା କହୁଛନ୍ତି । ଦିନେପଚାରିବାରୁ - "କିଏ ସେ ଏପରି କହୁଛି ତାର ଗାଲ ବଙ୍କା କରିଦେବି" ବୋଲି

Digitized by srujanika@gmail.com

ରାଗି ଉଠିଲା । ତାପର ଠାରୁ ମୁଁ ଆଉ କିଛି କହୁନାହିଁ ।''

''ଘରେ ସ୍ତ୍ରୀ ଥାଉ ଥାଉ ଏପରି କାହିଁକି କରୁଛନ୍ତି ?''

ଆଲୋ ସ୍ତ୍ରୀ ଯଦି ଗୁଣର ହୋଇଥାନ୍ତା ତେବେ ସ୍ୱାମୀ କାହିଁକି ଏପରି କରନ୍ତା ?''

ବୁଢ଼ୀ ନାତୁଣୀ ଅନେକ ସମୟ ସୁଖ ଦୁଃଖ ହେଲେ । ବୁଢ଼ୀ ଆସିଲା ଦିନ ଠାରୁ ରନ୍ଧାରନ୍ଧି କାମ ତା' ଉପରେ । ନଷ୍ଟିକାର ଗର୍ଭ ଆଠମାସ ହୋଇ ଯାଇଥାଏ । ରାତିରେ ନଷ୍ଟିକା ବୁଢ଼ୀ ପାଖରେ ଶୁଏ । ପିଲାଦିଟା ଆଈ ପାଖରେ ଶୁଅନ୍ତି । ଅନେକ ରାତି ଯାଏ ଗପସପ ହେବାରୁ ଆଜିକାଲି ଚେନ୍ନିଗାର ନିଦରେ ବ୍ୟାଘାତ ଘଟୁଥାଏ । ତେଣୁ ଦିନେ ଶେଯପତ୍ର ଉଠାଇ ମନ୍ଦିର ବାରଣ୍ଡାକୁ ଚାଲିଗଲା ।

ବୁଢ଼ୀ ଆସିବାର ଆଠଦିନ ପରେ କଳେଶ ନିଜେ ଗାଈ ବାଛୁରୀ ଧରି ହାଜର ହେଲା । ଭଉଣୀ ଘରେ ଦିନେ ଦି'ଦିନ ରହି ଗାଁକୁ ଫେରିଗଲା । ଗର୍ଭ ନଅ ମାସ ପୁରିବା ପରେ ନଷ୍ଟିକାର ପୁଅଟିଏ ଜନ୍ମ ହେଲା । ଦେଖିବାକୁ ହୃଷ୍ଟପୁଷ୍ଟ ଏବଂ ସର୍ବ ଲକ୍ଷଣଯୁକ୍ତ । ନାମକରଣ ପୂଜା ପାଇଁ ଖର୍ଚ୍ଚ କରିବାକୁ ସାହସ ପାଉନଥାଏ । କିନ୍ତୁ ରୀତି ନିୟମ କଣ ଛାଡ଼ି ହେବ । ବୁଢ଼ୀ ମା ଗୁଡ଼ ଓ ଚାଉଳ ତ ଆଣିଥିଲା । ନଷ୍ଟିକା ପାଖରେ ପାଞ୍ଚଟଙ୍କା ଥିଲା । ସେତକ ଖର୍ଚ୍ଚକରି ଗାଁର ଚାରିଜଣ ବ୍ରାହ୍ମଣଙ୍କୁ ଏବଂ ଦୁଇ ପୁରୋହିତ ପରିବାରଙ୍କୁ ଡାକି ଶାସ୍ତ୍ର ଅନୁସାରେ ପୂଜା କରାଇ ପୁଅର ନାମ ବିଶ୍ୱନାଥ ରଖାଗଲା । ସେଦିନ ଗାଁରେ ଗଙ୍ଗାମ୍ମା ଓ ଅପନ୍ନାମ୍ମା ନଥିଲେ । ଦିନେ ଆଗରୁ ସେମାନେ ଅନ୍ୟ ଏକ ଗାଁକୁ ଚାଲି ଯାଇଥିଲେ ।

Digitized by srujanika@gmail.com

# ଅଷ୍ଟମ ଅଧ୍ୟାୟ

## 1

ନଷ୍ଟିଜ୍ଜା ପୋଖତୀ ହେବା ପରଠାରୁ ଚାରିମାସ ପର୍ଯ୍ୟନ୍ତ ବୁଢ଼ାମା ତାର ସେବା କଲା । କିନ୍ତୁ ନଷ୍ଟିଜ୍ଜା ଜଣ ଚୁପଚାପ ବସିବା ସ୍ତ୍ରୀ । ଦିମାସ ଯାଇଛି ନା ନାହିଁ ସବୁକାମ କରିବା ଆରମ୍ଭ କରିଦେଲା । ଖାତାରେ ଗାର ପକାଇବା ଏବଂ ହିସାବ ଉତାରିବା ଇତ୍ୟାଦି କାମ ତା'ର ଚାଲିଥାଏ ।

ବୁଢ଼ାମାକୁ ଘରକୁ ଫେରାଇ ନେବାକୁ କଲେଶ ଆସିଲା । ତା ଆରଦିନ ସକାଳେ ଯିବାକୁ ବିଚାର କଲାବେଳେ ଜଣେ କିଏ ଖବର ଆଣି ପହଞ୍ଚିଲା ଯେ ଚେନ୍ନସେଠୀ ଦୋକାନୀ ବିରୁଦ୍ଧରେ ପଞ୍ଚାୟତ ବସୁଛି । ଏବଂ ସେଥିରେ ସର୍ବରାକାରଙ୍କୁ ମଧ୍ୟ ଯିବାକୁ ହେବ । ଚେନ୍ନିଗା ସେ ଲୋକକୁ ପଚାରିଲା, "ପଞ୍ଚାୟତ କାହିଁକି ଡକାଇଛି ?"

"ଅଭିଯୋଗ ହୋଇଛି ଯେ ଚେନ୍ନସେଠୀ ତା ବୋହୂ ଉପରେ ପାଶବିକ ଅତ୍ୟାଚାର କରିଛି । ସେଥିପାଇଁ ତା ପୁଅ ପଞ୍ଚାୟତ ଡାକିଛି ।"

"ଠିକ୍ କଥା, ଗାଁର ବଡ଼ ବଡ଼ିଆଙ୍କୁ ଡାକି ନିଅ । ତାଙ୍କୁ କହିବ ଆମଘରକୁ କୁଣିଆ ଆସିଛନ୍ତି । ମୁଁ ଯାଇପାରିବି ନାହିଁ ।"

"ସମସ୍ତେ କହିଛନ୍ତି ସର୍ବରାକାର ନ ଆସିଲେ ଚଳିବ ନାହିଁ ।"

ଗାଁ ରେ ଯେତେବେଳେ ନ୍ୟାୟ ନିଶାପ ହୁଏ ପଞ୍ଚାୟତରେ ସର୍ବରାକାର ମଧ୍ୟ ରହିବା ନିୟମ । ଅବଶ୍ୟ ସମସ୍ତେ ଜାଣନ୍ତି ନିପଟ ମୂର୍ଖ ଚେନ୍ନିଗରାୟ ନ୍ୟାୟ କଣ ଜାଣେ ନାହିଁ । ସିଏ ଯାହା ହେଲେ ବି ସର୍ବରାକାରଙ୍କୁ ବସିବାକୁ ହିଁ ପଡ଼େ ତେଣୁ ଅଗତ୍ୟା ବାଧ୍ୟ ହୋଇ ଚେନ୍ନିଗରାୟ ବାହାରି ପଡ଼ିଲେ । ଭିଣୋଇ ପଛେ ପଛେ କଲେଶ ବି ଚାଲିଲା । ଏଭଳି କେସ୍‌ରେ ତା ଠାରୁ ଅଧିକ ଅଭିଜ୍ଞତା ଆଉ ବା କାହାର ଅଛି ?

ସେଠୀ ଘର ଭିତର ଅଗଣାରେ ଗାଁର ବଡ଼ବଡ଼ିଆ ବସିଥିଲେ । ମୁଖିଆ ଶିବ ଗୌଡ଼ । ତା ଶଳା

Digitized by srujanika@gmail.com

ଭୂତପୂର୍ବ ସର୍ବରାକାର ଶିବଲିଙ୍ଗ, ରେବଣ ସେଠୀ, ପଞ୍ଚାଯ୍ତର ଚାରିଜଣ ସଭ୍ୟ, ଦି ପୁରୋହିତେ ଏବଂ ଅନ୍ୟାନ୍ୟ ଦଶପନ୍ଦର ଜଣ ଲୋକ ବସିଥିଲେ । ସମସ୍ତଙ୍କ ପାଇଁ ପାନ, ଗୁଆ, ଗୁଣ୍ଡି ଏବଂ ବିଡ଼ି ମଝିରେ ରଖାଯାଇଥାଏ । ପଞ୍ଚାଯ୍ତ ଆରମ୍ଭ ହେବା ପୂର୍ବରୁ ପ୍ରଶ୍ନ ଉଠିଲା ସଭାପତି କିଏ ହେବ ? କିଏ ଜଣେ ସର୍ବରାକାରଙ୍କ ନାମ ନେବାରୁ ଶିବଗୌଡ଼ କହିଲା - "ସେ ବୋକାଟା କଣ ଜାଣିଛି ?" ଆଉ ଜଣେ ଶିବଗୌଡ଼ ନାଁ କହିବାରୁ ରେବଣ ସେଠୀ ବିରୋଧ କଲା ଯେ ସଭାପତି ଅନ୍ୟ ଗାଁ ର ଲୋକ ହେଲେ ଭଲହେବ । ମୋଦେଇ ଗିରିଆ କହିଲା - "କଳେଶ ହୋଇସ୍ ପୋଲିସ୍ ବିଭାଗରେ ରହିଥିଲେ ଏବଂ ସେ ସର୍ବରାକାରଙ୍କ ଶଳା । ତେଣୁ ତାଙ୍କୁ ସଭାପତି କରାଯାଉ ।" ସମସ୍ତେ ସ୍ୱୀକୃତି ଦେଲେ । କଳେଶ ସଭା ମଝିରେ ବସି ବିଚାର ଆରମ୍ଭ କଲା । ଗୁଣ୍ଡି ପତ୍ର ପାଟିରେ ପକାଇ ପଚାରିଲା - "ମାମଲା ଟା କଣ ? କାହା ଉପରେ ଅନ୍ୟାଯ୍ କରାଯାଇଛି ? ସବୁ କଥା ପଞ୍ଚାଯ୍ତ ଆଗରେ ଖୋଲି କୁହ ।" ଗିରିଆ ସେଠୀ କହିଲା, "ମୋ ବାପା ମୋ ସ୍ତ୍ରୀ ସାଙ୍ଗରେ ସହବାସ କରୁଛି । ତେଣୁ ଉଭୟଙ୍କୁ ଦଣ୍ଡ ଦିଆଯାଉ ।" "ତୁମ ବାପା କିଏ ? ଏଠାକୁ ଡାକ ।"

"ସେଇଠି ଯେଉଁ ବୁଢ଼ା ମୁହଁ ପୋତି ବସିଛି ସେଇ ।"

କଳେଶ ଘଟଣାଟା ଆମୂଳଚୂଳ ପଚାରି ବୁଝିଲା ଯେ, ଗିରିଆର ବିଭାଘର ହେବାର ଆଠବର୍ଷ ହୋଇଗଲାଣି । ଦିନଯାକ ସେ କ୍ଷେତରେ କାମ କରେ ଏବଂ ତା ବାପ ଘରେ ରହି ଦୋକାନ କଥା ବୁଝେ । ବୁଢ଼ାର ସ୍ତ୍ରୀ ମରିବାର ପ୍ରାଯ୍ କୋଡ଼ିଏ ବର୍ଷ ହେଲାଣି । ବୟାନ ଦେବାକୁ କହିବାରୁ ଚେନ୍ନସେଠୀ ମୁଣ୍ଡ ପୋତି କହିଲା - "ମହାଶଯ୍, ମୋର କଳୁଷିତ ପୁଅ ଆଜି ମୋତେ ସମସ୍ତଙ୍କ ଆଗରେ ଅପମାନିତ କରାଉଛି, ମୁଁ ଆଜି ତୁମମାନଙ୍କ ଆଗରେ ନିଯ୍ମ କରି କହୁଛି ଯେ ଏପରି ପୁଅର ମୁହଁ ଦେଖିବି ନାହିଁ କି ତାକୁ ମୋ ସମ୍ପତ୍ତିରୁ ପଇସାଏ ଦେବି ନାହିଁ ।"

"ଆଚ୍ଛା ବର୍ତ୍ତମାନ ଗିରିଆର ସ୍ତ୍ରୀ ନରସୀ ଠାରୁ ବୟାନ ଶୁଣାଯାଉ ।"

ନରସୀ ଲୋଷେଇ ଘର ଦ୍ୱାର ପାଖରେ ଆସି ଠିଆ ହୋଇଗଲା । ତାକୁ ଦେଖି କଳେଶର ନିଶ୍ୱାସ ଅଟକି ଗଲା । ଝଲ ଗୋଲ ଚେହେରା, ଛାତିରେ ଭିଡ଼ି ଲୁଗା ପିନ୍ଧିଛି । ତାର ଭଙ୍ଗିମା ଦେଖି କଳେଶ ବୁଝି ପାରିଲା ନାହିଁ ଯେ କିଭଳି ନ୍ୟାଯ୍ କରାଯିବ । ପୁରୋହିତ ଆଯ୍ୟା ଶାସ୍ତ୍ରୀ ଶାସ୍ତ୍ରରୁ ଶ୍ଳୋକ ପଢ଼ି ଶଶୁର ଯେ ପିତା ସମାନ ଏବଂ ଶଶୁର ସାଙ୍ଗରେ ଅବୈଧ ପ୍ରଣଯ୍ ଯେ କେତେ ଗର୍ହିତ କାମ ତାହା ବୁଝାଇବାକୁ ଲାଗିଲେ । ଅନ୍ନା ହୋଇସ୍ ମଧ୍ୟ ଶାସ୍ତ୍ର ଜ୍ଞାନ ବଖାଣିବା ପାଇଁ ସୁଯୋଗ ପାଇଗଲେ । ସର୍ବରାକାର ଚେନ୍ନିଗରାଯ୍ ପଞ୍ଚାଯ୍ତ ଭିତରେ ବସି ମୁହଁରେ ରଖିଥିବା ଗୁଣ୍ଡିଚୂନର ସ୍ୱାଦ ଆଖିବୁଜି ଉପଭୋଗ କରୁଥିଲେ । ନରସୀ ନିଜ ବୟାନରେ ଯାହା କହିଲା ସେଥିରେ ଦୁଇ ପୁରୋହିତ ଏବଂ ପଞ୍ଚାଯ୍ତଙ୍କର ଆଖି ଖୋସି ହୋଇଗଲା । ତାର ସ୍ୱାମୀ ରାଗି ଚିତ୍କାର କରି ଉଠିଲା - "ଏ ଦୋଚାରୁଣୀ ସାଙ୍ଗରେ ମୁଁ ଆଉ ରହିପାରିବି ନାହିଁ ।"

ପ୍ରକୃତରେ ନରସୀର କହିବା କଥା ହେଲା ଯେ ତାର ସ୍ୱାମୀ ତାକୁ ପ୍ରକୃତ ବୈବାହିକ ସୁଖ ଦେଇ

Digitized by srujanika@gmail.com

ପାରୁନାହିଁ । ଏବଂ ସେଥିପାଇଁ ସେ ବାଧ୍ୟ ହୋଇ ଶରୀର କ୍ଷୁଧା ମେଣ୍ଟାଇବା ପାଇଁ ଅନ୍ୟ ପନ୍ଥା ଖୋଜୁଛି । ବିଚାରପତି କଲ୍ଲେଶ କିଛି ସମୟ ଦମ୍ ମାରି ନିଷ୍ପତ୍ତି ଶୁଣାଇଲେ - "ସ୍ୱାମୀ ଗିରିଆ ସେଠୀ ଯେତେବେଳେ ତା ସ୍ତ୍ରୀ ପାଖରେ ରହିବ ନାହିଁ ବୋଲି କହୁଛି ସେତେବେଳେ ତା ଇଚ୍ଛା ବିରୁଦ୍ଧରେ ତାକୁ ତା ସ୍ତ୍ରୀପାଖରେ ରହିବାକୁ ବାଧ୍ୟ କରିବା ଠିକ୍ ହେବ ନାହିଁ । ବାକି ଶଶୁର ଏବଂ ବୋହୂର ଅବୈଧ ସଂପର୍କ ବିଷୟରେ ଏହା ପ୍ରମାଣ କରାଇବା କଷ୍ଟକର ଯେ କିଏ ସତ କହୁଛି ଏବଂ କିଏ ମିଛ କହୁଛି । ତେଣୁ ମୋ ମତରେ ଶଶୁର ଓ ବୋହୂର ଅଲଗା ଅଲଗା ଘରେ ରହିବା ଦରକାର । ଶଶୁର ବୋହୂପାଇଁ ଗୋଟିଏ ଘର ତୋଳି ଦେଉ । ବାକି ବାପ ପୁଅ ଯେପରି ରହିବା ପାଇଁ ଚାହୁଁଛନ୍ତି ରହନ୍ତୁ ।"

ଏପ୍ରକାର ନ୍ୟାୟର ଧାର୍ମିକ ବାଖ୍ୟା ଇତ୍ୟାଦି କେହି ବୁଝିପାରିଲେ ନାହିଁ । ଶିବଗୌଡ଼ ପଚାରିଲା - "ଏ କେଉଁ ଗାଁର ନ୍ୟାୟ ।" ରେବଣ ସେଠୀ ନରସୀ ଆଡ଼କୁ ଚାହିଁକହିଲା - "କଲ୍ଲେଶଙ୍କୁ ଆମେ ସଭାପତି କରିଥିଲେ, ସେ ଯାହା ନ୍ୟାୟ କଲେ, ତାକୁ କେହି ବିରୋଧ କରି ପାରିବେ ନାହିଁ । ନରସୀ ତୁ ମଧ୍ୟ ମାନିବାକୁ ପଡ଼ିବ ।"ନରସୀ ମୁଣ୍ଡ ହଲାଇ ସ୍ୱୀକାର କଲା । ଆଉ କିଛି କଥା କେହି ଉଠାଇବା ଆଗରୁ ରେବଣ ସେଠୀ ଏବଂ କଲ୍ଲେଶ ଉଠି ପଡ଼ିଲେ । ପଞ୍ଚାୟତ ଭଙ୍ଗ ହେଲା । ଘରକୁ ଫେରି ଚେନ୍ନିଗରାୟ ଶଙ୍କାକୁ ପଚାରିଲା - "ଘଟଣାଟା ଠିକ୍‌ଭାବେ ବୁଝି ହେଲାନି ।" "ବୁଝି ହେଲାନି ନା ! ଭଲ ହୋଇଛି । ସେଥିଲାଗି ତ ତୁମକୁ ସଭାପତି କଲେ ନାହିଁ । ତୁମକୁ କଣ ମିଳିବ ସେଥିରୁ ?"

ଚେନ୍ନିଗରାୟ ଗୁଣ୍ଡିପତ୍ର ପୁଣି ପାଟିରେ ପକାଇଲା ।

**2**

ରେବଣ ସେଠୀ ତାସ ଖେଳିବାକୁ କୋଡ଼ିହଳ୍ଳୀ ଗାଁକୁ ଯାଏ । ସେ ଗାଁ ମୁଖିଆ ଚିକ୍କେଗୌଡ଼ର ଘର ସାମନା ମଣ୍ଡପରେ ତାସ ପାଳି ଜମେ ।  ଚିକ୍କେଗୌଡ଼ ରେବଣସେଠୀ ଛଡ଼ା କମ୍ବନକେର ଗାଁର ଲିମ୍ବଗୌଡ଼, ତାଡ଼ି ଠିକାଦାର; ଚିନ୍ନା ସ୍ୱାମୀ ଏବଂ ଚମଡ଼ା ବେପାରୀ ହସ୍ୱାଦସାବି ମଧ୍ୟ ଆସନ୍ତି । ଦିନେ ରେବଣ ସେଠୀ ଚିକ୍କେଗୌଡ଼କୁ ପଚାଶଟଙ୍କା ଉଧାର ମାଗିବାରୁ ସେ କହିଲା - "କେତେଥର ନେଲଣି ମନେ ଅଛିତ ? ଏବେ ମୋ ପାଖରେ କିଛି ଟଙ୍କା ନାହିଁ ।" ଉଧାର ଦେଲେ ଚିକ୍କେଗୌଡ଼ରହିଁ ଲାଭ ହୁଅନ୍ତା କାରଣ ଜୁଆ ଖେଳରେ ସେଥିରୁ କିଛି ଅଂଶ ତା ଭାଗରେ ତ ପଡ଼ନ୍ତା । ଚିକ୍କେଗୌଡ଼ ପାଖରେ ହ୍ୟାଣ୍ଡନୋଟ୍ କାଗଜ ଏବଂ ରେଭିନ୍ୟୁ ଷ୍ଟାମ୍ପ ଇତ୍ୟାଦି ଥାଏ । ତେଣୁ ସଙ୍ଗେ ସଙ୍ଗେ କାଗଜରେ ପଚାଶଟଙ୍କା ଉଧାର ଲେଖାଇ ବର୍ଷିକର ଅଗ୍ରୀମ ସୁଧ ଛଅ ଟଙ୍କା କାଟି ଚଉରାଳିଶ ଟଙ୍କା ରେବଣ ସେଠୀକୁ ଦେଇଦେଲା । ଟଙ୍କା ଚକ ରେବଣ ସେଠୀର ପକେଟକୁ ନ ଯାଇ ତାସ ପାଳିରେ ଲାଗିଗଲା ।

Digitized by srujanika@gmail.com

ପାଖରେ ମାତ୍ର ସେତିକି ଟଙ୍କା ଥିବାରୁ ତିନି ପତି ଖେଳ ନଖେଳି ବାଜିକୁ ଏକ ଟଙ୍କା ହିସାବରେ 'ଟ୍ୱେଣ୍ଟିଏଇଟ୍' ଖେଳ ଖେଳିଲେ । ସେଦିନ ଆଉ କେହି ଖେଳିବାକୁ ଆସି ନଥିବାରୁ ଚିକ୍କେଗୌଡ଼ ସାଙ୍ଗରେ ଖେଳିଲା ଏବଂ ସଂଧ୍ୟା ଛଅଟା ବେଳକୁ ଚଉରାଳିଶ ଟଙ୍କା ଯାକ ଚିକ୍କେଗୌଡ଼ ପାଖରେ ପହଞ୍ଚିସାରିଥିଲା । ରେବଣ ସେଠୀ ଜିଦ୍ ଧରିଥାଏ ଯେ ଟଙ୍କାତକ ପୁଣି ଜିତିବ । ପୁଣିଥରେ ହ୍ୟାଣ୍ଡନୋଟ୍ ଲେଖି ଆଉ ଚଉରାଳିଶ ଟଙ୍କା ଧାର ନେଇ ଖେଳି ବସିଲା । ରାତି ଏଗାରଟା ବେଳକୁ ଟଙ୍କାତକ ହାରି ଗାଁ ଆଡ଼କୁ ମୁହାଁଇଲା ।

ଗାଁରେ ତାର ସ୍ତ୍ରୀ ପାଞ୍ଚଟି ଛୁଆଙ୍କୁ ଧରି ସେତେବେଳକୁ ଶୋଇଯାଇଥିଲା । କବାଟ ବାଡ଼େଇ ସ୍ତ୍ରୀକୁ ଉଠାଇଲା ଏବଂ ଖାଇବାକୁ ମାଗିଲା । ଥଣ୍ଡାଥଣ୍ଡା ଭାତ ତରକାରୀ ଦେଖି ଗର୍ଜି ଉଠିଲା - "ଗରମ କରିନୁ କାହିଁ କି ?"

"ଗରମ କରାହୋଇଥିଲା, ତୁମେ ଆସିବାର ଡେରି ହେବାରୁ ପୁଣି ଥଣ୍ଡା ହୋଇ ଗଲାଣି ।"

"ଆଲୋ ତୁ କିଏ ମୋ ଆସିବା ଯିବା ଉପରେ କଥା କହିବାକୁ ?"

ଥଣ୍ଡାଭାତ ଖାଇବାକୁ ଚେଷ୍ଟାକରି ଖାଇ ନପାରିବାରୁ କହିଲା -"ଗରମ କରି ଶୀଘ୍ର ଆଣ ।" କାନ୍ଦୁଣୁ ମାନ୍ଦୁଣୁ ହୋଇ ତା ସ୍ତ୍ରୀ କହିଲା -"ମୁଁ ଆଉ ପାରିବିନି ଏହାକୁ ହିଁ ଖାଇଦିଅ ।" ସ୍ତ୍ରୀକୁ ଗୋଟାଏ ଗୋଇଠା ମାରି ସେତକ କଷ୍ଟେ ମଷ୍ଟେ ଗିଳି ଖଟରେ ଶୋଇଗଲା ।

3

ଖଜଣା ଅସୁଲ ସମୟରେ ସାଧାରଣତଃ ଗାଁ ମୁଖିଆର ଉପସ୍ଥିତିରେ ସବୁ କାମ ହୁଏ । ଶିବଗୌଡ଼ ରାମସନ୍ଦ୍ର ଗାଁର ମୁଖିଆ ହୋଇଥିବାରୁ ସେଥିରୁ ଯାହା ଖଜଣା ମିଳେ ସବୁ ନିଜେ ନେଇଯାଏ । ସେ କହେ ଖଜଣା ଆଦାୟ ମୁଖିଆର କାମ । ମୁଖିଆ କଥା ଅନୁସାରେ ସର୍ବରାକାରର କାମ କେବଳ ହିସାବ ଲେଖିବା କଥା । ଶିବଗୌଡ଼ ସାଙ୍ଗରେ କିଏ ବା ଯୁକ୍ତି କରିବ ? ତେଣୁ ଏ ପ୍ରଥା ଆଜିଯାଏଁ ଚାଲିଆସୁଥାଏ । ଖଜଣାତକ ସେ ନେଉଥିବାରୁ ଚେନ୍ନିଗରାୟକୁ ସେଥିରୁ ପାହୁଲାଏ ମଧ୍ୟ ମିଳେ ନାହିଁ । ତାଛଡ଼ା ଗାଁରେ ବିକ୍ରୀ, ରେଜେଷ୍ଟ୍ରି ଏବଂ ଦଲିଲ ତିଆରି ପାଇଁ ଚେନ୍ନିଗରାୟ ପାଖକୁ କେହି ଆସୁ ନଥିଲେ । ସମସ୍ତେ ପୂର୍ବତନ ସର୍ବରାକାର ଶିବଲିଙ୍ଗ ପାଖକୁ ଆସୁଥିଲେ । ଚେନ୍ନିଗରାୟକୁ ମଧ୍ୟ ଏସବୁ ଲେଖାପଢ଼ା ଆସେନାହିଁ । ସବୁ ଲେଖାପଢ଼ା ନଞ୍ଜମ୍ମା କରେ । ଚେନ୍ନିଗରାୟ କେବଳ ଦସ୍ତଖତ କରେ । ରେଜେଷ୍ଟ୍ରି କାଗଜ ଇତ୍ୟାଦି ନଞ୍ଜମ୍ମା ହାତରେ ଖୁବ୍ ଭଲ ଲେଖି ହୁଏ । କିନ୍ତୁ ଲୋକଙ୍କର ଧାରଣା ଥାଏ

Digitized by srujanika@gmail.com

ଯେ ସରକାରୀ କାଗଜ ପତ୍ର ସ୍ତ୍ରୀ ଲୋକ ହାତରେ ଲେଖାଇଲେ ଅମଙ୍ଗଳ ହେବ । ତେଣୁ ରାମଚନ୍ଦ୍ର ଗାଁରୁ ସର୍ବରାକାର ଚେନ୍ନିଗରାୟୁଙ୍କୁ କିଛି ଟଙ୍କା ମିଳେ ନାହିଁ ।

କିନ୍ତୁ କୁରୁବରହେଲ୍ଲୀ ଗାଁର ଲୋକେ ଠିକ୍ ଠିକ ହିସାବରେ ଖଜଣା ଦେଉଥିଲେ । ସେ ଗାଁର ମୁଖିଆ ଗୁଣ୍ଡଗୌଡ଼ ଆଦାୟ ଦିନ ଚେନ୍ନିଗରାୟ ସାଙ୍ଗରେ ରହି ଖଜଣା ଅସୁଲ କରାଇ ଦିଅନ୍ତି । ସେ ନିଜେ ମଧ୍ୟ ଏ ବାବଦକୁ ଦି'ଟଙ୍କା ଦିଅନ୍ତି । ଏଗାଁରୁ ଚାଳିଶଟଙ୍କା ଖଣ୍ଡେ ଆମଦାନୀ ହୁଏ । ଏହାଛଡା ଗୁଣ୍ଡଗୌଡ଼ କହିଥିଲେ ଯେ ରବିଫସଲ ଉଠିଲା ପରେ କିଛି ମାଣ୍ଡିଆ ଓ ବିରି ନଞ୍ଜମ୍ମାକୁ ଦେବେ । ସେ ଏହା ନିୟମିତ ଭାବେ ଦେଉଥିଲେ । ଏଗାଁର ମଧ୍ୟ ଜମିଜମା ରେଜିଷ୍ଟ୍ରି କାମ ବହୁତ କମ୍ ହେଉଥିଲା । ତେଣୁ ଆମଦାନୀ ବିଶେଷ ଅଧିକା ନଥିଲା ।

ଏହାଙ୍କ ଇଲାକାରେ ଥିବା ଲିଙ୍ଗାପୁର ଗାଁରେ ତିରିଶି ଘର ଲୋକ, ଏଗାଁରେ ପୂର୍ବେ ସମସ୍ତେ ଖର୍ଚ୍ଚି ଥିଲେ । ଶିବଗୌଡ଼ର ଏଗାଁରେ ବନ୍ଧୁ ବାନ୍ଧବ ରହନ୍ତି । ସେଥିପାଇଁ ଏଠି ମଧ୍ୟ ଶିବଗୌଡ଼ କଥାରେ ପଡ଼ି ଲୋକେ ସର୍ବରାକାରଙ୍କୁ ଉପୁରି କିଛି ଦିଅନ୍ତି ନାହିଁ । ସେ ଗାଁର ମୁଖିଆ ପୁରଦପପା ମଧ୍ୟ ଖଜଣାତକ ନିଜେ ଅସୁଲ କରୁଥାଏ । ଚେନ୍ନିଗରାୟର ବାପା ଥିଲାବେଳେ ଏହି ଗାଁର ପ୍ରତ୍ୟେକ ଘରୁ ତାଙ୍କୁ ଉପୁରି ଟଙ୍କାଏ ଲେଖାଏଁ ମିଳୁଥିଲା । ଏବେ କିନ୍ତୁ ଏଗାଁରୁ ଆମଦାନୀ କିଛି ନଥିଲା ।

ଏବେ ଖଜଣା ଆଦାୟ ପାଇଁ ନଞ୍ଜମ୍ମା କୁରୁବରହେଲ୍ଲୀ ଯାଏ । ଅନ୍ୟ ଦି ଗାଁରେ ଗାଁ ମୁଖିଆ ଆଦାୟ କରନ୍ତି । ହିସାବ କିତାବ ସେ ଘରେ ବସି ଲେଖାଲେଖି କରେ । ବିଲବାଡ଼ି ମପାମପି କାମ ଚେନ୍ନିଗରାୟ ଯାଇ କରେ । ଯଦି କୌଣସି ହିସାବ ବୁଝି ନହୁଏ ତେବେ ନଞ୍ଜମ୍ମା ତିମଲାପୁର ର ହାବରସୟାଙ୍କ ପାଖରେ ପଚାରିଥାଏ । ହିସାବ ଲେଖା ପରେ ଜମା ପାଇଁ ଚେନ୍ନିଗରାୟ କୋଟ୍, ଟୋପି ଏବଂ ଜୋତା ପିନ୍ଧି କଚେରୀକୁ ଯାଏ । ସେଠାରେ ହେଡ୍ କିରାନୀ ଆଗରେ ହାତ ଯୋଡ଼ ହାତ ଥରେ । ଲାଞ୍ଚ ଦେଇ ଅଫିସରଙ୍କ ଦସ୍ତଖତ କରାଇ ଗାଁକୁ ଫେରିଲା ବେଳକୁ ଛାତି ଫୁଲାଇ ଚାଲେ । ଗାଁକୁ କୌଣସି ଅଫିସର ଗସ୍ତରେ ଆସିଲେ ନଞ୍ଜମ୍ମା ଘରେ ରଖିଥିବା ଘିଅ ଓ ପୁରୁଣା ଚାଉଳର ଭାତ କରି ଖାଇବାକୁ ଦିଏ ଏବଂ ହାକିମଙ୍କ ଆଗରେ ବିନତି କରି କହେ,"ମହାଶୟ ଆମେ ଗରିବ ଲୋକ । ଯଦି ହିସାବରେ କିଛି ଭୁଲଭାଲ ଥାଏ ଦୟାକରି ବୁଝାଇ ଦେଉଥିବେ ।" କିନ୍ତୁ ହାକିମଙ୍କୁ ଏକଥା ଜାଣିବାକୁ ଦେଉନଥିଲା ଯେ ସେ ନିଜେ ହିସାବ ଲେଖେ ନାହିଁ ।

କାଗଜପତ୍ର ହିସାବ ସମ୍ଭାଳିବା ଛଡ଼ା ସ୍ୱାମୀଙ୍କୁ ସମ୍ଭାଳିବା ନଞ୍ଜମ୍ମାର ଆଉ ଏକ ବଡ଼ କାମ । ବର୍ଷଯାକ ପରିଶ୍ରମ କରି ହିସାବ ଲେଖି କାଗଜପତ୍ର ଦେଇ ସ୍ୱାମୀଙ୍କୁ ତିପଟୁର ପଠାଇଲା ଯେ ସିଆଡୁ ପନ୍ଦର ଦିନ ପର୍ଯ୍ୟନ୍ତ ଚେନ୍ନିଗରାୟ ଫେରିଲା ନାହିଁ । ଫେରିଲାପରେ ପଚାରିବାରୁ ପାଞ୍ଚଟି ଟଙ୍କା ବଳିଛି ବୋଲି କହିଲା । ସେତକ ମଧ୍ୟ ନଞ୍ଜମ୍ମାକୁ ନଦେଇ ଟିଣ ବାକ୍ସ ଭିତରେ ରଖି ତାଲା ପକାଇ ଚାବି ନିଜ ପଇତାରେ ବାନ୍ଧି ରଖିଲା । ସବୁ ହାକିମ ହୁକୁମାଙ୍କୁ ଆଗରୁ ଠିକ ହୋଇଥିବା ମୁତାବକ ଲାଞ୍ଚ

Digitized by srujanika@gmail.com

ଦେଇପାରିଲା ପରେ ମଧ୍ୟ ବାର୍ଷିକ ଆୟୁରୁ ଅତିକମ୍‌ରେ ଶହେ ଟଙ୍କା ବଳିବା କଥା । ସେଥିରୁ ଗୁଣ୍ଡଗୌଡ଼ର ପଚାଶଟଙ୍କା କାଟିଦେଲେ ବାକି ପଚାଶଟଙ୍କା ଘରକୁ ଫେରିଆସିବା କଥା । ଟଙ୍କା ଗଲା କୁଆଡ଼େ । ପଚାରିବାରୁ ଚେନ୍ନିଗା କହିଲା - "ସବୁଦିନ ରୁଟି, ଡାଲି, ଚଟଣି ଖାଇଖାଇ ମତେ ଅରୁଚି ଧରି ଆସିଥିଲା । ତେଣୁ ପନ୍ଦରଦିନ ବଡ଼ ଆରାମରେ ଦୋଷା, ବରା, ମିଠାଇ, ମହୀଶୁରପାକ ଆଦି ଖାଇ ରହିଲି ।"

"ତମେ ତ ଖାଇଲ, କିନ୍ତୁ ପିଲେ ମିଠେଇ କଣ ଏପର୍ଯ୍ୟନ୍ତ ଜାଣିଲେ ନାହିଁ । ତମ ମନ କିପରି ମାନିଲା ଏପରି ଖର୍ଚ୍ଚ କରିବାକୁ ।"

ଚେନ୍ନିଗା ଆଉ କିଛି ଉତ୍ତର ଦେଇ ନପାରି ମନକୁ ମନ ଗୁଡ଼ାଏ ଗାଳି ବକି ମହାଦେବସ୍ୱାମୀ ରହୁଥିବା ମନ୍ଦିର ଆଡ଼େ ଚାଲିଲା ।

ଏବେ ବର୍ଷ ଯାକର ଖର୍ଚ୍ଚ ଚଳେ କିପରି ? ତୃତୀୟ ସନ୍ତାନ ବିଶ୍ୱ ଆଠମାସର ହୋଇଗଲାଣି । ଏଣେ ଗର୍ଭରେ ଦୁଇତିନି ମାସ । ବାର୍ଷିକ ଆୟକୁ ଆଶାଥିଲା ଯେ ସେତକ ଗଲା । ଏବେ ଲୋକ ଉପବାସରେ ମରିବା କଥା । ସରକାରଙ୍କୁ ଯଦି ପ୍ରାର୍ଥନା କରାଯାଏ ଯେ ବାର୍ଷିକ ଆୟ ତାକୁ ଦିଆଯାଉ ତେବେ କଣ କହିବେ କେଜାଣି ? ଆଉ ଉପାୟ ବା କଣ ? ଦୁଇଦିନ ପର୍ଯ୍ୟନ୍ତ ଭାବି ଭାବି ମୁଣ୍ଡକୁ ଗୋଟିଏ ବୁଦ୍ଧି ଦିଶିଲା ।

ତାପର ଦିନ ସକାଳୁ ଉଠି ଗାଧୋଇ ପାଧୋଇ, ପିଲାଙ୍କୁ ସପାଳୁଗା ପିନ୍ଧାଇ ଖୁଆଇ ଦେଇ ପାର୍ବତୀ ଓ ରାମନ୍ନାକୁ ଚନ୍ଦ୍ରୀ ସାହିର ପୁଟ୍ଟବ୍ବା ପାଖରେ ଛାଡ଼ି ବିଶ୍ୱକୁ କାଖରେ ଧରି କୁରୁବରହଲ୍ଳୀରେ ଯାଇ ପହଞ୍ଚିଲା । ଗୁଣ୍ଡଗୌଡ଼ଙ୍କ ଘରେ ଯାଇ ଦେଖିଲାବେଳକୁ ଭିତର ଅଗଣାରେ ଗଙ୍ଗାମ୍ମା ବସିଛି । ତା ସାମନାରେ ଗୌଡ଼ର ସ୍ତ୍ରୀ, ଗଙ୍ଗାମ୍ମା ବିଛାଇଥିବା ଶାଢ଼ୀରେ କ'ଣ ମାପି ରଖୁଛି । ଗୌଡ଼ କାନ୍ଥକୁ ଆଉଜି ପାନ ଚାଲୁଥିଲେ । ବଡ଼ବୋହୁକୁ ସେଇଠି ଦେଖି ଗଙ୍ଗାମ୍ମା ରାଗି ଉଠି କହିଲା - "ମୁଁ ତ ଭିକମାଗି ପେଟ ପୋଷୁଛି । ସେଥିରେ ମଧ୍ୟ ବାଧା ଦେବାକୁ ଆସିଛୁ, ପୋଡ଼ା ମୁହିଁ ।"ନଞ୍ଜମ୍ମା କିଛି ନ କହି ଚୁପ୍ ରହିଥାଏ । ଗୁଣ୍ଡଗୌଡ଼ ତାକୁ ଡାକି ବସିବାକୁ ଆସନ ଦେଲେ । ଗଙ୍ଗାମ୍ମା ଶାଢ଼ୀରେ ମାଣ୍ଡିଆ ତକ ବାନ୍ଧି ଉଠିଲା ।

ସେ ଯିବାପରେ ଗୌଡ଼ର ସ୍ତ୍ରୀ କହିଲା - "ତୁମ ଶାଶୁ ତୁମ ନାଁରେ କେତେକଣ ଯେ କହିଗଲେ । କହୁଥିଲେ ଯେ ତୁମେ ତାଙ୍କୁ ଦେଖି ସହିପାରୁନ । ସ୍ୱାମୀକୁ ଆଙ୍ଗୁଠି ଅଗରେ ନଚାଉଛ ଏବଂ ପୁରୁଷଙ୍କ ଭଳିଆ ରାସ୍ତା ଘାଟରେ ବୁଲୁଛ । ହଁ ଆଉ କଣ କହୁଥିଲେ ତ ଯେ ସର୍ବରାକାର କାମର ଅଧିକାର ତମକୁ ଦେବେ ନାହିଁ ।" "ହଁ କହିଲେ କହୁ । ତୁମେ ଚୁପ୍ ରହ ।" ଏକଥା ସ୍ତ୍ରୀକୁ କହି ଗୌଡ଼ ନଞ୍ଜମ୍ମାକୁ ଆସିବାର କାରଣ ପଚାରିଲେ, ଏବଂ କହିଲେ - "ବାର୍ଷିକ ଆୟ ମାନିଲା ତ ?"

Digitized by srujanika@gmail.com

"ସେଇ କଥା କହିବା ପାଇଁ ଆସିଛି ।" ନକ୍ଷିମ୍ମା ସ୍ୱାମୀଙ୍କର ସବୁ କଥା ବର୍ଣ୍ଣନା କଲା । "ତା ପିଠିରେ ଗୋଟେ ଦିଟା ବସିଲେ ଯାଇ ସେ ମଣିଷ ହେବ ।" "ବାର୍ଷିକ ଆୟ ଟଙ୍କା ତକ ଯଦି ତାଙ୍କ ହାତରେ ନପଡ଼େ ତାହାହେଲେ ଭଲ ହୁଅନ୍ତା ।"

"ତା ବୋଲି କଣ ସରକାର ଟଙ୍କା ତକ ତୁମ ହାତରେ ଦେବେ ?"

"ସେ କଥା ନୁହେଁ । ସବୁଟଙ୍କା ମିଶି ଶହେ କୋଡ଼ିଏ ଟଙ୍କା ହେବା କଥା । ସେଥିରୁ ଖଜଣା ଦାଖଲ ବେଳକୁ ହାକିମ ହୁକୁମାଙ୍କୁ ଲାଞ୍ଚଦେବାରେ ପନ୍ଦର ଟଙ୍କା ଯାଏ । ବାକିଥିବା ଶହେ ଟଙ୍କାରୁ ଆଗବର୍ଷ ଯେପରି କରିଥିଲେ ଏବେଠୁ ସ୍ୱାମୀଙ୍କଠାରୁ ରସିଦ୍ ଲେଖାଇ ନିଅନ୍ତୁ, ଯେ ଟଙ୍କା ଆଗରୁ ପାଇଯାଇଛନ୍ତି । ଅଶୀଟଙ୍କା ଆପଣଙ୍କର ଖଜଣା ଏବଂ ବାକି କୋଡ଼ିଏ ଟଙ୍କା ଆଉ କାହାପାଇଁ ଲେଖାଇ ନିଅନ୍ତୁ । ସେ ଟଙ୍କାଟା ଖଜଣା ଦାଖଲ ସମୟରେ ଆମ ହିସାବକୁ ଦେଖାଇ ଦେବା । ଏପରି କଲେ ତାଙ୍କ ହାତରେ ଟଙ୍କା ପଡ଼ିବ ନାହିଁ । ସେଇ ଟଙ୍କାରୁ ମୁଁ କେବଳ ମାଗିଲା ବେଳେ ମାଣ୍ଡିଆ, ଧାନ ଏବଂ ଦିଟାରି ଟଙ୍କା ଲେଖାଏଁ ମଝିରେ ମଝିରେ ଦେଉଥିବେ ।"

"ଆଚ୍ଛା ଆଚ୍ଛା ବୁଝିଗଲି । ତୁମ ମୁଣ୍ଡରେ କେତେ ବୁଦ୍ଧି ଭଉଣୀ । ଏଭଳି ଅକର୍ମାକୁ ଯିଏ ଶାସନ କରିପାରିବ ସିଏ ମହିଶୁର ରାଜ୍ୟ ମଧ୍ୟ ଶାସନ କରିପାରିବ । କାଲି ବା ପହରି ଭିତରେ ତୁମ ଗା'କୁ ଯାଇ ମୁଁ ଏ ରସିଦ୍ ଲେଖାଇ ଆଣିବି ।"

ମହିର ବେଳାରେ ରୋଷେଇକରି ଖାଇବା ପାଇଁ ଗୌଡ଼ର ସ୍ତ୍ରୀ ବହୁତ କହିଲେ । କିନ୍ତୁ ପିଲାଙ୍କୁ ଘରେ ଛାଡ଼ି ଆସିଛି ବୋଲି କହି ନକ୍ଷିମ୍ମା ବାହାରି ଆସିଲା । ଦିଟା ନଡ଼ିଆ ଓ କିଛି ଗୁଡ଼ ଗୌଡ଼ଙ୍କ ଘରୁ ଶାଢ଼ୀରେ ବାନ୍ଧିଲା । ଗିଲାସେ ଦୁଧରେ ଗୁଡ଼ ମିଶାଇ ସାନ ପୁଅକୁ ପିଆଇଲା ଏବଂ ନିଜେ କିଛି ପିଇ ଗାଁକୁ ଫେରିଆସିଲା ।

ଏଣେ ଘରେ ଚେନ୍ନିଗରାୟ ଟିକିଏ ପଚାରିଲାନି ଯେ ଏପର୍ଯ୍ୟନ୍ତ ସ୍ତ୍ରୀ କୁଆଡ଼େ ଯାଇଥିଲା । କିନ୍ତୁ ଖାଇବାକୁ ରନ୍ଧା ହୋଇ ନଥିବାରୁ ରାଗିଗଲା । ନକ୍ଷିମ୍ମା ଲୁଗା କାନିରେ କଣ ବନ୍ଧା ହୋଇଛି ଦେଖି ତାକୁ ଫିଟାଇ ସେମିତି ଠିଆଠିଆରେ ନଡ଼ିଆ ଦିଖଣ୍ଡ ଏବଂ ଗୁଡ଼ତକ ଖାଇଗଲା । ତନ୍ତ୍ରୀ ସାହିରୁ ପୁଅଝିଅଙ୍କୁ ଘରକୁ ଆଣି ଆସିଲା ବେଳକୁ ଦୁଇଟିଯାକ ନଡ଼ିଆ ଶେଷକରି ମୁହଁ ହାତ ଧୋଇ ବସିଛି । ତାପରେ ଗୁଣ୍ଡଗୌଡ଼ ଆସି ପହଞ୍ଚିଲେ । ତାଙ୍କ କହିବା ପ୍ରକାରେ ନକ୍ଷିମ୍ମା ସ୍ୱାମୀ ଆଗରେ ରସିଦ୍ କାଗଜ ଏବଂ କଲମ ରଖି ଦେଲା । ଗୁଣ୍ଡଗୌଡ଼ କହିଲେ- "ତୁମ ସ୍ତ୍ରୀ ଯେପରି କହୁଛନ୍ତି ସେହିପରି ସେ କାଗଜରେ ଲେଖ ।" ଅଧା ଲେଖିସାରି ଚେନ୍ନିଗରାୟ ବୁଝିଯାଇ କହିଲା - "ମୁଁ ଲେଖିବି ନାହିଁ । ମୋ ହାତରେ କିଛି ଟଙ୍କା ପଡ଼ିବ ନାହିଁ ।" ଗୌଡ଼ କହିଲେ - "କଣ ଏପରି ବୋକାଙ୍କ ଭଳି କହୁଛୁ ? ଚୁପଚାପ ଲେଖୁଛୁ ନା ନାହିଁ ।" ତଥାପି ଚେନ୍ନିଗା ନ ଲେଖିବାରୁ ଗୌଡ଼ କହିଲେ - "ଆରେ ଲେଖୁଛୁ ନା ନାହିଁ ମ ? ମୋ ଗାଁକୁ ଆସିଲେ ଗୋଡ଼ ନ ଭାଙ୍ଗି ଦେଇଛି ତ ମୋ ନାଁ ନାହିଁ ।"

Digitized by srujanika@gmail.com

"ମୋ ହାତ ଖର୍ଚ୍ଚ ପାଇଁ ଟଙ୍କା କିଏ ଦେବ ?" ଟିକିଏ ଡ଼ରିଯାଇ କହିଲା ।

"ମୁଁ ଦେବି, ତୁ ଲେଖ ।"

ସେ ଯାହାହେଉ ବାର୍ଷିକ ଆୟ ଶହେ ଟଙ୍କା ପାଇଁ ରସିଦ୍ ଲେଖାଇ ଦସ୍ତଖତ କରାଇନେଲେ ।

"ତାହା ହେଲେ ମୋତେ କିଛି ଟଙ୍କା ଦିଅନ୍ତୁ ।"

ଗୁଣ୍ଡଗୌଡ଼ ଅଣ୍ଟାରେ ଖୋସା ହୋଇଥିବା ଦି ଟଙ୍କା କାଢ଼ି ତା ଆଡ଼କୁ ଫିଙ୍ଗିଦେଲେ । କହିଲେ - "ହେଇଟି ନେ ବୁଙ୍ଗୀ ଟିକସ ବାବଦକୁ ଆଜିଠୁ ନେଇଯା ।"

ତତ୍ପର ହୋଇ ସର୍ବରାକାର ମହାଶୟ ଟଙ୍କା ଦୁଇଟି ଅଣ୍ଟାରେ ବାନ୍ଧିଲେ । ଗୁଣ୍ଡଗୌଡ଼ ତାଙ୍କ ଗାଁକୁ ଫେରିଲେ । ତାପର ଦିନ ଶୁକ୍ରବାର ସକାଳୁ ଜଳଖିଆ କରି ଚେନ୍ନିଗରାୟ କମ୍ବନକେରେ ହାଟକୁ ଚାଲିଲା । ସେ ଜାଣିଥିଲା ଯେ ତିପଟୁର ହୋଟେଲବାଲାମାନେ ପ୍ରତି ସପ୍ତାହରେ କମ୍ବନକେରେ ହାଟରେ ହୋଟେଲ ପକାନ୍ତି । ସେଠାରେ ସବୁପ୍ରକାର ସୁସ୍ୱାଦୁ ଜିନିଷ ମିଳେ ।

4

ନଞ୍ଜମ୍ମା ବର୍ତ୍ତମାନ ଜାଣିପାରିଲା ଯେ ଖାଲି ବାର୍ଷିକ ଖଜଣାରୁ ଯାହା ମିଳୁଛି ସେତିକିରେ ଘର ଚଳିବ ନାହିଁ । ଜମି ବାଡ଼ିତକ ତ ଯାଇଛି । ତିମିଲାପୁରରେ ସେ ଦେଖିଥିଲା ଯେ ଗାଁର ସ୍ତ୍ରୀଲୋକମାନେ ପଳାଶପତ୍ରର ଚଉପଦୀ ତିଆରି କରି ପଇସା ରୋଜଗାର କରୁଥିଲେ । ସେ ବୁଝିପାରିଥିଲା ଯେ ତିପଟୁରର ଦୋକାନୀମାନେ ଶହେ ଚଉପଦୀକୁ ଛଅଅଣା କରି କିଣୁଥିଲେ । ତେଣୁ ସେ ଭାବିଲା ଯେ ଘରକାମ ସାଙ୍ଗରେ ମଝିରେ ମଝିରେ ଶହେ, ପଚାଶ ଚଉପଦୀ ତିଆରି କଲେ କିଛି କିଛି ପଇସା ମିଳନ୍ତା ।

ଗାଁ ଠାରୁ ତିନିମାଇଲ ଦୂରରେ ନଈ କୂଳେ କୂଳେ ପଳାଶ ବଣ । ସେ ନଈଟି ତା ବାପଘରର ରାସ୍ତାରେ ପଡ଼େ । ସେ ବର୍ଷ ଫଗୁଣ ମାସରେ ନୂଆପତ୍ର କଅଁଳିବା ଆରମ୍ଭ ହେଲା । ଦିନେ ପତ୍ର ତୋଳିବା ପାଇଁ ନଞ୍ଜମ୍ମା ବାହାରିଲା । ମାଇପି ଲୋକ ଏକୁଟିଆ ଏତେ ବାଟକୁ ଯିବାକୁ କାଳେ ଡର ଲାଗିବ, ତେଣୁ ସ୍ୱାମୀକୁ ସାଙ୍ଗରେ ଯିବାପାଇଁ କହିଲା । ସେ ବା କାହିଁକି ଶୁଣିବ । ସେ କହିଲା - "ଘର ଚଳାଇବା ତୋ କାମ, ତୁ ସେ ସବୁ କର । ମୋର ସମୟ ନାହିଁ ।" ତାପରଦିନ ଚନ୍ନୀ ସାହିର ପୁଟ୍ଟବ୍‌ବାକୁ ସାଙ୍ଗରେ ଧରି ସକାଳୁ ପତ୍ର ତୋଳି ବାହାରି ପଡ଼ିଲା । ପିଲାକୁ ପଡ଼ୋଶୀ ଘରେ ଛାଡ଼ି ଦେଇଥିଲା । ପୁଟ୍ଟବ୍‌ବାକୁ ଦିନକୁ ତିନିଅଣା ମଜୁରୀ ମିଳେ । ଦିଜଣଯାକ ବଡ଼ି ସକାଳୁ ଯାଇ ପତ୍ର ତୋଳି ବସ୍ତାରେ ପୁରାଇ ରଖନ୍ତି । ଦିପହର ବେଳକୁ ସାଙ୍ଗରେ ନେଇଥିବା ରୁଟି ଖାଇ, ନଈରୁ ପାଣି ପିଇ ପୁଣି

Digitized by srujanika@gmail.com

ପତ୍ର ତୋଳାରେ ଲାଗି ଯାଆନ୍ତି । ତା ପରେ ବସ୍ତାଟିକୁ ବନ୍ଧା ବନ୍ଦି କରି ମୁଣ୍ଡରେ ଲଦି ବେଗେ ବେଗେ ପାଦ ପକାଇ ଗାଁକୁ ଫେରନ୍ତି । ଘରେ ମୋଟା ଛୁଞ୍ଚିରେ ସୂତା ପୁରାଇ ପାର୍ବତୀକୁ ଦେଲେ ସେ ପତ୍ର ଗୁଡ଼ିକର ଡେମ୍ଫରେ ସୂତା ପୁରାଇ ମାଳ କରି ରଖେ । ସେତେବେଳକୁ ନଷ୍ଟିମା ରନ୍ଧାରନ୍ଧି ସାରିଦିଏ । ଖାଇଲା ସମୟକୁ ଘରର ମାଲିକ ଆସନ୍ତି । ତାଙ୍କୁ ବଡ଼ ପଳାଶପତ୍ରରେ ଭାତ ଖାଇବାକୁ ଖୁବ୍ ଭଲ ଲାଗେ । ଖାଇସାରି ଆରାମରେ ନିଦ ଯାଆନ୍ତି । ନଷ୍ଟିମା ଖାଇସାରି ବାସନ ମାଜେ ଏବଂ ତା ପରେ ପତ୍ରକୁ ମାଳକରି ଗୁନ୍ଥେ । ତାପରଦିନ ସକାଳୁ ପତ୍ରତୋଳା ବେଳେ ସାଙ୍ଗରେ ଖାଇବାକୁ ନେବାପାଇଁ ଓ ପିଲାଙ୍କ ଖାଇବା ପାଇଁ ରାନ୍ଧିବା ଦରକାର । ତେଣୁ ବଡ଼ି ସକାଳୁ ଉଠିବାକୁ ପଡ଼େ ।

ପ୍ରଥମ ବର୍ଷାରେ ପତ୍ର କଟା ହୋଇଯିବା ପୂର୍ବରୁ ଦେଢ଼ଶହ ବିଡ଼ା ପତ୍ର ତିଆରି କରି ଦେଇଥିଲା । ବିଡ଼ାକୁ ଛଅଅଣା ହିସାବରେ ପାଞ୍ଚସ୍ତୁରୀ ଟଙ୍କା ମିଳିବ । କିନ୍ତୁ ଏ ସବୁ ଚଉପଦୀ କରିବା ପାଇଁ ହେଲେ ବର୍ଷସାରା ଲାଗିଲାଗି ହାତରେ ବିଣ୍ଡି ପକାଇବାକୁ ପଡ଼ିବ । ପରିଶ୍ରମ ନକଲେ ପଇସା ମିଳିବ ବା କେଉଁଠୁ ? ପତ୍ର ଜମା କଲାବେଳକୁ ଖଜଣା ଅସୁଲ ସମୟ ଆସି ପହଞ୍ଚିଲା । ସେତେବେଳକୁ ତାର ଗର୍ଭ ଛଅମାସ ହୋଇଯାଇଥାଏ । ଖଜଣା ଅସୁଲ ପାଇଁ ମନ ଖୁସିରେ ଚେନ୍ନିଗା କୁରୁବରହଳ୍ଳୀ ପହଞ୍ଚିଲା । ଆଦାୟପରେ ସବୁତକ ଟଙ୍କା ଗୁଣ୍ଡଗୌଡ଼ ନିଜେ ରଖି ଚେନ୍ନିଗା ହାତରେ ପାଞ୍ଚଟଙ୍କା ଧରାଇ ଦେଇ କହିଲେ - "ତୁମର ଘରେ ଦରକାର ବେଳେ ଟଙ୍କା ଦିଆଯିବ । ଏବେ ଏତକ ନେଇଯାଅ ।" ଚେନ୍ନିଗା ତାଙ୍କ ଆଡ଼େ କଟମଟ କରି ଚାହିଁଲା ସତେ ଯେପରି ଗିଳି ଦେବ । କିନ୍ତୁ କିଛି କହି ନପାରି ଗାଁକୁ ଫେରିଲା । ଗାଁରେ ଗୁଣ୍ଡଗୌଡ଼ ଓ ନଷ୍ଟିମା ଭିତରେ ଗୁପ୍ତ ସମ୍ପର୍କ ଅଛି ଏପରି ଅଶ୍ଳୀଳ ଗାଳି ଗୁଲଜ କରି ଶାନ୍ତ ହେଲା । ହାତରେ ପାଞ୍ଚଟଙ୍କା ପଡ଼ିଛି ତେଣୁ ମନ ଉଡ଼ିଲା ତିପଟୁରର ସେଇ ପରିଚିତ ହୋଟେଲକୁ । ତା ଛଡ଼ା ବର୍ତ୍ତମାନ ସେଠାରେ ଚାଲିଥିବା ଥେଟର୍ ପାର୍ଟିକୁ । ନାଟକର ମନୋରମ ଦୃଶ୍ୟ ଦେଖି ରାତିରେ ବମ୍ବେଇ ବରା ଏବଂ ମହିଶୁରପାକ ମିଠାଇ ଖାଇବା କଳ୍ପନା କେତେ ମଧୁର । ତିପଟୁର ଯାଇ ଖଜଣା ଦାଖଲ କରାଇସାରି ହାତରେ ବଳିଲା ପାଞ୍ଚଟଙ୍କା ଏବଂ ଆଗର ପାଞ୍ଚଟଙ୍କା ମିଶାଇ ହେଲା ଦଶ । ଦଶଟା ଟଙ୍କାରେ ବା କେତେ ବର୍ଷ ହୋଟେଲରେ ରହି ଖାଇ ହେବ । ଶଳା ହୋଟେଲବାଲା ମଧ୍ୟତ ଭାରି ଦାମ କରିଛନ୍ତି । ଗୋଟେ ମିଠେଇକୁ ନଅ ପଇସା । ଆଉ ଟିକିଏ ଶସ୍ତା କଲେ କଣ ହୁଅନ୍ତା ନି ?

ରାମସନ୍ଦ୍ର ଗାଁରେ ଗୋଟିଏ ପ୍ରାଇମେରୀ ସ୍କୁଲ ଖୋଲିଲା । ସ୍କୁଲ ପାଇଁ ଘର ଦରକାର ପଡ଼ିବାରୁ ଗାଁ ମୁଖିଆ ସରକାରଙ୍କୁ ଖବର ଦେଲା ଯେ ହନୁମାନ ମନ୍ଦିରଟା ଉପଯୁକ୍ତ ସ୍ଥାନ । ଏହାର ଅର୍ଥ ହେଲା ଯେ ଗଙ୍ଗାମ୍ମା ଶୀଘ୍ର ହନୁମାନ ମନ୍ଦିର ଛାଡ଼ିବା ଦରକାର । ଗଙ୍ଗାମ୍ମା ଯେପରି ଏହା ଜାଣିଲା ଅଣ୍ଟା ଭିଡ଼ି ଶିବଗୌଡ଼ ଦୁଆରେ ହାଜର । ଅନ୍ଲାଜୋଇସ ତାକୁ ବୁଝାଇଲେ ଯେ ମନ୍ଦିରରେ ସ୍କୁଲ ହେବ ନାହିଁ । ତେଣୁ ଗଙ୍ଗାମ୍ମା ଟିକିଏ ନିଶ୍ଚିନ୍ତ ରହିଲା । ଶିବଗୌଡ଼ର ଗୋଟିଏ ଘର ଖାଲି ଥିଲା । ତାକୁ ସରକାର ବାର୍ଷିକ ତିନିଶହ ବାଷଠି ଟଙ୍କା ଭଡ଼ା ଦେଇ ସ୍କୁଲ କଲେ । ସୁରପ୍ପା ନାମରେ ଜଣେ ମାଷ୍ଟର୍ ନିଯୁକ୍ତ ହେଲେ । ଗାଁ ପିଲା କେତୋଟି ସ୍କୁଲରେ ନାଁ ଲେଖାଇଲେ । ବର୍ତ୍ତମାନ ଗାଁରେ ଚିନ୍ତା ପଡ଼ିଲା ଯେ ଥିଅ

Digitized by srujanika@gmail.com

ପିଲାଙ୍କୁ ସ୍କୁଲକୁ ପଠାଇବେ କି ନାହିଁ ? ମାଷ୍ଟ୍ରେ କହିଲେ - "ଆଜିକାଲି ଝିଅମାନେ ବହୁତ ଜାଗାରେ ଉଚ୍ଚଶିକ୍ଷା ଲାଭ କଲେଣି । ତେଣୁ କୌଣସି ଚିନ୍ତାର କାରଣ ନାହିଁ ।" ହେଲେ ଏ କଥା କେହି ଶୁଣିଲେ ନାହିଁ । ମାଷ୍ଟ୍ରେ ନଛିଆକୁ ଆସି ବୁଝାଇବାରୁ ସେ ପାର୍ବତୀର ନାମ ଲେଖାଇଲା । ଗାଁଟା ସାରା ଚହଳ ପଡ଼ିଗଲା;କେଡ଼େ ସାହସ ସେ ମାଇପି ଲୋକଟାର । ପାର୍ବତୀ ସାଙ୍ଗରେ ରାମନ୍ନା ମଧ୍ୟ ସ୍କୁଲକୁ ଗଲା ।

ଏଥର ମଧ୍ୟ ପୋଖତୀ ବେଳେ ସେବା କରିବା ପାଇଁ ବୁଢ଼ୀ ଅକ୍କମ୍ମା ଆସିଲା । ଝିଅଟା ଜନ୍ମ ହେବାର ଅଧଘଣ୍ଟା ଭିତରେ ମରିଗଲା । ବୁଢ଼ୀ କହିଲା ଗର୍ଭ ଅବସ୍ଥାରେ ପଲାଶପତ୍ର ବୋହି ଆଣି ଦେହକୁ କଷ୍ଟ ଦେଲୁ ସେଥିପାଇଁ ପିଲାଟା ମରିଗଲା । ନଛିଆ ଚୁପଚାପ୍ କାନ୍ଦୁଥାଏ । ବୁଢ଼ୀମା କେତେ ବୁଝାଇ ତାକୁ ତୁନି କରାଇଲା । ତେଣେ ଗଙ୍ଗାମ୍ମା ମନ୍ଦିରରେ ଥାଇ ଛୁତିକିଆର ନିୟମ ପାଳିଲା ସିନା କିନ୍ତୁ ଦିନେ ହେଲେ ଆସି ପଦେ ହେଲେ ସାନ୍ତ୍ୱନା ଦେଲା ନାହିଁ । ତିନିମାସ ପର୍ଯ୍ୟନ୍ତ ବୁଢ଼ୀ ଅକ୍କମ୍ମା ସେଠାରେ ରହି ସେବା କଲା । ଗାଁକୁ ଫେରିବାର ଦିନେ ଆଗରୁ ନାତୁଣୀକୁ ବୁଢ଼ୀ କହିଲା - "ସ୍ୱାମୀର ଗୁଣ ତ ଜାଣିଛୁ ? ପିଲାଙ୍କ ମୁହଁକୁ ତ ଚାହୁଁ ନାହିଁ । ନିଜ ପେଟ ଛଡ଼ା ଦୁନିଆର କିଛି ଜାଣେ ନାହିଁ । ମୋ କଥା ମାନ ତାକୁ ତୁ ଆଉ ତୋ ଶେଜ ପାଖରେ ପୂରାନା ।" ନଛି କିଛି କହିଲା ନାହିଁ । ବୁଢ଼ୀ ପୁଣି ବୁଝାଇବାରୁ ନଛିଆ କହିଲା - "ଏ ସବୁ ମୋର ଭାଗ୍ୟ । ମୁଁ ତ ଆଗରୁ ଏଭଳି କେତେ ଚେଷ୍ଟା କରିଛି କିନ୍ତୁ ସେ କଣ ମାନିବା ଜନ୍ତୁ ?"

ତାପରଦିନ ବୁଢ଼ୀକୁ ଶାଢ଼ୀ ଖଣ୍ଡେ ପିନ୍ଧାଇ ଶଗଡ଼ ଗାଡ଼ିରେ ବସାଇ ଗାଁକୁ ପଠାଇଲା ।

## 5

ଦିନେ ଦିପହରେ ରେବଣସେଠୀର ସ୍ତ୍ରୀ ଆସି ନଛିଆକୁ ପଚାରିଲା,"ଭଉଣୀ ଦୁଇଦିନ ହେଲା ଘରେ କିଛି ଖାଇବାକୁ ନାହିଁ । ଦିସେର ମାଣ୍ଡିଆ ବୁନା ଦେଇଥାଅ ।"

"ବୁନା ତ ନାହିଁ ମାଣ୍ଡିଆ ନେଇଯାଅ ।" କହି ନଛିଆ ସେଠାଆଣିକୁ ବସିବାକୁ ଆସନ ଦେଲା । ଦୁଇସେର ମାଣ୍ଡିଆ ବି ଦେଲା । ସେଇଦିନ ସନ୍ଧ୍ୟାବେଳକୁ ସେଠାଆଣି ପୁଣି ଆସିଲା । ସେତେବେଳକୁ ନଛିଆ ପଲାଶପତ୍ରର ଚଉପଦୀ ସିଲେଇ କରୁଥିଲା । ପାଖରେ ବସି ସେଠାଆଣି କହିଲା - "ତୁମଘରୁ ମାଣ୍ଡିଆ ନେବାରେ ମୋ ପିଲା ଖାଇଲେ , ଦୁଇଦିନ ହେଲା ଉପବାସରେ ଥିଲୁ ।"

"ଏମିତି କିପରି ହେଲା । ତୁମର ଜମିବାଡ଼ି ଅଛି । ତୁମେ ଯଦି ଏପରି କହିବ ଆମେ କଣ କରିବୁ ?"

Digitized by srujanika@gmail.com

"ତୁମେ କଣ ସତରେ କିଛି ଜାଣିନାହିଁ ?"

"ହଁ କିଛି କିଛି ଶୁଣିଛି । କିନ୍ତୁ ମୁଁ ଜାଣି ନଥିଲି ଯେ ତୁମେ ଉପବାସରେ ମଧ୍ୟ ରହୁଛ ।"

"ଆମଭାଗ୍ୟ ସେପରି କରାଉଛି ।" କହୁ କହୁ ସେଠାଆଣିର ଆଖିରୁ ଲୁହଧାର ଗଡ଼ିଗଲା । ଗୋଟି ଗୋଟି କଥା ସେ ତାକୁ କହିଗଲା ।

ରେବଣସେଠୀ କୋହ୍‌ଡିହ୍ନଳା ଗାଁରେ ଯାଇ ଜୁଆ ଖେଳେ । ଜୁଆରେ ହାରି ତିନିହଜାର ଟଙ୍କାର ହ୍ୟାଣ୍ଡନୋଟ୍ ଲେଖି ଦେଇଥିଲା । ତା ବଦଳରେ ସବୁଯାକ ଜମି ଚିକ୍କେଗୌଡ଼ ପାଖରେ ରଖି ଦେଇଥିଲା । ଦିନେ ଗଣ୍ଡଗୋଳ ହେବାରୁ ତିପଟୁର ଯାଇ ଜମିବାଡ଼ି ତକ ଚିକ୍କେଗୌଡ଼ ନାଁରେ ରେଜେଷ୍ଟ୍ରି କରାଇ ଆସିଲା । ପାଖରେ ଆଉ କେବଳ ଦେଢ଼ ଏକର ଜମି । ସେ ପୁଣି ଢିପ ଜମିଯେ ପାଣି ନବୁହାଇଲେ କିଛି ଫଳିବ ନାହିଁ । ଚିକ୍କଣ ବେଶ ପିନ୍ଧି ଜୁଆ ଖେଳିବା ଲୋକ ରେବଣସେଠୀ କଣ ଯାଇ ଖେତରେ ହଳ କରିବ ଯେ ସାରା ପରିବାର ପୋଷି ହେବେ ? ଜମିତକ ଭାଗରେ ଦେଇ ସେଥିରୁ ଶଗଡ଼େ ଧାନ ମିଳେ । ସେତକ ଜମି ମଧ୍ୟ ଏବେ କୁଆଡ଼େ ବନ୍ଧାରଖି ଆଠଶହ ଟଙ୍କା ଆଣିଛି ।

ନଞ୍ଜମ୍ମା ପଚାରିଲା – "ହଠାତ୍ କଣ ଏମିତି ଦରକାର ପଡ଼ିଲା ? କଣ ଝିଅର ବିଭାଘର ଠିକ୍ କରିଦେଲ କି ?"

"ତାଙ୍କ ମୁଣ୍ଡରେ ସିନା ଚିନ୍ତା ପଶିଲେ ହୁଅନ୍ତା । ଘରେ ଝିଅ ଆସି ବିଭା ଯୋଗ୍ୟ ହେଲାଣି । ସେ ଯେଉଁ ଶଶୁର ସାଙ୍ଗରେ ଭାବ କରିବାବାଲି ମାଇକିନା ମୁଣ୍ଡିଆ ତଳେ ଦୋକାନଟିଏ କରିଛି । ଲୋକେ କହୁଛନ୍ତି ଆମର ସିଏ ଆଠଶହ ଟଙ୍କା ନେଇ ଦୋକାନ କରିବା ପାଇଁ ତାକୁ ଦେଇଛନ୍ତି । ବାକି ରହିଲା ପଚାଶଟା ନଡ଼ିଆ ଗଛ, ସେତକ ମଧ୍ୟ ନଡ଼ିଆ ପାକଳ ହେବା ପୂର୍ବରୁ ବିକ୍ରୀ କରିଦିଆଯାଉଛି । ନହେଲେ, ସଫା ଧୋତି, କାମିଜ, ବିଡ଼ି, ସିଗାରେଟ୍‌ପାଇଁ ଖର୍ଚ୍ଚ ଆସିବ କେଉଁଠୁ ?"

ନରସୀ ଆଜିକାଲି ଗାଁ ଠାରୁ ଟିକିଏ ଦୂରରେ ତିନି ବଖରା ଘର କରି ଦୋକାନଟିଏ ଦେଇଛି । ତା କଥା ଗାଁରେ ସମସ୍ତେ ଜାଣନ୍ତି । ଶଶୁର ତ ଅପମାନିତ ହୋଇ ଗାଁ ଛାଡ଼ି ପଳାଇଲା । ସ୍ୱାମୀର ମଧ୍ୟ ପତ୍ତା ନାହିଁ । ସମସ୍ତେ କହୁଛନ୍ତି ଯେ କେଉଁଠି ଯାଇ ଚାକର କାମ କରୁଛି ।

ରେବଣସେଠୀକୁ ବୁଝାଇବ ବା କିଏ ? ତା ଶଶୁରଘର ଲୋକେ ଆସି ବହୁତ ସାହାଯ୍ୟ କଲେ କିନ୍ତୁ ସେମାନେ ବା କେତେଦିନ ଇଆର ଘର ଚଳାଇବେ ? ଦିନେ ବଡ଼ ଶଳା ଆସି ଅନେକ ବୁଝାଇବାରୁ ଇଆଢୁ ସିଆଢୁ ଏତେ ଗାଳି ଶୁଣିଲା ଯେ ଆଉ କେବେ ଏଘରେ ପାଦଦେବ ନାହିଁ ବୋଲି କହି ଚାଲିଗଲା ।

ସେଠାଆଣି ନଞ୍ଜମ୍ମାକୁ କହିଲା - "ପିଲାଙ୍କୁ ତ ଜନ୍ମ କରିଛି । ଯେମିତି ହେଲେ ମଣିଷ କରିବାକୁ

Digitized by srujanika@gmail.com

ପଡ଼ିବ । ତୁମେ ଟିକିଏ ପତ୍ର ଚଉପଦୀ କରିବା ଶିଖାଇ ଦିଅନ୍ତ ବୋଇଲେ ଭଲ ହୁଅନ୍ତା । ଏବର୍ଷ ଯେତେବେଳେ ପତ୍ର ତୋଳିବାକୁ ଯିବ ମତେ ନିଶ୍ଚୟ ଡାକିବ ।''

''ତୁମେ ଚଉପଦୀ କରି ବିକିଲେ ସେଠୀ କଣ କହିବେ ?''

''କହିଲେ କହିବେ । ଆଜି ତୁମଘରୁ ମାଣ୍ଡିଆ ନେଇ ଚକୁଳି ତିଆରି କରି ଦେଲି ଯେ କୁକୁର ଭଳି ପତ୍ର ଚାଟି ଖାଇଗଲେ । ପେଟ ପୋଡ଼ିଲେ ଆଉକଣ ଲାଜ ସରମ ଥାଏ ?''

ତାପର ଦିନଠାରୁ ସେଠାଆଣି ପ୍ରତିଦିନ କିଛି କିଛି ସମୟ ନଈଙ୍କା ପାଖରେ ବସି ଚଉପଦୀ ତିଆରି କରିବା ଶିଖିଲା । କିଛିଦିନ ଶିଖିବା ପରେ ତାକୁ ମଧ୍ୟ ଏ କାମ ଆସିଗଲା ।

## 6

ଦିନେ ଦିପହରେ ନଈଙ୍କା ଗାଁ ଦାଣ୍ଡରେ ଥିବା ସରକାରୀ କୂଅରୁ ପାଣି ଆଣିବାକୁ ଯାଇଥାଏ । ଦଉଡ଼ି ଛିଣ୍ଡି ଗରାଟି କୂଅରେ ପଡ଼ିଗଲା । ବର୍ତ୍ତମାନ ଘରେ ଆଉ ଗରା ନଥିଲା । ଗରାକଦାଳୀ କାଶୀବନ୍ଧୁଡ଼ିରୁ ଆସିଲେ ଯାଇ ବାହାର କରିବ । ମାଟି ମାଠିଆ ଆଣି ପାଣି କାଢ଼ିବାକୁ ତାକୁ ସଙ୍କୋଚ ଲାଗୁଥାଏ । ଏମିତି ଭାବି ଭାବି ଘରକୁ ଫେରି ଦେଖେ ତ ଭାଇ କଳେଶ ଆସି ବସିଛି ।ପିଲେ ମାମୁଁ ଆଣିଥିବା ଚକୋଲେଟ୍ ଖାଉଥିଲେ ।

''ତୁ ପରା ପାଣି ଆଣିବାକୁ ଯାଇଥିଲୁ ? ଖାଲି ହାତରେ କଣ ଆସୁଛୁ ?'' ଭାଇ ପଚାରିଲାରୁ ନଈଙ୍କା ଗରା କୂଅରେ ଖସିପଡ଼ିଥିବା କଥା କହିଲା ।''ଚାଲ ମୁଁ ବାହାର କରିଦେବି ।'' କହି କଳେଶ କୂଅ ମୂଳକୁ ଚାଲିଲା । ପିଲେ ମଧ୍ୟ କୂଅରେ ମାମୁଁ କିପରି ବୁଡ଼ିବ ଦେଖିବାକୁ ଚାଲିଲେ । ନଈଙ୍କା ଘରେ ତାଲା ପକାଇ ଗଲା ।

ସରକାରୀ କୂଅ ଦୁଇବର୍ଷ ହେଲା ଖୋଳାଯାଇଥାଏ । ଏକୂଅର ପାଣିଟା ମିଠା । ହରିଜନଙ୍କ ଛଡ଼ା ଅନ୍ୟ ସବୁ ଲୋକେ ଏହାରି ପାଣି ପିଉଥିଲେ । କଳେଶ ଦଉଡ଼ିଟିଏ କୂଅ ଉପର କାଠରେ ବାନ୍ଧି ଆରପଟଟା ତଳକୁ ପକାଇ, ଲୁଗା, କୁର୍ତ୍ତା ଫିଟାଇ, ଗାମୁଛା ପିନ୍ଧି ଦଉଡ଼ି ଧରି ଧରି କୂଅ ଭିତରକୁ ଓହ୍ଲାଇଲା । କୂଅର ପାଣି ଭାରି ଗଭୀର । ଭିତରେ ବୁଡ଼ି, ଗରାଟିଏ ଆଣି ଦଉଡ଼ିରେ ବାନ୍ଧିଦେଲା ଏବଂ ଉପରକୁ ଟାଣ ବୋଲି ପାଟିକଲା । ନଈଙ୍କା ଦଉଡ଼ି ଟାଣି ଉପରକୁ ଗରା ଆଣି ଦେଖେତ ସେଇଟା ତା' ଗରା ନୁହେଁ । କଳେଶ ତଳୁ ପାଟିକଲା - ''ସେଇଟା ତୋର ନହେଲେ ମଧ୍ୟ କାହାକୁ ଦେବୁନି ।

Digitized by srujanika@gmail.com

ରଖିଥା ମୁଁ ଉପରକୁ ଆସିଲା ପର୍ଯ୍ୟନ୍ତ ।'' ଆଉଥରେ କୂଅ ତଳକୁ ଡୁବ୍‌କି ମାରି ଆଉ ଗୋଟିଏ ଗରା ଧରି ଉପରକୁ ଆସିଲା । ଥରକୁ ଥର ବୁଡ଼ି ଦଶ ବାରଟା ଗରା ଉପରକୁ କାଢ଼ିଲା । କୂଅ ଉପରକୁ ଆସିଲା ବେଳକୁ କୋଡ଼ିଏ ଜଣ ଖଣ୍ଡେ ଲୋକ ଜମା ହୋଇଯାଇଛନ୍ତି । ଉପରକୁ ଆସି କଳେଶ ନଷ୍ଟିହାକୁ ତା ଗରା ଅଲଗା ରଖିବାକୁ କହି, ଜମା ହୋଇଥିବା ଲୋକଙ୍କୁ କହିଲା - ''ଯାର ଗରା ଏଭିତରେ ଅଛି ଆଠଅଣା ଲେଖାଏଁ ଦେଇ ନେଇ ଯାଅ । ନହେଲେ ମୁଁ ଏ ସବୁ ଆମ ଗାଁକୁ ନେଇଯିବି ।'' କେତେଜଣ ପଇସା ଆଣିବାକୁ ଘରକୁ ଗଲେ । ପୂର୍ବତନ ସର୍ବରାକାର ଶିବଲିଙ୍ଗ ଆସି କଳେଶକୁ ପଚାରିଲା - ''ଆମ ଗାଁର ସରକାରୀ କୂଅ ଭିତରେ ପଶି ଗରା ଗୁଡ଼ିକ କାଢ଼ିବାକୁ ତୁମକୁ କିଏ ଅଧିକାର ଦେଲା ?'' କଳେଶ ଉତ୍ତର ଦେଲା ଯେ - ''ଏମିତି କଥା ଯଦି ତେବେ କୂଅରେ ଗରାତକ ଆଉଥରେ ଫିଙ୍ଗିଦେବି । ମୁଁ କଣ ମାହାଳିଆ ନିଶ୍ୱାସ ବନ୍ଦକରି ଦୁଇ ପୁରୁଷ ପାଣିରେ ବୁଡ଼ି ଗରାତକ ବାହାର କରିଛି ?''

ଶିବଲିଙ୍ଗ ପାଖରେ ଏକଥାର ଉତ୍ତର ନଥିଲା । ସବୁ ପଇସା ମିଶି କଳେଶକୁ ଛଅଟଙ୍କା ଆଠଅଣା ମିଳିଲା ।

ନଷ୍ଟିହା ଭାବିଲା ଅନେକ ଦିନ ପରେ ଭାଇ ଆସିଛି, ଦିଚାରିଦିନ ରହିଯିବ । ଭାଇ ପାଇଁ ଭଲ ଭଲ ଜିନିଷ ରାନ୍ଧିବ । ସିମେଇଁ ଖିରୀ ପାଇଁ ଜିନିଷ ସବୁ କିଣି ଆଣିଲା । ଦିପହରେ ଶୋଇକରି ଉଠି କଳେଶ ପଚାରିଲା - ''ଏ ସବୁ କାହିଁକି ଆଣିଲୁ । ମୁଁ ଆଜି ସଞ୍ଜବେଳେ ଚାଲିଯିବି । ମୋ ପାଇଁ ଟିକିଏ କଫି ତିଆରି କରି ଦେ । ମୋର ଜରୁରୀ କାମ ଅଛି । ତତେ ଦେଖିବାକୁ ଆସିଥିଲି ।'' ସନ୍ଧ୍ୟାବେଳେ କଫି ପିଇ ମୁହଁ ଅନ୍ଧାରରେ କଳେଶ ବାହାରି ପଡ଼ିଲା । ସେ ତା ବାପା ଭଳି ଅନ୍ଧାରକୁ ମୋଟେ ଡରୁ ନଥିଲା ।

ସେ ଯିବା ପରେ ରେବଣସେଠୀର ସ୍ତ୍ରୀ ଆସି ନଷ୍ଟିହାକୁ କହିଲା - ''ଶୁଣିଲିଣି ଚୋଳେଶ୍ୱର ମୁଣ୍ଡିଆ ପାଖରେ ପଳାଶ ବଣରେ ସୁନାରଙ୍ଗର ପତ୍ର ସବୁ ଝଡ଼ିଛି, କାଳେ ପତ୍ର ବର୍ଷା ପଡ଼ିଲେ ଖରାପ ହୋଇଯିବ ସେଥିପାଇଁ ଶୀଘ୍ର ତୋଳିବା ପାଇଁ ଭାବି ନଷ୍ଟିହା ରାଜି ହୋଇଗଲା । ତାପରଦିନ କୁଆ ଡାକିବା ଆଗରୁ ଯିବାକୁ ସ୍ଥିର କରି ସେଠୀଆଣି ଘରକୁ ଚାଲିଗଲା । କାଲି ସେ ପ୍ରଥମ ଥର ପତ୍ର ତୋଳି ଯିବ ବୋଲି ରାତିରେ ତାକୁ ନିଦ ହେଲା ନାହିଁ । ପାହାନ୍ତାରୁ ଉଠି ବସ୍ତା ଏବଂ ଗୁଟି ପୁଡ଼ା ଧରି ନଷ୍ଟିହା ଘର କବାଟ ବାଡ଼େଇଲା । ନଷ୍ଟିହା ମଧ୍ୟ ବାହାରି ପଡ଼ିଲା । ଜହ୍ନ ଆଲୁଅ ପଡ଼ିଥାଏ । ଦୁଇଜଣ ଯାକ ଗାଁର ସୀମା ପାରହୋଇ ଜଙ୍ଗଲବାଟେ ଗଲାବେଳକୁ ଦେଖିଲେ ନରସୀ ଘରର ଦ୍ୱାର ଖୋଲା ହୋଇଛି । କିଛି ସମୟ ପରେ ଜଣେ ପୁରୁଷ ସେ ଘରୁ ବାହାରି ଚାଲିଗଲା । ନରସୀ ଭିତରୁ କବାଟ ବନ୍ଦ କରିଦେଲା । ନଷ୍ଟିହା ବୁଝିପାରିଲା ଯେ ଏ ପୁରୁଷଟି ତା ଭାଇ କଳେଶ । କଳେଶ କିନ୍ତୁ ତା ଭଉଣୀକୁ ଚିହ୍ନି ପାରିଲା ନାହିଁ । ସ୍ତ୍ରୀ ଲୋକ ଦୁଇଜଣଙ୍କୁ ଦେଖି କଳେଶ ଆଡ଼େଇ ହୋଇ ଚାଲିଗଲା । ନଷ୍ଟିହାର ପାଦ ଟିକିଏ ଥମିଗଲା । କିନ୍ତୁ ରେବଣସେଠୀର ସ୍ତ୍ରୀକୁ କିଛି ନ ଜଣାଇ ଚୁପ୍ ହୋଇ ରହିଲା । କଳେଶ ଦୃଷ୍ଟିରୁ ଅପସରି ଗଲାପରେ ସେଠୀଆଣି ପଚାରିଲା - ''ଇଏ ତ ତୁମ ଭାଇ ?''

''ନାଇଁ ମ ଆଉ କିଏ ହୋଇଥିବ ।''

Digitized by srujanika@gmail.com

"ନିଶ୍ଚୟ ସେଇ ହୋଇଥିବେ ! ଦଶପନ୍ଦର ଦିନରେ ଥରେ ଏ ବେଶ୍ୟା ପାଖକୁ ଆସୁଛନ୍ତି ବୋଲି ଶୁଣାଯାଉଛି । ରାତି ଅନ୍ଧାର ହେଲେ ଆସନ୍ତି । ପାହାନ୍ତିଆ ଆଗରୁ ଚାଲିଯାଆନ୍ତି । ନରସୀ ମଧ୍ୟ ଏ କଥା କେତେ ଲୋକଙ୍କ ଆଗରେ କହିଛି ।"

ନନ୍ଦିକା ଚୁପଚାପ ଚାଲିଥାଏ । ସତେ ଯେମିତି ସିଏ କିଛି ଶୁଣିନାହିଁ ।

Digitized by srujanika@gmail.com

# ନବମ ଅଧ୍ୟାୟ

## 1

ଗାଁର ହନୁମାନ ମନ୍ଦିରରେ ବର୍ତ୍ତମାନ ଗଙ୍ଗାମ୍ମା ରହିବାରୁ ମନ୍ଦିରଟା ହନୁମାନଙ୍କର କମ୍ ଏବଂ ଗଙ୍ଗାମ୍ମା ନାଁରେ ବେଶୀ ପରିଚିତ ହେବାକୁ ଲାଗିଲା । ଲୋକେ ବର୍ତ୍ତମାନ ତାହାକୁ ଗଙ୍ଗାମ୍ମାର ଘର ବୋଲି କହିବାକୁ ଆରମ୍ଭ କଲେ । ଗଙ୍ଗାମ୍ମା ଏବଂ ଅପନ୍ନା ପ୍ରାୟ ସବୁବେଳେ ଗାଁ ଭିତରେ ଆସି ବସିଥାନ୍ତି । ଶିବଗୌଡ଼ର ନାଁ ଆଖପାଖ ଗାଁ ଛଡ଼ା ଦୂର ଗାଁ ଲୋକମାନେ କେହି ଆଗରୁ ଜାଣିନଥିଲେ । କିନ୍ତୁ ବର୍ତ୍ତମାନ ଦଶକୋଶ ପର୍ଯ୍ୟନ୍ତ ସମସ୍ତେ ତାକୁ ଜାଣିଗଲେ। ମା ପୁଅ ଗାଁ ଗାଁ ବୁଲି ଭିକ ମାଗିବାକୁ ଗଲାବେଳେ "ଆମର ସବୁ ସମ୍ପତ୍ତି ଖାଇଗଲା ଏ ଖଣ୍ଡର ପୁଅ, ଧୋକାବାଜ ।" ଏପରି କହି ଭିକ୍ଷାମାଗନ୍ତି । ଲୋକେ ଦେଉଥିବା ମାଣ୍ଡିଆ ଚାଉଳ ଆଦି ବାନ୍ଧି ଗାଁକୁ ଆସନ୍ତି । ମହାଦେବୟ୍ୟା ମଧ୍ୟ ଭିକ୍ଷା ମାଗନ୍ତି । କିନ୍ତୁ ସେ ହେଲେ ଯୋଗୀ ଲୋକ । ଗେରୁଆ ବସ୍ତ୍ର ପିନ୍ଧି ସନ୍ୟାସୀ ଭଳିଆ ରହନ୍ତି । ଦ୍ୱାରଦ୍ୱାର ବୁଲିଗଲେ ଭିକ୍ଷା ଝୁଲି ଭର୍ତ୍ତି ହୋଇଯାଏ । କିନ୍ତୁ ଗଙ୍ଗାମ୍ମା ଦ୍ୱାରଦ୍ୱାର ବୁଲି ଶିବଗୌଡ଼ର ବଂଶନାଶର ମନ୍ତ୍ର ଜପେ । ଯିଏ ଭିକ୍ଷା ନ ଦିଅନ୍ତି ତାଙ୍କୁ ମଧ୍ୟ ଅଭିଶାପ ଶୁଣିବାକୁ ପଡ଼େ ।

ଏମିତି ଭିକ୍ଷା ମାଗିମାଗି ଘରେ ମାଣ୍ଡିଆ ଚାଉଳ ଇତ୍ୟାଦି ଜମା କରି ରଖିଥାଏ । ଦିନେ ଦିପହରେ ମନ୍ଦିର ଆଗରେ ଦୁଇଟା ଶଗଡ଼ ଗାଡ଼ି ଆସି ପହଞ୍ଚିଲା । ସେଥିରୁ ଗୋଟିଏ ତେଲି ଶିଙ୍ଗସେଠୀର ଏବଂ ଆଉ ଗୋଟିଏ ସୁକର୍ଣ୍ଣାର । ଦୁଇଟିଯାକ ଶଗଡରେ କଂସା ବାସନ, ଶୋଢ ବାକ୍ସ ଆଦି ଘର କରଣା ଜିନିଷମାନ ଲଦା ହୋଇଥାଏ । ତା ପଛେ ପଛେ ପଚାଶ ବର୍ଷର ଗୋଟିଏ ବୁଢ଼ୀ, ପଚିଶି ବର୍ଷର ଗୋଟିଏ ସ୍ତ୍ରୀ ଲୋକ, ସାତ ବର୍ଷର ଗୋଟିଏ ଝିଅ, ଚାରିବର୍ଷର ଗୋଟିଏ ପୁଅ ମଧ୍ୟ ଆସି ଠିଆ ହେଲେ । ଏମାନଙ୍କୁ ଦେଖି ଅପନ୍ନା ଚୋର ଭଳିଆ ମନ୍ଦିର ପଛପଟେ ବୁଦା ଭିତରେ ଲୁଚି ଲୁଚି ପଳାଇଲା । ସୁକର୍ଣ୍ଣା ଶଗଡ଼ ଗାଡ଼ିରୁ ଜିନିଷ ତଳକୁ ରଖିବାକୁ ଆରମ୍ଭ କଲା । ବୁଢ଼ୀ ମନ୍ଦିର ଉପରକୁ ଗଲା । ଗଙ୍ଗାମ୍ମା କିନ୍ତୁ ତାକୁ ଚିହ୍ନି ପାରିଲା ନାହିଁ । ବୁଢ଼ୀ କହିଲା - "ଆମ ଘର ନୁଗ୍ଗିକେରେ ଗାଁରେ । ମୋ ସ୍ୱାମୀ ମରିବାର ଦୁଇବର୍ଷ ହୋଇ ଗଲାଣି । ସାତୁ ଏବଂ ତା ଝିଅ ଓ ପୁଅ ତୁମ ପାଖରେ ରହିବାକୁ ଚାହିଁବାରୁ ନେଇ ଆସିଛି ।" ଗଙ୍ଗାମ୍ମାକୁ ଏସବୁ ବୁଝିବାକୁ କିଛି ସମୟ ଲାଗିଲା । ସାତୁ ପାଖରେ ଦୁଇଟା ଛୁଆକୁ ଦେଖି ଗଙ୍ଗାମ୍ମାର ଗାଳି ଆରମ୍ଭ ହୋଇଗଲା - "ଆଲୋ ଅଲକ୍ଷଣୀ ମୋ ଘରେତ ତୋର ଦୁଇଟା ଛୁଆ ଜନ୍ମହୋଇନଥିଲେ।ଏ ଆର ଛୁଆଟିର ବାପ କିଏ ?" ଆମ ବଂଶରେ କଳଙ୍କ

Digitized by srujanika@gmail.com

ଲଗାଇବାକୁ ତୁ ଏଠାକୁ ଆସିଛୁ ? ତତେ ପାନେ ଦେଉଛି ରହ ?''

''ଏପରି ଖରାପ କଥା ତୁଣ୍ଡରେ ଧରନ୍ତୁ ନାହିଁ । ଆପଣଙ୍କ ପୁଅ ଆମ ଗାଁକୁ ଆସିଥିଲା । ମୋ ଝିଅ ଏଭଳି ଚରିତ୍ରର ଝିଅ ନୁହେଁ । ତୁମ ପୁଅକୁ ପଚାରି ବୁଝ । ନାମକରଣ ବେଳେ ତୁମକୁ ଚିଠି ଲେଖିଥିଲି କାହିଁକି ଆସିଲ ନାହିଁ ?'' ସମୁଦୁଣୀର ପ୍ରଶ୍ନ ଗଙ୍ଗାମ୍ମା ନଶୁଣିଲା ପରି ଠିଆ ହୋଇଥାଏ ।

ସାତୁ ମନ୍ଦିର ବାହାରକୁ ଚାଲି ଆସିଲା । ପିଲାଦିଟା ଡ଼ରିଯାଇ ମା ପଛରେ ଠିଆହେଲେ । ସାତୁର ମା' ''ଏମିତିକା ମାଇକିନା ମୁଁ କେଉଁଠି ହେଲେ ଦେଖି ନାହିଁ '' କହି ମନ୍ଦିର ଭିତରୁ ବାହାରିଲେ । ସାତୁ କହିଲା - ''ମୋ ବଡ଼ ଭା ଅଲଗା ଘର କରି ରହିଛନ୍ତି । ତାଙ୍କ ସାଙ୍ଗରେ ଦେଖା ନକରି ଫେରି ଯିବାଟା ଠିକ୍ ହେବନାହିଁ । ଚାଲ ତାଙ୍କ ପାଖକୁ ଯିବା ।'' ମାଙ୍କ ମନକୁ ଏକଥାଟା ପାଇଲା । ଶଗଡ଼ିଆ ଗାଡ଼ି ବୁଲାଇ ନଞ୍ଜମ୍ମା ଘର ଆଗରେ ଆସି ସବୁ ଜିନିଷ ଓହ୍ଲାଇ ଦେଲା । ନଞ୍ଜମ୍ମା ଏମାନଙ୍କୁ ଆସିବାର କାରଣ ପଚାରିଲା ନାହିଁ । କାରଣ ସେ ମାଙ୍କ ପିନ୍ଧା ଲୁଗାରୁ ଜାଣି ପାରିଥିଲା ଯେ ତାଙ୍କ ସ୍ୱାମୀ ମରିଯାଇଛନ୍ତି । ତେଣୁ ଭାବିଲା ଏମାନେ କେତେ କଷ୍ଟ ସହିବେଣି । ଖାଇବା ପିଇବାକୁ ଦେଇସାରି ପଚାରିବା କଥା । ସମସ୍ତଙ୍କୁ ଭିତରକୁ ଡାକି ବସାଇଲା । ସାତୁର ସାନ ପୁଅଟାକୁ ଦେଖି ସେ ମଧ୍ୟ ଆଶ୍ଚର୍ଯ୍ୟ ହେଲା । କିନ୍ତୁ ନିଜ ପତିର ଔରସରୁ ଜନ୍ମ ନହୋଇଥିଲେ ସାତୁ ଏଠାକୁ ଆଣିବାକୁ କଣ ସାହସ କରିପାରିଥାନ୍ତା ? ସାତୁ କାନ୍ଦୁଥାଏ । ତା ମା' କହିଲେ - ''ଅପନ୍ନା ଦୁଇଥର ଆମଘରକୁ ଆସି ପନ୍ଦର ପନ୍ଦରଦିନ ରହି ଯାଇଥିଲା । ସେତିକିବେଳେ ସାନ ପିଲାଟା ପେଟରେ ରହିଲା - ଆଉ ଏଚଣ୍ଡାଳୁଣୀ ଏଡ଼େ ପାଟିକରି ମୋ ଝିଅର ଚରିତ୍ର ଖରାପ ବୋଲି ଗାଳିଦେଲା ।'' ''ଆଚ୍ଛା ଆପଣମାନେ ମୁହଁ ହାତ ଧୋଇ ଲୁଗାପଟା ବଦଳାନ୍ତୁ । ସାତୁର ବାପା ମରିବାର କେତେଦିନ ହେଲାଣି ?''

''ଦିବର୍ଷ ହୋଇଗଲାଣି । ସେ ଥିଲା ପର୍ଯ୍ୟନ୍ତ ଯଜମାନି ପୁରୋହିତରୁ ଯାହା ମିଳୁଥିଲା ଖୁସିରେ ଚଳୁଥିଲୁ । ତାଙ୍କପରେ ଆମେ ଅନାଥ ଭଳିଆ ହୋଇଯାଇଛୁ । ସ୍ତ୍ରୀ ସିନା ସ୍ୱାମୀ ପାଖରେ ରହନ୍ତା । ଅପନ୍ନାଯ୍ୟା କହିଥିଲା, 'ସୁବିଧା ଦେଖି ଆସି ନେଇଯିବି ।' ସେ ନଆସିବାରୁ ଆମକୁ ଆସିବାକୁ ପଡ଼ିଲା । ତିପଟୁର ଠାରୁ ଗାଡ଼ିରେ ବସି ଆସିଲୁ । ସେଠୁ ତୁମ ଗାଁରୁ ଏ ଶଗଡ଼ିଆଙ୍କୁ ଚାରି ଚାରି ପଇସା ଦେଇ ଜିନିଷତକ ଧରି ଆସି ଏଠାରେ ପହଞ୍ଚିଲୁ ।''

ନଞ୍ଜମ୍ମା ସାତୁକୁ ମୁହଁ ହାତ ଧୋଇବାକୁ କହୁଛି ଏତିକିବେଳେ ଗଙ୍ଗାମ୍ମାର ଗର୍ଜନ ଶୁଭିଲା - ''ଏ ଅଲକ୍ଷଣୀ ମାଇକିନାକୁ ଯୋତା ମାଡ଼ ଦେଇ ମୁଣ୍ଡବାଳ ଲଣ୍ଡାକରି ଗାଁରୁ ଯଦି ନ ତଡ଼ିଛି ତେବେ ମୋ ନାଁ ଗଙ୍ଗାମ୍ମା ନୁହଁ ।'' ଘର ଭିତରକୁ ଆସି ନଞ୍ଜମ୍ମାକୁ କହିଲା -''କିଲୋ ଛୋପରି ଦି'ଜା' ମିଶି ଏଠି କ'ଣ ବେଶ୍ୟା ପଡ଼ା ତିଆରି କରିବ ? ତତେ ମଧ୍ୟ ପାନେ ମଜା ଦରକାର ।'' ଏତିକି ବେଳକୁ ଆପ୍ୟାଶାସ୍ତ୍ରୀ, ଅନ୍ନାଜୋଇସ ମଧ୍ୟ ଆସି ପହଞ୍ଚିଲେ । ମିନିଟ୍‌କ ଭିତରେ ଶିବଲିଙ୍ଗ ଓ ଶିବଗୌଡ଼ ଆସି ପହଞ୍ଚିଲେ । ଆଉକିଛି

Digitized by srujanika@gmail.com

ସମୟପରେ ରେବଣସେଠୀ ଏବଂ ତା ସାଙ୍ଗରେ ଆଉ ପାଞ୍ଚ ଛଅ ଜଣ ଲୋକ ମଧ୍ୟ ଶାଶୁ ବୋହୁଙ୍କର ଏ ତମସା ଦେଖିବାକୁ ହାଜର ହୋଇଗଲେ । ଏଥିରେ ସନ୍ଦେହ ରହିଲା ନାହିଁ ଯେ ଗଙ୍ଗାମ୍ମା ଏମାନଙ୍କୁ ଡକାଇ ଆଣିଛି ।

ରାଗରେ ଅଗ୍ନିବାଣ ହୋଇ ନଞ୍ଜାମ୍ମା ପ୍ରଥମେ ଭାବିଲା ଯେ ପଚାରିବ - "ମୋ ଘରକୁ କେଉଁ ଅଧିକାରରେ ଆପଣମାନେ ଆସିଛନ୍ତି ?"କିନ୍ତୁ ଗାଁ ମୁଖିଆମାନଙ୍କ ସାଙ୍ଗରେ ଶତ୍ରୁତା କରିବା ଠିକ୍ ନୁହେଁ ବୋଲି ଭାବିଲା । କାହାକୁ ବସିବାକୁ କହିଲା ନାହିଁ କି ମଶିଣା ପକାଇଲା ନାହିଁ । ଚେନ୍ନିଗରାୟର ନିଦ ଭାଙ୍ଗିଲା ପରେ ସେ ମଶିଣା ଦୁଇଟା ଆଣି ପକାଇଲା । ପୁରୋହିତମାନେ ଅଲଗା ବସିଲେ । ସାତୁ ତା ପିଲାକୁ ଧରି ରୋଷେଇ ଘର ଭିତରକୁ ଚାଲିଗଲା । ଗଙ୍ଗାମ୍ମା ପାଟିକଲା - "ଭିତରକୁ କୁଆଡ଼େ ଯାଉଛୁ ଲୋ ପୋଡାମୁହିଁ । ପଞ୍ଚାୟତ ଆଗକୁ ଆସ ।" ରେବଣସେଠୀ ପଞ୍ଚାୟତ ପ୍ରତିନିଧି ହିସାବରେ କହିଲା - "ନ୍ୟାୟ କରିବାକୁ ହେବ । ଭଉଣୀ ତୁମେ ଏଠାକୁ ଆସ ।"

ରେବଣସେଠୀ ତା' ଘରକୁ ଆସି ଧର୍ମାତ୍ମା ହୋଇ ନ୍ୟାୟ ନିଷ୍ପତ୍ତି କଥା ଉଠାଇବା ନଞ୍ଜାମ୍ମା ସହିପାରିଲା ନାହିଁ । କିନ୍ତୁ ଏ ସମସ୍ତଙ୍କ ମୁହଁ କିପରି ବନ୍ଦ କରି ଘରୁ ତଡ଼ିବ ସେ କଥା ଭାବୁଥାଏ । ଗୋଟିଏ ଉପାୟ ମନକୁ ଆସିଲା । ଝିଅ ପାର୍ବତୀ ଏବଂ ରାମନ୍ନା ସେତିକି ବେଳକୁ ସ୍କୁଲରୁ ଫେରୁଥାନ୍ତି । ତାଙ୍କୁ ଦେଖି ନଞ୍ଜାମ୍ମା ଝିଅକୁ କହିଲା - "ପାର୍ବତୀ ତୁ ଶୀଘ୍ର ଯା ମନ୍ଦିରରୁ ମହାଦେବୟାଙ୍କୁ ଓ ତୁମ ସ୍କୁଲରୁ ମାଷ୍ଟ୍ରଙ୍କୁ ଡାକି ଆଣ ।" ପିଲା ଦୁଇଟା ଦୌଡ଼ି ଦୌଡ଼ି ଚାଲିଗଲେ ।

ରେବଣସେଠୀ ନଞ୍ଜାମ୍ମାକୁ ପଚାରିଲା - "କଣ ଭଉଣୀ ଆମର ନ୍ୟାୟ ତୁମର ପସନ୍ଦକୁ ଆସୁନାହିଁ କି ?" ନଞ୍ଜାମ୍ମା କିଛି ନ କହି ଘର ଭିତରକୁ ଚାଲିଗଲା । "ଭିତରକୁ ପଳାଉଛୁ କଣ ଲୋ ଓକିଲାଣୀ ।" ଗଙ୍ଗାମ୍ମାର ଏ ବ୍ୟଙ୍ଗ ଶୁଣି ମଧ୍ୟ ନଞ୍ଜାମ୍ମା ଘର ଭିତରୁ ବାହାରିଲା ନାହିଁ । ଅନ୍ନାଜୋଇସ ଏବଂ ଆୟାଶାସ୍ତ୍ରୀ ନିଜ ନିଜର ଶାସ୍ତ୍ରଜ୍ଞାନ ଦେଖାଇବା ପାଇଁ ପ୍ରସ୍ତୁତ ହେଉଥିଲେ । ଅନ୍ନାଜୋଇସ ମନ୍ତ୍ର ବୋଲିବା ଆରମ୍ଭ କଲେ ଏବଂ ତାର ବ୍ୟାଖ୍ୟା କରି କହିଲେ - "ମନୁ ଶାସ୍ତ୍ରରେ ଲେଖାଅଛି ଯେ ବ୍ୟଭିଚାରିଣୀ ସ୍ତ୍ରୀର ମୁଣ୍ଡକାଟ ହେବା ବିଧି । ଆହୁରି ମଧ୍ୟ ବେଦରେ ଲେଖାଅଛି ଯେ ହଜାରେ ସୁବର୍ଣ୍ଣ ମୁଦ୍ରା ଦେଇ ପ୍ରାୟଶ୍ଚିତ କରିବା ଉଚିତ୍ । ତେଣୁ ସେ ସ୍ତ୍ରୀ ପ୍ରାୟଶ୍ଚିତ କରିବା ପୂର୍ବରୁ ତାକୁ ଘରେ ପୁରାଇଥିବାରୁ ଏହା ନଞ୍ଜାମ୍ମାର ଭୁଲ୍ ।"

ଏତେବେଳକୁ ମହାଦେବୟା ଆସି ପହଞ୍ଚିଲେ । ଗଙ୍ଗାମ୍ମା ଗାଁ ସାରା ବୁଲି କହିବାରୁ, ବହୁତ ଲୋକ ଆସି ନଞ୍ଜାମ୍ମାର ଦୁଆରେ ଯାତ୍ରା ଗହଳି ପରି ରୁଣ୍ଡ ହୋଇଥାନ୍ତି । ଭିଡ଼ ଠେଲି ମହାଦେବୟା ଘରକୁ ଗଲେ । ତାଙ୍କର ଘଟଣାଟା ବୁଝିବା ଦରକାର ନଥିଲା । ତାଙ୍କୁ ଝରକା ବାଟେ ଦେଖି ନଞ୍ଜାମ୍ମା ବାହାରକୁ ଆସି ତାଙ୍କୁ କହିଲା - "ଆପଣ ତ ଧର୍ମ ଶାସ୍ତ୍ର କଥା ଜାଣନ୍ତି । ନ୍ୟାୟ କଲାବେଳେ ଆପଣ ପଚରା ପଚରି କରିବେ । ଆଉ କେହି ଯେପରି ଏଥିରେ ଗୋଡ଼ ନ ପୁରାନ୍ତି । ସାତୁ ଘର ଭିତରେ ବସିଛି ଏବଂ

Digitized by srujanika@gmail.com

ଏବେ ମଧ୍ୟ ଭଗବାନ୍‌ଙ୍କ ରାଣ ଖାଇ କହୁଛି ଯେ,"ଏ ଛୁଆଟା ଅପନ୍ନା ଔରସରୁ ହୋଇଛି ।"

ମହାଦେବଯ୍ୟା ଘଟଣାଟା ହୃଦୟଙ୍ଗମ କଲେ । କହିଲେ - "ଆଚ୍ଛା ଅପନ୍ନାଯ୍ୟାକୁ ଡକାଅ । ତାଠୁ ଶୁଣିବା ପରେ ଯାଇ ଯାହା ନ୍ୟାଯ୍ୟ କରାଯିବ ।"

"ମୋ ପୁଅର କିଛି ଦୋଷ ନାହିଁ । ସେ କଣ କେଉଁ ଦୋଟାଗୁଣୀର ପୁଅ ହୋଇଛି କି ଯେ ଏପରି କରିବ ।" ଗଙ୍ଗାମ୍ମା କହିଲା ।

"ପଚାରିବା ପରେ ଯାଇ ଦୋଷ କି ନାହିଁ ଜାଣିବା ସିନା । ସ୍ତ୍ରୀ ପାଖକୁ ସ୍ୱାମୀ ଗଲେ ସେଥିରେ ଦୋଷ ଆଉ କଣ ?" ଏପରି ବୁଝାଇ ଦୁଆରେ ଠିଆ ହୋଇଥିବା ଲୋକଙ୍କୁ କହିଲେ - "ଆରେ ଯିଏଟି ଅପନ୍ନା ଯେଉଁଠି ଥିବ ତାକୁ ଧରି ଆଣିବ ।" ଆଠ ଦଶ ଜଣ ଉତ୍ସୁକ ଦର୍ଶକ ଦୌଡ଼ି ଦୌଡ଼ି ଅପନ୍ନାକୁ ଖୋଜିବାକୁ ଗଲେ । ଏଣେ ଚର୍ଚ୍ଚା ଆରମ୍ଭ କରିବାକୁ ଉତ୍‌କଣ୍ଠିତ ପୁରୋହିତ ଦ୍ୱୟଙ୍କୁ ମହାଦେବଯ୍ୟା କହିଲେ - "ଆପଣମାନେ ଅପନ୍ନାଯ୍ୟା ନଆସିବା ପର୍ଯ୍ୟନ୍ତ କୌଣସି ଆଲୋଚନା କରି ପାରିବେ ନାହିଁ ।"

ପନ୍ଦର ମିନିଟ୍ ପରେ ଅପନ୍ନା ଆସିଲା । ଜଣାପଡ଼ିଲା ଯେ ବାପପୁଅ ସେଠାର ଗୁହ୍ମାଳରେ ଘାସ ବିଡ଼ା ପଛରେ ଲୁଚି ବସିଥିଲା । ଲୋକଙ୍କୁ ଦେଖି ଦୌଡ଼ି ପଳାଇବାକୁ ଚେଷ୍ଟା କରୁଥିଲା । କିନ୍ତୁ ଧରା ପଡ଼ି ଏଠାକୁ ଟଣା ହୋଇ ଆସିଲା । ମହାଦେବଯ୍ୟା ତାକୁ କିଛି ପଚାରିଲେ ନାହିଁ । ଘରେ ଭଗବାନ୍‌ଙ୍କ ଫଟୋ ଆଗରେ ଦୀପଟିଏ ଜାଳି ଦେବାପାଇଁ ନଞ୍ଜାମ୍ମାକୁ କହିଲେ । ନଞ୍ଜାମ୍ମା ରାମଚନ୍ଦ୍ରଙ୍କ ଫଟୋ ଆଗରେ ଦୀପ ଜାଳି ରଖିଲା । ସିନ୍ଦୁର ଟୋପାଏ ଆଣି ଅପନ୍ନାର କପାଳରେ ମହାଦେବଯ୍ୟା ଲଗାଇଦେଲେ । ତାପରେ ତା ହାତରେ ରାମଚନ୍ଦ୍ରଙ୍କ ଫଟୋ ଧରାଇ ପଚାରିଲେ - "ଦେଖ ବାବୁ, ମିଛ କହିଲେ ଭଗବାନ୍ ତୋର ହାତଗୋଡ଼ ଛୋଟା କରିଦେବେ । ମା'କାଳୀ ତୋତେ ଗୋଟା ଗିଳିଦେବେ । ଠିକ୍ କରି କହ ତୁ ତୋ ମା'କୁ ନକହି ଶଶୁର ଘରକୁ ଯିବା ଆସିବା କରୁଥିଲୁ କି ନାହିଁ ।" ଅପନ୍ନା ଚୁପ ରହିଥାଏ । ଗଙ୍ଗାମ୍ମା ପାଟିକଲା - "ମୋ ପୁଅକୁ କାହିଁକି ମିଛ ପ୍ରମାଣ କରାଉଛୁ ରେ ଯୋଗୀ ?" ନଶୁଣିଲା ପରି ମହାଦେବଯ୍ୟା ଅପନ୍ନାକୁ କହିଲେ - "ଆରେ ତୋତେ ଉତ୍ତର ଦେବାକୁ ପଡ଼ିବ । ସତ ନକହିଲେ ତୋ ହାତଗୋଡ଼ ବେମାର ହୋଇଯିବ । ସେଇ ଯେଉଁ ଦୀପ ଭଗବାନଙ୍କ ଆଗରେ ଜଳୁଛି ସେ ନିଆଁ ତୋତେ ଭସ୍ମ କରିଦେବ । ଶନି ମହାପ୍ରଭୁଙ୍କ କୋପ ତୁ ଜାଣିନୁ ପରା । ବିକ୍ରମ ରାଜାଙ୍କ ହାତ ଗୋଡ଼ କାଟି ମାଦନ୍ତ କରାଇ ଦେଇଥିଲେ । ପାଟି ଫିଟାଉନୁ ନା କଣ ?"

ଅପନ୍ନା ଭାରି ଭଯ୍ୟ କରିଗଲା । ଗାଁରେ ନାଟରେ ଶନିଙ୍କର ବିକ୍ରମ ରାଜାଙ୍କ ଉପରେ କୋପଦୃଷ୍ଟି ଦୃଶ୍ୟ ଦେଖିଥିଲା । ସେଇ କଥା ମନେ ପଡ଼ିବାରୁ ଥରି ଥରି କହିଲା - "ମିଛ ମୋଟେ କହୁନି । ମୁଁ ଦୁଇଥର ନୁଗ୍‌ଗୀକେରେ ଗାଁକୁ ଯାଇଥିଲି ।"

Digitized by srujanika@gmail.com

କେତେ ଦିନ ଲେଖାଏଁ ରହିଥିଲୁ ?''

''ଥରେ ପନ୍ଦର ଦିନ, ଆଉଥରେ କେତେ ଦିନ ମନେ ନାହିଁ ।''

''କେତେ ଦିନ ତଳେ ଏବେ ଯାଇଥିଲୁ ?''

''ଦ୍ୱିତୀୟଥର ପ୍ଲେଗ ମହାମାରୀ ଲାଗିଲା ବେଳେ ।''

ତା ମାନେ ତା ଯିବାର ଛଅବର୍ଷ ହୋଇଯାଇଥିଲା । ନଷ୍ଟଜ୍ମା ଘର ଭିତରୁ ସାବୁର ସାନପୁଅକୁ ଆଣି ବାହାରେ ଠିଆ କରାଇଲା । ପିଲାଟିକୁ ପ୍ରାୟ ପାଞ୍ଚବର୍ଷ ଏବଂ ଦେଖିବାକୁ ଠିକ ଅପନ୍ନାଯ୍ୟା ଭଳିଆ ଚେହେରା ।

''ଆରେ ହାରାମଜାଦା ମତେ ଠକି ତୁ ଏ କାମ କରିଛୁ । କାଲିଠୁ ତୁ ମୋ ଘରକୁ ଆସିପାରିବୁ ନାହିଁ । କେଉଁଠି ଥିଲୁରେ ରାଣ୍ଡର ପୁଅ ।''

ଗଙ୍ଗାମ୍ମା ଏତକ ଗାଳି ଶୁଣାଇ ଚାଲିଗଲା । ଦୁଇ ପୁରୋହିତ ଏବଂ ଦେଖଣାହାରୀ ଲୋକେ ମଧ୍ୟ ଆଉ ମଜା ନାହିଁ ବୋଲି ଜାଣି ଜଣେ ଜଣେ ହୋଇ ଖସିଗଲେ ।

2

ସେଇଦିନ ଗଙ୍ଗାମ୍ମା ପୁଅକୁ ସାଙ୍ଗରେ ଧରି ଭିକ ମାଗିବାକୁ ଅନ୍ୟ ଗାଁକୁ ଯିବାକୁ ବାହାରି ପଡ଼ିଲା । ମଝିରେ ମଝିରେ ମା ପୁଅ ଏପରି ଯାଆନ୍ତି । ତା ଛଡ଼ା ଅନ୍ନାଜୋଇସଙ୍କ ପାଖରେ ମନ୍ଦିରର ଆଉ ଗୋଟିଏ ଚାବିଥାଏ । ମନ୍ଦିର ଫିଟାଇ ପୂଜା ବିଧି କରିବାରେ କିଛି ଅସୁବିଧା ହୁଏ ନାହିଁ । ସାବୁ ତାର ପୁଅ ଝିଅକୁ ଧରି ବଡ଼ ଜା' ନଷ୍ଟଜ୍ମା ପାଖରେ ରହିଗଲା । ଏମାନଙ୍କର ଖାଇବା ପିଇବା ପାଇଁ ଘରେ ବିରି ମାଣ୍ଡିଆର ଅଭାବ ନଥିଲା । କିନ୍ତୁ ମାଣ୍ଡିଆ ଚକୁଳି ଖାଇ ଖାଇ ସେମାନଙ୍କର ପେଟ ଖରାପ ହେବା ଆରମ୍ଭ ହେଲା । ପ୍ରତିଦିନ ଭାତ ଡାଲି କରି ଖୁଆଇବା ପାଇଁ ନଷ୍ଟଜ୍ମାର ଶକ୍ତି ନଥାଏ । ପୂଜା ପର୍ବ ହେଲେ ମୋଟା ବଗଡ଼ା ଚାଉଳର ଭାତ ରାନ୍ଧେ । କିମ୍ବା ଗାଁକୁ କେହି ସରକାରୀ ଅଫିସର ଆସିଲେ ସରୁ ଚାଉଳର ଭାତ ଓ ହରଡ଼ ଡାଲି ପରଷେ । କିନ୍ତୁ ଆଉ କୌଣସି ଚାରା ନଥିବାରୁ ଓ କାଳେ ସାବୁ ନାରାଜ ହେବ ବୋଲି ଭାବି ଭାତ ଏବଂ ହରଡ଼ ଡାଲି ରାନ୍ଧି ଦେଲା । ଭାତ ରନ୍ଧା ଦେଖି ନଷ୍ଟଜ୍ମାର ମନ ଖୁସି ହୁଏ । ତାଛଡ଼ା ଚେନ୍ନିଗରାୟ କଣ ଛାଡ଼ିବା ଲୋକ । ଏ ସମସ୍ତଙ୍କୁ ଭାତ ରାନ୍ଧି ଖୁଆଇବା ତା ପକ୍ଷରେ କଷ୍ଟକର ହୋଇ ଉଠିଲା । ପନ୍ଦର ଦିନ ପରେ ମା' ପୁଅ ଭିକ୍ଷା ଯାତ୍ରାରୁ ଫେରିଲେ । ନଷ୍ଟଜ୍ମା ଯେମିତି ଶୁଣିଛି ସନ୍ଧ୍ୟା ବେଳକୁ ପାର୍ବତୀକୁ କହିଲା - ''ଯା କାକାକୁ ଡାକି ଆଣିବୁ । ଜେଜେମା ଯେପରି ନଜାଣେ ।'' ଝିଅ ଯାଇ କାକାକୁ ଡାକି ଆଣିଲା । ଅପନ୍ନା ସେଠାରେ ନିଜ ସ୍ତ୍ରୀକୁ ଦେଖି ମନେ ମନେ

Digitized by srujanika@gmail.com

ଖୁସି ହେଲା । କିନ୍ତୁ ଅନ୍ୟ ପକ୍ଷରେ ଭୟ ମଧ୍ୟ ଥିଲା । ଲାଜରେ ଗୋଟିଏ ଖମ୍ବ ମୂଳରେ ଠିଆ ହୋଇ ରହିଲା । ସାବୁ ରୋଷେଇ ଘରେ ରନ୍ଧା ରନ୍ଧି କରୁଥାଏ । ନଷ୍ଟିକା କହିଲା,"ଅପନ୍ନା ଆଜି ରାତିରେ ଏଠି ଖାଇବ ।"

"କିନ୍ତୁ ମା' . ,. . . . . ।"

"ନାଇଁମ ସିଏ କିଛି କହିବେନି। ରାତିରେ ତ ସିଏ ଅଳ୍ପ କଣ ଖାଆନ୍ତି। ତୁମେ ଉଠ ହାତ ମୁହଁ ଧୋଇ ଦିଅ ।"ଚେନ୍ନିଗରାୟ ମଧ୍ୟ ଉଠି ଠିଆହେଲା । ନଷ୍ଟିକା ପିଲାଙ୍କୁ ଆଗ ବସେଇ ଦେଇ ସାବୁ କୁ କହିଲା ସେମାନଙ୍କୁ ପରଷିବା ପାଇଁ । ଦି'ଭାଇ ବସିଗଲେ । ଖାଇଲାବେଳେ ଯେତିକିଥାଉ ବା ଆଉ ଦିଅ ନାହିଁ କହିବାକୁ ଅପନ୍ନାୟା ସଙ୍କୋଚ ବୋଧ କରୁଥାଏ । ସାବୁକୁ ମଧ୍ୟ ପଚାରିବାକୁ ଯେତେ ଲାଜ ଲାଗୁଥାଏ ସେତିକି ଅପମାନ ମଧ୍ୟ ଲାଗୁଥାଏ । ଖାଇସାରି ଦି'ଭାଇ ଗୁଣ୍ଡିଚୁନ ପାଟିରେ ପକାଇଲେ । ନଷ୍ଟିକା ସାବୁ ପାଖକୁ ଯାଇ କାନରେ କଣ ଫୁସ ଫୁସ କହିଲା ।

ସେ ଘରେ ଧାନ, ଚାଉଳ ରହିବା ଘରଟା ଭାରି ଅନ୍ଧାରିଆ ହୋଇଥାଏ । ବାଟ ଘରଟା ସଫାକରି ନଷ୍ଟିକା ମଶିଣା ପକାଇଦେଲା । ସାବୁ ସେ ଘରେ ଦୁଇଟି ଶେଯ ଲାଗି ଲାଗି ପକାଇଲା । ଅପନ୍ନା ଯିବ ବୋଲି କହିବାରୁ ନଷ୍ଟିକା କହିଲା - "ଆଜି ଏଇଠି ଶୋଇଯାଅ ।"

ଏଭଳି ଅପ୍ରତ୍ୟାଶିତ ନିମନ୍ତ୍ରଣରେ ତାର ମନଟା ଖୁସି ଲାଗିଲା ଯେ କିନ୍ତୁ ମା' କଥା ଭାବି ଡର ଲାଗୁଥାଏ । ନଷ୍ଟିକା ବୁଝିପାରି କହିଲା - "ମା'ଙ୍କୁ ଏକୁଟିଆ ରହିବାକୁ ଡର ଲାଗୁଛିକି ? ଦରକାର ହେଲେ ପାର୍ବତୀ ଓ ରାମନ୍ନାକୁ ରାତିରେ ତାଙ୍କ ପାଖକୁ ପଠାଇ ଦେବି । ତୁମେ ସେ ବଖରାରେ ଯାଇ ଶୋଇଯାଅ ।" ଏସବୁ ଦେଖି ଚେନ୍ନିଗରାୟ ନଷ୍ଟିକାକୁ କହିଲା - "ଏମାନଙ୍କ କଥାରେ ତୋ ମୁଣ୍ଡ କାହିଁକି ଏତେ ବଥାଉଛି ?" ନଷ୍ଟିକା କହିଲା - "ତୁମେ ଟିକିଏ ବୁପ ରହ ଭଲ କ୍ଷୀର ଟିକିଏ ଆଣିଛି । ସେଥିରେ ଟିକିଏ ; ପାୟସ ତିଆରି କରିବି । ତୁମର ଯଦି ଇଚ୍ଛା ଅଛି ବୁପ ରହ ।" ପାୟସ ନାଁ ଶୁଣି ଚେନ୍ନିଗରାୟ ତୁରନ୍ତ ରୋଷେଇଘରେ ପହଞ୍ଚିଗଲା । ଏଣେ ଅପନ୍ନା ଦାଣ୍ଡ ଘରକୁ ଶୋଇବାକୁ ଗଲା । ନଷ୍ଟିକା ରୋଷେଇ ଘରକୁ ଆସି କହିଲା - "ତୁମେ ଏଠି କଣ କରୁଛ ? ପାୟସ ହୋଇଗଲେ ତୁମକୁ ଡାକିଦେବି । ବର୍ତ୍ତମାନ ଆଉ ଟିକିଏ ଗୁଣ୍ଡିଚୁନ ଖାଇ ଦାଣ୍ଡରେ ବସି ଥାଅ ।" ଏଭଳି ସ୍ୱାମୀକୁ ବାହାରକୁ ପଠାଇ ତାପରେ ସାବୁକୁ ଅପନ୍ନା ପାଖକୁ ଛାଡ଼ି ନଷ୍ଟିକା ବାହାରୁ କବାଟ ବନ୍ଦ କରିଦେଲା ।

ପାୟସ କଥା କହି ସିନା ସ୍ୱାମୀଙ୍କର ମନ ଭୁଲାଇ ଦେଇଥିଲା ବର୍ତ୍ତମାନ କ୍ଷୀର କେଉଁଠୁ ଆଣିବ ଯେ ପାୟସ କରି ଖାଇବାକୁ ଦେବ ବୋଲି ଭାବିଲା । ଅଗଣାରେ ଶେଯ ପକାଇ ପିଲାମାନଙ୍କୁ ଶୁଆଇ ଦେଲା । ତାପରେ ନଡ଼ିଆଟିଏ ଫଟାଇ ତାକୁ ଚାଉଳ ସାଙ୍ଗରେ ବାଟି, ଗୁଡ଼ ପକାଇ କ୍ଷିରୀ ତିଆରି କଲା । ଘରେ ଥିବା ଅଳ୍ପ ଟିକିଏ କ୍ଷୀର ମଧ୍ୟ ପକାଇଲା । ସାବୁର ମାକୁ ପଠାଇ ସ୍ୱାମୀଙ୍କୁ ଡକାଇଲା । ସର୍ବରାକାର ମହାଶୟ ମଧ୍ୟ ପାୟସ ଖାଇବାକୁ ସେ ପର୍ଯ୍ୟନ୍ତ ଚାହିଁ ବସିଥିଲେ । ଡାକିଲା ମାତ୍ରେ ଆସି

Digitized by srujanika@gmail.com

ଚକା ପକାଇ ବସିଗଲେ ଏବଂ ଆଲୁମିନିୟମ୍ ଥାଳିରେ ବଢା ହୋଇଥିବା କ୍ଷିରୀ ଚକ ହାତ ଚାଟି ଖାଇଗଲେ ।

ସକାଳୁ ଉଠି ଅପନ୍ନା ପୋଖରୀ-ପାଣି ସାରି ମନ୍ଦିରକୁ ଯାଇ ମା'କୁ କହିଲା - "ସେମାନଙ୍କୁ ଏଠାକୁ ଡାକି ଆଣିଲେ ଭଲ ହୁଅନ୍ତା ।"

"କାହାକୁ ?"

"ମୋ ପିଲାମାନଙ୍କୁ ।"

ଗଙ୍ଗାମ୍ମା ଅବାକ୍ ହୋଇ ପୁଅକୁ ଚାହିଁଲା, ସବୁ ବୁଝିଲା ପରି କହିଲା - "ହାଇ ରେ ଖଣ୍ଡର ପୁଅ ତୁ ରାତିରେ ଯାଇ ସେ ଦୋଚାରୁଣୀ ପାଖରେ ଶୋଇ ଆସିଛୁ ? ମୁଁ ଭାବୁଛି ତୁ କେଉଁ ଗାଁକୁ ନାଟ ଦେଖି ଯାଇଛୁ ବୋଲି । ଏପରି ଦଶ ପନ୍ଦର ମିନିଟ୍ ଧରି ଆଶିର୍ବାଦ ଢାଳିବା ପରେ ପୁଅକୁ ପଚାରିଲା - "ସେ ମାଇକିନାଟା କହିଲା କି ଏଠାକୁ ଆସିବାକୁ ?"

ଅପନ୍ନା ସାହାସ ଧରି କହିଲା - "ସିଏ କଣ କହିବ ? ମୁଁ ତାକୁ କହିଲି । ସେମାନେ କାହିଁକି ସେଠି ରହିବେ ? ଏଠାକୁ ଚାଲି ଆସନ୍ତୁ ।"

"ଆରେ ହାରାମଜାଦା ତୋର ଏତେ ସାହସ, ରହିଥା ଅନ୍ନାଜୋଇସଙ୍କୁ ଯାଇ କହୁଛି ।" ତାପରେ ଜୋଇସଙ୍କ ଘରଦ୍ୱାରକୁ ଯାଇ ବୁଢ଼ୀ ସବୁକଥା ଗାଇଗଲା । ତା ପାଟିଶୁଣି ଆଖ ପାଖ ଲୋକ ମଧ୍ୟ ରୁଣ୍ଡ ହୋଇଗଲେ । ଅନ୍ନାଜୋଇସ୍ କହିଲେ - " ହନୁମାନ ତ ସହଜେ ବ୍ରହ୍ମଚାରୀ । ତାଙ୍କ ମନ୍ଦିରରେ ସ୍ୱାମୀ ସ୍ତ୍ରୀ ଏକାଠି ରହିବା ନିଷେଧ । ସେ ଟୋକାର କଣ ମତି ଭ୍ରଷ୍ଟ ହେଲାଣି କି ? ଏମିତି ହେଲେ ସମସ୍ତଙ୍କୁ ମନ୍ଦିରରୁ ବାହାର କରିଦେବି । ମନ୍ଦିରରେ ଏପରି କଲେ ଗାଁର ଅଘଟଣ ଘଟିବ । ଅଘଟଣ ପାଇଁ ତୁମେ ଦାୟୀ ହେବ ।" ଏସବୁ ଶୁଣି ଅପନ୍ନାର ମୁହଁ ଶେତା ପଡ଼ିଗଲା । କିନ୍ତୁ ପରକ୍ଷଣରେ ଗତ ରାତିରେ ପତ୍ନୀ ସୁଖ କଳ୍ପନା କରି, ତାକୁ ଛାଡ଼ି ରହିବାଟା ଅସହ୍ୟ ବୋଧ ହେଲା । ମନରେ ସାହସ ବାନ୍ଧି ଭାଉଜ ଘରକୁ ଗଲା ଏବଂ ସବୁ କଥା ନଞ୍ଜାମ୍ମାକୁ କହିଲା । ତା ପଛେ ପଛେ ଗଙ୍ଗାମ୍ମା ମଧ୍ୟ ସେଠାରେ ପହଞ୍ଚି ଅଭ୍ୟସ୍ତ ଗାଳିରୁ ଅଧ୍ୟାୟେ ଶୁଣାଇଲା । ଏ ଗଣ୍ଡଗୋଳ ଶୁଣି ସର୍ବରାକାର ମହାଶୟଙ୍କର ନିଦ ଭାଙ୍ଗିଗଲା । ସେ ବୋଧହୁଏ ସ୍ତ୍ରୀକୁ ଗାଳି ଦେଇଥାନ୍ତେ, କିନ୍ତୁ ଗତ ରାତ୍ରୀର ଗରମ କ୍ଷିରୀର ପ୍ରଭାବ ଅନୁଭବ କରି କିଛି ନକହିପାରି ଗାଁ ମୁଣ୍ଡ ପୋଖରୀ ଆଡ଼େ ଦୌଡ଼ିଲେ । ଗଙ୍ଗାମ୍ମା ଦୁଇ ପୁଅଙ୍କୁ ବିରୋଧୀ ବୋଲି ଜାଣି ମନ୍ଦିରକୁ ଫେରିଗଲା ।

Digitized by srujanika@gmail.com

ସେଦିନ ମଧ୍ୟ ଅପନ୍ନା ଭାଉଜ ଘରେ ରହିଲା । ଏଇ ଦୁଇ ଦିନରେ ସେ ଠିକ୍ କରି ନେଲା ଯେ ସ୍ତ୍ରୀ ଓ ପିଲାଙ୍କୁ ଧରି ଅଲଗା ରହିବ । ଶାଶୁ ମଧ୍ୟ ପାଖରେ ରହିବେ । ଏତେ ବର୍ଷ ହେଲା ମା' ସାଙ୍ଗରେ ଗାଁ ଗାଁ ବୁଲି ଭିକ୍ଷା ମାଗି ପେଟ ପୋଷିବାରେ ସେ ଅଭ୍ୟସ୍ତ ହୋଇ ଯାଇଥିଲା । ତେଣୁ ଭାବିଲା - ମୁଁ କଣ ମରଦ ପିଲା ନୁହେଁ ଯେ ମୋ ସ୍ତ୍ରୀ ଓ ପିଲାଙ୍କୁ ପୋଷି ପାରିବି ନାହିଁ । ମୁଁ ମଧ୍ୟ ଭିକ୍ଷା ମାଗି ଏମାନଙ୍କୁ ଚଳାଇବି । ବାକି ରହିଲା ରହିବା ଘର କଥା ।

ସେଇ ଗାଁରେ କୁରୁବରହଲ୍ଲୀର ଗୁଣ୍ଡଗୌଡ଼ଙ୍କର ଆଉ ଖଣ୍ଡିଏ ଖୋଲା ଜାଗା ହନୁମାନ ମନ୍ଦିର ପାଖରେ ଥିଲା । ତା ଦେଖା ଶୁଣା କେହି କେବେ କରନ୍ତି ନାହିଁ । ନଞ୍ଜମ୍ମା ଅପନ୍ନା କୁ ନେଇ କୁରୁବରହଲ୍ଲୀ ଗାଁକୁ ଗଲା ଏବଂ ଗୁଣ୍ଡଗୌଡ଼ଙ୍କ ସାଙ୍ଗରେ ଏ ବିଷୟରେ କଥାବାର୍ତ୍ତା କଲା । ସେ କହିଲେ,''ଯଦି ନିଜଖର୍ଚ୍ଚରେ ଅପନ୍ନା କୁଡ଼ିଆଟିଏ ତିଆରି କରିପାରିବ ତେବେ ମୋର କୌଣସି ଆପତ୍ତି ନାହିଁ ।'' ଅପନ୍ନା ମଧ୍ୟ ବଡ଼ ଭାଇ ପରି ଏତେ ଅଳସୁଆ ନୁହେଁ । ତା ମନରେ ବହୁତ ଉତ୍ସାହ ଓ ଶରୀରରେ ବହୁତ ଶକ୍ତି ଥିଲା । ଖାଲି କିଏ ଜଣେ କାମ ବତାଇବା ଦରକାର । ବହୁତ ଦିନ ପରେ ସ୍ତ୍ରୀର ସାଙ୍ଗରେ ରହିବା ସୁଖ ତା ମନରେ ସତେ ଯେପରି ଅନେକ ଉତ୍ସାହ ଆଣିଦେଲା । ତା ଛଡ଼ା କଥା ଶିଖାଇବା ପାଇଁ ଭାଉଜ ନଞ୍ଜମ୍ମା ଅଛି । ସାଢୁ ତା ପାଖରେ ଥିବା ରୁପା ଅଳଙ୍କାର ଟିକ ବିକି ଟଙ୍କା ଦେଲା । ସେଥିରେ ବାଉଁଶ, କାଠ ଏବଂ ପଥର କିଣା ହେଲା । ଅପନ୍ନା ନିଜେ ମାପଚୁପ କରି ନିଅଁ ଖୋଳି କାନ୍ଥ ଉଠାଇଲା । ପଥର ଖୁମ୍ବ ଉଠାଇ ବାଉଁଶ କାଠ ବାନ୍ଧି ଚାଳିଆ ତିଆରି କଲା ।ଲୋକଙ୍କୁ ମାଗି ନଡ଼ା, ପାଳ ଓ ନଡ଼ିଆ ବାହ୍ୟଙ୍ଗା ଚାଳରେ ପକାଇଲା । ବଢ଼େଇଠାରୁ ଦୁଆର ବନ୍ଧ ଏବଂ କବାଟ କିଣିଆଣି ଲଗାଇଲା । ତାପରେ ଘର ଲିପାପୋଛା କରି ଶୁଭ ଦିନ ଦେଖି ଗୃହ ପ୍ରବେଶ କଲା । ଏପର୍ଯ୍ୟନ୍ତ ସମସ୍ତେ ନଞ୍ଜମ୍ମା ଘରେ ରହି ଖିଆ ପିଆ କରୁଥିଲେ ।

ବର୍ତ୍ତମାନ ଜୀବନ କିପରି ବିତାଇବ ଭାବି, ଅପନ୍ନା ଏକୁଟିଆ ଭିକ୍ଷା ପାଇଁ ଗାଁ ଗାଁ ବୁଲିଲା । ଘର ଘର ଯାଇ ଶିବଗୌଡ଼ର ନିନ୍ଦା କାହାଣୀ ଗାଇ ଭିକ୍ଷା ମାଗେ । ଅନ୍ୟ ଭିଖାରୀ ଙ୍କ ଭଳି ହୋଇ ନଥିବାରୁ ଲୋକେ ତାକୁ ସେରେ, ଅଧସେରେ ମାଣ୍ଡିଆ, ବିରି ଆଦି ଦିଅନ୍ତି । ତା ଛଡ଼ା ଫସଲ କଟା ଦିନ ଆସିବାରୁ କ୍ଷେତକୁ ଯାଇ ଚାଷୀମାନଙ୍କ ଠାରୁ ଭିକ୍ଷା ମାଗେ । ଲକ୍ଷ୍ମୀ ପୂଜା ସମୟରେ ବ୍ରାହ୍ମଣକୁ ଦାନ ଦେଲେ ଲକ୍ଷ୍ମୀଙ୍କର ଦୟା ହେବ ବୋଲି କହେ । ଲୋକେ ବିଶ୍ୱାସ କରି ବୋଝେ, ଅଧବୋଝେ ମାଣ୍ଡିଆ, ବିରି ଆଦି ତା ଲୁଗାରେ ବାନ୍ଧି ଦିଅନ୍ତି । ବେଳେ ବେଳେ ମା', ପୁଅଙ୍କର ଏକା କ୍ଷେତରେ ଭେଟ ହୋଇଯାଏ । କିନ୍ତୁ କେହି କାହାକୁ ଚାହାଁନ୍ତି ନାହିଁ କି କଥା ହୁଅନ୍ତି ନାହିଁ । ଲୋକେ କୁହନ୍ତି ଦୁଇ ଚାରିଥର ମା' ପୁଅଙ୍କୁ କିଏ ଭିକ୍ଷା ଦେଇପାରିବ ? କେତେ ଜଣ ମଧ୍ୟ କିଛି ନ କହି ଯାହା ଦେବା କଥା ଦେଇ ଦିଅନ୍ତି । ତେଣୁ ଗଙ୍ଗାମ୍ମା ବର୍ତ୍ତମାନ ଚେଷ୍ଟାକରେ ଯେ ଯେତେ ଶୀଘ୍ରପାରେ ପାଖ ପାଖ ଗାଁ କୁ ଆଗଯାଇ ଭିକ୍ଷା ମାଗି ନେଇ ଆସିବ । ସେ ଏକୁଟିଆ ଲୋକ ହୋଇଥିବାରୁ ଖର୍ଚ୍ଚ କମ । ତେଣୁ ତା

Digitized by srujanika@gmail.com

ପାଖରେ ଏତେ ତାଲି, ମାଣ୍ଡିଆ ଜମା ହୋଇଗଲା ଯେ ତିନି ବର୍ଷ ପର୍ଯ୍ୟନ୍ତ ଖାଇଲେ ମଧ୍ୟସରିବ ନାହିଁ । କିନ୍ତୁ ଅପନ୍ନାର ଘରେ ପାଞ୍ଚପ୍ରାଣୀ କୁଟୁମ୍ବ । ବିଧବା ବୁଢ଼ୀଟେ ମାଗିଲେ ଲୋକଙ୍କ ମନରେ ଯେଉଁ ଦୟା ଭାବ ଆସେ, ଜଣେ ହୃଷ୍ଟପୃଷ୍ଟ ଯୁବକ ମାଗିଲେ ସେତିକି ଆସେନାହିଁ । ତେଣୁ ଅପନ୍ନାକୁ ବେଳେବେଳେ ଏଭଳି ମନ୍ତବ୍ୟ ଶୁଣିବାକୁ ପଡ଼େ,"ସଳଖ ସୁନ୍ଦର ଭେଣ୍ଡିଆଟିଏ ତ ହୋଇଛୁ ମୂଲ ଲାଗି ରୋଜଗାର କରୁନୁ ।"

ପ୍ରଥମେ ପ୍ରଥମେ ସ୍ତ୍ରୀ ସାଙ୍ଗରେ ରହିବାରୁ ଅପନ୍ନା ମନରେ ଉତ୍ସାହ ଆସୁଥାଏ । କିନ୍ତୁ କିଛି ଦିନ ପରେ ତାହା କମିଗଲା । ଦିନଯାକ ଗାଁ ଗଣ୍ଡା ବୁଲି ଲୋକଙ୍କ କଟୁବାକ୍ୟ ଶୁଣି ତା ମନ ବଡ଼ ତିକ୍ତ ହୋଇ ଉଠିଲା । ପ୍ରଥମେ ମା' ସାଙ୍ଗେ ଥିଲା ଯେ, ମଗାମଗି କାମ ସବୁ ସେ କରି ଦେଉଥିଲା । ତା କାମ କେବଳ ଥିଲା ସବୁ ମାଣ୍ଡିଆ ଚାଉଳ ଏକାଠି କରି ମୁଣ୍ଡେଇ ଘରକୁ ବୋହିଆଣିବା । ଏବେ ରୋଜ୍ ଭିକ୍ଷା ମାଗିବା ଖ୍ଟ୍ଖ୍ଟ୍‌ରେ ତା ମନ ଚିଡ଼ି ଉଠୁଥିଲା । ଦିନେ ନକ୍ଷିମା ଅପନ୍ନା ଘରକୁ ଗଲାବେଳକୁ ସେ ଅନ୍ୟ ଗାଁ କୁ ଯାଇଥିଲା । ଇଆଡୁ ସିଆଡୁ କଥାବାର୍ତ୍ତା ପକାଇ ସାବୁକୁ କହିଲା - "ତୋ ଝିଅ ଜୟଲକ୍ଷ୍ମୀ ଆଉ ଆମ ପାର୍ବତୀ ପ୍ରାୟ ଏକା ବୟସର । ତାର ମଧ୍ୟ ସ୍କୁଲରେ ନାଁ ଲେଖାଇ ଦିଅ । ଚାରି ଅକ୍ଷର ଶିଖିଲେ ସିନା ପିଲାଏ ମଣିଷ ହେବେ ।"

"ହଁ ସଚ କଥା ।"

"ଆଉ ଗୋଟିଏ କଥା ତତେ କହୁଛି ଶୁଣ । ତୁମେମାନେ କୁଆଡ଼େ ମାଣ୍ଡିଆ ତକ ବିକି ଦେଉଛ ବୋଲି ଶୁଣିଲି । ସେପରି କର ନାହିଁ । ଫସଲ ଆଦାୟ ସମୟରେ କିମ୍ବା ଅଡି ବଡ଼ ହେଲେ ତାପରେ ଦୁଇ ତିନିମାସ ଯାଏଁ ଲୋକେ ଦାନ ଦେବେ । ଚର୍ତୁମାସ୍ୟା ହୋଇଗଲେ ଆଉ କେହି ଦେବେ ନାହିଁ । ଆଜିଠୁ ମାଣ୍ଡିଆ ବିକି ଦେଇଥିଲେ ଅସୁବିଧାରେ ପଡ଼ିବ । ହାଟରୁ ବଡ଼ ବଡ଼ ମାଟି ହାଣ୍ଡି ଆଣି ଏସବୁ ଜମେଇ ରଖ ।"

"ଏ ଖତରା ମାଣ୍ଡିଆକୁ ରଖି କଣ କରିବୁ ? ଏକୁ ଆମର କିଏ ଖାଇବ ?" ସାବୁର ମା କହିଲା ।

ନକ୍ଷିମା ଜାଣିଥିଲା ଯେ ମାଣ୍ଡିଆ ଖାଇବା ଅଭ୍ୟାସ ଏମାନଙ୍କର ନାହିଁ । କିନ୍ତୁ ଭାତ ଖାଇବାକୁ ଯୋଗାଇବ କିଏ ? ଧିରେ ଧିରେ ଅଭ୍ୟାସ କଲେ ସିନା ହୁଅନ୍ତା । ଏଭଳି ବେଖାତିର୍ କଥା କେବଳ ଜମିଦାର୍ ମାନଙ୍କ ମୁହଁରେ ଶୋଭାପାଏ । ଏମାନେ କିପରି ଚଳିବେ କେଜାଣି । ଆଉ ଗୋଟିଏ କଥା, କଫି ପିଇବା ମଧ୍ୟ ଏମାନଙ୍କର ଅଭ୍ୟାସ । ତାଙ୍କ ଗାଁରେ ସମସ୍ତଙ୍କର କଫି ପିଇବା ପିଲାଦିନରୁ ଅଭ୍ୟାସ ବୋଲି କହନ୍ତି । ପହିଲି ପାଳି ଆସିଲା ବେଳେ ସାବୁ ଶାଶୁର ଡରରେ କଫି କେତେଦିନ ଛାଡ଼ି ଦେଇଥିଲା । ଆଜିକାଲି ଅବଶ୍ୟ ଗାଁରେ ଅନେକ ଲୋକ କଫି ପିଇବା ଆରମ୍ଭ କଲେଣି । କିନ୍ତୁ ସେଥିପାଇଁ ପଇସାତ ଦରକାର । ଅପନ୍ନାର ପରିବାର ଯଦି ଦିନକୁ ଦୁଇଥର କଫି ପିଇବେ ତେବେଘର ଚଳିବ କିପରି ?  ତୁମେ ମାନେ ଯଦି କଫି ଛାଡ଼ି ପାରନ୍ତ ତେବେ ପଇସା ବଞ୍ଚି ଯାଆନ୍ତା ।"

Digitized by srujanika@gmail.com

"ଆମେ ପାରିବୁନି ବାବା ! ସକାଳୁ ଉଠି କିଏ ସେ ଖାଲି ପେଟରେ ରହିବ ? ତୁମେ ସିନା ଶୁଖିଲା ରୁଟିଦିଟା ଖାଇ ରହି ଯାଉଛ, ଆମର ଏ ଅଭ୍ୟାସ ନାହିଁ ।" ସାବୁର ମା କହିଲା । ନଷ୍ଟିଜା ଏବିଷୟରେ ଆଉ ଅଧିକା କିଛି କହିଲା ନାହିଁ ।

ଦିନେ ସାବୁ ବଡ଼ ଭା' ପାଖରେ ବସି ଦୁଃଖ ସୁଖ ହେଉଛି । ନଷ୍ଟିଜା କଥା ହେଉ ହେଉ ପଲାଶ ପତ୍ରର ଖଳି ସିଇଁ ଚାଲିଥାଏ । ସାବୁ କହିଲା - "ନାନୀ ତମେ କେତେ କାମ କରୁଛ ? ଘର କାମ ସାଙ୍ଗରେ ଖଜଣା ଆଦାୟ ହିସାବ ଲେଖୁଛ । ତାପରେ ପଳାଶ ପତ୍ର ତୋଳିଆଣି ଖଳିପତ୍ର ତିଆରି କରୁଛ । ମୁଁ ଏତେ କାମ କରିପାରନ୍ତି ନାହିଁ ।" ନଷ୍ଟିଜା କହିଲା - "ଅନେକ ଦିନରୁ ତତେ କହିବି ବୋଲି ଭାବିଲିଣି । କାଳେ କଣ କହିବୁ ବୋଲି କହିନି ।"

"କହୁନ ।"

"ତମ ଘରେ ଖାଇବାକୁ ପାଞ୍ଚଜଣ । କିନ୍ତୁ ରୋଜଗାର କରିବାବାଲା ଜଣେ । ପୁଣି ଭିକ୍ଷାମାଗି ତୁମକୁ କେତେଦିନ ଚଳାଇବ । କଣ ହେଲେ ଗୋଟାଏ କାମ ଧନ୍ଦା ଆରମ୍ଭ କରିବାକୁ ପଡ଼ିବ । ପୁରୁଷମାନେ ଯଦି କାମକରୁଥାନ୍ତେ ତେବେ ଏପରିବାରର ଏପରି ଅବସ୍ଥା ହୋଇ ନଥାନ୍ତା । ତୁମେ ତ ଘରେ ଦୁଇଜଣ ସ୍ତ୍ରୀ ଲୋକ ଅଛ, ଘର କାମ ପରେ ପ୍ରତିଦିନ ସହଜରେ ତିନିଶହ ଖଣ୍ଡେ ଖଳି ସିଇଁ ପାରନ୍ତ । ଖଳି ଶହେକ ଦାମ୍ ଏବେ ସାତଅଣା ହୋଇଛି । ମାସକୁ ଯଦି ତିରିସି ଟଙ୍କା ଏଥିରୁ ରୋଜଗାର କରିପାରନ୍ତ ତେବେ କଣ ଭଲ ହୁଅନ୍ତା ନି ?"

"ସବୁବେଳେ ଖଳି ସିଇଁଲେ ଦେହ ଖରାପ ହୋଇ ଯିବନି ?"

"ଅଭ୍ୟାସ ହୋଇଗଲେ ସବୁ ଠିକ୍ ହୋଇଯିବ ।"

ଏକଥା ଶୁଣି ସାବୁ ଖଳି ସିଇଁବାକୁ ଠିକ୍ କଲା । ତା ପରଦିନ ନଷ୍ଟିଜା ପାଖରେ ବସି ପତ୍ର ଯୋଡ଼ିବା ଆରମ୍ଭ କଲା । କିନ୍ତୁ ନଷ୍ଟିଜା ଶହେ ଖଳି ସିଇଲା ବେଳକୁ ତାର ହୋଇଥାଏ ଅଠର । ନଷ୍ଟିଜା ତାକୁ ଉତ୍ସାହ ଦେବାକୁ ଲାଗିଥାଏ ଯେ ଅଭ୍ୟାସ କଲେ ଆହୁରି ଜଲଦି ଜଲଦି ହେବ । କିନ୍ତୁ ତା ପରଦିନ ସାବୁର ହାତ ଘୋଳେଇ ହେବାରୁ ତା ମା କହିଲା - "ଘର ଚଳାଇବା କାମ ସିନା ସ୍ୱାମୀର । ତୁ କାହିଁକି ଖଳି ସିଇଁବା କାମରେ ଲାଗିବୁ କହିଲୁ ?" ବାସ୍ ତାର ଖଳି ସିଇଁବା ସେତିକିରେ ରହିଗଲା । ତାଛଡ଼ା ତାର ମାସିକ ଋତୁ ମଧ୍ୟ ବନ୍ଦ ହୋଇ ଯାଇଥାଏ ।

ସାବୁର ବାପା ଶ୍ୟାମଭଟ୍ଟ ପୁରୋହିତ ଥିଲେ । ତେଣୁ ତାଙ୍କ ସ୍ତ୍ରୀ ଚଇଁଜାକୁ ଭଲ ମନ୍ଦ ଛୁଆଁ ଅଛୁଆଁ ଆଚାର ବିଚାର ଆଦି ବିଷୟରେ ଅଳ୍ପ ବହୁତ ଜଣାଥିଲା । ଗଙ୍ଗାଜାର ଘରେ ପ୍ରଥମରୁ ଏସବୁ ନଥାଏ । ନଷ୍ଟିଜା ଯାହା ସବୁ ଅଳ୍ପ ବହୁତ କରୁଥିଲା ତାହାସବୁ କେବଳ ଲୋକ ଦେଖାଣିଆ ପାଇଁ, ସେ ଏତେ ଭଲ ମନ୍ଦ ଛୁଆଁ ଅଛୁଆଁ ଚଳାଇ ପାରୁ ନଥିଲା । ମାଟି ହାଣ୍ଡିରେ ଭାତ ରାନ୍ଧି ଖାଇବା ବ୍ରାହ୍ମଣ କୁଳରେ ନ ଥିଲା । କିନ୍ତୁ ନଷ୍ଟିଜା ପିତଳ ହାଣ୍ଡି ଅପେକ୍ଷା ମାଟି ହାଣ୍ଡିରେ ରାନ୍ଧିବା ପସନ୍ଦ କରୁଥିଲା, ତାଛଡା ତା

Digitized by srujanika@gmail.com

ପିଲେ ଯୋଗୀ ମହାଦେବଯ୍ୟା ପାପିରେ ଅନେକଥର ଖାଇଛନ୍ତି । ଏସବୁ ଜାଣି ମଧ୍ୟ ନନ୍ଦିଲ୍ଲା କେବେ ପିଲାଙ୍କୁ ଅଟକ କରେ ନାହିଁ । ସାବୁ ଓ ତା ମା'କୁ କିନ୍ତୁ ଏକଥା ଭଲ ଲାଗିଲା ନାହିଁ ।

ଗାଁ ପୁରୋହିତ ଆଯ୍ୟାଶାସ୍ତ୍ରୀ ଓ ଅନ୍ନାକୋଇସଙ୍କ ସ୍ତ୍ରୀମାନେ ନିଷ୍ଠାର ସହିତ ପବିତ୍ରତା ପାଳନ କରୁଥିଲେ । ଅନ୍ନାକୋଇସଙ୍କ ସ୍ତ୍ରୀ ମାସିକ ଅଛୁଆଁ ହେଲେ ସ୍ୱାମୀଙ୍କୁ ମଧ୍ୟ ଦେଖା ଦିଅନ୍ତି ନାହିଁ । ନନ୍ଦିଲ୍ଲା ତ ଅଛୁଆଁ ଦିନଟକ ଲୁଚି ଲୁଚି ରନ୍ଧା ରନ୍ଧି କରିଦିଏ । ଅନ୍ନାକୋଇସଙ୍କ ସ୍ତ୍ରୀ ସାବୁର ମାକୁ ଏବିଷୟରେ କହିଲା ପରଠାରୁ ସେ ଠିକ୍ କରିନେଲେ ଯେ, ତା ଘରକୁ ଆଉକେବେ ଯିବେ ନାହିଁ । ଅନ୍ୟ ଜାତିର ସ୍ତ୍ରୀମାନେ ଅଛୁଆଁ ହେଲେ ପ୍ରଥମଦିନ ଗାଧୋଇ ସାରି ରନ୍ଧାରନ୍ଧି କରନ୍ତି । କିନ୍ତୁ ବ୍ରାହ୍ମଣ ଜାତିରେ କଣ ଏପରି କରିବା କଥା ?

ଦିନେ ସାବୁ ଓ ତାର ମା' ଅନ୍ନାକୋଇସଙ୍କ ଘରକୁ ଯାଇଥିଲେ । ପୁରୋହିତ ଗୋଟିଏ କଥା ଉଠାଇଲେ । "ପୈତୃକ ସମ୍ପତ୍ତିରେ ଦୁଇଭାଇଙ୍କୁ ସମାନ ଅଂଶ ମିଳିବା କଥା, ବାକି ସବୁ ଜମିବାଡ଼ି ସମ୍ପତ୍ତି ତ ଆଉ କିଛି ନାହିଁ । ସର୍ବରାକାର ଅଧିକାର ଟା ଏକୁଟିଆ ଚେନ୍ନିଗରାୟ ଭୋଗ କରୁଛି । ଅପନ୍ନାକୁ କଣ କିଛି ମିଳିବ ନାହିଁ । ଏପରି ଅନ୍ୟାୟ କାହିଁକି ସହିବ ? ବାର୍ଷିକ ଖଜଣା ଆଦାୟରୁ ଯାହା ମିଳୁଛି ଦୁଇଭାଇ ତାକୁ ବାଣ୍ଟିନେବା କଥା । ସରକାରୀ ନିୟମରେ ମଧ୍ୟ ଏକଥା ଅଛି । ଏଇଛି କେତେଦିନ ଯାଏଁ ତୁମ ଆଖିରେ ଧୂଳି ଦେଇ ଚାଲିଥିବ ସିଏ ।"

ଏକଥା ଶୁଣି ସାବୁ ମା'ର ରକ୍ତରେ ନିଆଁ ଲାଗିଗଲା । ସାବୁର ମଧ୍ୟ ବଡ଼ ଜା' ପ୍ରତି ଘୃଣା ଆସିଲା । 'ସତରେ ଏ ମାଇକିନାଟା କେତେ ଚାଲାଖ, ଆମକୁ ଯାହା ମିଳିବା କଥା ନଦେଇ ଖାଲି ବିବେକ ଆଉ ଧର୍ମ କଥା ଶୁଣାଉଛି । ଖାଲି ଉପର ଦେଖାଣିଆ ସବୁ ।' ମନକୁ ମନ କହିଲା ।

ପୁରୋହିତ କହିଲେ - "ତୁମେ ଏବଂ ଅପନ୍ନା ଯାଇ ତାକୁ ପଚାର । ଯଦି ନାହିଁ କରନ୍ତି ତେବେ ତିପଟୁର ଯାଇ ତହସିଲଦାରଙ୍କ ଗୋଡ଼ ଧରି ପ୍ରାର୍ଥନା କଲେ ନିଶ୍ଚୟ ମିଳିବ ।"

ସେଦିନ ସନ୍ଧ୍ୟାରେ ଭିକ୍ଷା ମାଗି ଘରକୁ ଫେରିଲା ପରେ ଅପନ୍ନାକୁ ସାବୁ ସବୁକଥା ବୁଝାଇ କହିଲା - "ଆମର ମଧ୍ୟ ପିଲାଛୁଆ ଘର । ପୈତୃକ ଅଧିକାରରୁ ଆମକୁ କଣ କିଛି ମିଳିବା କଥା ନୁହେଁ ? ବାର୍ଷିକ ଆୟ ଶହେ କୋଡ଼ିଏ ଟଙ୍କାରୁ ଆମର ଷାଠିଏ ଟଙ୍କା ଭାଗ ପଡ଼ିବା କଥା । ତା ଛଡ଼ା ଉପୁରି ଯାହା ମିଳୁଛି ସେଥିରୁ ମଧ୍ୟ ଭାଗ ମିଳିବା କଥା ।"

ଅପନ୍ନାକୁ ତ ଏତେ ପାଠ ଜଣା ନଥିଲା । କିନ୍ତୁ ସେ ଶୁଣିଥିଲା ଯେ ସର୍ବରାକାର ଏବଂ ମୁଖିଆ କାର୍ଯ୍ୟ ଘରର ବଡ଼ ପୁଅକୁ ଦିଆଯାଏ । ସରକାରୀ ନିୟମ ବୋଧେ ଅନ୍ୟ କିଛି ହୋଇଥାଇ ପାରେ । ଭାବିଲା ମୁଁ ଆଉ କଣ ଅନ୍ନାକୋଇସଙ୍କ ଠାରୁ ଅଧିକ ଜାଣିଛି କି ? ସେ ରାତିରେ ପୁଣି ପୁରୋହିତଙ୍କ ପାଖକୁ

Digitized by srujanika@gmail.com

ଗଲା । ସେ କହିଲେ - "ଭାଇ-ଭାଗତ କେତେ କାଳରୁ ଚାଲି ଆସିଛି । ଏବେ ବର୍ଷହେଲା ତ ଆଖିରେ ଧୂଳି ଦେଇ ସେମାନେ ତୋ ଭାଗ ମଧ୍ୟ ଭୋଗ କରି ଆସୁଛନ୍ତି ।" ଅପନ୍ନାର ମୁଣ୍ଡକୁ ରାଗ ଉଠିଗଲା । ଧାଇଁ ଧାଇଁ ବଡ଼ଭାଇ ଘରେ ଯାଇ ପହଞ୍ଚିଲା । ଚେନ୍ନିଗା ଘରେ ନଥିଲା । ଭାଉଜ ଚିବିରି ଆଳୁଅରେ ପୁଅ ଝିଅଙ୍କୁ ବସାଇ ପଢ଼ାଉଥିଲେ । ଅପନ୍ନା ପାଟି କରି କହିଲା - "ଆଉ ଏ ଦଗାବାଜି ସହି ପାରିବି ନାହିଁ । ବାର୍ଷିକ ସର୍ବରାକାରୀ ଆୟରୁ ଅଧେ ମତେ ମିଳିବା କଥା ।" ନଞ୍ଜମ୍ମା ହଠାତ୍ ବୁଝି ନପାରି ପଚାରିଲା - "କଣ ତୁମେ କହୁଛ ? କେଉଁଥିରୁ ତୁମକୁ କଣ ମିଳିବା କଥା ?"

"ସର୍ବରାକାରୀ ଆୟରୁ । ଚେନ୍ନିଗା ଭଳିଆ ମୁଁ ମଧ୍ୟ ମୋ ବାପର ପୁଅ । ମତେ ମୋ ଭାଗ ନଦେଲେ ଚନ୍ଦ୍ରସିଦ୍ଧେଶ୍ୱର ଆଗରେ ଫେରାଦ୍ କରିବି । ବୁଝିଲ ?" ତାପରେ ମହାଦେବସ୍ୱାର ମନ୍ଦିର ଆଡ଼କୁ ଗଲା । କାଳେ ବଡ଼ଭାଇ ସେଠାରେ ଥିବେ । ରାସ୍ତାଯାକ ମନକୁ ମନ କଣ ସବୁ ବକି ଚାଲିଥାଏ । "ମୁଁ କଣ ମୋ ବାପର ପୁଅ ନୁହେଁ । ମତେ ମଧ୍ୟ ସର୍ବରାକାରୀ ଆୟରୁ ଅଧେ ମିଳିବା କଥା । ମୁଁ ଖରା ତରାରେ ଗାଁ ଗଣ୍ଡା ବୁଲି ଭିକ ମାଗି ପେଟ ପୋଷିବି । ଆଉ ଇଏ ଆରାମରେ ଘରେ ବସି ଖାଇବ ।" ଏତେ ଜୋରରେ ପାଟିକରି କହୁଥାଏ ଯେ ଲୋକେ ମଧ୍ୟ ଶୁଣୁଥାନ୍ତି ।

ନଞ୍ଜମ୍ମାକୁ ଜଣା ନଥିଲା ଯେ ଅପନ୍ନା ମହାଦେବସ୍ୱା ରହୁଥିବା ମନ୍ଦିର ଆଡ଼େ ଯାଇଛି । ଘଟଣା କଣ ବୋଲି ବୁଝିବାକୁ ଅପନ୍ନା ଘରକୁ ଯାଇ ଦେଖେତ, ସେ ସେଠାରେ ନାହିଁ । ସାତୁକୁ ଘଟଣା କଣ ହୋଇଛି ବୋଲି ପଚାରିବାରୁ ସେ କହିଲା - "ଏକା ମା' ପେଟର ଭାଇ ହୋଇ ତାକୁ କଣ ଭାଗ ମିଳିବା କଥା ନୁହେଁ କି ? ଯଦି ସିଏ ଆଜି ପର୍ଯ୍ୟନ୍ତ ଜାଣିପାରି ନଥିଲେ, ତୁମେ ମଧ୍ୟ ତାଙ୍କୁ କିଛି ଦେବ ନାହିଁ । ଆଜିକାଲି ଏ କଳିକାଳରେ କାହାକୁ ଆଉ ମଣିଷ ବିଶ୍ୱାସ କରିବ ?"

"ସର୍ବରାକାରୀ ନିୟମରେ ତ ଏପରି କିଛି ନାହିଁ । ତୁମମାନଙ୍କୁ କିଏ ମିଛରେ ଏତକ ଶିଖାଇଛି । ବାର୍ଷିକ ଆଦାୟ ଶହେ କୋଡ଼ିଏ ହେଉଛି ସତ । କିନ୍ତୁ ସେଥିପାଇଁ କେତେ ଖର୍ଚ୍ଚ ହେଉଛି ତୁମେ କଣ ଜାଣିବ ? ଖାତା ପତ୍ର, କାଗଜ, କଲମ, ସ୍ୟାହିରେ ବର୍ଷଯାକ କେତେ ଖର୍ଚ୍ଚ ହେଉଛି । ରାତି ରାତି ଅନିଦ୍ରା ହୋଇ ହିସାବ ଲେଖିବାକୁ ପଡୁଛି । କିଛି ନବୁଝି ନସୁଝି, ଏମିତି ରାସ୍ତାଟାଯାକ ପାଟି କରି ଯିବାଟା ଅପନ୍ନା ପକ୍ଷରେ ଠିକ୍ ହେଲା ନାହିଁ ।"

"ହିସାବ ଲେଖାଟା କଣ ଏମିତି କଷ୍ଟ ଯେ, ତୁମେ କହିଲେ ମୁଁ ଲେଖିବି । କାମ ନକରି ଆଉ କିଏ ଭାଗ ଖୋଜୁଛି ?"

କଥାଟା ଆଉ ଆଗକୁ ନବଢ଼ାଇ ନଞ୍ଜମ୍ମା ଘରକୁ ଫେରିଆସିଲା । ଚେନ୍ନିଗରାୟେ ମଧ୍ୟ ମନ୍ଦିରରେ ନଥିଲା । ପୋଖରୀରେ ଗାଧୋଇ ଆସି ଘରେ ସନ୍ଧ୍ୟା ପୂଜାରେ ବ୍ୟସ୍ତ ଥିଲା । ପିଲେ ବାରଣ୍ଡାରେ ବସି ପଢ଼ାପଢ଼ିରେ ଲାଗିଥିଲେ । ପୂଜାରେ ବାଧା ନଦେଇ ନଞ୍ଜମ୍ମା ଘର ଭିତରକୁ ଗଲା । ଘର ଓଳାଇ, ହାତ

Digitized by srujanika@gmail.com

ଯୋଇ ଠାକୁରଙ୍କ ଆଗରେ ସନ୍ଧ୍ୟା ବଳିତା ବସାଇ ମୁଣ୍ଡିଆ ମାରିଲା । ଅପନ୍ନା କଥାରେ ସେ ଯେତେ ଦୁଃଖିତ ହୋଇ ନଥିଲା, ସାତୁ କଥାଟା ତାକୁ ବେଶି ବାଧିଥିଲା । ସିଏ ନିଶ୍ଚୟ ଅପନ୍ନା ମୁଣ୍ଡରେ ଏକଥା ପୁରାଇଛି । କିନ୍ତୁ ତାକୁ ଏକଥା କହିଲା କିଏ ? ଯିଏ କହିଲେ ମଧ୍ୟ ସାତୁ ଏତେଟା ବଦଳିଯିବ ବୋଲି ନଷ୍ଟିଆ ଭାବି ନଥିଲା । ମନକୁ ମନ କହିଲା - "ଏ ଯୁଗରେ ପ୍ରକୃତରେ କାହାକୁ ସାହାଯ୍ୟ କରିବା କଥା ନୁହେଁ । ପଛକଥା ସମସ୍ତେ ଭୁଲି ଯାଆନ୍ତି ।"

ଏତିକିବେଳକୁ ଅପନ୍ନାସ୍ତ୍ରୀ ଆସି ପହଞ୍ଚିଲା । ତା ସାଙ୍ଗରେ ଆଠ ଦଶଜଣ ଲୋକ ମଧ୍ୟ ଆସିଥାନ୍ତି । ତା ପଛରେ ଶାଶୁ ଗଙ୍ଗାମ୍ମାର ପାଟି ମଧ୍ୟ ଶୁଭିଲା । ନଷ୍ଟିଆ ଘରୁ ବାହାରି ଦେଖେ ତ, ଆମ୍ନାଜୋଇସ, ଆୟ୍ୟାଶାସ୍ତ୍ରୀ, ରେବଣସେଠୀ, ଶିବଲିଙ୍ଗ ଗୌଡ଼, ଏପରି ପୁରା ପଞ୍ଚାୟତ ଆସି ତା ଦୁଆରେ ହାଜର । ହେଲେ ମୁଖିଆ ଶିବ ଗୌଡ଼ ଆସି ନଥିଲା । ତେଣେ ପୂଜା କରି ଚେନ୍ନିଗା ଉଠିଲା । ଟାଦର ଖଣ୍ଡେ କାନ୍ଧରେ ପକାଇ ବାହାରିଲା । ନଷ୍ଟିଆକୁ ଦେଖି ଗଙ୍ଗାମ୍ମା ବକି ଉଠିଲା - "ଆଲୋ ଆଉ କାହାର ଜମିବାଡ଼ି କିମ୍ବା ଆୟରୁ ସିନା ଆମକୁ କିଛି ମିଳିବନି, କିନ୍ତୁ ମୋ ସ୍ୱାମୀଙ୍କ ସର୍ବରାକାରୀରୁ ଯାହା ଆୟ ହୁଏ ସେତକରୁ ତ ମତେ କିଛି ମିଳିବା କଥା । ସେମାନେ ଯଦି ତା ପୁଅ ହେଲେ, ମୋ ହାତ ଧରି ତ ସିଏ ମତେ ବାହା ହୋଇଥିଲେ । ମୋ ଭାଗଟା ଗଲା କୁଆଡ଼େ ? କଣରେ ରେବଣସେଠୀ ତୁ କହୁନୁ ?"

ରେବଣସେଠୀ ମନ୍ତବ୍ୟ ଦେଲା - "ଶିବଲିଙ୍ଗ ଗୌଡ଼ ଆଗରୁ ସର୍ବରାକାର କାମ କରୁଥିଲେ, ତେଣୁ ନିୟମ ତାଙ୍କୁ ଜଣା ଅଛି । ଆଜିର ସଭାରେ ତାଙ୍କୁ ସଭାପତି କରାଯାଉ ।"

ଶିବଲିଙ୍ଗ ଚଟ୍‌କିନା ଉଠି ଖମ୍ବ ପାଖରେ ଯାଇ ବସିଲା, ଏବଂ ପଚାରିଲା - "ଚେନ୍ନିଗା ତୁ କଣ କହୁଛୁ କହ ?" ସେତେବେଳକୁ ଚେନ୍ନିଗା ଘଟଣାଟା ସିନା ବୁଝି ଯାଇଥିଲା, କିନ୍ତୁ କଣ କହିବ ବୁଝି ପାରୁ ନଥିଲା ତେଣୁ "ତାଙ୍କୁ ପଚାର" ବୋଲି କହି, ନିଜ ସ୍ତ୍ରୀ ଆଡ଼କୁ ହାତ ଦେଖାଇ ଦେଲା । ଅପଲକ ଦୃଷ୍ଟିରେ ନଷ୍ଟିଆ ଚେହେରାକୁ ଚିଇ ଯାଉ ଯାଉ ରେବଣସେଠୀ କହିଲା - "ଭଉଣୀ ତୁମେ ଯାହାହେଲେ କହ । ଡ଼ରିବାର କୌଣସି କାରଣ ନାହିଁ ।"

ସାତୁ ଏବଂ ତା ମା' ଆସି ବାହାରପାଖ ଦୁଆର ପାଖରେ ଲାଗି ଠିଆ ହୋଇଥାନ୍ତି । ନଷ୍ଟିଆ ରାଗରେ ଜଳି ଉଠିଲା । ସମସ୍ତଙ୍କୁ କହିଲା - "ତୁମମାନଙ୍କୁ ଏଠିକି କିଏ ଡ଼କାଇଛି ଯେ ଆସିଛ । ଅନ୍ୟର ଘରେ କଳି ଲାଗିଲେ ଦୌଡ଼ି ଆସୁଛ ଯେ, ନିଜ ନିଜ ଘର ଆଗ ସମ୍ଭାଳ । ଏବେ ତୁମେମାନେ ମୋ ଘରୁ ଚୁପ ଚାପ ବାହାରି ଯିବ ନା ସମସ୍ତଙ୍କ ଇଜତ୍ ବୁଡ଼ାଇ ଗାଳି କରିବାକୁ ହେବ ।"

ନଷ୍ଟିଆ ଏପରି କହିବ ବୋଲି କେହି ଜାଣି ନଥିଲେ । ତା ଛଡ଼ା ସିଙ୍ଗା ତେଲୀ ଏବଂ ଆଉ କେତେ ଜଣ ଭଦ୍ର ଲୋକ ଘଟଣା ବିଷୟରେ ଭଲକରି ଜାଣି ନଥିଲେ । "ପଞ୍ଚାୟତ ବସିବ ଆସ" ବୋଲି କହି

Digitized by srujanika@gmail.com

ଅପନ୍ନା ତାଙ୍କୁ ରାସ୍ତାରୁ ଡାକି ଆଣିଥିଲା । ଗାଁର ସର୍ବରାକାର ହିସାବ ପତ୍ର ଭଏ ବୁଝୁଛି, ଯାଙ୍କ ସାଙ୍ଗରେ ଶତ୍ରୁତା କରି କିଛି ଲାଭ ନାହିଁ, ଏପରି ଭାବି କେତେଜଣ ଲୋକ ଚାଲିଯିବାକୁ ବସିଲେ । ଏମାନେ ପଳାଇବାରୁ ଅନ୍ୟମାନଙ୍କରସାହସ ମଧ୍ୟ କମିଗଲା । "ଆପଣମାନେ ଚୁପ ଚାପ ଉଠି ଚାଲି ଯାଆନ୍ତୁ" ନଞ୍ଜାପ୍ପା ଆଉଥରେ କହିବାରୁ ଶିବଲିଙ୍ଗ ଗୌଡ଼ ଏବଂ ରେବଣସେଠୀ ଉଠି ଚାଲିଗଲେ । ନଞ୍ଜାପ୍ପା ପଚାରିଲା,"ଅପନ୍ନା ତୁମ ମୁଣ୍ଡରେ ଏ ଘରଭଙ୍ଗା ବୁଦ୍ଧି କିଏ ପଶାଇଲା ?" ଅପନ୍ନା କିଛି କହିଲା ନାହିଁ । ଅନ୍ନାଜୋଇସ ଉଠୁ ଉଠୁ କହିଲେ - "ଆରେ ନିଜ ଘର କଥା ନିଜେ ବୁଝ । ସିଆଡ଼େ ସନ୍ଧ୍ୟା ପୂଜା ସମୟ ହୋଇଗଲାଣି । ମନା କଲେ ମଧ୍ୟ ଅପନ୍ନାଯ୍ୟା ସିନା ସମସ୍ତଙ୍କୁ ଭିଡ଼ି ଭିଡ଼ି ଆଣିଥିଲା । ଏ ପିଲାଟାର ବୁଦ୍ଧି କେବେ ହେବ କେଜାଣି ?" ତାପରେ ସେ ଚାଲିଗଲେ । ତାଙ୍କ ପଛେ ପଛେ ଆୟାଶାସ୍ତ୍ରୀ ମଧ୍ୟ ଚାଲିଗଲେ ।

"ଅପନ୍ନାଯ୍ୟା, ସର୍ବରାକାରୀ ଅଧିକାର ସବୁବେଳେ ଘରର ବଡ଼ ପୁଅକୁ ମିଳେ । ଯଦି ଏଥିରେ ମନ ନମାନୁଛି ତିପଟୁର ଯାଇ କଚେରୀରେ ପଚାରି ଆସ ।" ନଞ୍ଜାପ୍ପା କହିବାରୁ ଅପନ୍ନା ଉଠିଲା । ପଞ୍ଚାୟତ ଉଠି ପଳାଇବାରୁ ତାକୁ ମଧ୍ୟ ବଡ଼ ଅଡୁଆ ଅଡୁଆ ଲାଗୁଥିଲା । ତେଣେ ଗଙ୍ଗାମ୍ମା ମୁହଁ ବୁଲାଇ କହିଲା - "ଏ ମାଇକିନାର ଏଡ଼େ ବହବ । ଗାଁ ମହାଜନକୁ ଅପମାନ ଦେଇ ଦୁଆରୁ ତଡ଼ି ଦେଲା । କିନ୍ତୁ ମୁଁ କଣ ମୋ ଭାଗ ଏତେ ସହଜେ ଛାଡୁଛି ।" କହି ଚାଲିଗଲା ।

ସେଦିନ ରାତିରେ ଖାଇଲା ବେଳକୁ ଚେନ୍ନିଗା ଏ ବିଷୟରେ ପାଟି ଫିଟାଇଲା ନାହିଁ । ନଞ୍ଜାପ୍ପା କହିଲା- "ଦେଖିଲଟି ଏମାନଙ୍କର କଥା ।" ଅବିଚଳିତ ଭାବରେ ଚେନ୍ନିଗା କହିଲା -"କହନ୍ତୁ କଣ କହୁଛନ୍ତି ।" ସେ ରାତିରେ ନଞ୍ଜାପ୍ପାକୁ ଭଲ ନିଦ ହେଲା ନାହିଁ । ସାତୁର କଥା ଶୁଣି ମନ ଦୁଃଖ । ତା ଛଡ଼ା ଡର ମଧ୍ୟ ଲାଗୁଥାଏ । ସତରେ କଣ ପେଟ ପୋଷିବାର ଏ ଶେଷ ସମ୍ବଳ ଭାଇଭାଗରେ ବଣ୍ଟା ହୋଇଯିବ । ଅଧରାତି ବେଳକୁ ଭାବିଲା - ଏକଥା ଦ୍ୟାବରସଯ୍ୟାଙ୍କୁ ଯାଇ ପଚାରିବା ଠିକ୍ ହେବ ।

ଦ୍ୟାବରସଯ୍ୟାଙ୍କ ବୟସ ବହୁତ ହୋଇ ଯାଇଥିବାରୁ ସ୍ୱାସ୍ଥ୍ୟ ଠିକ୍ ରହୁ ନଥାଏ । ତେଣୁ ଘର ଖଟରେ ପଡ଼ି ରହୁଥିଲେ । ବଡ଼ି ସକାଳୁ ନଞ୍ଜାପ୍ପାକୁ ଦେଖି ଆଶ୍ଚର୍ଯ୍ୟହୋଇଗଲେ । ଗତ ଦୁଇ ବର୍ଷ ହେଲା ନଞ୍ଜାପ୍ପା ତାଙ୍କ ଘରକୁ ଆସି ନଥିଲା । କିନ୍ତୁ ସେ ନଞ୍ଜାପ୍ପା ଉପରେ ଭାରି ଖୁସି ଯେ ଝିଅ ପିଲାଟା ଏକୁଟିଆ ସର୍ବରାକାରୀ ହିସାବ କିତାବ ବୁଝି ପାରୁଛି । ନଞ୍ଜାପ୍ପାର ଆସିବାର କାରଣ ଜାଣି କହିଲେ - "ଏଥିରେ ଡରିବାର କିଛି କାରଣ ନାହିଁ । ମୁଁ ଖୁବ୍ ଭଲ କରି ଜାଣିଛି ଯେ କେବଳ ଜ୍ୟେଷ୍ଠ ପୁତ୍ରର ଏଥିରେ ଅଧିକାର ଥାଏ । ରାଜାଙ୍କ ସିହାସନରେ ଅଧିକାର ମଧ୍ୟ ବଡ଼ ପୁଅର । ରାଜ୍ୟ କଣ ଦୁଇ ଭାଇ ମଧ୍ୟରେ କେବେ ବଣ୍ଟା ହୁଏ କି ?"

ନଞ୍ଜାପ୍ପା ତା ପିଲାକୁ ଗାଧୋଇ ସାରିଲା ପରେ ତାଙ୍କୁ ଜଳଖିଆ ଦେଇ ଦ୍ୟାବରସଯ୍ୟା କହିଲେ - "ତୋ ମନରେ ସନ୍ଦେହ ରଖନା । ଯଦି ଚାହୁଁ ତେବେ କମ୍ବନକେରେ ଯାଇ ଇଲାକାଦାର ଅଫିସରେ ପଚାରି

Digitized by srujanika@gmail.com

ଦେଇ ଆସ । ସବୁ ଶଙ୍କା ତୁଟିଯିବ ।''

ରାସ୍ତା ଦେଖାଇ ଦେବା ପାଇଁ ଦ୍ୱାବରସଯ୍ୟା ଜଣେ ଲୋକକୁ ନଷ୍ଟିଆ ସାଙ୍ଗରେ କମ୍ପନକେରେ ପଠାଇଲେ । ପିଲାଙ୍କୁ ଧରି ନଷ୍ଟିଆ ବାହାରିଲା । ତିନି ମାଇଲ ବାଟ । ଇଲାକାଦାରଙ୍କୁ ନଷ୍ଟିଆ ଭଲ କରି ଜାଣେ । ଯେତେବେଳେ ସେ ତାଙ୍କ ଗାଁକୁ ଆସନ୍ତି ନଷ୍ଟିଆ ଭଲ ରନ୍ଧା ରନ୍ଧି କରି ଖୁଆଏ । ବଡ଼ କୋମଳ ସ୍ୱଭାବର ଲୋକ । ନଷ୍ଟିଆକୁ 'ଭଉଣୀ' ବୋଲି ଡ଼ାକନ୍ତି । ତେଣୁ ଡର ଭୟ ନକରି ତାଙ୍କ ଘରେ ନଷ୍ଟିଆ ପହଞ୍ଚିଲା । ତାକୁ ଦେଖିଲା ମାତ୍ରେ ଇଲାକାଦାର କହିଲେ - ''କଣ ଭଉଣୀ ତୁମେ ମଧ୍ୟ ପଚାରିବାକୁ ଆସିଗଲ ଯେ ସର୍ବରାକାରୀ କାମରେ ସାନଭାଇର ଅଧିକାର ଅଛି ନା ନାହିଁ ?''

ନଷ୍ଟିଆ ଆଶ୍ଚର୍ଯ୍ୟ ହେଲା ଯେ ସେ ଜାଣିଲେ କିପରି ? ତାକୁ ଆଶ୍ଚର୍ଯ୍ୟ ହେବାର ଦେଖି ଇଲାକାଦାର କହିଲେ - ''ଏବେ ଅଧଘଣ୍ଟାଏ ତଳେ ତୁମ ଦିଅର ଅପନ୍ନା ଏବଂ ତା ସ୍ତ୍ରୀ ଏଠାକୁ ଆସିଥିଲେ । ମୋ ସାଙ୍ଗରେ କଥାବାର୍ତ୍ତା କରିବାକୁ ଏଡ଼ିକି ଡ଼ରଯେ କାନ୍ଥ ପଛରେ ଲୁଚି କରି ଠିଆ ହୋଇଥାନ୍ତି । ଅନ୍ନାହୋଇସ ଏବଂ ଶିବଲିଙ୍ଗ ଗୌଡ଼ ତାଙ୍କ ପାଇଁ ମୋ ପାଖରେ ଓକିଲାତି କଲେ । ତାଙ୍କୁ ବହୁତ ଗାଳି ଦେଇ ତଡ଼ି ଦେଲି । ତୁମେ କିଛି ଚିନ୍ତା କର ନାହିଁ । ଏକଥା କିଏ ନଜାଣେ ଯେ, ଏପରି ଅଧିକାର କେବଳ ଘରର ଜ୍ୟେଷ୍ଠ ପୁତ୍ରକୁ ମିଳେ । ଏଇ କଥା ଟା ପଚାରିବାକୁ କେତେ ବାଟ ଚାଲି ଚାଲି ଆସିଲ ।''

ନଷ୍ଟିଆ ମନରେ ଦମ୍ଭ ଆସିଲା । ''ଖରାରେ ଆସିଛ, ଘର ଭିତରକୁ ଆସ ।'' କହି ଇଲାକାଦାର ତାଙ୍କ ସ୍ତ୍ରୀଙ୍କୁ, ସେମାନଙ୍କର ଖାଇବାର ବ୍ୟବସ୍ଥା କରିବାକୁ କହିଲେ । ଖରା ଗଡ଼ିଗଲାରୁ ଯାଇ ଛାଡ଼ିଲେ । ଗଲାବେଳକୁ ନଷ୍ଟିଆ ହାତରେ ନଡ଼ିଆ, ଶାଢ଼ୀ, ଏବଂ ପିଲାଙ୍କ ହାତରେ ଗୁଡ଼ ଧରାଇ ଛାଡ଼ିଲେ ।

ସିଧା ରାସ୍ତାରେ ଫେରିଲେ ମଧ୍ୟ ରାମସନ୍ଦ୍ର ଗାଁ ସେଠୁ ପ୍ରାୟ ପାଞ୍ଚ ମାଇଲ ବାଟ । ବାଟରେ ଗୋଡ଼ କାଟୁଛି ବୋଲି ପିଲେ କାନ୍ଦିଲେ । ଇଲାକାଦାରଙ୍କ ଆଶ୍ୱାସନାରୁ ମନରେ ସାହସ ଧରି ପିଲାଙ୍କୁ ବୁଝାଇ ଧୀରେ ଧୀରେ ଗାଁରେ ପହଞ୍ଚିଲା ବେଳକୁ ରାତି ହୋଇ ଗଲାଣି ।

4

ଅପନ୍ନାଯ୍ୟା ତା ସ୍ତ୍ରୀ ପିଲାଙ୍କୁ ଧରି ଅଲଗା ରହିଲା ଦିନଠାରୁ ବୁଢ଼ୀ ଗଙ୍ଗାମ୍ମାକୁ ଭାରି ଏକୁଟିଆ ଲାଗୁଥାଏ । ବେଳେ ବେଳେ ଭାବେ ଯେ ନିଜ ପେଟରୁ ଜନ୍ମ କଲା ପିଲା ମଧ୍ୟ ତାକୁ ଏକୁଟିଆ କରିଦେଲେ । ଏଭଳି ପରାଜୟ ସହିବା ତା ଜାତକରେ ନାହିଁ । ଭାବିଲା ଯେ ସାନ ପୁଅକୁ ଅଲଗା ରହିବାପାଇଁ ସେଇ ବଡ଼ ବୋହୂ ଶିଖାଇଲା ଏବଂ ତା ଘର କରିବା ପାଇଁ ମଧ୍ୟ ସାହାଯ୍ୟ କରିଛି ।

Digitized by srujanika@gmail.com

ଏଣେ ଅପନ୍ନା ସ୍ତ୍ରୀ, ପିଲା ଏବଂ ଶାଶୁକୁ ଧରି ଅଲଗା ରହିବାର ଦେଢ଼ବର୍ଷ ହୋଇଗଲାଣି । ସବୁବେଳେ ଗାଁ, ଗାଁ ବୁଲି ବୁଲି ଭିକ୍ଷା ମାଗି, ଲୋକଙ୍କ ଗାଳି ଶୁଣି ତାର ମଧ୍ୟ ମନ ବଡ଼ ଅସହ୍ୟ ହୋଇ ଉଠିଲାଣି । ଦିନେ ସେ କେମ୍ପଗୌଡ଼ ଗାଁର କଳେଗୌଡ଼ ଘରକୁ ଯାଇଥିଲା । ଗୌଡ଼ ଘରେ ଆଉ ମଧ୍ୟ ବସିବା ପାଇଁ ମଶିଣା ଖଣ୍ଡେ ଦେଲା ନାହିଁ । ଅପନ୍ନା ତଳେ ବସିଗଲା । କିଛି ମାଣ୍ଡିଆ ମାଗିବାରୁ ଗୌଡ଼ ଗର୍ଜନ କରି କହିଲା - "ତୋ ମୁଣ୍ଡ ଠିକ୍ ଅଛି ତ ? ତୋ ମା ଏବେ ଆସି ମାଣ୍ଡିଆ ନେଇଗଲା । ତା ପଛରେ ତୁ ଆସିଗଲୁ । ମାଣ୍ଡିଆ ଗୁଡ଼ାକ କଣ କେଉଁଠି ପଡ଼ିଛି ଯେ ଗୋଟାଇ ନେବୁ । ହଳିଆ ଲାଗିବୁ କି କହ ? ଧନ ଚାଉଳ ସବୁ ମିଳିବ ।" ଅପନ୍ନା ଚୁପ ହୋଇ ବସିବାରୁ ଗୌଡ଼ କହିଲା - "ଭଲ ଗତି ଅଛି ତ ଚୁପ ହୋଇ ଚାଲିଯା , ନହେଲେ ବେକରେ ଧକ୍କା ଦେଇ ବାହାର କରିଦେବି ।"

ଅପନ୍ନାର ହୃଦୟ ଦୁଃଖରେ ଭାଙ୍ଗି ପଡ଼ିଲା । ଗତ ଦେଢ଼ବର୍ଷ ହେଲା ଏଭଳି ଗାଳି କେଉଁଠାରୁ ଶୁଣି ନଥିଲା । ନିଜ ଗଣ୍ଡିରାଟିକୁ ମୁଣ୍ଡାଇ ଉଠି ଆସିଲା । ବାଟରେ ଖାଲି ତା ପେଟ ଭିତରୁ କୋହ ଉଠିଲା । ଲୁହ ପୋଛି ପୋଛି ଯାଉ ଯାଉ ବାଟରେ ତାକୁ ଗଙ୍ଗାମ୍ମା ଦେଖିଲା । ଭେଣ୍ଡା ପୁଅର ଆଖିରେ ଲୁହ ଦେଖି ମା'ର ମନଟା ମାନିଲା ନାହିଁ । ପଚାରିଲା - "କାହିଁକି କାନ୍ଦୁଛିରେ ପୁଅ ।" ଅପନ୍ନାସ୍ୱା ଅନ୍ଧୁରି ଭୋ ଭୋ ହୋଇ କାନ୍ଦି ଉଠିଲା । ସବୁ କଥା କହି ମାକୁ ପଚାରିଲା, "କଳେଗୌଡ଼ର କଣ ଏପରି କହିବା କଥା ?"

"ଆସରେ ଅପନ୍ନା ନନ୍ଦୀ ମନ୍ଦିରରେ ବସି କଥା ହେବା ।" ପୁଅକୁ ସାଙ୍ଗରେ ନେଇ ମନ୍ଦିର ମଣ୍ଡପରେ ବସି କହିଲା - "ମା'ପୁଅ ଦୁଇଜଣ ଯାକ ମାଗିବାକୁ ଯାଉଛେ । ସେମାନେ ମଧ୍ୟ କଣ କରିବେ । ତୁ ସେଠାକୁ କାହିଁକି ଗଲୁ ?"

"ନ ମାଗିଲେ ଖାଇବୁ କଣ ?"

"ହାୟରେ ମୋ ପୋଡ଼ା କପାଳ । ମୋରି ପେଟରୁ ଜନ୍ମ ହୋଇ ପେଟ ଭୋକରେ ତୁ ପୁଣି ଗାଁ ଗାଁ ବୁଲି ଭିକ ମାଗିବୁ ? ଆଜି ପର୍ଯ୍ୟନ୍ତ ରାଜକୁମାର ଭଳିଆ ତତେ ବଡ଼ କରିଥିଲି ନିଜେ ଭିକ ମାଗି ମାଗି । ତୋର ମଧ୍ୟ କି ଭାଗ୍ୟ ଯେ, ସେ ପୋଡ଼ା ମୁହିଁମାନଙ୍କୁ ଘରେ ବସାଇ ପୋଷୁଛୁ । ତୁ ଦିନଯାକ ଖରା ତରାରେ ବୁଲି ଭିକ ମାଗୁଛୁ ଏବଂ ସେମାନେ ଘରେ ମଜା ଆରାମରେ ବସି ତୁ ଆଣିଥିବା ମାଣ୍ଡିଆ ବିକି ସରୁ ଚାଉଳ ଆଉ ଡାଲି କିଣି ଖାଉଛନ୍ତି । ତା ବାଦେ କଫି ନ ଖାଇଲେ ତାଙ୍କର ହଜମ ହେଉ ନାହିଁ । ତାଙ୍କର ରଙ୍ଗ ନେଳା ଶାଢ଼ୀକୁ ଦେଖ ଆଉ ତୋର ଏ ଛିଣ୍ଡା ଧୋତିକୁ ଦେଖ । ସେ ରାଣ୍ଡକୁ ନିଜ ସୁଖ ଛଡ଼ା ଏ ଭେଣ୍ଡା ପୁଅର ସୁଖ କ'ଣ ଦିଶୁଛି କି ?"

ମା'ର ଏକଥା ଅପନ୍ନା ମନକୁ ପାଇଲା । ସ୍ତ୍ରୀ ଓ ପିଲା ପିଲି ଆସିବା ଆଗରୁ ସେ ନିଜେ କେବେ ଭିକ୍ଷା ମାଗି ଯାଏ ନାହିଁ । ସେ ଗାଁ ମୁଣ୍ଡରେ ବୁଲୁଥାଏ । ମା' ଭିକ ମାଗି ଆଣିଲେ ସବୁ ବନ୍ଧା ବନ୍ଧି କରି ମୁଣ୍ଡରେ ଥୋଇ ଗାଁକୁ ଆଣେ । ତିନିମାସ ଏହିପରି ଭିକ ମାଗିଦେଲେ, ବର୍ଷଯାକର ମା' ପୁଅଙ୍କର

Digitized by srujanika@gmail.com

ଖାଇବା ହୋଇଯାଏ । ଗଙ୍ଗାମ୍ମା କହିଲା, "ତୋ ସ୍ତ୍ରୀକୁ ସିନା ତୁ ପୋଷିବୁ ହେଲେ ସେ ଅଲାଜୁକି ବୁଢ଼ୀଟାକୁ କାହିଁକି ଘରେ ବସାଇ ଖାଇବାକୁ ଦେବୁ ?"

ସେଦିନ ଅପନ୍ନା ଆଉ କେଉଁଆଡ଼େ ଭିକ ମାଗି ଗଲା ନାହିଁ । ମା' ଯାହା ମାଗି ଜମା କରିଥିଲା ତାକୁ ବାନ୍ଧି ମୁଣ୍ଡାଇଲା । ରାସ୍ତାରେ ଗଙ୍ଗାମ୍ମା କହିଲା - "ସେ ମହାଦେବସ୍ବାଟା ତ ସତ ମିଛ କହି ତୋଠୁ କଣ ପ୍ରମାଣ କରାଇ ନେଲା । ତୁ ତୋ ଶଶୁର ଘର ଗାଁକୁ ଅତି ବଡ଼ ହେଲେ ଥରେ ଦୁଇଥର ଯାଇଥିବୁ । ସେତିକିରେ ସାବୁ ଗର୍ଭ ହୋଇଗଲା ବୋଲି ତୁ କିପରି ଜାଣିଗଲୁ ।"

ଅପନ୍ନାସ୍ବା ଚୁପ୍ ରହିଲା । ସେମିତି ଗଣ୍ଡିରା ମୁଣ୍ଡାଇ ଚାଲିଥାଏ । ଗାଁ ପାଖ ହେବାରୁ ବୁଢ଼ୀ କହିଲା - "ତୁ ମୋ ପାଖରେ ଆସି ସୁଖରେ ରହ । କାହିଁକି ସେମାନଙ୍କୁ ପୋଷୁଥିବୁ ।"

ପୁଅ ତେଣୁ ମା ପାଖକୁ ରହିବାକୁ ଗଲା । ଘରକୁ ଗଲାମାତ୍ରେ ଚୁପ ଚାପ ଶୋଇଗଲା । ଗଙ୍ଗାମ୍ମା ରସୁଣ ଫୁଟାଇ ବିରି ଡାଲି କଲା ଏବଂ ଗରମ ଗରମ ମାଣ୍ଡିଆ ଚକୁଳି କରି ପୁଅକୁ ଉଠାଇଲା । ଅପନ୍ନା ହାତ ଧୋଇ ଖାଇ ବସିଲା ବେଳକୁ, ତାକୁ ଦେଢ଼ବର୍ଷ ତଳର ସୁଖ ମନେ ପଡ଼ିଯାଉଥାଏ । ମାଣ୍ଡିଆ ଚକୁଳି ତାର ପ୍ରିୟ ଖାଦ୍ୟ । ତା ଛଡ଼ା ଚୋପାଛଡ଼ା ବିରି ଡାଲିର ସ୍ୱାଦ ତାକୁ ଖୁବ୍ ଭଲ ଲାଗେ । ତା ସ୍ତ୍ରୀ ଏବଂ ଶାଶୁ କୁ କିନ୍ତୁ ଏହା ଭଲ ଲାଗୁନଥିବାରୁ ସେମାନେ କେବେ ହେଲେ ମାଣ୍ଡିଆ ଚକୁଳି ତିଆରି କରନ୍ତି ନାହିଁ । କହନ୍ତି କ'ଣ ନା ବିରିଡାଲି ଖାଇଲେ ପେଟରେ ବାୟୁ ବିକାର ହୁଏ ଏବଂ ସେଗୁଡ଼ାକ ଖାଲି ଛୋଟ ଜାତିର ଲୋକେ ଖାଆନ୍ତି । ମନକୁ ମନ ଗୁଡ଼ାଏ ଗାଳି ବକି ପେଟପୁରା ଚକୁଳି ଏବଂ ଡାଲି ଖାଇଲା ।

ସେଦିନ ଠାରୁ ଅପନ୍ନା ସ୍ତ୍ରୀ ପାଖକୁ ଆଉ ଗଲା ନାହିଁ । ପ୍ରଥମଦିନ ସାବୁ ଭାବିଲା ବୋଧେ ରାତି ହୋଇଯିବାରୁ କେଉଁ ଗାଁରେ ରହିଗଲେ । କିନ୍ତୁ ପରେ ଜାଣିଲା ଯେ ସେ ଆସି ମା' ପାଖରେ ରହୁଛନ୍ତି । ନିଜେ ଯାଇ ତାଙ୍କୁ ଡାକିବା ସମ୍ଭବ ନୁହେଁ । ତେଣୁ ତୃତୀୟଦିନ ପୁଅ ରାମକୃଷ୍ଣକୁ ପଠାଇଲା । ସେ ଯାଇ ଦେଖେ ତ ହନୁମାନ ମନ୍ଦିରରେ ତାଲା ଲଗା ହୋଇଛି । ସେଥର ମା'ପୁଅ ପନ୍ଦର ଦିନ ଯାଏଁ ଗାଁକୁ ଫେରିଲେ ନାହିଁ । ଏଣେ ଘରେ ବିକିବା ପାଇଁ ମାଣ୍ଡିଆ ନାହିଁ । ଚାଉଳ ଯାହା ଥିଲା ଶେଷ ହୋଇଗଲାଣି । କଫି ଗୁଣ୍ଡ ମଧ୍ୟ ଶେଷ । ପିଲା ଦୁଇଟା ଆଖୁଶାଳରୁ ମାଗି ଆଣିଥିବା ଗୁଡ଼ କିଛି ଥିଲା । କିନ୍ତୁ ଖାଲି ଗୁଡ଼ରେ ତ କଫି ହେବ ନାହିଁ । ତା'ଛଡ଼ା ଗାଁ ବାଲାଙ୍କୁ ଅପନ୍ନା ମା' ପାଖରେ ରହିବାର ଜଣାଥିଲା । ତେଣୁ ଦୋକାନରୁ ଉଧାର ମଧ୍ୟ ଦେଲେ ନାହିଁ । ଏବେ କରିବେ କ'ଣ ? ଉପାସରେ ରହିବାଟା ମଧ୍ୟ କଷ୍ଟକର । କଫି ନପିଇବାରୁ ମୁଣ୍ଡ ବିନ୍ଧା ହେଉଥାଏ । ଘରେ ଗୋଟିଏ ବଡ଼ ଥାଳି ଥିଲା । ତାକୁ ମହାଜନ ପାଖରେ ବନ୍ଧକ ରଖି ଦୁଇଟଙ୍କା ଆଣିଲେ । ଟଙ୍କାକୁ ଆଠସେର ଚାଉଳ । ଦି'ଅଣାର କଫିଗୁଣ୍ଡ ଏବଂ ଅଣାକର ଦୁଧ କିଣି ଅଣାଗଲା ।

ମା' ପୁଅ ଫେରିଲା ପରେ ମଧ୍ୟ ଅପନ୍ନା ସ୍ତ୍ରୀ ପାଖକୁ ଆସିଲା ନାହିଁ । ସାବୁ ଚାରିମାସ ଗର୍ଭବତୀ ହୋଇଥାଏ । ପୁଅକୁ ପଠାଇବାରୁ ତା ହାତରେ ଗଙ୍ଗାମ୍ମା ଖବର ଦେଲା - "ଯା, କହିଦେବୁ ସେ ଆଉ

Digitized by srujanika@gmail.com

ଘରକୁ ଯିବ ନାହିଁ । ଯେଉଁ ଭେଣ୍ଡିଆ ତୋ ବାପ, ତାରିଠୁ ଡାଲି ଚାଉଳ ଆଣି ଖାଅ ।'' ପିଲାଟା ଘରକୁ ଆସି ଢେଙ୍କିମା କହିଥିବା କଥା କହିଲା । ସାତୁ ର ମା ରାଗରେ ତମତମ ହୋଇଗଲା । ସାତୁ ମନା କଲେ ମଧ୍ୟ ନମାନି ସିଧା ଯାଇ ହନୁମାନ ମନ୍ଦିର ଆଗରେ ଠିଆ ହୋଇ ପାଟିକଲା - ''ଘରେ ପନ୍ଦରଦିନ ହେଲା କିଛି ଖାଇବାକୁ ନାହିଁ । ପିଲା ମାଇପଙ୍କୁ ପୋଷିବାକୁ ଯଦି ଶକ୍ତି ନଥିଲା ବିଭା କାହିଁକି ହେଉଥିଲୁ ?''

''ସେ ଦୋଚାରୁଣୀ ସାଙ୍ଗରେ ମୋ ପୁଅ ରହି ପାରିବ ନାହିଁ । ବୁଝିଲୁ ଲୋ ପୁରୋହିତିଆଣୀ, ଗଙ୍ଗାମ୍ମା ସମସ୍ୱରରେ ଜବାବ୍ ଦେଲା ।

''ମୋଝିଅକୁ ଦୋଚାରୁଣୀ କହିବାକୁ ତୁ କିଏ ? ଆମେ ଚତେ ଇଜତ୍ ଦେଲାବେଳକୁ ତୁ ଆମର ବଂଶ ଉଖାଳୁଛୁ ? ତୋର ସେ କୁକୁର ପ୍ରକୃତି ଯିବ କୁଆଡ଼େ ?''

ଏତିକି ବେଳକୁ ସାତୁ ଆସି ମା'କୁ ବୁଝାଇବାକୁ ଲାଗିଲା - ''ମା', ତୁ କାହିଁକି ଆସି ନିଜର ଶକ୍ତି ନଷ୍ଟ କରୁଛୁ । ତାଙ୍କ ପାପ ତାଙ୍କୁ ଖାଉ ।''

ଗଙ୍ଗାମ୍ମା ପାଟିକଲା,''ଆରେ ଅପନ୍ନା ଶୁଣୁଛୁ ଏ ମାଇକିନାର କଥା । ପ୍ରଥମେ ତ ମା'କୁ ପାଠ ପଢ଼ାଇ ଏଠିକି ପଠାଇଥିଲା । ଏବେ ମୋ କଥାକୁ ପାପ ବୋଲି କହୁଛି । ବିନାପଡିରେ ଝୁଆ ଜନ୍ମ କରିବାଟା କିନ୍ତୁ ପାପ ନୁହେଁ ନା ?''

ଅପନ୍ନା ରାଗରେ ଘରୁ ବାହାରି କହିଲା -''ଆଲୋ ଚତେ ଯୋତାରେ ବାଡ଼େଇ ସିଧା କରିବି । ତୁ ଭାବୁଛୁ ତୋର ଚାଲି ଚଳଣ କଥା ମତେ ଜଣା ନାହିଁ ।''

ସାତୁ ଏବଂ ତା ମା' ଡରିଯାଇ ଘରକୁ ପଳାଇ ଆସିଲେ । ଗଙ୍ଗାମ୍ମା ଉପଦେଶ ଦେଲା ପୁଅକୁ - ''ଆରେ ଦେଖୁଛୁ କଣ ? ଯା, ସେ ମାଇକିନା ଦୁଇଟାଙ୍କୁ ଏ ଗାଁରୁ ତଡ଼ିଦେ । ଆରେ ତୁ ତ ସେ ଘରଟା ତିଆରି କରିଛୁ, ଯା ସେଠାରେ ନିଆଁ ଲଗାଇ ଦେ ।''

ଅପନ୍ନା ଚାଲିଲା ଘର ଆଡ଼େ । ସିଧା ଯାଇ ସାତୁର ବେକଟା ଧରିଲା । ବେକରେ ଥିବା ମଙ୍ଗଳ ସୂତ୍ର ମାଳିକୁ ମୁଠେଇ ଧରି ଝିଙ୍କି ଦେଲା ଯେ ସୂତାଟା ଛିଣ୍ଡିଯାଇ ମାଳି ଗୁଡ଼ିକ ବିଛେଇ ହୋଇ ପଡ଼ିଲା । ଏବଂ ସାତୁ ବେକରୁ ଖଣ୍ଡିଆ ହୋଇ ରକ୍ତ ବାହାରିଲା । ସାତୁ ''ମରିଗଲି, ମରିଗଲି'' ବୋଲି ରଡ଼ି ଛାଡ଼ିଥାଏ, ଏବଂ ତଳେ ପଡ଼ିଗଲା । ଅପନ୍ନା ଘର ଭିତରକୁ ଗଲା । ରୋଷେଇ ଘରେ ଚୁଲିଟା ଜଳୁଥିଲା । ଖଣ୍ଡେ ଜଳନ୍ତା କାଠ ବାହାର କରି ଆଣି ଚାଳର ନଡ଼ାରେ ନିଆଁ ଲଗାଇ ଦେଲା । ନିଆଁ ଅତି ବେଗରେ ଚାଳର ଚାରିଆଡ଼େ ମାଡ଼ିଗଲା ଏବଂ ଧୂଆଁରେ ଗାଁ ଦାଣ୍ଡ ପୁରିଗଲା । ଲୋକେ ପାଟିତୁଣ୍ଡ କରି ଆସି ଘର

Digitized by srujanika@gmail.com

ପାଖରେ ରୁଣ୍ଡ ହୋଇଗଲେ ।

ସାବୁର ମା' ଚିତ୍କାର କରୁଥିବା ଶୁଣାଗଲା - "ଆରେ ଆମର ସବୁ ଜିନିଷ ପୋଡ଼ି ଗଲା ରେ, କିଏସେ ଟିକିଏ ବାହାର କରିଦିଅ ।" ଲୋକେ ଘର ଭିତରେ ପଶି କଂସା, ବାସନ, ଲୁଗା ପଟା ଯାହା ହାତରେ ପଡ଼ିଲା ଆଣି ଦାଣ୍ଡରେ ଫିଙ୍ଗି ଦେଲେ । ପାଣି ପକାଇ ନିଆଁ ଲିଭାଇବାକୁ ବେଳ ନଥିଲା । ପାଖରେ ପାଣି ମଧ୍ୟ ନଥିଲା । ଦେଢ଼ବର୍ଷ ପୂର୍ବରୁ ଯେଉଁ ଅପନ୍ନାସ୍ୱା ନିଜେ ମାଟି ଖୋଳି, କାନ୍ଥ ଉଠାଇ, ଛପର କରି ଘର ତିଆରି କରିଥିଲା ତାରି ହାତରେ ନିଆଁ ଲାଗି ଅଧଘଣ୍ଟା ଭିତରେ ସବୁ ପାଉଁଶ ହୋଇଗଲା । ଖାଲି କାନ୍ଥ ଚାରିଟା ଏବଂ ପଥର ଖମ୍ବ ଦୁଇଟା ଧୂଆଁରେ କଳା ହୋଇ ଠିଆ ହୋଇଥାନ୍ତି ।

ସବୁ ସରିବା ପରେ ବାପ ଭଳିଆ ଗର୍ଜନ କରି ଅପନ୍ନା କହିଲା - "ଦେଖିଲୁ ଲୋ ଛତର ଖାଇ, କଣ ମୁଁ କଲି ।" ସାବୁର ମା' କାନ୍ଦି କାନ୍ଦି ଅଭିଶାପ ଦେଲା, "ତୋ ହାତ ଗୋଡ଼ ଭାଙ୍ଗିଯାଉରେ ଭେଣ୍ଡିଆ ।" ସାବୁ ମା'କୁ ବୁଝାଇ ଚୁପ କରାଇଲା । ତାପରେ ଅପନ୍ନାସ୍ୱା ହାତରେ ମଙ୍ଗଳସୂତ୍ର (ବିବାହର ଚିହ୍ନ) ଧରି ଗାଁଟା ଯାକ ସାଇ ସାଇ ବୁଲି କହିଲା ଯେ, "ଦେଖ ହେ ଲୋକମାନେ, ମୁଁ ମୋ ସ୍ତ୍ରୀର ବେକରୁ ମଙ୍ଗଳସୂତ୍ର ଛିଣ୍ଡାଇ ଦେଇଛି, ତେଣୁ ଆଜିଠାରୁ ସେ ମୋର ସ୍ତ୍ରୀ ନୁହେଁ କି ମୁଁ ତାର ପତି ନୁହେଁ ।"

ନିଆଁ ଲାଗିବା କଥା ଶୁଣି ନନ୍ଦିନୀ ମଧ୍ୟ ଧାଇଁ ଆସିଥିଲା । ଘରୁ ଜିନିଷପତ୍ର ବାହାରେ ଫିଙ୍ଗିବାରେ ସେ ମଧ୍ୟ ଲୋକଙ୍କୁ ସାହାଯ୍ୟ କରିଥିଲା । ବର୍ତ୍ତମାନ କଣ କରାଯିବ । ତାକୁ ଉପାୟ ଦିଶୁନଥାଏ । ସାବୁ ପାଖକୁ ଆସି କହିଲା - "ନାନୀ, ତୁମ ଛଡ଼ା ଏଗାଁରେ ଆମର ନିଜର ବୋଲି ଆଉ କେହି ନାହିଁ ।" ନନ୍ଦିନୀ ଭାବୁଥିଲା ଯେ ଏମାନଙ୍କୁ ନିଜର କରି କିପରି ରଖିବ । ବର୍ତ୍ତମାନର ପରିସ୍ଥିତିରେ ଅପନ୍ନାକୁ କିଛି ବୁଝାଇବାଟା ବୁଦ୍ଧିମାନର କାର୍ଯ୍ୟ ହେବ ନାହିଁ । ଶାଶୁଙ୍କ କଥା ତ ଛାଡ଼ । ସାବୁକୁ ପଚାରିଲା - "ମୁଁ ତୁମ ପାଇଁ କଣ କରି ପାରିବି ତୁମେ କହ ।"

"ଏବେ ଦି'ଚାରିଦିନ ତୁମ ଘରେ ରହିବୁ ଏବଂ ତାପରେ ଅନ୍ୟ ବ୍ୟବସ୍ଥା କରିବୁ ।" ସାବୁ କହିଲା । ନନ୍ଦିନୀ ନାହିଁ କରି ପାରିଲା ନାହିଁ । ପାଖରେ ଠିଆ ହୋଇଥିବା ଲୋକଙ୍କୁ କହିଲା - "ଭାଇମାନେ ଏ ଜିନିଷ ଗୁଡ଼ାକ ଟିକିଏ ଆମ ଘରେ ପହଞ୍ଚାଇ ଦିଅ । ଲୋକଙ୍କ ସାହାଯ୍ୟରେ ସବୁ ଜିନିଷ ଘରକୁ ନେଇ ଗୋଟିଏ କୋଣରେ ରଖାଇଲା । ନନ୍ଦିନୀ ତାପରେ ରୋଷେଇ ଘରେ ପଶିଲା । ଏମାନେ ତ ମାଣ୍ଡିଆ ଚକୁଳି ଖାଇବେ ନାହିଁ, ତେଣୁ ବୋଝରେ ରଖା ହୋଇଥିବା ଚାଉଳ ଆଣି ଧୋଇଲା । ଘରେ ହରଡ଼ ଡାଲି ନଥିଲା । ତେଣୁ ଝିଅକୁ ପଠାଇ ଦୋକାନରୁ କିଣାଇ ଆଣିଲା ।

ବଡ଼ ବୋହୂ ଘରକୁ ସାବୁ ଏବଂ ତା ମା' ପିଲେ ଆଜି ଯାଇ ରହିବାର ଖବର ପାଇ ଗଙ୍ଗାମ୍ମା ମନଟା ଚିହିଁକି ଉଠିଲା । "ବହୁତ କିମିଆ ଜାଣେ ମାଇକିନାଟା । ପେରେ କଣ ଜାଦୁ କରି ମୋ ପିଲାଟାକୁ ସେଇ ସାବୁ ପାଖରେ ବନ୍ଧାଇବ ।" କ'ଣ ଭାବି ବୁଢ଼ୀ ସିଧା ପୁରୋହିତ ଅନ୍ନାଜୋଇସଙ୍କ ପାଖକୁ ଗଲା ।

Digitized by srujanika@gmail.com

"ପୁରୋହିତେ ତୁମେ ସବୁ ଶୁଣିଲଟିକି ?"

ପୁରୋହିତେ ଜାଣିଥିଲେ ମଧ୍ୟ ଗଙ୍ଗାଙ୍କା ମୁହଁରୁ ସବୁ ବିସ୍ତାର ପୂର୍ବକ ଶୁଣିବାକୁ କହିଲେ - "ନାଇଁ ତ, କଥା କ'ଣ ହେଲା କି ?"

ନିଜ ପୁଅ ତା ସ୍ତ୍ରୀ ବେକରୁ ମଙ୍ଗଳସୂତ୍ର ଛିଣ୍ଡାଇବା କାହାଣୀ ସଗର୍ବେ ବର୍ଣ୍ଣନା କରୁ କରୁ ଗଙ୍ଗାଙ୍କା କହିଲା - ଗର୍ବର ସହ, "ଯାହାର ମଙ୍ଗଳସୂତ୍ର ଛିଣ୍ଡା ହୋଇଛି ସେ ଭଳି ମାଇକିନାକୁ ମୋ ବଡ଼ ବୋହୁ ତା' ଘରେ ନେଇ ଯାଗା ଦେଇଛି । ପଞ୍ଚାୟତ ଡାକି ତାକୁ ଦଣ୍ଡ ଦିଆଯିବା କଥା କି ନୁହେଁ ?"

ପୁରୋହିତ ଅନ୍ନକୋଇସଙ୍କୁ ଧର୍ମଶାସ୍ତ୍ର ପରୀକ୍ଷାରେ ଆଉ ଗୋଟିଏ ବିଷୟ ମିଳିଗଲା । ମନକୁ ମନ ଭାବିଲେ - ଏଥର କୁଆଡ଼େ ଯିବ ସେ ପାଠପଢ଼ା ମାଇକିନା ଖଣ୍ଡକ । ପଞ୍ଚାୟତରେ ଏକଥା ପକାଇ ଅତି କମ୍‌ରେ ପଚିଶ ଟଙ୍କା ଜୋରିମାନା ନକଲେ ମନଟା ଶାନ୍ତ ହେବ ନାହିଁ । ଆର ଥର କେତେ ଅପମାନ ଦେଇ ତା'ଘରୁ ସମସ୍ତଙ୍କୁ ବାହାର କରିଦେଲା । ତା'ଛଡ଼ା ଭଲାକାଦାରଙ୍କ ପାଖକୁ ଗୁହାରୀ କରି ଯାଇଥିଲେ, ଯେ ସେଠୁ ମଧ୍ୟ ପ୍ରସ୍ତେ ଗାଳି ଗୁଲଜ ଶୁଣି କାନ ମୁଣ୍ଡ ଆଉଁସି ଫେରିଛନ୍ତି । ସେ କଥାଟା ମନେ ପଡ଼ିଲାରୁ ମନଟା ଟିକେ ଦବିଗଲା । କିନ୍ତୁ, ସେ ଅପମାନର ପ୍ରତିଶୋଧ ନେବାକୁ ମନେ ମନେ ସ୍ଥିର କଲେ । ଏପରି ସୁଯୋଗ ଛାଡ଼େ କିଏ ? ଗଙ୍ଗାଙ୍କାକୁ ସେଠି ବସିବାକୁ କହି ତାଙ୍କ ଜକେଇ ଆସ୍ଥାଶାସ୍ତ୍ରୀଙ୍କ ପାଖରେ ଯାଇ ହାଜର ହେଲେ । ଏପରି ଏକ ସୁବର୍ଣ୍ଣ ସୁଯୋଗ ଶାସ୍ତ୍ରୀ ପୁରୋହିତ ବା ହାତରୁ ଛାଡ଼ିବେ କିପରି ? ତେଣୁ କହିଲେ - "ଏଇଟା ବ୍ରାହ୍ମଣ ଧର୍ମର ଗୋଟାଏ ବଡ଼ ପ୍ରଶ୍ନ । ଧର୍ମଟାକୁ ପୁଣି ରଖିବାକୁ ହେବ ତ ?"

ରାମଚନ୍ଦ୍ର ରାଁଉ ଏ ଦୁଇଜଣ ଧର୍ମପାଳକ ଏବଂ ଅନ୍ୟ ଚାରିଜଣ ବ୍ରାହ୍ମଣ ମିଶି ନଞ୍ଜିଙ୍କାର ଘରକୁ ଆସିଲେ । ସାଙ୍ଗରେ ଗଙ୍ଗାଙ୍କା ଏବଂ ଅପନ୍ନୟ୍ୟା ମଧ୍ୟ ଥିଲେ । ନଞ୍ଜିଙ୍କାକୁ ଜଣା ନଥିଲା ଯେ ଏସବୁ ଲୋକେ ତାଘରକୁ ନ୍ୟାୟ କରିବା ପାଇଁ ଆସିଛନ୍ତି । ଅନ୍ନକୋଇସ କଥାଟାକୁ ଆରମ୍ଭ କଲେ । "ଯେଉଁ ସ୍ତ୍ରୀର ମଙ୍ଗଳସୂତ୍ର ଛିଣ୍ଡା ଯାଇଛି, ସେ ସ୍ତ୍ରୀ ବିଧବା ସମାନ । କିନ୍ତୁ ପତି ଥାଉ ଥାଉ ବିଧବା ହେବ ବା କିପରି ? ତେଣୁ ସେ ସ୍ତ୍ରୀ ବଞ୍ଚିଥିଲେ ମଧ୍ୟ ମୃତ ସମାନ । ସେପରି ସ୍ତ୍ରୀର ମୁହଁ ଦେଖିଲେ ପାପ ହେବ । ତୁମେ ତାକୁ ଘରେ ପୂରାଇବାଟା ଭୁଲ ହେଲା । ତାର ପ୍ରାୟଶ୍ଚିତ କରିବା ଦରକାର । ତୁମକୁ ଜୋରିମାନା ମଧ୍ୟ ଦେବାକୁ ପଡ଼ିବ ।"

ଚେନ୍ନିଗରାୟ ଏପ୍ରକାର ନ୍ୟାୟ ଶୁଣି ଟିକିଏ ଶଙ୍କିଗଲା । "ମୁଁ କିଛି ଜାଣେ ନାହିଁ ଆଜ୍ଞା, ସିଏ ସମସ୍ତଙ୍କୁ ଆଣି ଘରେ ପୂରାଇଛି । ମୁଁ ଚାହିଁଲେ ସେମାନଙ୍କୁ ଧକ୍କା ଦେଇ ଘରୁ ବାହାର କରିଦେଇ ପାରିବି ।"

"ତାହା ତ ଠିକ୍ । କିନ୍ତୁ ଘରେ ତ ପଶି ସାରିଛନ୍ତି । ସେଥିପାଇଁ ଜୋରିମାନା ଦେବାକୁ ପଡ଼ିବ ।"

Digitized by srujanika@gmail.com

"କେତେ ଦେବାକୁ ପଡ଼ିବ ।"

ଅନ୍ତୋନିଅସ୍ ଟାଙ୍କ କକେଇ ଅୟ୍ୟାଶାସ୍ତ୍ରୀଙ୍କ ଆଡ଼କୁ ଚାହିଁଲେ । ଶାସ୍ତ୍ରୀ କହିଲେ - "ବିଚରା ଗରିବଙ୍କୁ ଆଉ କେତେ ଜୋରିମାନା କରିବା । ପଚିଶିଟା ଟଙ୍କା ହେଲେ ଚଳିଯିବ । "

"ଏତେ ଟଙ୍କା ଆମେ କେଉଁଠୁ ଆଣିବୁ ପୁରୋହିତ । କିଛି କମ୍ କରି ଦିଅନ୍ତୁ ।"

"ଚେନ୍ନିଗା ତୁ କଣ ଭାବିଛୁ ଆମେ ଏ ଟଙ୍କା ଘରକୁ ନେଇଯିବୁ । ଏ ଟଙ୍କା ଶୃଙ୍ଗେରୀ ମଠରେ ଯାଇ ଜମା ହେବ ।"

ଚେନ୍ନିଗା ସ୍ତ୍ରୀ ଆଡ଼କୁ ଚାହିଁ କହିଲା - "ଆଲୋ ପୋଡ଼ାମୁହିଁ, ଏଇଥିପାଇଁ ତାଙ୍କୁ ଆମ ଘରେ ପୁରାଇଥିଲୁ । ଏତେ ଅନିଷ୍ଟ ଆମେ କାହିଁକି ମୁଣ୍ଡାଇବୁ । ଏମାନଙ୍କୁ ଏବେ ଘରୁ ଧକ୍କାଦେଇ ତଡ଼ୁବୁ ନା ନାହିଁ ?"

ସାବୁ ର ମା' ରୋଷେଇ ଘର ଆଗରେ ଠିଆ ହୋଇ ସବୁ ଶୁଣୁଥାଏ । ବାହାରକୁ ଆସି ପଚାରିଲା, "ପୁରୋହିତ, ଆପଣ ଆମର ବନ୍ଧୁବାନ୍ଧବ ଲୋକ । ଏପରି କଷ୍ଟ ଆମକୁ କାହିଁକି ଦେଉଛନ୍ତି ।"

"ଭଉଣୀ ତୁମ ସାଙ୍ଗରେ ମୋର କିଛି କଳିଗୋଳ ନାହିଁ । କିନ୍ତୁ ଧର୍ମଶାସ୍ତ୍ରଟାକୁ ଏଡ଼ି ଦେଇ ପାରିବା ନାହିଁ । ଏସବୁ ଅନ୍ୟାୟ୍ ଅଧର୍ମ କଥା ଦେଖିଶୁଣି ଆମେ ଚୁପ୍ ରହିଲେ ମଧ୍ୟ ଶୃଙ୍ଗେରୀ ବାଲା ତ ଚୁପ୍ ରହିବେ ନାହିଁ ।" ଅନ୍ତୋନିଅସ୍ କହିଲେ ।

ଏପର୍ଯ୍ୟନ୍ତ ନଞ୍ଜିଙ୍କା ସବୁକଥା ଚୁପ୍‌ଚାପ୍ ଶୁଣୁଥିଲା । ବର୍ତ୍ତମାନ ଉଠି କହିଲା - "ବିବାହର ପବିତ୍ର ଚିହ୍ନ ମଙ୍ଗଳସୂତ୍ରକୁ ଅପନ୍ନା ସାବୁ ବେକରୁ ଛିଣ୍ଡାଇଲା । କେଉଁ ଶାସ୍ତ୍ରରେ ଲେଖାହୋଇଛି ଯେ ସ୍ତ୍ରୀ ବେକରୁ ମଙ୍ଗଳସୂତ୍ର ଛିଣ୍ଡାଇବା ଅଧିକାର ସ୍ୱାମୀର ଅଛି । ଯଦି ଦଣ୍ଡ ଜୋରିମାନା ନେବା କଥା ଅପନ୍ନା ଠାରୁ ନିଅନ୍ତୁ । ଘରଟା ପୋଡ଼ିଦେବା ପରେ ପିଲାବୁଆଙ୍କୁ ଆଶ୍ରୟଦେବା ଆମର ଧର୍ମ ନୁହେଁ କି ? ଆପଣଙ୍କର କେଉଁ ଧର୍ମଶାସ୍ତ୍ରରେ ଦୁଃଖି ଲୋକଙ୍କୁ ଆଶ୍ରୟ ଦେବା ମନା ହୋଇଛି କହିଲେ ?"

ଦୁଇଜଣ ଯାକ ଧର୍ମ ପୁରୋହିତଙ୍କର ବୁଦ୍ଧି ବନ୍ଦ ହୋଇଗଲା । ନଞ୍ଜିଙ୍କାର ଧର୍ମ ବ୍ୟାଖ୍ୟାନର ଓଲଟାଗତି ଦେଖି ଗଙ୍ଗାନ୍ନା ଉପରେ ମଧ୍ୟ ବଜ୍ରପାତ ହେଲାପରି ଲାଗିଲା । ଶାସ୍ତ୍ରୀ ମହାଶୟ କହିଲେ - "ଅପନ୍ନା ତ ମଙ୍ଗଳସୂତ୍ର ତା' ବେକରେ ବାନ୍ଧିଥିଲା । ସେ ପୁଣି ଫିଟାଇ ଦେଲା ଏଥିରେ କ'ଣ ଦୋଷ ଅଛି ?" ଅନ୍ତୋନିଅସ୍ କକେଇଙ୍କୁ ଚୁପ୍ ରହିବାକୁ କହି ଆରମ୍ଭ କଲେ - "ସାବୁ ପରା ନିଜେ କୁଆଡ଼େ ମଙ୍ଗଳସୂତ୍ର କାଢ଼ି ଅପନ୍ନା ହାତରେ ଧରାଇ ଦେଇ କହିଲା ଯେ ତୁମର ମଙ୍ଗଳସୂତ୍ର ମୋର ଦରକାର ନାହିଁ । କଣ ଗଙ୍ଗାନ୍ନା ଏହା ଠିକ୍ ନା ?"

Digitized by srujanika@gmail.com

"ହଁ ହଁ ସେଇ କଙ୍କାଳୁଡ଼ି ନିଜେ ନିଜ ବେକରୁ ମଙ୍ଗଳସୂତ୍ରଟା ପରା ଛିଣ୍ଡାଇ ଫିଙ୍ଗି ଦେଇଥିଲା ।" ଗଙ୍ଗାମ୍ମା କହିଲା । ସାତୁର ମା' ଆଉ ସମ୍ଭାଳି ନପାରି କହିଲା - "ପାପ କଥା ଗୁଡ଼ାକ କାହିଁକି କହୁଛ କହିଲ ? ଏକଥା ତୁମେ ପ୍ରମାଣ କରି ପାରିବ ତ ?" ଗଙ୍ଗାମ୍ମା ଉତ୍ତର ଦେଲା - "ଏଥିରେ ପ୍ରମାଣ ଆଉ ଗୋଟେ କ'ଣ ? ସାରା ଗାଁଟା ଏକଥା ଜାଣିଛି ।"

ଏହିପରି ନ୍ୟାୟଟା ବାଟଭାଙ୍ଗି ଅନ୍ୟ ଆଡ଼େ ପଶିଗଲା । ଯଦି ଜୋରରେ ପାଟି କଲା ବାଲା ପୁରୁଷ ଲୋକ କିଏ ଥାନ୍ତା ତେବେ ନଷ୍ଟିମ୍ମା ପକ୍ଷରୁ ପାଟିକରି ଏମାନଙ୍କୁ ଦବାଇ ଦିଅନ୍ତା । ନଷ୍ଟିମ୍ମା ଏକଥା ଜାଣି କହିଲା - "ପୁରୋହିତେ ଆପଣ ଏ ଘଟଣାଟା ନିଜ ଆଖିରେ ତ ଦେଖି ନାହାନ୍ତି , ବୃଥାଟାରେ ଆମଘରେ କଳିଲଗାଇ ମଜା ଦେଖିବାକୁ ଆସିଛନ୍ତି । ଏଇଟା କୌଣସି ଇଜ୍ଜତ୍ ବାଲା ଲୋକର କାମ ନୁହେଁ । ଆପଣଙ୍କୁ ତ କେହି ଏଠିକୁ ଡ଼ାକି ନାହାନ୍ତି । ଚୁପଚାପ୍ ଚାଲି ଯାଆନ୍ତୁ । ଆଉ ଭବିଷ୍ୟତରେ ମଧ୍ୟ ଏପରି ମିଛଟାରେ ନ୍ୟାୟ କରିବା ନାମରେ ଆମ ଘରକୁ ଯେପରି ନ ଆସନ୍ତି ।"

ଗଙ୍ଗାମ୍ମା ରାଗରେ କହିଲା - "ଦେଖିଲେ ପୁରୋହିତେ ଏ ମାଇକିନାର ଏଡ଼ିକି ଗର୍ବ ।" ସାତୁ ଅନେକବେଳୁ ସବୁକଥା ଶୁଣି ରାଗହୋଇ ଥିଲା । ହଠାତ୍ ଯାଇ ଝାଡୁଣୀ ଟା ଉଠାଇ ଗଙ୍ଗାମ୍ମା ମୁହଁ ଉପରକୁ ଫିଙ୍ଗିଦେଇ କହିଲା - "ଏଇ ଘର ପୋଡୀ ଚଣ୍ଡାଳୁଣୀ ଲାଗି ଆଜି ଆମର ଏଦଶା ହୋଇଛି ।"

ଗଙ୍ଗାମ୍ମା ଚକିତ ହୋଇ ରହିଗଲା । ଅପନ୍ନାୟାର ମୁଣ୍ଡକୁ କିନ୍ତୁ ପିତ ଚଢ଼ିଗଲା । ନଷ୍ଟିମ୍ମା ଡରିଯାଇ ଶୀଘ୍ର ସାତୁକୁ ଓ ତା' ମା'କୁ ଘୋଷେଇ ଘର ଭିତରେ ବନ୍ଦ କରି କବାଟ ବନ୍ଦ କରିଦେଲା ଏବଂ କହିଲା - "ଆପଣମାନେ ଏବେ ଶୀଘ୍ର ଏଠୁ ଚାଲି ଯାଆନ୍ତୁ ।"

ପୁରୋହିତ ଦି'ଜଣ ଏବଂ ବ୍ରାହ୍ମଣମାନେ ଉଠି ଚାଲିଗଲେ । ଗଙ୍ଗାମ୍ମା କିନ୍ତୁ ବାରଣ୍ଡା କଡ଼ରେ ଥୁଆ ହୋଇଥିବା ଠେଙ୍ଗାଟାକୁ ଧରି ଘୋଷେଇ ଘର ଆଡ଼େ ଧାଇଁ ଗଲା ଏବଂ ଦୁଆରଟାକୁ ଠେଙ୍ଗାରେ ବାଡ଼େଇଲା । ନଷ୍ଟିମ୍ମା ପାଟି କରି ଉଠିଲା - "ଏଇଟା ସର୍ବରାକାରଙ୍କର ଘର । ଯଦି ଏଠି କିଛି ମାଡ଼ପିଟା କର ତେବେ ଇଲାକାଦାରଙ୍କ ପାଖରେ କେଶ କରି ପୋଲିସ ଡକାଇ ତୁମମାନଙ୍କୁ ବନ୍ଧାଇବି ।" ପୋଲିସ୍ ନାଁ ଶୁଣି ଗଙ୍ଗାମ୍ମା ହାତରୁ ଠେଙ୍ଗାଟା ଖସି ପଡ଼ିଲା । ଅପନ୍ନାର ମଧ୍ୟ ଦେହ ମୁଣ୍ଡ ଥରି ଉଠିଲା । ମା'ର ହାତ ଟାଣି ଟାଣି ବାହାରକୁ ନେଇ ଯାଇ ଅପନ୍ନା କହିଲା - "ଚାଲ ମା' ଏ ଦୋଚାରୁଣୀଙ୍କ ପାଖରେ ନରହିଲେ ମଙ୍ଗଳ । ମଣ୍ଡପକୁ ଆସି ଚୁପ ଚାପ୍ ଚାଲିଗଲେ କାଳେ ମାନ ସମ୍ମାନରେ ଆଞ୍ଚ ଆସିବ ତେଣୁ ଗଙ୍ଗାମ୍ମା ଦଶ ପନ୍ଦରଟା ଗାଳି ଦେଇ ତା'ପରେ ଗଲା ।

ଭାତ ଡାଲି ରନ୍ଧା ହୋଇଥିଲେ ମଧ୍ୟ ସାତୁ ଏବଂ ତା' ମା' ଖାଇଲେ ନାହିଁ । ଏବେ ଜୀବନ କିପରି ବିତାଇବେ ଏଇ ଚିନ୍ତା ତାଙ୍କୁ ଘାରୁଥିଲା । ଦି'ପହର ଘଟଣାବେଳୁ ମା'ଝିଅ ମୂକ ପରି ବସି ରହିଥିଲେ ।

Digitized by srujanika@gmail.com

## 5

ରତିଯାକ ମା' ଝିଅ ଯାତୁ ସିଯାତୁ କଥା ହେଲେ । ସକାଳୁ ଉଠି ସାତୁର ମା' ନନ୍ଦିକା କୁ କହିଲା - "ଏଠି ରହିଲେ ଆଉ କେଉଁ ସୁଖ ଅଛି । ଗାଁରେ ଘର ଖଣ୍ଡେ ଥିଲା ଯେ ଏଠାକୁ ଆସିବା ଆଗରୁ ତାକୁ ମଧ୍ୟ ବିକି ଦେଇଛୁ । ଏବେ ପୁରୋହିତ କାମ କଲେ ପାଖ ପାଖ ଗାଁରୁ କିଛି ମିଳିପାରେ । ନାତି ରାମକୃଷ୍ଣ ତ ଆଠବର୍ଷର ହୋଇଗଲାଣି । କେମିତି କେମିତି ତା'ବେକରେ ପଇତାଟେ ପକାଇ ଦେଲେ ଶ୍ରାଦ୍ଧ ମଉଳା, ପୁଣ୍ୟ ପରବ ଏବଂ ଦାନ ଦକ୍ଷିଣା ଆଦିରୁ ରୋଜଗାର କରି କଷ୍ଟେମଷ୍ଟେ ଚଳିଯିବୁ । କାହାଠାରୁ ଜାଗା ମାଗିକରି କୁଡ଼ିଆ ଖଣ୍ଡେ କରି ରହିଯିବୁ ।" ନନ୍ଦିକା ଆଉ ଏମାନଙ୍କୁ ଉପଦେଶ ବା କଣ ଦେବ । ପରିଶ୍ରମ କରି ପେଟ ପୋଷିବା ତ ଏମାନଙ୍କର ହାତରେ ହେବନାହିଁ । ଏମାନେ ନିଜ ଗାଁକୁ ଫେରିଗଲେ ମଧ୍ୟ ତାଙ୍କର ଅଭ୍ୟାସଟା କଣ ବଦଳିବ ? ଏବଂ ନନ୍ଦିକା ବା' ଏମାନଙ୍କ ପାଇଁ କ'ଣ କରିପାରିବ । ତେଣୁ ତାଙ୍କ କଥାରେ ରାଜି ହେଲା । ସାତୁ ଏବଂ ତା'ମା ଗାଁ ଛାଡ଼ି ଯିବାର ଆୟୋଜନରେ ଲାଗିଲେ । ସାତୁ ହାତରେ ପିନ୍ଧିଥିବା ରୁପା ଖଡୁ ହଳକ ବିକି ପଚିଶ ଟଙ୍କା ଆଣିଲା । ସେଦିନ ଭଲ ଖିରୀ ତିଆରି କରି ନନ୍ଦିକା ସମସ୍ତଙ୍କୁ ଖୁଆଇଲା । ସାତୁ ଏବଂ ତା ଝିଅ ଜୟଲକ୍ଷ୍ମୀଙ୍କୁ ସିନ୍ଦୁର ଓ ଗୋଡ଼ରେ ଅଳତା ଲଗାଇଦେଲା । ଶଗଡ଼ ଗାଡ଼ିରେ ତାଙ୍କ ଜିନିଷ ଲଦାଇ ବସ୍‌ରେ ବସାଇ ଦେବା ପାଇଁ ସଡ଼କ କଡ଼ ପର୍ଯ୍ୟନ୍ତ ଗଲା । ଗାଡ଼ି ଆସିବା ଆଗରୁ ସାତୁ କାନ୍ଦି କାନ୍ଦି କହିଲା - "ନାନୀ, ଆମେ ଦୁଇଜଣ ଏ ଘରକୁ ବୋହୁ ହୋଇ ଆସିଥିଲେ, ତୁମେ କଷ୍ଟ ସହି ସ୍ୱାମୀଙ୍କ ପାଖରେ ତ ହେଲେ ଅଛ । ମୋ ଭାଗ୍ୟରେ କିନ୍ତୁ ତାହା ନାହିଁ ।"ନନ୍ଦିକା ସାତୁ ଆଖିରୁ ଲୁହ ପୋଛି ଦେଲା । ସାତୁ କଥା ଶୁଣି ନନ୍ଦିକା ଆଖି ଆଗରେ ନିଜ ବିବାହ ପରଠାରୁ ସବୁ ଘଟଣା ଗୋଟି ଗୋଟି ହୋଇ ମନେ ପଡ଼ିଗଲା । ମନେ ମନେ ଭାବିଲା,'ଆମର ଜନ୍ମ କଣ ଏଇଥିପାଇଁ ହୋଇଥିଲା, କାହିଁକି ଆମେ ଏ ଘରକୁ ବାହା ହୋଇ ଆସିଥିଲୁ ?' ଗାଡ଼ି ଆସିଲାରୁ ସବୁ ଜିନିଷ ଲୋକଙ୍କୁ କହି ଗାଡ଼ି ଉପରେ ରଖାଇ ଦେଲା । ସମସ୍ତେ ଯାଇ ଗାଡ଼ି ଭିତରେ ବସିଲେ । ସାତୁ କହିଲା - "ନାନୀ ତୁମେ ଥରେ ହେଲେ ଆମ ଗାଁ କୁ ନିଶ୍ଚୟ ଆସିବ ।" ଦୁଇଜଣ ଯାକ କିନ୍ତୁ ଭବିଷ୍ୟତରେ ଯେ କେବେ ଏକାଠି ହେବେ ଏ ବିଶ୍ୱାସ ନଥିଲା । ଖାଲି ଶଗଡ଼ଟାରେ ବସି ନନ୍ଦିକା ଗାଁକୁ ଫେରିଲା ।

ଘରକୁ ଆସିବାର କିଛି ସମୟପରେ ସୁରପପା ମାଷ୍ଟରଙ୍କ ସ୍ତ୍ରୀ ରୁକ୍ମିଣୀ ଆସି ନନ୍ଦିକାକୁ କହିଲା - "ଜାଣିଛ ଭଉଣୀ ତୁମକୁ ଗାଁରେ ଏକ ଘରକିଆ ବାସନ୍ଦ କରିବାକୁ କହୁଛନ୍ତି । ଅନ୍ନାଶାସ୍ତ୍ରୀ ଏ ବିଷୟରେ ଶୃଙ୍ଗେରୀକୁ ଚିଠି ମଧ୍ୟ ଲେଖିଛନ୍ତି ।"

"ଚିଠି ଲେଖିଲେ କଣ ହୋଇଯିବ ?"

"ତୁମେ ଜାଣିନ ଭଉଣୀ, ମଠରୁ ଅନୁମତି ମିଳିଗଲେ ତୁମ ଘରକୁ କେହି ଯିବା ଆସିବା କରିବେ ନାହିଁ । ନିଆଁ ପାଣି ମଧ୍ୟ ବନ୍ଦ କରିଦେବେ । ନିଜ ବଂଶ କୁଟୁମ୍ବ ଲୋକ ମଧ୍ୟ ଛାଡ଼ି ଯିବେ, ତେବେ ଜୀବନଟା କଟିବ କିପରି ?"

Digitized by srujanika@gmail.com

କଥାଟା ଶୁଣି ନଞ୍ଜୁନ୍ଦାର ମନଟା ଦବିଗଲା । ପୁଣି ଭାବିଲା, ଗାଁ ବାଲା ଆଜି ଯାଏଁ କଣ ବା ଉପକାର କରିଛନ୍ତି । ଯାହ ସଂବାଦି ଭାବିଲା - ଭଲ ହେବ, କେହି ମୋ ଘରକୁ ନ ଆସନ୍ତୁ ।

ପନ୍ଦର ଦିନ ପରେ ଦୁଇ ପୁରୋହିତ ନଞ୍ଜୁନ୍ଦା ଘରକୁ ଆସିଲେ । ତା' ହାତରେ ଗୋଟିଏ ଚିଠି ଦେଲେ । ଚିଠିଟି ଶୃଙ୍ଗେରୀ ମଠର ସର୍ବାଧିକାରୀଙ୍କ ଠାରୁ ଆସିଥିଲା । ଲେଖାଥିଲା - 'ଯେଉଁ ସ୍ତ୍ରୀ ମୋର ସ୍ୱାମୀ ଦରକାର ନାହିଁ କହି ନିଜ ବେକରୁ ମଙ୍ଗଳସୂତ୍ର କାଢ଼ି ଫିଙ୍ଗିଦେଲା, ସେପରି ସ୍ତ୍ରୀକୁ ନିଜ ଘରେ ରହିବାକୁ ଅନୁମତି ଦେଇଥିବା ସର୍ବରାକାର ଚେନ୍ନିଗରାୟର ପରିବାରକୁ ଏକ ଘରକିଆ କରି ରଖାଗଲା । ଯେପର୍ଯ୍ୟନ୍ତ ଏ ମଠକୁ ଏକଶତ ଟଙ୍କା ଜୋରିମାନା ନ ଦେଇଛନ୍ତି ଏବଂ ପାଟିରେ ପାଳ କାମୁଡ଼ି ସ୍ଥାନୀୟ ପୁରୋହିତଙ୍କ ପାଖରେ ପ୍ରାୟଶ୍ଚିତ ନ କରାଇଛନ୍ତି, ଏ ପରିବାର ସାଙ୍ଗରେ ନିଆଁ ପାଣିର ସମ୍ବନ୍ଧ କେହି ରଖିପାରିବେ ନାହିଁ । ଯେଉଁ ଲୋକ ଏ ଆଦେଶ ଉଲ୍ଲଂଘନ କରିବ ତାକୁ ମଧ୍ୟ ବାସନ୍ଦ କରାଯିବ ।' ଚିଠି ଶେଷରେ ମଠର ମୋହର ମଧ୍ୟ ବସିଥିଲା ।

ନଞ୍ଜୁନ୍ଦା ପତ୍ରଟି ପଢ଼ିସାରିଲା ପରେ ଆୟୁଶାସ୍ତ୍ରୀ ପଚାରିଲେ, "ଏବେ କଣ କରିବ ।"

"ଏପର୍ଯ୍ୟନ୍ତ ରାମନବମୀ ଦିନ ପ୍ରତିବର୍ଷ ସରବତ୍ ଭଳି କରି ଆପଣମାନଙ୍କୁ ଦେଉଥିଲି, ଆଉ କରିବାକୁ ପଡ଼ିବ ନାହିଁ ।" ନଞ୍ଜୁନ୍ଦା ଉତ୍ତର ଦେଲା ।

"ଆଲୋ ତୁ ସରବତ୍ କଲେ ମଧ୍ୟ ଆମେ ଆସିବୁ ନାହିଁ ।"

"ଆପଣଙ୍କ ଇଚ୍ଛା ।"

"ରାଜାଙ୍କର ବିରୋଧ କରି ବଞ୍ଚିଯାଇ ପାର, କିନ୍ତୁ ଗୁରୁ ଗୋସାଇଁଙ୍କ ବିରୋଧ କରି କେତେଦିନ ରହିବ ।" ଏହା କହି ଦୁଇ ପୁରୋହିତ ଚାଲିଗଲେ । ନଞ୍ଜୁନ୍ଦାକୁ ଏକଘରକିଆ ହେବାଟା ଅପମାନ ଲାଗିଲା କିନ୍ତୁ ଭୟ ଲାଗିଲା ନାହିଁ । ମା' କଥାରେ ପଡ଼ି ପୁଅ ନିଜ ସ୍ତ୍ରୀ ବେକରୁ ମଙ୍ଗଳସୂତ୍ର ଛିଣ୍ଡାଇଲା । ଏଥିରେ ସ୍ତ୍ରୀର କଣ ଦୋଷ ? ଅବଶ୍ୟ ଏହା ସତ ଯେ ନିରାଶ୍ରୟ ପରିବାରକୁ ନଞ୍ଜୁନ୍ଦା ନିଜ ଘରେ ଦିନେ ରଖି ତା'ପରଦିନ ତାଙ୍କ ଗାଁକୁ ପଠାଇ ଦେଇଥିଲା । ଏସବୁ ବିଷୟର ସଂପୂର୍ଣ୍ଣ ବିବରଣୀ ଗୋଟିଏ କାଗଜରେ ଲେଖି, ସେଥିରେ ସ୍ୱାମୀର ଦସ୍ତଖତ ନେଇ ରଖିଲା । ସୋମବାର ଦିନ ପୋଷ୍ଟମ୍ୟାନ ଗାଁକୁ ଆସିବାରୁ ତା'ଠାରୁ ଗୋଟିଏ ଲଫାଫା ନେଇ ତା' ହାତରେ ଠିକଣା ଲେଖାଇ ଶୃଙ୍ଗେରୀ ମଠକୁ ପଠାଇ ଦେଲା । କିନ୍ତୁ ବହୁତ ଦିନ ପର୍ଯ୍ୟନ୍ତ ଉତ୍ତର ଆସିଲା ନାହିଁ ।

ପୌଷ ମାସରେ ଶଶୁରଙ୍କ ଶ୍ରାଦ୍ଧ ଦିନ । ଆଜି ପର୍ଯ୍ୟନ୍ତ ତାହା ବଡ଼ ପୁଅ ଚେନ୍ନିଗାର ଘରେ କରାଯାଉଥିଲା । ଖର୍ଚ୍ଚରେ ଭାଗ ନଦେଇ ଅପଣ୍ଣା ସେଦିନ ଆସି କାମ ଚଳାଇ ଦେଉଥିଲା । ପିଣ୍ଡ ପକାଇବା ବଡ଼ ପୁଅର କାମ । ଚୁପ ହୋଇ ବସି ପୁରୋହିତ କହିଲା ବେଳେ ମୁଣ୍ଡିଆ ମାରିବା ସାନ ପୁଅର କାମ । ପୁଅ ଭିନ୍ନେ ହୋଇ ରହିବା ଦିନଠାରୁ ଗଙ୍ଗାମ୍ମା ଶ୍ରାଦ୍ଧଦିନ ମଧ୍ୟ ମୁଣ୍ଡିଆ ମାରିବାକୁ ଚେନ୍ନିଗା ଘରକୁ ଆସୁନଥିଲା । କିନ୍ତୁ ପରେ ଶ୍ରାଦ୍ଧଦିନ ମାନଙ୍କରେ ଆସିବାକୁ ଲାଗିଲା । ଏ ବର୍ଷ

Digitized by srujanika@gmail.com

ପୁରୋହିତ କହିଦେଲେ ଯେ ଚେନ୍ନିଗାକୁ ଏକ ଘରକିଆ କରାଯାଇଥିବାରୁ ଶ୍ରାଦ୍ଧ ପାଇଁ ବା' ବ୍ରାହ୍ମଣ ଭୋଜନ ପାଇଁ ତା' ଘରକୁ କେହି ଯିବେ ନାହିଁ । ଚେନ୍ନିଗରାୟ ବଡ଼ ଅସୁବିଧାରେ ପଡ଼ିଲେ । ଏସବୁ ଅପମାନର କାରଣ କିଏ , ସ୍ତ୍ରୀ ନା' ! ତା'ପରେ ନଞ୍ଜମ୍ମା ନାଁରେ ଗାଳି ବର୍ଷାଇବାକୁ ଲାଗିଲା ଯେ - ସେ ସାନ ଭାଇର ସ୍ତ୍ରୀ ପିଲାଙ୍କୁ ଘରେ କାହିଁକି ଯାଗା ଦେଲା ? ନଞ୍ଜମ୍ମା କିଛି କହୁନଥାଏ । ସ୍ତ୍ରୀକୁ ଗାଳି ସିନା ଦେଲା କିନ୍ତୁ ସମସ୍ୟାଟାର ତ ସମାଧାନ ହେଲା ନାହିଁ ।

ଦୁଇ ପୁରୋହିତ ଠିକ୍ କଲେ ଯେ ଏଥର ଶ୍ରାଦ୍ଧ ଗଙ୍ଗାମ୍ମାର ଘରେ ହେବ ଏବଂ ଅପନ୍ନା ପିଣ୍ଡ ବାଢ଼ିବ, ପିଣ୍ଡ ବାଢ଼ିବା ଅର୍ଥ ଘରର ବଡ଼ ପୁଅର ପଦ ପାଇବା । ତେଣୁ ଅପନ୍ନା ଭାରି ଖୁସି ଯେ ସେ ଗାଁରେ ଜଣେ ଗଣ୍ୟମାନ୍ୟ ବ୍ୟକ୍ତି ହୋଇଯିବ ଶ୍ରାଦ୍ଧ ପରେ । ତା ଛଡ଼ା ଘରେ ଶ୍ରାଦ୍ଧ ହେଲେ ବଳି ପଡ଼ିଥିବା ପିଠାପଣା ସାତ ଆଠ ଦିନ ଯାଏଁ ଖାଇବାକୁ ମିଳିବ । କିନ୍ତୁ ତା ମୁଣ୍ଡରେ ପଶିଲାନି ଯେ ଏସବୁର ଖର୍ଚ୍ଚ ତାକୁ ହିଁ କରିବାକୁ ପଡିବ ।

ଗଙ୍ଗାମ୍ମାର କିନ୍ତୁ କିଛି ଚିନ୍ତା ନଥିଲା । ପନ୍ଦର ଷୋହଳ ଟଙ୍କା କୁଆଡୁ ହେଲେ ଯୋଗାଡ଼ କରି ହୋଇଯିବ । ଭିକ୍ଷା ପାଇଁ ଯେଉଁ ଗାଁ ମାନଙ୍କୁ ଯାଏ, ସେଠିକୁ ଗଲେ ଶ୍ରାଦ୍ଧ ପାଇଁ ମାଗିଲେ ଦି'ଅଣା, ଚାରିଅଣା, ନଡ଼ିଆ, ଅଗୁଆ ଚାଉଳ, ଡାଲି ଆଦି ମିଳି ଯାଇ ପାରେ । ସେଥିରେ ଶ୍ରାଦ୍ଧ କାମ ଚଳିଯିବ । କିନ୍ତୁ ବଡ଼ପୁଅ ଥାଉ ଥାଉ ସାନପୁଅ ପିଣ୍ଡ ଦେଲେ ସ୍ୱାମୀଙ୍କର ଆତ୍ମା ଗ୍ରହଣ କରିବ କି ନାହିଁ ? ପିଣ୍ଡ ଦେବାଟା ତ ବଡ଼ପୁଅର ଅଧିକାର । ଗଙ୍ଗାମ୍ମା ପୁରୋହିତଙ୍କ ଘରେ ପହଞ୍ଚି କହିଲା - "ଜୋରିମାନା ପାଇଁ ଶହେ ଟଙ୍କା ଦେବ କିଏ ? ଏମାନଙ୍କର ଭୁଲ ପାଇଁ ମୋ ସ୍ୱାମୀଙ୍କର ସ୍ୱର୍ଗତ ଆତ୍ମାକୁ ବର୍ଷକୁ ଥରେ ଯେଉଁ ପିଣ୍ଡ ମିଳୁଛି ସେତକ ମଧ୍ୟ ଏବର୍ଷ ନ ମିଳିଲେ ଉପବାସ ରହିବେ । ତା'ଛଡ଼ା ଦୋଷ ତ ବୋହୂ କରିଛି । ମୋ ବଡ଼ ପୁଅର ଦୋଷ ବା କ'ଣ ? ସେଥିପାଇଁ କଣ ହେଲେ କରିବାକୁ ପଡ଼ିବ ।"

ଗଙ୍ଗାମ୍ମାର ଯୁକ୍ତିକୁ ଦୁଇ ପୁରୋହିତ ମାନିଲେ । ନିଷ୍ପତ୍ତି କରାଗଲା ଯେ ସାଧାରଣ କିଛି ଜୋରିମାନା ଦେଇ ଚେନ୍ନିଗା ଗାଁରେ ମିଶିଯାଉ, ଏବଂ ଖାଲି ନଞ୍ଜମ୍ମା ଏବଂ ତାର ପିଲା ପିଲିଙ୍କୁ ବାସନ୍ଦ କରାଯାଉ କିନ୍ତୁ ଜୋରିମାନା ଦେବାକୁ ଚେନ୍ନିଗରାୟ ପାଖରେ ଟଙ୍କା ନାହିଁ । ବହୁତ ଚିନ୍ତାକରି ପୁରୋହିତେ ଠିକ୍ କଲେ ଯେ ଅନ୍ନାଜୋଇସଙ୍କର ବାର୍ଷିକ ଖଜଣା ବାବଦକୁ ନଅଟଙ୍କା ଆଠଣା ଏବଂ ଆୟାଶାସ୍ତ୍ରୀଙ୍କ ଛଅଟଙ୍କା ତିନିଅଣା, ଏଥିପାଇଁ ଚେନ୍ନିଗରାୟ ଆଗ୍ରାମ ରସିଦ୍ କାଟିଦେବ ଯେ ଏହାଙ୍କ ଠାରୁ ଏବର୍ଷ ପାଇଁ ଖଜଣା ଅସୁଲ କରାଯାଇଛି । ସେ ଯାହା ହେଉ ସର୍ବଶେଷରେ ଚେନ୍ନିଗରାୟ ନିଜ ବାପ ଶ୍ରାଦ୍ଧରେ ପିଣ୍ଡ ଦେବା ଅଧିକାରଟା ପାଇଗଲା । ଏହା ମଧ୍ୟ ନିଷ୍ପତ୍ତି କରାଗଲା ଯେ ସେ ନିଜେ ଏକୁଟିଆ ସ୍ତ୍ରୀ ପିଲା ପିଲିଙ୍କୁ ନଆଣି, ମା' ଘରେ ଶ୍ରାଦ୍ଧ କର୍ମ କରିବ ।

ଅନ୍ନାଜୋଇସଙ୍କୁ ଶ୍ରାଦ୍ଧ କର୍ମ କରିବାକୁ ହେବ । ତେଣୁ ସେ ଶ୍ରାଦ୍ଧ ଦିନ ସକାଳୁ ଉପବାସ ରହିଥାନ୍ତି । ଶ୍ରାଦ୍ଧକର୍ମ ଟା ଏପରି ଗୋଟେ ବଡ଼ କର୍ମ ମଧ୍ୟ ନୁହେଁ । ତାଙ୍କ ସ୍ତ୍ରୀ ସେଦିନ ସକାଳୁ ରୋଷେଇଘର

Digitized by srujanika@gmail.com

ଦୁଆରେ ପରିବା କଟୁଥିଲେ । ଉପବାସ ରହିଥିବାରୁ ତାଙ୍କର ଶ୍ୱଶୁର ଘରେ ଥରେ ଖାଇଥିବା ପୁରି, ତରକାରୀ କଥା ମନେ ପଡ଼ିଲା । ସ୍ତ୍ରୀକୁ କହିଲେ,"ତୁମେ ଦିନେ ହେଲେ ଘିଅରେ ଛଣା ପୁରି ଏବଂ ତରକାରୀ ମୋ ପାଇଁ କଲ ନାହିଁ । ତୁମ ମା' ସେଥର କେତେ ସୁନ୍ଦର ରାନ୍ଧି ଖୁଆଇ ଥିଲେ ।"

"ତୁମେ ସିନା ଘିଅ ଆଣିଦେଲେ ମୁଁ କରିବି ।"

"ଘିଅ ସେରକୁ ଚାରିଅଣା, ପଇସା ହେଲେଚ ?"

"ତାହାହେଲେ ଖାଇବାକୁ ଇଚ୍ଛା କଲେ ଖାଲି ମନ କଷ୍ଟ ହେବ ସିନା ।"

ପୁରୋହିତଙ୍କର ମନଟା ଦବିଗଲା । ପୁଣି ମନକୁ ମନ ଭାବି କହିଲେ - "ଆଜି ଘିଅ ଲହୁଣୀରେ ତିଆରି ଶ୍ରାଦ୍ଧ ପିଣ୍ଡ ଖାଇବାକୁ ମିଳିବ ।" ସ୍ତ୍ରୀ ଥଟ୍ଟାରେ କହିଲେ - "ଆଜି ଘିଅ ଲହୁଣୀରେ ନ ପରସିଲେ ତାଙ୍କର କ୍ଷତି ହୋଇଯିବ ।"

"ଆଚ୍ଛେ ତୁ ଦେଖ ମୁଁ କଣ କରୁଛି ।" ଏହା କହି ପୁରୋହିତ ପୁଅ ନରସିଂହକୁ ପଠାଇଲେ, ଅପଣ୍ଣାକୁ ଡାକି ଆଣିବା ପାଇଁ ।

ଅପଣ୍ଣା ରନ୍ଧାରନ୍ଧିରେ ମା'କୁ ସାହାଯ୍ୟ କରୁଥିଲା । ଖବର ଶୁଣି ଧାଇଁ ଧାଇଁ ପୁରୋହିତଙ୍କ ଘରେ ପହଞ୍ଚିଲା । ପୁରୋହିତ କହିଲେ - "ଦେଖ ଅପଣ୍ଣା ମତେ ଟିକିଏ ଜରଜର ଲାଗୁଛି, ମୁଁ ବ୍ରାହ୍ମଣ ଭୋଜନରେ ବସି ପାରିବି ନାହିଁ ।"

"ଆପଣ ଏତେ ବେଳକୁ ଏପରି କହିଲେ କିପରି ହେବ ? ଏତେ ଡେରିରେ ଏବେ ଆଉ କାହାକୁ ଡାକିବାକୁ ଯିବୁ ।"

"ତୁ ମା'କୁ ଡାକି ଆଣ, ତାକୁ ମୁଁ ବୁଝାଇ ଦେବି ।"

ଗଙ୍ଗାମ୍ମା ମଧ୍ୟ ଧାଇଁ ଧାଇଁ ଆସିଲା । ଖଣ୍ଡେ ଦୂରରୁ ଭୂଇଁରେ ମୁଣ୍ଡିଆ ମାରି ଅନୁନୋଇସକୁ କହିଲା, -"ପୁରୋହିତେ ମୋ ପତିଙ୍କ ଆତ୍ମାକୁ ତୁମେ ଆଜି ଉପବାସରେ ରଖାଅ ନାହିଁ ।"

"ଆଚ୍ଛା ତୁମେ ଏତେ କହୁଛ, ନାହିଁ କରି ହେଉ ନାହିଁ । ବ୍ରାହ୍ମଣ ଭୋଜନକୁ ଆସି ଆଉ ଉପବାସ ରହିଲେ ତ ହେବ ନାହିଁ, ଗୋଟିଏ କାମ କର, ରନ୍ଧାରନ୍ଧି ଯଦି ଘିଅରେ କରିବ ମୁଁ ଖାଇ ପାରିବି ।"

"ଏବେ ଏତେ ଘିଅ କେଉଁଠୁ ଆଣିବି ?"

"ପଇସା ଆଣ, ଗଉଡ଼ ସାଇରୁ ମୁଁ ଲହୁଣୀ ଅଣାଇ ଦେବି । ଏବେ ତ ମୁଁ ଗାଧୋଇ ନାହିଁ ।"

ଗଙ୍ଗାମ୍ମା ଘରକୁ ଫେରିଲା । ଜଣେ ବ୍ରାହ୍ମଣକୁ ଘିଅରେ ରାନ୍ଧି ଖୁଆଇଲେ ଆଉ ସମସ୍ତଙ୍କୁ ତେଲରେ ରାନ୍ଧି ଖୁଆଇବାଟା ଅସୁନ୍ଦର ହେବ । ଘର ଲୋକ ସିନା ତେଲ ରନ୍ଧା ଖାଇଦେବେ । ଦୁଇ ପୁରୋହିତଙ୍କ

Digitized by srujanika@gmail.com

ପାଇଁ ପ୍ରାୟ ଦେଢ଼ସେର ଘିଅ ଦରକାର । ଅର୍ଥାତ୍ ଛଅ, ସାତ ସେର ଖଣ୍ଡେ ଲହୁଣୀ ଆଣିବାକୁ ପଡ଼ିବ । ଘରେ ସବୁଯାକ ଦୁଇଟା ଟଙ୍କା ପଡ଼ିଥିଲା । ଗଙ୍ଗାମା ନିଜ ବାପ ଘରୁ ଆଣିଥିବା ରୁପା ଥାଳି ପଟେ ଥିଲା । ସେଇଟା ଅପନ୍ନ ହାତରେ କାଶୀବୁଢ଼ୀ ମହାଜନ ପାଖକୁ ପଠାଇଲା । ଓଜନରେ ବାର ତୋଳା ରୁପା ହେଲା । ଥାଳିଟା ବନ୍ଧାରଖି ଦୁଇ ଟଙ୍କା ଉଧାର ଦେଲା ଦିନକୁ ଦୁଇ ପାହୁଲା ସୁଧ ହିସାବରେ ।

ଲହୁଣୀରୁ ମରା ଘିଅରେ ତିଆରି ଭୋଜନ ପେଟେ ଖାଇ ଅମ୍ବାଜୋଇସ୍ ଖୁବ୍ ସନ୍ତୋଷ ହେଲେ । ତା'ଛଡ଼ା ଗଣ୍ଠିରାରେ ବାନ୍ଧି ପିଲାଙ୍କ ପାଇଁ ମଧ୍ୟ ଘରକୁ ନେଲେ । ଘରକୁ ଆସି ସ୍ତ୍ରୀକୁ କହିଲେ - "ଆହେ ନିଅ, ତୁମେ ମଧ୍ୟ ଖାଅ ।" ସ୍ତ୍ରୀ କହିଲେ - "ଅନ୍ୟ ଘରର ଶ୍ରାଦ୍ଧର ପ୍ରସାଦ ସ୍ତ୍ରୀ ଲୋକମାନେ ଖାଆନ୍ତି ନାହିଁ ।"

"ଆହେ କିଛି ହେବନି । ତୁମେ ଖାଅ ଏବଂ ପିଲାଙ୍କୁ ମଧ୍ୟ ଦିଅ ।"

"ଦେଖ, ସବୁ କଥାରେ ଏପରି କହିଲେ ହେବ ? ଶାସ୍ତ୍ର ବିଚାର ବୋଲି ତ ଗୋଟେ ଜିନିଷ ପୁଣି ଅଛି । ପୁରୋହିତମାନେ ଯେଉଁଠି ମନ ସେଇଠି ଖାଇ ପାରିବେ , ତା' ବୋଲି କଣ ସ୍ତ୍ରୀ ମାନେ ଖାଇ ପାରିବେ ?"

**6**

ବ୍ରାହ୍ମଣ ଭୋଜନ ପରେ, ଶ୍ରାଦ୍ଧ ଶେଷରେ ଚେନ୍ନିଗରାୟ୍ ପିଣ୍ଡ ପତ୍ରରେ ବସି ପେଟପୁରା ଭୋଜନ କଲା । ତା'ପରେ କୁରୁତାଟା ପିନ୍ଧି ମନ୍ଦିର ପଛଆଡ଼ ମୁଣ୍ଡିଆ ଆଡ଼େ ଚାଲିଗଲା । ସେତେବେଳକୁ ଦିନ ସାଢ଼େ ଚାରିଟା ବାଜିଲାଣି । ପାଟିରେ ଗୁଣ୍ଡିପତ୍ର ଟିକେ ସକାଳୁ ପଡ଼ି ନଥିଲା । ମା'ଘରେ ମଧ୍ୟ ଧୂଆଁ ପତ୍ର ନଥିଲା । କିଣିବାକୁ ପାଖରେ ପାହୁଲାଏ ବି ନଥିଲା । ମୁଣ୍ଡିଆ ଉପରୁ ନିତ୍ୟ କର୍ମସାରି ଫେରିଲା ବେଳେ ନରସୀର ଦୋକାନ ବାଟରେ ପଡ଼ିଲା । ନରସୀ ବସିଥିଲା । ତା' ଆଗରେ ପାନ ବିଡ଼ାଟା ପଡ଼ିଥିଲା । ପାନଟା ଦେଖି ଚେନ୍ନିଗାର ପାଟି ଟକ୍ ଟକ୍ ହେବାରୁ ନରସୀ ପାଖକୁ ଯାଇ ପଚାରିଲା - "ପାନ ଗୁଣ୍ଡିଟିକିଏ ଦେବୁ କିଲୋ ନରସୀ ?"

ନରସୀ ପାନ ଚୋବାଉଥିଲା । ଚଉଡ଼ା ମୁହଁକୁ ବଡ଼ ବଡ଼ ଆଖି ଏବଂ ସେଥିରେ ପାନଖିଆ ଲାଲ ପାଟିରେ ନରସୀ ଟା' ବଡ଼ ସୁନ୍ଦର ଦିଶୁଥିଲା । ତା' ମୁହଁଟା ସବୁବେଳେ ପ୍ରସନ୍ନ । ହସିଲା ବେଳେ ମୁହଁର ଛଟା ଦେଖି ଲୋକେ ଅବାକ ହୋଇ ରହି ଯାଆନ୍ତି । କହିଲା - "ସର୍ବିରାକାର ମହାଶୟେ ତୁମ ସ୍ତ୍ରୀ କଣ ପାନ ଦେଇପାରୁ ନାହିଁ କି ?"

Digitized by srujanika@gmail.com

"ଘରେ ପାନ ନଥିଲା । ଖାଦ୍ଧ କାମ ସାରି ପୋଖରୀପାଣି ଆସିଥିଲି ।"

"ଆସ, ଆସ, ଦେଉଛି । ତୁମେ ଏଗାଁର ସର୍ବରାକାର, ତୁମକୁ ଭଲା ମୁଁ ନାହିଁ କରିବି ।" ଆଖି ନଚାଇ ନରସୀ ହସି ପକାଇଲା । ଗାଁରେ କେହି ଜଣେ ହେଲେ ତ ତାର ଅଧିକାରକୁ ସ୍ୱୀକାର କଲା । ଏହା ଭାବି ଚେନ୍ନିଗା ଦୋକାନ ଭିତରକୁ ପଶିଲା । ନରସୀ ତାକୁ ଭିତର ଘରକୁ ନେଇଗଲା । ଘର ଭିତରଟା ଭାରି ଅନ୍ଧାରିଆ । ଖଟ ଉପରେ ବସିବାକୁ କହିଲା ।

"ଅନ୍ଧାରରେ କିଛି ଦିଶୁ ନାହିଁ ।" କହିବାରୁ ନରସୀ କହିଲା, "ଆସ ମୁଁ ଦେଖାଇ ଦେଉଛି ।" ଏହା କହି ଦି' ହାତ ଧରି ବସାଇ ଦେଇ ନିଜେ ମଧ୍ୟ ପାଖରେ ବସିଗଲା । ଧୀରେ ଧୀରେ ଘର ଭିତରଟା ଚେନ୍ନିଗାକୁ ଦେଖାଗଲା । ତା' ଦେହଟା କିନ୍ତୁ ବରଡ଼ା ପତ୍ରପରି ଥରିବାକୁ ଆରମ୍ଭ କଲା ।

"ଏମିତି ଥରୁଛ କାହିଁକି ?" ନରସୀ ପଚାରିଲା ।

"ତୁ ମତେ ଛୁ - ଇଁ - ଲୁ କାହିଁକି ?" ଥଙ୍ଗେଇ ଥଙ୍ଗେଇ କହିଲା । "ମୋ ଘରକୁ ଆସି ତୁମେ ପାନ ମାଗିଲ ପରା ।"

ନରସୀ କଥାର ଅର୍ଥ ଚେନ୍ନିଗା ବୁଝି ପାରିଲା ନାହିଁ । କହିଲା - "ପଇସା ନଥିଲା ତେଣୁ ମାଗିଲି ।"

"ମୁଁ କଣ ପଇସା ମାଗୁଛି କି ତୁମଠୁ ?"

"ତା, ହେଲେ ମତେ ଛୁ - ଇଁ - ଲୁ - କା - ହିଁ - କି ?"

ନରସୀ ଚେନ୍ନିଗାର ଅବସ୍ଥା ଦେଖି ତା' ହାତ ଧରି ଘରୁ ବାହାରକୁ ଆଣି ଛାଡ଼ି ଦେଇ କହିଲା - "ଚୁପ ଚାପ୍ ଘରକୁ ଯାଅ ।" ଭୟରେ କମ୍ପି କମ୍ପି ସେ ଚାଲିଲା । "ଟିକିଏ ରହ " ଶୁଣି ଅଟକି ଗଲା । ଗୋଟେ କତା ପାନ କିଛି ଗୁଆ ଏବଂ ଗୁଣ୍ଡି ତା ହାତରେ ନରସୀ ଧରାଇ ଦେଲା । କହିଲା - "ଏତକ ନେଇ ଘରେ ନିଜ ସ୍ତ୍ରୀ ସାଙ୍ଗରେ ବସି ଖାଅ । ତୁମ ଭଳିଆ ଲୋକ ସ୍ତ୍ରୀ ଯାହା କହିବ ସେଯା କରିବା ଉଚିତ, ବୁଝିଲ ।"

ସର୍ବରାକାରକୁ ଟିକିଏ ରାଗ ଆସିଲା । କିନ୍ତୁ କିଭଳି ଗାଳି ଦିଆଯାଇ ପାରିବ ବୁଝି ନପାରି ଧୀରେ ଧୀରେ ଗାଁ ଆଡ଼କୁ ପାଦ ବଢ଼ାଇଲା । ଘରେ ନଣ୍ଡିଳା ହିସାବ ଖାତା ଧରି ବସିଥିଲା । କେହି କାହାକୁ କିଛି କହିଲେ ନାହିଁ । ମଶିଣା ଖଣ୍ଡେ ପକାଇ ଚେନ୍ନିଗା ଶୋଇ ପଡ଼ିଲା ଏବଂ ଆଖି ବନ୍ଦ କରି ପାନ, ଗୁଆ, ଗୁଣ୍ଡି ଚୋବାଇବାରେ ଲାଗିଲା ।

Digitized by srujanika@gmail.com

# ଦଶମ ଅଧ୍ୟାୟ

## 1

ନନ୍ଦିନୀ ଯେତେବେଳେ ଜାଣିଲା ଯେ ସ୍ୱାମୀଙ୍କୁ କୁଟୁମ୍ବରେ ମିଶାଇ ତାଙ୍କୁ ଓ ତା' ପିଲାମାନଙ୍କୁ ବାସନ୍ଦ କରାହୋଇଛି ସେତେବେଳେ ତା'ମନରେ ଦୁଃଖ ବଦଳରେ ଘୃଣା ଭାବ ଆସିଲା । ତା'ର ଆଗରୁ ଧର୍ମ, କର୍ମ ଏବଂ ଶ୍ରାଦ୍ଧ ଆଦି ବିଷୟରେ ସମସ୍ତଙ୍କ ଠାରୁ ଭିନ୍ନ ମତ ଥିଲା । ତା'ବାପା କଣ୍ଠାଜୋଇସ ଏଅଞ୍ଚଳଯାକ ପୁରୋହିତଙ୍କୁ ପାଠରେ ପାଣି ପିଆଇ ଦେଉଥିଲେ । ଏଭଳି ବ୍ରାହ୍ମଣକାର୍ଯ୍ୟ ପୁରୋହିତ ପଦ୍ଧତି ବିଷୟରେ କାହାରି ମନରେ ସନ୍ଦେହ ହେଲେ, ସେ ତା' ବାପାଙ୍କ ପାଖକୁ ଆସି ସନ୍ଦେହ ଦୂର କରୁଥିଲେ । କଣ୍ଠାଜୋଇସ ନିଜେ ତାଙ୍କ ବାପାଙ୍କର ଶ୍ରାଦ୍ଧ କରୁନଥିଲେ । ଏ ବିଷୟ କିଏ ଉଠାଇଲେ କହନ୍ତି - "ଗୟାରେ ଯାଇ ପରା ପିଣ୍ଡଦାନ କରି ଆସିଛି । ଆଉ ଶ୍ରାଦ୍ଧ କ'ଣ ଦରକାର ।" ତାପରେ ଗୋଟିଏ ଶ୍ଳୋକ ବୋଲି ବତାଇ ଦିଅନ୍ତି ଯେ ଗୟାରେ ଶ୍ରାଦ୍ଧ କରି ଆସିଲେ ଆଉ ପ୍ରତିବର୍ଷ ଶ୍ରାଦ୍ଧ କରିବା ଦରକାର ପଡ଼େ ନାହିଁ । କିନ୍ତୁ କେହି ହେଲେ ବିଶ୍ୱାସ କରନ୍ତି ନାହିଁ ଯେ ଜୋଇସ ପ୍ରକୃତରେ ଗୟା ଯାଇଥିଲେ ଏବଂ ଯାଇଥିଲେ ମଧ୍ୟ ସେଠି ପିଣ୍ଡଦାନ କରିଥିବେ । ତାଙ୍କ ମା' ଅକ୍କମ୍ମା ମଧ୍ୟ ଏକଥା ବିଶ୍ୱାସ କରନ୍ତି ନାହିଁ ।

"ଆଜି ବାପା ଏଠିଥିଲେ ଏଗାଁର ନକଲି ପୁରୋହିତଗୁଡ଼ାକ ଲାଙ୍ଗୁଡ଼ଯାକି ବସନ୍ତେ । ଏକା ଗର୍ଜନକେ ଶାଶୁ, ସ୍ୱାମୀ ସମସ୍ତେ ଡ଼ରି ତାଙ୍କରି କଥା ମାନନ୍ତେ । ଜମିବାଡ଼ିତକ ମଧ୍ୟ ହାତରୁ ଯାଇ ନଥାନ୍ତା । କିଏ ଜାଣେ ସେ ବର୍ତ୍ତମାନ କେଉଁଠି ଅଛନ୍ତି । ଜୀବନରେ ନିଶ୍ଚୟ ଅଛନ୍ତି । କେଉଁଆଡ଼େ ଗଲେ ଯେ ଖବର ନାହିଁ ।"ନନ୍ଦିନୀ ପିଲାଟିଏ ହୋଇଥିଲା ବେଳେ ଥରେ ଏପରି ଗାଁ ଛାଡ଼ି ଯାଇଥିଲେ ଯେ ଚାରିବର୍ଷ ପରେ ଫେରିଲେ । ସାରା ତୀର୍ଥ ସ୍ଥାନତକ ବୁଲି ଘରକୁ ଫେରିଥିଲେ । ଏଥର କିନ୍ତୁ ଯିବାର ନଅବର୍ଷ ପୁରିଗଲାଣି । ପାର୍ବତୀ ଆଠ ନଅ ମାସର ହୋଇଥିଲା ସେଦିନୁ ଗଲେଣି । ତାଙ୍କ ଭାଗ୍ୟରେ ବିଦେଶ ବୁଲିବା ହିଁ ଲେଖାଅଛି । ଏଇ ସବୁ ବସି ବସି ନନ୍ଦିନୀ ଭାବେ ।

ଶ୍ରାଦ୍ଧ ଦିନ ଚେନ୍ନିଗା ମା'ଘରକୁ ଯିବାରୁ ନନ୍ଦିନୀର ମନଟା ଭାରି ବ୍ୟସ୍ତ ହେଲା । ଏଠି ଘରେ ଶ୍ରାଦ୍ଧ କରିଥିଲେ ସେ ସ୍ନାନ ସାରି ଉପବାସ କରି ରନ୍ଧାରନ୍ଧି କରିଥାନ୍ତା । କିନ୍ତୁ ମତେ ଛାଡ଼ି ଦେଇଗଲେ, ତେଣୁ ମୁଁ କ'ଣ ସବୁ ଖାଇବି ନା' ଉପବାସ ରହିବି । ତେଣେ ସ୍ୱାମୀ ଉପବାସରେ ବସି ଶ୍ରାଦ୍ଧ କର୍ମ

Digitized by srujanika@gmail.com

କରୁଛନ୍ତି, ମୁଁ କିପରି ଖାଇବି ?" ଏକଥା ଭାବି ପିଲାଙ୍କୁ କଳଖିଆ ଖୁଆଇ ରଖିଲା । ଘରେ ଶ୍ରାଦ୍ଧ ହୋଇଥିଲେ ପିଲେ ମଧ୍ୟ ଖାଇଥାନ୍ତେ ।

ସେ ଭାବୁଥିଲା କାଳେ ଶ୍ରାଦ୍ଧ ପରେ ପିଲାଙ୍କୁ ଖାଇବାକୁ ଡାକିବେ ପରା । ତେଣୁ ପିଲାଙ୍କ ପାଇଁ ରାନ୍ଧିବ କି ନାହିଁ ଭାବି ପାରୁନଥିଲା । ଶେଷରେ ଆଠଦଶ ଖଣ୍ଡ ରୁଟି ସେକି ରଖିଲା । ଭାବିଲା ପିଲାଙ୍କୁ ଖାଇବାକୁ ଡାକିଲେ ରୁଟି ଖରାପ ହେବନି । ନଡାକିଲେ ରୁଟିରେ କାମ ଚଳିଯିବ ।

କିଛି ସମୟ ପରେ ପିଲେ ସ୍କୁଲକୁ ଗଲେ । ପାର୍ବତୀ ଓ ରାମନ୍ନା ଚତୁର୍ଥ ଶ୍ରେଣୀରେ ପଢୁଥିଲେ ଏବଂ ବିଶ୍ୱ ପ୍ରଥମ ଶ୍ରେଣୀରେ । ନଞ୍ଜମ୍ମା ଘରେ ବସି ଖାଲି ସିଝୁ ଥିଲା । ଦ୍ୱିପହର ବେଳକୁ ଶ୍ରାଦ୍ଧ ଆରମ୍ଭ ହେବା କଥା । ଏତିକି ବେଳକୁ ମହାଦେବୟା ଆସିଲେ । ଦ୍ୱିପହରରେ ମହାଦେବୟା କେବେ ହେଲେ ଗାଁରେ ରହନ୍ତି ନାହିଁ । ତାଙ୍କ ମୁହଁ ଶୁଖିଗଲା ପରି ଦିଶୁଥିଲା । ସେ ବୋଧହୁଏ ସକାଳୁ ଖାଇ ନଥିଲେ । "ଆମେ ହେଲୁ ସଂସାରୀ ଲୋକ ସକାଳୁ ଉଠିଲା ମାତ୍ରେ ଘର ଜଞ୍ଜାଳ ଲାଗିଲା, କିନ୍ତୁ ଏ ବାବାଜୀ ଯୋଗୀ ଲୋକଙ୍କ ମନରେ ପୁଣି ଦୁଃଖ କାହିଁକି ?" ଏପରି ଭାବି ନଞ୍ଜମ୍ମା ମଶିଣାଟିଏ ପକାଇ ବସିବାକୁ କହି ମହାଦେବୟାଙ୍କୁ ପଚାରିଲା,"ଆଜି ତୁମର ମନ ଖରାପ ଥିଲା ପରି ଦିଶୁଛି କାହିଁକି ?"

"ଭଉଣୀ ମୁଁ ଏଥର ଠିକ୍ କରିଛି ନିଜ ଜାତିର ଲୋକଙ୍କ ଘରୁ ଭିକ୍ଷା ନେବି ନାହିଁ ।"

"କ'ଣ ହେଲା କି ?"

"ଗାଁ ଗାଁ ବୁଲି ଧାନ, ଚାଉଳ, ମାଣ୍ଡିଆ ମାଗି ମୁଁ ଆଣେ । ଏଗାଁକୁ ଯେତେବେଳେ ସାଧୁ, ସନ୍ୟାସୀ ଆସନ୍ତି ତାଙ୍କ ଖାଇବା କଥା ମୁଁ ବୁଝେ । ଆଜି ଯାଏଁ ଭିକ୍ଷାରେ ତ ଚଳି ଯାଉଛି, କିନ୍ତୁ ଏଗାଁର ବେପାରୀ ସାହି ଲୋକମାନେ କ'ଣ ବୋଧେ ନିଷ୍ପତ୍ତି କରିଛନ୍ତି । ଏବେ ଭିକ୍ଷା ପାଇଁ ସକାଳୁ ଯାଇଥିଲି ଯେ ଚାରିଘର ଲୋକ କହିଲେ - 'ଯୋଗୀର ସକାଳୁ ସକାଳୁ ଭିକ୍ଷା ମାଗିବା କ'ଣ ଭଲ କଥା ?' ଏକଥା ଶୁଣି ମନଟା ଟିକିଏ ଖରାପ ଲାଗିଲା ।"

ନଞ୍ଜମ୍ମାକୁ ଏକଥା ଶୁଣି ଖରାପ ଲାଗିଲା । ମହାଦେବୟା ଏକୁଟିଆ ଲୋକ । କାହାଘରୁ ମୁଠେ ମାଗିଦେଲେ ଦିନଟା ଚଳିଗଲା । ତାଙ୍କର ବା' ଲୋଭ କ'ଣ ଅଛି । ଯାହାକିଛି ପାଖରେ ରଖନ୍ତି ସେ ସବୁ ଅତିଥି ଅଭ୍ୟାଗତରେ ଯାଏ । ନଞ୍ଜମ୍ମା ପଚାରିଲା,"ଆଜିର ରନ୍ଧାରନ୍ଧି କରିବେ ନାହିଁକି ?"

"ରାନ୍ଧିବାକୁ ଇଚ୍ଛା ହେଉନାହିଁ, କିନ୍ତୁ ଭୋକ କ'ଣ ଛାଡୁଛି ? ତୁମେ ଯଦି କିଛି ଖାଇବାକୁ ଦେବ ତେବେ ଖାଇଦେବି ।"

ନଞ୍ଜମ୍ମା କଥାରେ ଅଧିକ ଆଶ୍ଚର୍ଯ୍ୟ ହେଲା କାରଣ ଏ ଯୋଗୀ ପୁଅ ଆଜି ପର୍ଯ୍ୟନ୍ତ ପାଣି ଟୋପାଏ ମଧ୍ୟ ତାଙ୍କ ଘରେ ପିଇନଥିଲେ,କିନ୍ତୁ ଆଜି ଖାଇବାକୁ ମାଗୁଛନ୍ତି ।

Digitized by srujanika@gmail.com

"ଟିକିଏ ବସନ୍ତୁ । ମୁଁ ବେଗେ ଭାତ ଏବଂ ତରକାରୀ ଟିକିଏ କରି ଦେଉଛି ।" ମହାଦେବୟ୍ୟା କହିଲେ - "କିଛି ଦରକାର ନାହିଁ ଯାହା ରନ୍ଧା ହୋଇଛି ତାକୁ ଦେଇଦିଅ ।"ନଞ୍ଜମ୍ମା ରନ୍ଧା ଘରକୁ ଯାଇ ରୁଟି ଏବଂ ନଡ଼ିଆ ଚଟଣି ଗୋଟିଏ ଆଲୁମିନିୟମ୍ ଥାଳିରେ ରଖି ଆଣିଲା ଏବଂ ଡାଲରେ ଢାଳେ ପାଣିଆ ଦହି ମଧ୍ୟ ଦେଲା । ମହାଦେବୟ୍ୟା ହାତ ଧୋଇ ଖାଇବାକୁ ବସିଲା ବେଳକୁ, ନଞ୍ଜମ୍ମାର ଶ୍ୱଶୁରଙ୍କ ଶ୍ରାଦ୍ଧ କଥା ମନେ ପଡ଼ିଲା । ସେ ମହାଦେବୟ୍ୟାଙ୍କୁ କହିଲା - "ଆଜି ମୋ ଶ୍ୱଶୁରଙ୍କ ଶ୍ରାଦ୍ଧ । ଆପଣ ଜାଣିଛନ୍ତି ତ ମତେ ଏ ଗାଁରେ ଏକ ଘରକିଆ କରିଛନ୍ତି ।"

"ଜାଣିଛି ଲୋ ଝିଅ ଜାଣିଛି । ସକାଳୁ ଶୁଣିଲି ଯେ ବ୍ରାହ୍ମଣ ଶ୍ରେଷ୍ଠ ଅନ୍ନାଜୋଇସ୍, ତୁମ ଶାଶୁଙ୍କ ପୁରୋହିତ, ବ୍ରାହ୍ମଣ ଭୋଜନ ପାଇଁ ଖାଣ୍ଟି ଘିଅରେ ରନ୍ଧା ନହେଲେ ଖାଇବି ନାହିଁ ବୋଲି କହିଲା । ତେଣୁ ଅପନ୍ନା ୯ଟ୍‌କିଜା ରୁପା ଥାଳିଟେ ମହାଜନ ପାଖରେ ଦି ଟଙ୍କାକୁ ବନ୍ଧା ରଖି ଲହୁଣୀ କିଣି ଆଣିଲା ଘିଅ ମାରିବାକୁ । ମନ୍ଦିର ବାଟେ ଲହୁଣୀ ନେଇ ଗଲା ବେଳେ ଅପନ୍ନା କହିଲା ପୁରୋହିତଙ୍କୁ ଜ୍ୱର ହୋଇଛି ଯେ ତେଲ ରନ୍ଧା ଜିନିଷ ଖାଇବେ ନାହିଁ ।"

"ସତେ କ'ଣ ସେ ରୁପା ଥାଳି ମହାଜନ ପାଖରୁ ଫେରିବ ? ଆଜ୍ଞା କହିଲ, ଏ ଶ୍ରାଦ୍ଧ କର୍ମ କ'ଣ ପ୍ରକୃତରେ ଦରକାର ? ଏ ଭଳି ପୁରୋହିତଙ୍କୁ ଦେଇ ଭୋଜନ କରାଇବାଟା ମତେ ତ କାହିଁ ପୁଣ୍ୟ ବୋଲି ଜଣାପଡୁ ନାହିଁ ।" ନଞ୍ଜମ୍ମା କହିଲା ।

"କିଏ ଜାଣିଛି ସତ ନା ମିଛ ? ସତ ବି ହୋଇଥାଇ ପାରେ । ତୁମ ଶ୍ୱଶୁର ଯେତେବେଳେ ବଞ୍ଚିଥିଲେ ତୁମ ଶାଶୁ ତାଙ୍କୁ ଭଲକରି ଗଣ୍ଡେ ଖାଇବାକୁ ବି ଦିଏନାହିଁ । ଏବେ ଗାଁ ଗାଁ ବୁଲି ଭିକ୍ଷା ମାଗି ସ୍ୱାମୀଙ୍କ ଶ୍ରାଦ୍ଧରେ ଟଙ୍କା ଖର୍ଚ୍ଚ କରୁଛି ।"

"ଶଶୁର ବଞ୍ଚିଥିଲା ବେଳେ କ'ଣ ତୁମେ ଏ ଗାଁକୁ ଆସିଥିଲ ?"

"ଚେନ୍ନିଗା ଜନ୍ମ ହେବାର ତିନିବର୍ଷ ଆଗରୁ ମୁଁ ଏଗାଁକୁ ଆସିଛି ।"

"ତୁମ ନିଜ ଗାଁ କେଉଁଠି ?"

"କେଉଁଠି ହେଲେ ହୋଇଥିବ । ଭଗବାନ ଜନ୍ମ ଦେଇଛନ୍ତି ବୋଲି ମଲା ପର୍ଯ୍ୟନ୍ତ କ'ଣ ଗୋଟାଏ ଗାଁରେ ରହିଥିବା ଦରକାର ।"

ଆଜି ପର୍ଯ୍ୟନ୍ତ କେହି ଜାଣନ୍ତି ନାହିଁ ଏହାଙ୍କର ଗାଁ କେଉଁଠି । ଲୋକେ କହନ୍ତି ପ୍ରଥମେ ଆସିଲା ବେଳେ ଏହାଙ୍କ ଭାଷାରୁ କେବଳ ଜଣା ପଡୁଥିଲା ଯେ ସେ ଉତ୍ତର କର୍ଣ୍ଣାଟକ ଅଞ୍ଚଳର ହୋଇଥିବେ । ପ୍ରଥମେ ତ ତାଙ୍କୁ ମାଣ୍ଡିଆ ଚକୁଳି ମୋଟେ ପସନ୍ଦ ହେଉନଥିଲା । କେବଳ ରୁଟି କରି ଖାଉଥିଲେ । ବର୍ଷେ ଦିବର୍ଷ ପରେ ଏଠା ଲୋକଙ୍କ ଭଳି କଥାବାର୍ତ୍ତା କରିବା ଆରମ୍ଭ କଲେ ଏବଂ ମାଣ୍ଡିଆ ଚକୁଳି ଖାଇବା ଅଭ୍ୟାସ ହୋଇଗଲା । ତାପରେ ଘର କେଉଁଠି ବୋଲି ପଚାରିଲେ ରାମଚନ୍ଦ୍ର ଗାଁର ଚୋଳେଶ୍ୱର

Digitized by srujanika@gmail.com

ମନ୍ଦିର ବୋଲି କହନ୍ତି । ପରେ ଲୋକେ ମଧ୍ୟ ତାଙ୍କ ଗାଁ କଥା ଆଉ ପଚାରିଲେ ନାହିଁ । ତାଙ୍କର ଅନିଚ୍ଛା ଦେଖି ନନ୍ଦିନୀ ମଧ୍ୟ ଆଉ କିଛି ପଚାରିଲା ନାହିଁ । ମହାଦେବଯ୍ୟା ଖାଇ ସାରି ଉଠିଗଲେ ।

ଦ୍ୱିପହର ବେଳକୁ ସ୍କୁଲରୁ ପିଲେ ଘରକୁ ଫେରିଲେ । ରୁଟି ଏବଂ ଚଟଣି ଖାଇ, ପାଣି ପିଇ ସ୍କୁଲକୁ ପୁଣି ଫେରିଗଲେ । ନନ୍ଦିନୀ କିଛି ଖାଇଲା ନାହିଁ । ଘରେ ଖାଇବାକୁ ମଧ୍ୟ କିଛି ନଥିଲା । ଆଉଥରେ ରାନ୍ଧିବାକୁ ମନ ହେଲା ନାହିଁ । ମହାଦେବଯ୍ୟା ସେତେବେଳକୁ ବାହାର ବାରଣ୍ଡାରେ ବସିଥାନ୍ତି । ନନ୍ଦିନୀ ମଧ୍ୟ ବାହାର ବାରଣ୍ଡାରେ ଆସି ବସିଲା । ବହୁତ ଦିନରୁ ମହାଦେବଯ୍ୟାଙ୍କୁ ଗୋଟିଏ ପ୍ରଶ୍ନ ପଚାରିବ ବୋଲି ଭାବୁଥିଲା । ଆଜି ପଚାରିଦେଲା - "ମୁଁ ପଚାରୁଛି ଇଚ୍ଛା ହେଲେ ଉତ୍ତର ଦେବେ ନ ହେଲେ ନାହିଁ । ଘରଦ୍ୱାର ଛାଡ଼ି ବାବାଜୀ କାହିଁକି ହେଲେ ?" ଘରଦ୍ୱାର ଆଉ ଛାଡ଼ିଲି କେଉଁଠି ? ଘରତ ମୂଳରୁ ନଥିଲା । ପିଲାଟି ଦିନରୁ ଗୃହତ୍ୟାଗୀ । ସନ୍ୟାସୀ ହୋଇ ଜନ୍ମ ହୋଇଥିଲି ବୋଲି ଧରିନିଅ । ଗାଁ ଗାଁ ବୁଲୁଥିଲି । ଏଗାଁରେ ରହିବାକୁ ଇଚ୍ଛା ହେଲା ରହିଗଲି ।"

ଏଇଟା କିନ୍ତୁ ନନ୍ଦିନୀ ପ୍ରଶ୍ନର ଉତ୍ତର ହେଲା ନାହିଁ । ତେଣୁ ତାଙ୍କର ଘର ପରିବାର ଥିଲା କି ନାହିଁ ରହସ୍ୟମୟ ହୋଇ ରହିଗଲା ।

ନନ୍ଦିନୀ ଅନେକ ସମୟ ପର୍ଯ୍ୟନ୍ତ ମହାଦେବଯ୍ୟା କଥା ଭାବିଲା । ବିଚରାର ବାହାଘର ହୋଇଥିଲା ନା ନାହିଁ, ଯଦି ହୋଇଥିଲା ତେବେ ଘର ଛାଡ଼ି କାହିଁକି ଆସିଲେ । ଶୁଣାଯାଏ ତାଙ୍କ ଘର ବେଲାରୀ ପ୍ରଦେଶରେ । ସ୍ତ୍ରୀ କୁଆଡ଼େ କିଛି ଖରାପ କାମ କରିବାରୁ ଦୁଃଖରେ ଘର ସଂସାର ଛାଡ଼ି ଚାଲିଆସିଲେ । ଏକଥା ପଡ଼ିଶା ଘର ସ୍ତ୍ରୀ ଦିନେ କହୁଥିଲେ । "ତୁ କିପରି ଜାଣିଲୁ" ପଚାରିଲାରୁ କହିଲା - "କେତେ ଲୋକଙ୍କଠୁ ମୁଁ ଏକଥା ଶୁଣିଛି ।" ମହାଦେବଯ୍ୟା କିନ୍ତୁ ନିଜେ ଏକଥା କାହା ଆଗରେ କହିନାହାନ୍ତି । ତାଙ୍କ ମନରେ କି ପ୍ରକାର ଦୁଃଖ ଅଛି କେବଳ ସିଏ ଜାଣନ୍ତି । ଏକଥା ଭାବି ନନ୍ଦିନୀ ଚୁପ ରହିଲା ।

କିଛି ସମୟ ପର୍ଯ୍ୟନ୍ତ ନନ୍ଦିନୀ ଓ ମହାଦେବଯ୍ୟା ଚୁପ ହୋଇ ବସି ରହିଲେ । ମୌନ ଭଙ୍ଗ କରି ମହାଦେବଯ୍ୟା କହିଲେ - "କ'ଣ ବସି ବସି ଭାବୁଛ ଭଉଣୀ ?"

"କିଛି ନାହିଁ ।"

"ଏତକ ଦିନ ମୋ କପାଳରେ ଏଇ ଗାଁରେ ରହିବାର ଥିଲା । ଏଥର ଭାବୁଛି ଅନ୍ୟ ଗାଁ ଆଡ଼େ ଚାଲିଯିବି ।"

"ଆପଣ ତ ହେଲେ ଯୋଗୀ ଲୋକ । କିଏ କ'ଣ କହିଦେଲା ବୋଲି ଦୁଃଖ କରନ୍ତୁ ନାହିଁ । ତା'ଛଡ଼ା ଯେଉଁଠିକି ଯିବେ ସେଠାରେ ମଧ୍ୟ ଏପରି କହିବା ଲୋକ ମିଳିବେ ।"

Digitized by srujanika@gmail.com

"ସତକଥା ଭଉଣୀ ।" ବୋଧହୁଏ ଆଉ କିଛି କହିବା ଅବସ୍ଥାରେ ସେ ନଥିଲେ । କିଛି ସମୟପରେ ଉଠି ଚୁପଚାପ ମନ୍ଦିର ଆଡ଼େ ଚାଲିଗଲେ ।

**2**

ତା'ପରଦିନ ସକାଳୁ ମହାଦେବୟ୍ୟା ଗାଁ ଛାଡ଼ି ଭିକ୍ଷା ମାଗିଗଲେ ଯେ ଦୁଇ ତିନିମାସ ପର୍ଯ୍ୟନ୍ତ ମଧ୍ୟ ଫେରିଲେ ନାହିଁ । ନଞ୍ଜମ୍ମାର ମନଟା ବିଚଳିତ ହେଲା ଯେ ବୋଧହୁଏ ମହାଦେବୟ୍ୟା ଗାଁ ଛାଡ଼ି ଚାଲିଗଲେ । ଗାଁଟା ଯାକରେ ଜଣେ ବୋଲି ଭଦ୍ର ଲୋକ ଥିଲା ଯେ ସେ ମଧ୍ୟ ମନ ଦୁଃଖରେ ଗାଁ ଛାଡ଼ି ଚାଲିଗଲା । କେଜାଣି ଆଉ ଫେରିବେ କି ନାହିଁ । କିନ୍ତୁ ତାଙ୍କର ଜିନିଷ କେତେ ଖଣ୍ଡ ମନ୍ଦିରରେ ପଡିଥାଏ । ତା'ଛଡ଼ା ଦୁଇ ତିନି ବୋଝ ମାଣ୍ଡିଆ, ଦି'ଚାରି ଖଣ୍ଡ ଆଲୁମିନିୟମ୍ ବାସନ ମଧ୍ୟ ପଡ଼ିଥିଲା । ଘରଟା ତାଲା ପକାଇ ଚାବି ସାଙ୍ଗରେ ନେଇ ଯାଇଥିଲେ । ତେଣୁ ବିଶ୍ୱାସ ଲାଗୁଥିଲା ଯେ ଫେରିପାରନ୍ତି । ସେ ଯିବାପରେ ମନ୍ଦିରଟା ନିଛାଟିଆ ଲାଗୁଥିଲା । ନଞ୍ଜମ୍ମା ସିଆଡ଼େ ଆଉ କେବେ ଯାଏ ନାହିଁ । ଚେନ୍ନିଗରାୟ୍ ପାଇଁ ମଧ୍ୟ ସେଠାରେ ଆଉ କିଛି ଆକର୍ଷଣ ନଥିଲା ।

ପାର୍ବତୀ ଏବଂ ରାମନ୍ନା ପ୍ରାଇମେରୀ ସ୍କୁଲ ପାସ୍ କରିଗଲେ । ସ୍କୁଲ ମାଷ୍ଟର ସୁରପପା କହୁଥିଲେ ଯେ ରାମନ୍ନା ଭାରି ବୁଦ୍ଧିଆ ପିଲା । କ୍ଲାସରେ ଫାଷ୍ଟ ହୋଇଛି । ତା'ହାତର ଅକ୍ଷର ଗୁଡ଼ିକ ଗୋଲ ଗୋଲ ଏବଂ ମୋତି ପରି ସୁନ୍ଦର । ସର୍ବରାକାର ହିସାବ ଖାତାରେ ମଧ୍ୟ ଗୁଳବାଡ଼ି ପକାଇ ଗାର ଟାଣିଦିଏ । କନ୍ନଡ଼ ଭାଷାରେ ବହିଗୁଡ଼ିକ ଖୁବ୍ ସୁନ୍ଦର ପଢ଼ିପାରେ । ତିନିପିଲାଙ୍କୁ ନଞ୍ଜମ୍ମା କେତେ ଗୁଡ଼ିଏ ଭଜନ ଓ ଶ୍ଳୋକ ଶିଖାଇଥିଲା । ଯଥା 'ଭଜ ଗୋବିନ୍ଦମ୍ ମୂଢ଼ମତେ' ଏବଂ "ଶାନ୍ତା କାରମ୍ ଭଜଗ ଶୟନମ୍" । ରାମାୟଣର କିଛି ଅଂଶ ଭାଇ ଭଉଣୀ ମୁଖସ୍ଥ କରି ଦେଇଥିଲେ । ସର୍ବରାକାର ହେବା ପାଇଁ ରାମନ୍ନାର ପାଠ ପଢ଼ା ଯୋଗ୍ୟତା ସେତିକିରେ କାମ ଚଳି ଯାଇଥାନ୍ତା କିନ୍ତୁ ନଞ୍ଜମ୍ମା ମନରେ ଭାବନା ଅନ୍ୟ ପ୍ରକାର ଥିଲା । ସେ ଚାହୁଁଥିଲା ପିଲାଙ୍କୁ ପାଠଶାଠ ପଢ଼ାଇ କିଛି ଗୋଟିଏ ଭଲ ସରକାରୀ ଚାକିରୀ କରାଇବାକୁ । ଅତିକମ୍‌ରେ ଇଲାକାଦାର ଚାକିରୀ ପାଇଁତ ଯୋଗ୍ୟ ହୋଇ ପାରନ୍ତେ । ମାଷ୍ଟ୍ରେ ମଧ୍ୟ କହୁଥିଲେ ରାମନ୍ନାକୁ ମାଇନର ସ୍କୁଲରେ ପଢ଼ାଇବାକୁ । ମାଇନର ସ୍କୁଲ ଯାଇ କମ୍ବନକେରେ ଗାଁରେ ଥିଲା । ରାମସନ୍ଦ୍ର ଗାଁ ଠାରୁ ପାଞ୍ଚମାଇଲ ଦୂରରେ । ସେ ଗାଁରେ ମଧ୍ୟ କେତେ ଜଣ ବ୍ରାହ୍ମଣ ପରିବାର ଅଛନ୍ତି । ଯଦି କାହାଘରେ ରହି ଖାଇବାର ବ୍ୟବସ୍ଥାଟା କରାଇ ଦିଆଯାଇ ପାରନ୍ତା ପିଲାଟା ସେଠି ରହି ପଢ଼ି ପାରନ୍ତା । ଶନିବାରକୁ ଶନିବାର ଗାଁ ଆସିଯାଇ ପାରନ୍ତା । ସେଠା ଇଲାକାଦାର ନଞ୍ଜମ୍ମାକୁ ଜାଣନ୍ତି । ତାଙ୍କ ଘରେ ଦିନକର ଖାଇବା ହୋଇଯିବ । ଆଉ ଚାରିପାଞ୍ଚ ଦିନ କେଉଁଠି ଖାଇବ ? ସେଠି ମାଷ୍ଟ୍ର ସୁରପପା କିମ୍ବା ଦ୍ୟାବରସୟ୍ୟାଙ୍କର ଚିହ୍ନା ଲୋକ ଥିବେ ତ । କିନ୍ତୁ ରାମନ୍ନା ଆଉ କାହା ଘରେ ଖାଇବା ପାଇଁ ମନା

Digitized by srujanika@gmail.com

କଲା । ତାକୁ ଏଥିପାଇଁ ବଡ଼ ଲାଜ ଏବଂ ସଙ୍କୋଚ । ସେ କହିଲା ଯେ ପ୍ରତିଦିନ ସ୍କୁଲକୁ ଯିବା ଆସିବା କରିବ । ତା'ମାନେ ଯିବାକୁ ପାଞ୍ଚମାଇଲ ଆସିବାକୁ ପାଞ୍ଚମାଇଲ । ରାସ୍ତାରେ ପୁଣି କେତେ ଦେବୀ ମନ୍ଦିର । ପୁରୁଣା ବୁଦାଳିଆ ଜାଗା ଏବଂ ବରଗଛ ପଡ଼ିବ । ସାପ, ଜନ୍ତୁ ଆଦିର ଭୟ ମଧ୍ୟ ଅଛି । ବାଟରେ କେତେ ଯେ ଉଇ ହୁଙ୍କା, ତାକୁ ଦେଖିଲେ ଡରମାଡ଼େ । ରାମନ୍ନା ମାତ୍ର ଦଶ ବରଷର ପିଲା । ଏକୁଟିଆ ଏଭଳି ରାସ୍ତାରେ ସେ ସବୁଦିନ ଯିବା ଆସିବା କରିପାରିବ ତ ? କିନ୍ତୁ କଷ୍ଟ ନ ଉଠାଇଲେ କ'ଣ କୃଷ୍ଣ ମିଳିବେ ? ମାଷ୍ଟ୍ରଙ୍କ ଠାରୁ ପ୍ରାଇମେରୀ ସ୍କୁଲର ସାର୍ଟିଫିକେଟ୍‌ଟା ଆଣି ତାକୁ ଦିଅଁ ଖଟୁଲୀ ସାମନାରେ ରଖି ପୂଜା କରାଗଲା । ତା'ପରେ କାନାରେ ଜଳଖିଆ ବାନ୍ଧି ରାମନ୍ନା ହାତରେ ଦେଇ ପଠାଇଲା । ମାଇନର ସ୍କୁଲରେ ନାଁ ଲେଖାଇବାକୁ ସାଥିରେ ଯିବା ପାଇଁ ଚେନ୍ନିଗରାୟ ରାଜି ହୋଇଥିଲା । କିନ୍ତୁ ନାଁ ଲେଖାଦିନ ସକାଳୁ ଖଟରୁ ନ ଉଠି କହିଲା - "ଆଲୋ, କାଲି ଗଲେ ଚଳନ୍ତା ନାହିଁ ।" କିନ୍ତୁ ପାଞ୍ଜି ଦେଖି ଅମୃତ ବେଳା ଖୋଜି ନଞ୍ଜମ୍ମା ସମୟ ଠିକ୍ କରାଇଛି । ତାକୁ ଆଉ ବଦଳାଇବ କିପରି ? ତେଣୁ ବାଧ୍ୟ ହୋଇ ପୁଅ ସାଙ୍ଗରେ ନିଜେ ବାହାରିଲା । ଘରୁ ବାହାରିଲା ବେଳକୁ ରାମନ୍ନା ଦିଅଁଙ୍କ ଠାରେ ମୁଣ୍ଡିଆ ମାରିଲା । ତା'ପରେ ମା' ଏବଂ ନାନୀ ପାର୍ବତୀକୁ ମୁଣ୍ଡିଆ ମାରିଲା । ବାପା ଖଟରେ ଶୋଇଥିବାରୁ, ଶୋଇଥିବା ଲୋକକୁ ନମସ୍କାର କରାଯାଏ ନାହିଁ ବୋଲି ଘରୁ ବାହାରି ପଡ଼ିଲା ।

ମା'ପୁଅ ଦିହେଁ ସ୍କୁଲରେ ଯାଇ ପହଞ୍ଚିଲେ । ଅଭିଭାବକ ଜାଗାରେ ନଞ୍ଜମ୍ମା ନିଜ ଦସ୍ତଖତ କରି ଆଠଅଣା ହେଡ଼ମାଷ୍ଟ୍ରଙ୍କୁ ଫିସ୍ ଦେଇ ରାମନ୍ନାର ନାଁ ଲେଖାଇଲା । ସେଠା ପିଲାଙ୍କୁ ଦେଖି ନଞ୍ଜମ୍ମା ଭାବିଲା ରାମନ୍ନାକୁ ମଧ୍ୟ ସ୍କୁଲକୁ ଆସିବାକୁ ନୂଆ ଧୋତି ଖଣ୍ଡେ ଦରକାର । ତା'ଛଡ଼ା ମୁଣ୍ଡକୁ ଟୋପି ମଧ୍ୟ ଦରକାର । ପ୍ରାଇମେରୀ ସ୍କୁଲରେ ସିନା ହାଫପେଣ୍ଟରେକାମ ଚଳି ଯାଉଥିଲା ।

ଧୋତି ଅତିକମ୍‌ରେ ଦିଖଣ୍ଡତ ଦରକାର । ଖଣ୍ଡେ ଧୋଇଲେ ଖଣ୍ଡେ ପିନ୍ଧିବ । ଦିଖଣ୍ଡ ଧୋତି ଏବଂ ଗୋଟେ ଟୋପି ପାଇଁ ଦି ଟଙ୍କା ଦରକାର । ତା'ଛଡ଼ା ବହି, ପେନସିଲ, ଖାତା ଏବଂ ବସ୍ତାନୀ ମଧ୍ୟ ଦରକାର । ଏପରି ସାତ ଆଠ ଟଙ୍କା ଖଣ୍ଡେ ଲାଗିଯିବ । ଘରେ ତ ଏବେ ପଇସା ନାହିଁ । ଘରେ ଖାଲି ଖାଲି ପତ୍ର ବିଡ଼ା ଗଦା ହୋଇଛି । ଘରକୁ ଫେରି ନଞ୍ଜମ୍ମା ଆଟୁ ଉପରକୁ ଯାଇ ଖଲି ବିଡ଼ା ଗଣିଲା । ସବୁଯାକ ଶହେ ବିଡ଼ା ହେଲା । ବିଡ଼ାକୁ ସାତ ଅଣା ହିସାବରେ ଚଉରାଳିଶି ଟଙ୍କା ବାରଅଣା ହେବ । କିନ୍ତୁ ସବୁଯାକ ଏକାଠି ବିକ୍ରୀ ହେଲେ ତ ? ତିପଟୁର ଯାଏଁ ଶଗଡ଼ ଭଡ଼ା କରି ନେଲେ ଶହେ ବିଡ଼ା ପାଇଁ ଖର୍ଚ୍ଚ ବେଶି ପଡ଼ିଯିବ । କ'ଣ ଭାବି ସେ ରେବଣ ସେଠୀର ସ୍ତ୍ରୀକୁ ଡକାଇଲା । ତା'ପାଖରେ ମଧ୍ୟ ଅଶୀ ବିଡ଼ା ଖଲି ଥିଲା । ଦୁଇଜଣ ମିଶିକରି ଶଗଡ଼ ଭଡ଼ା କଲେ ଅଧ ଅଧ ଖର୍ଚ୍ଚ ପଡ଼ନ୍ତା । ସେଠିଆଣୀ ଆସି କହିଲା, କାଲି ତା ସ୍ୱାମୀ ଶଗଡ଼ ନେଇ ତିପଟୁର ଯାଉଛନ୍ତି ତାଙ୍କ ହାତରେ ପଠାଇ ଦେଲେ ହେବ ।

"କିନ୍ତୁ ସ୍ୱାମୀଙ୍କର ସ୍ୱଭାବ ତ ତୁମେ ଜାଣିଛ । ତାଙ୍କ ଉପରେ କ'ଣ ବିଶ୍ୱାସ କରି ହେବ ?"

Digitized by srujanika@gmail.com

"ହଁ ତା ମଧ୍ୟ ସତ ।" କହି ସେଠିଆଣୀ ଚୁପ ରହିଲା । ପୁଣି କ'ଣ ମନକୁ ଆସିବାରୁ କହିଲା - "ଖଲିତକ ଯଦି ମୁଁ ନିଜେ ଗାଡ଼ି ସାଙ୍ଗରେ ଯିବି ।" ନଷ୍ଟିମା ମନକୁ ଏକଥା ପାଇଲା । ସେ ବହି, ଖାତା, ପେନ୍‌ସିଲ୍ ଲୁଗା, ବସ୍ତାନୀ ଆଦିର ତାଲିକା ଲେଖି ସେଠିଆଣୀ ହାତରେ ଦେଲା । ତା'ପରଦିନ ଖଲି ଧରି ରେବଣସେଠୀ ସାଙ୍ଗରେ ଶଗଡ଼ରେ ବସି ତିପଟୁର ଗଲା । ଖଲିତକ ବିକି ନଷ୍ଟିମାର ତାଲିକା ପ୍ରକାରେ ବହିପତ୍ର କିଣି ଗାଁ ଫେରିବାକୁ ବାହାରି ପଡ଼ିଲା । ଗାଁକୁ ଫେରିଲା ବେଳକୁ ରାତି ବହୁତ ହୋଇ ଗଲାଣି । ଘରେ ପହଞ୍ଚି ଦେଖେତ ଜିନିଷ ପତ୍ରତକ ତ ଠିକ୍ ଅଛି କିନ୍ତୁ ବାକି ପଇସା ତକ ଗୋଟିଏ ମୁଣିରେ ବାନ୍ଧି ବେକରେ ଓହଳାଇ ଥିଲା । ଦେଖିଲା ବେଳକୁ ମୁଣିଟି ଖାଲି ପଡ଼ିଛି । ସ୍ୱାମୀକୁ ପଚାରିବାରୁ ରାଗରେ କହିଲା - "ବାଟଯାକ ତ ଘୁମଉ ଥିଲୁ । କେଉଁଠି ପକେଇ ଦେଇଥିବୁ ।" ତା ସ୍ତ୍ରୀ ଲୁହ ପୋଛି ପୋଛି ନଷ୍ଟିମା ପାଖକୁ ଯାଇ ସବୁକଥା କହିଲା । ନଷ୍ଟିମା ଏକଥା ଶୁଣି କ'ଣ କରିବ କିଛି ବୁଝି ପାରିଲା ନାହିଁ । ସାଢ଼େ ଛଅ ଟଙ୍କାର ଜିନିଷ ଗଲେ, ଆଉ ଅଠତିରିଶ ଟଙ୍କା ତା'ର ଗଲା । ସେଥିରେ ସେଠିଆଣୀର ମଧ୍ୟ ପଚିଶତିରିଶି ଟଙ୍କା ଥିଲା ।

"ନଷ୍ଟିମା ମତେ ଠକାରୁଣୀ ବୋଲି ଭାବ ନାହିଁ । ଭଗବାନଙ୍କ ରାଣ ଖାଇ କହୁଛି ମୁଁ କିଛି ଜାଣି ନାହିଁ ।" ନଷ୍ଟିମା ଧୈର୍ଯ୍ୟ ଧରି ଚାରି ଛଅଟା ପ୍ରଶ୍ନ ପଚାରିଲା, ଏବଂ କହିଲା - "ତୁମେ ଯାହା କହ ଭଉଣୀ ଟଙ୍କା ଏବେ ମଧ୍ୟ କୁଆଡ଼େ ଯାଇନାହିଁ । ତୁମେ ରାସ୍ତାରେ ଯେତେବେଳେ ଘୁମଉଥିଲ ସେତେବେଳେ ତୁମ ସ୍ୱାମୀ ତାହା ନେଇ ଯାଇଛନ୍ତି ।" ରେବଣସେଠୀର ସ୍ତ୍ରୀକୁ ମଧ୍ୟ ଏକଥା ସତ ଲାଗିଲା । ଘରକୁ ଫେରି ସ୍ୱାମୀକୁ କହିଲା - "ହଇକିଏ ତୁମର ଏଡ଼େ ସାହସ । ଟଙ୍କାତକ ନେଇ ଯାଇଛ । କମ୍‌ସେ କମ୍ ନଷ୍ଟିମାର ଟଙ୍କାତକ ତ ଦେଇ ଦିଅ ।" ଏକଥା ଶୁଣି ରେବଣସେଠୀ ପ୍ରଚଣ୍ଡ ରାଗିଗଲା । ତା'ସ୍ତ୍ରୀକୁ ଖୁବ୍ ମାଡ଼ ମାରିଲା । ତା'ଭଳି ଭଦ୍ରଲୋକକୁ ଚୋର ବୋଲି କହି ଅପମାନ ଦେବାର ଫଳ ତା'ସ୍ତ୍ରୀ ପାଇଗଲା । ସେଠିଆଣୀ ସେଦିନ ଆଉ କିଛି ନ କହି ତା'ପରଦିନ ସକାଳୁ ଝିଅ ରୁଦ୍ରାଣୀକୁ ସାଙ୍ଗରେ ଧରି ନିଜ ବାପ ଘରକୁ ଚାଲିଗଲା । ତା'ବେକରେ ଏପର୍ଯ୍ୟନ୍ତ ରେବଣସେଠୀର କ୍ରୁର ନଜରରୁ ବର୍ତ୍ତିଯାଇଥିବା ସୁନାର ମାଳିଟି ରହିଯାଇଥିଲା । ଗୋଟିଏ ବଣିଆକୁ ସେଇଟା ଦେଢ଼ ଶହ ଟଙ୍କାରେ ବିକି ଆଠ ଟଙ୍କାରେ ରୂପାରେ ଗୋଟିଏ ମାଳି ତିଆରି କରି ପିନ୍ଧିଲା । ତା'ର ଦୁଇଦିନ ପରେ ରାମସନ୍ଦ୍ର ଗାଁକୁ ଫେରିଲା । ନଷ୍ଟିମା ଘରକୁ ଯାଇ ତା'ର ଯେତିକି ଟଙ୍କା ଫେରାଇବାକୁ ଥିଲା ଦେଇ ବାକି ଟଙ୍କା ତକ ମଧ୍ୟ ନଷ୍ଟିମାକୁ ଦେଇ କହିଲା - "ଭଉଣୀ ଦରକାର ପଡ଼ିଲା ବେଳକୁ ତୁମଠୁ ଟଙ୍କାଏ, ଦିଟଙ୍କା କରି ମାଗିନେବି ।"

"ଏତେ ଟଙ୍କା ମୁଁ ରଖିବି କେଉଁଠି ?"

"ଗୋଟିଏ ମାଠିଆରେ ପୁରାଇ ଆଟୁ ଉପରେ ଖଲିପତ୍ର ଭିତରେ ଲୁଚାଇ ରଖିଦିଅ । କେହି ଜାଣି ପାରିବେନି ।"

ନଷ୍ଟିମା ସେହିପରି କଲା । ରେବଣସେଠୀ ଆଠଦିନ ପର୍ଯ୍ୟନ୍ତ ରାତିରେ ଶୋଇବାକୁ ଆସିଲା ନାହିଁ । ସକାଳ ହେଲେ ଘରକୁ ଆସି ଦିନଯାକ ଶୁଏ ।

Digitized by srujanika@gmail.com

ରାମନ୍ନା ଏଥର ମାଇନର ସ୍କୁଲରେ ପଢ଼ିବାକୁ ଗଲା । ପାର୍ବତୀ ଘରେ ରହିଲା । ତାକୁ ଆସି ବାରବର୍ଷ ହେଲାଣି । ନଞ୍ଜମ୍ମା ମୁଣ୍ଡରେ ପୁଣି ଚିନ୍ତା । ଝିଅଟାର ବଢି ହେଲାପରି ଗୋଲ ସୁନ୍ଦର ଚେହେରା । ଦେଖିଲେ ଯିଏ ହେଲେ କହିବ ପନ୍ଦର ବର୍ଷର ଝିଅ । ତା'ର ବିଭାଘର ପାଇଁ ଟଙ୍କା ପଇସା କେଉଁଠୁ ଯୋଗାଡ଼ କରିବ । ଏ ପର୍ଯ୍ୟନ୍ତ ଯେ କୌଣସି ପ୍ରକାରେ ଦି'ମୁଠା ଖାଇବା ହୋଇଗଲା । ତେଣେ ରାମନ୍ନାର ପଢ଼ାଖର୍ଚ୍ଚ ମଧ୍ୟ ଅଛି । ଝିଅ ବାହାଘର ତ ଆଉ ଖେଳ ନୁହେଁ । କେତେଦିନ ବା ଆଉ ଘରେ ରଖିହେବ । କଥାରେ ଅଛି ଝିଅ ଘିଅ । ବେଶିଦିନ ରଖି ହୁଏ ନାହିଁ ।

ପାର୍ବତୀ ମଧ୍ୟ ଗୀତ, ଭଜନ ଆଦି ଖୁବ୍ ଭଲ ଗାଇପାରେ । ଠିକ୍ ତା' ମା' ପରି । ବିଭିନ୍ନ ପୂଜା ପରବରେ ମା' ଝିଅ ବସି ଭଜନ ଗୀତ ଆଦି ଗାଆନ୍ତି । ଘରେ ବସି ବସି ଏଡ଼େ ପିଲାଟା କ'ଣ କରିବ । ତେଣୁ ଦିନଯାକ ବସି ଦୁଇ ଶହ ଖଣ୍ଡେ ଖଲି ସିଇଁ ଦିଏ । ପିଲାଟାର ଏବେ ବଢ଼ିବା ବୟସ । ଦୁଧ ଟିକିଏ ଖାଇବାକୁ ଦେବା ପାଇଁ ନଞ୍ଜମ୍ମାର ଇଚ୍ଛା । ସାନପୁଅ ଜନ୍ମ ହେଲାଦିନୁ ଜେଜେମା ଯେଉଁ ଗାଈଟା ଦେଇଥିଲେ ସେଇଟା ଆଉ ଗୋଟିଏ ବାଛୁରୀ କରିଛେଇଛି । ଗାଈଟା ଭଲ ହେଲେ ମଧ୍ୟ ବାହାରେ ଚରି, ବୁଲି ଯାଉ ନଥିବାରୁ କେବଳ ତିନି ପା' ଖଣ୍ଡେ କ୍ଷୀର ଦେଉଥିଲା । ତେଣେ ଖାଇଲା ବେଳେ ପାଖକୁ ଦହି ଟିକିଏ ନହେଲେ ଚେଟ୍ନିଗଡ଼ାଯାଏ ପାଟି କରିବ । ବାକି ଯାହା ବଳିବ ସେଥିରୁ କେଉଁ ପିଲାକୁ କେତେ ବା ଦେବ ? ଦିନଯାକ ଖଲି ସିଇଁ ସିଇଁ ଝିଅଟାର ହାତଗୋଡ଼ ମଧ୍ୟ ଦରଜ କରେ । ତେଣେ ଦଶମାଇଲ ବାଟ ଚାଲିଚାଲି ସ୍କୁଲକୁ ଯିବା ଆସିବା କରିବା ପୁଅ, ଏବଂ ସାନପୁଅ । କେମିତି କାହାକୁ କମ୍ ଦେବ ବା କେଉଁଠୁ ଆଉ ଆଣିବ ?

ସେବର୍ଷ ବର୍ଷା ଭଲ ନହେବାରୁ ମରୁଡ଼ି ଅବସ୍ଥା ମାଡ଼ି ଆସିଲା ।ଲୋକେସବୁ ଫସଲ ମରିବା ଅବସ୍ଥା ଦେଖି ହା' ହା' କାର କରିବାକୁ ଲାଗିଲେ । ଗାଈଟା କିଛି ଖାଇବାକୁ ନ ପାଇ ଦୁର୍ବଳ ହୋଇଗଲା ଏବଂ ଦୁଧ ଦେବା ବନ୍ଦ କରିଦେଲା । ଧାନ ଫସଲର ଆଶା ଛାଡ଼ି ଲୋକେ ରବି ଫସଲ ମାଣ୍ଡିଆ ଉପରେ ଆଶା କରି ରହିଥାନ୍ତି । ଏବର୍ଷ ମଧ୍ୟ ଅଗ୍ରୀମ ଖଜଣା ପାଉତି ଲେଖାଇ ଦେବାକୁ ଗୁଣ୍ଡଗୌଡ଼ କହିଲେ - "ଭଉଣୀ, ମୁଁ ବଡ଼ ଅସୁବିଧାରେ ପଡ଼ିଛି । ମୋର ଯେତିକିମାଣ୍ଡିଆ ଆରବର୍ଷର ବଳିଛି ସେଥିରେ ମୋ ଘରର ଏବଂ ମୋ ଚାକର ହଳିଆଙ୍କର ଏବର୍ଷଟା ଚଳିଯିବ । ତେଣେ ମୋ ସମୁଦୀ ମଧ୍ୟ କହି ପଠାଇଛନ୍ତି ଯେ ଦୁଇ ଶଗଡ଼ ମାଣ୍ଡିଆ ତାଙ୍କର ନିହାତି ଦରକାର । ତେଣୁ ତୁମକୁ ମୁଁ ମାଣ୍ଡିଆ ଦେଇ ପାରିବି ନାହିଁ । ତୁମେ ଟଙ୍କା ନେଇଯାଅ ।"

ସେତିକିବେଳେ ଟଙ୍କା ନେଇ ମାଣ୍ଡିଆ କିଣି ରଖିଦେଇଥିଲେ ଭଲ ହୋଇଥାନ୍ତା । କିନ୍ତୁ ସେ କ'ଣ ଭାବିଥିଲା ଯେ, ଆଗକୁ ଏପରି ଅବସ୍ଥା ହେବ । ଘରେ ମଧ୍ୟ ଅଳ୍ପ କିଛି ମାଣ୍ଡିଆ ବଳିଥିଲା । ଆଉ

Digitized by srujanika@gmail.com

ଦୁଇମାସକୁ ସେତକ ସରିଗଲା । ବର୍ଷା ସେ ପର୍ଯ୍ୟନ୍ତ ଜମା ହୋଇନଥାଏ । ମାଣ୍ଡିଆର ଦର ବଢ଼ି ସେତେବେଳକୁ ଟଙ୍କାକୁ ଆଠ ସେର ହୋଇଗଲାଣି । ତା'ପୂର୍ବରୁ ଟଙ୍କାକୁ ଚବିଶି ସେର ମିଳୁଥିଲା । ମାନେ ଦାମ୍ ତିନିଗୁଣ ବଢ଼ିଗଲା । ନଈଜ୍ମାର ଛାତି ଧଡ୍ ଧଡ୍ ହେଲା । ଗୁଣ୍ଡଗୌଡ଼ଙ୍କ ପାଖକୁ ଯିବାରୁ ସେ କହିଲେ - "ମୁଁ ଭାବିଲି ତୁମ ଘରେ ମାଣ୍ଡିଆ ଥିବ ତେଣୁ ଆସିଲ ନାହିଁ । ଏବେ ତ ଦର ଖୁବ୍ ବଢ଼ି ଗଲାଣି । ଏବଠୁ କିଣି ରଖିଦିଅ । ନହେଲେ ଆଉ ମାସେ ପରେ ବିହନ ପାଇଁ ଖୋଜିଲେ ମଧ୍ୟ ମାଣ୍ଡିଆ ମିଳିବ ନାହିଁ ।"ନଈଜ୍ମା କହିଲା,"ମୁଁ ଆଉ କୁଆଡ଼େ ଯିବି । ଆପଣ କେଉଁଠୁ ହେଲେ କିଣାଇ ଦିଅନ୍ତୁ ।" ଖବରନେଇ ଗୁଣ୍ଡଗୌଡ଼ ପାଖ ଗାଁର ମହାଜନ ପାଖରୁ ଟଙ୍କାକୁ ଛଅସେର ହିସାବରେ ଶହେଟଙ୍କାର ମାଣ୍ଡିଆ କିଣାଇ ନଈଜ୍ମାର ଘରକୁ ପଠାଇଦେଲେ । ବାକି କୋଡ଼ିଏ ଟଙ୍କା ନଈଜ୍ମା ଘର ଖର୍ଚ୍ଚ ପାଇଁ ପାଖରେ ରଖିଲା ।

ପାଞ୍ଚଜଣ କୁଟୁମ୍ବ ପାଇଁ ଦିନକୁ ଚାରିସେର ଖଣ୍ଡେ ମାଣ୍ଡିଆ ଦରକାର । ଦହି, ତରକାରୀ, ଡାଲି, ଇତ୍ୟାଦି ଭରପୁର ଥିଲେ ମାଣ୍ଡିଆ କମ୍ ଖର୍ଚ୍ଚ ହୁଅନ୍ତା । ରାମନ୍ନା ସ୍କୁଲରେ ଖାଇବା ପାଇଁ ମାଣ୍ଡିଆ ଚକୁଳି ବାନ୍ଧିକରି ନିଏ । ସାନପୁଅ ବିଶ୍ୱର ମଧ୍ୟ ଜିଦ୍ ଯେ ବଡ଼ଭାଇ ପରି ସେ ମଧ୍ୟ ଚକୁଳି ସ୍କୁଲକୁ ନେବ । ଏଣେ ବଢ଼ିଲା ଝିଅ ପାର୍ବତୀର ପେଟରୁ ବା' କିପରି କମ୍ କରିବ । ସ୍ୱାମୀଙ୍କର କଥା ତ ଛାଡ଼ । ସକାଳୁ ଉଠି ଗାଧୋଇ ସାରି ଖାଇବାକୁ ମାଗିବେ । ଟିକିଏ ଡେରି ହେଲେ ଦାଣ୍ଡରେ ଠିଆ ହୋଇ ଅକଥା ଭାଷାରେ ଗାଳି ଆରମ୍ଭ କରିବେ । ନଈଜ୍ମା ଚାହୁଁ ନଥିଲା ସକାଳୁ ଉଠୁ ଉଠୁ ସ୍ୱାମୀଙ୍କର ମନ୍ତ୍ରୋଚାରଣ ଶୁଣିବାକୁ । ତା'ଛଡ଼ା ସେ ଡରୁଥିଲା ଯେ ଏଭଳି ଅସଭ୍ୟ କଥା ଶୁଣିଲେ ପିଲା ଗୁଡ଼ାଙ୍କ ଉପରେ ଖରାପ ପ୍ରଭାବ ପଡ଼ିବ ।

ଫଳ ଏଇଆ ହେବ ଯେ ମାଣ୍ଡିଆତକ ଚାରିମାସରେ ଶେଷ ହୋଇଯିବ । ଆଉ କିଣିବାକୁ ଘରେ ପଇସା ମଧ୍ୟ ନାହିଁ । ଖଲି ବିକି ଯେତିକି ପଇସା ମିଳିବ ସେଇଆ ହିଁ ସମ୍ବଳ । ତେଣୁ ମା'ଝିଅ ଦିନଯାକ ବସି ଖଲି ତିଆରି କରନ୍ତି । ଏବର୍ଷ ଖଜଣା ଆଦାୟ ମଧ୍ୟ ହେବାର ସମ୍ଭାବନା ନାହିଁ । ଜମିରେ ଫସଲ ମରି ପାଳ ହୋଇଗଲା । ତେଣୁ ଫସଲ ଆଦାୟର ହିସାବ ଲେଖିବାକୁ ପଡ଼ିବ ନାହିଁ । କିନ୍ତୁ ଖାତାରେ ନାଁ ଏବଂ ଜମି ନମ୍ବର ପକାଇ, ଆଦାୟ ଘରେ ଶୂନ୍ ବୋଲି ତ ଲେଖିବାକୁ ପଡ଼ିବ । କାରଣ ସରକାରୀ ଖାତା ତ ଠିକ୍ ରଖିବାକୁ ପଡ଼ିବ । ନଈଜ୍ମା ଘର କାମ ସାଙ୍ଗରେ ଖଲି ସିଲେଇବା ଏବଂ ଖାତା ହିସାବ ଏସବୁ କାମ ଦେଖେ ।

ପୌଷ ମାଘ ବେଳକୁ ମରୁଡ଼ିର ପ୍ରକୋପ ଆହୁରି ଜଣା ପଡ଼ିଲା । ଗାଈଗୋରୁଙ୍କ ପାଇଁ ଚରା ଘାସ ମୋଟେ ନାହିଁ । ଫସଲ ନଉଠିବାରୁ ପାଳ, ନଡ଼ା ଆଦି ମଧ୍ୟ ମିଳିଲା ନାହିଁ । ଯାହାର ପୁରୁଣା ପାଳଗଦା, ନଡ଼ାଗଦା ଥିଲା ସେମାନେ ଦିନରାତି ଜଗି ବସିଲେ, କାଳେ ଚୋରି ହୋଇଯିବ ବୋଲି । ଯାହାର କମ୍ ଥିଲା ସେମାନେ ଅଳ୍ପ ଅଳ୍ପ ଗୋରୁଗାଈଙ୍କୁ ଦେଇ ବଞ୍ଚାଇ ରଖିବାର ପ୍ରୟାସ କେବଳ କରୁଥାନ୍ତି । ଅନେକ ଗୋରୁଗାଈ ଖାଇବାକୁ ନପାଇ ମୃତ୍ୟୁ ମୁଖରେ ପଡୁଥାନ୍ତି । ନଈଜ୍ମାର ଗାଈ ଦଇଟା

Digitized by srujanika@gmail.com

ଏବଂ ବାଛୁରୀଙ୍କ ଅବସ୍ଥା ମଧ୍ୟ ଖରାପ । ଭାବିଲା ବାପ ଘରକୁ ପଠାଇ ଦେବ । କିନ୍ତୁ ସେଠାରେ ମଧ୍ୟ ସେପରି ଅବସ୍ଥା ଶୁଣିଲା । ଆଖପାଖ ପୁରା ଅଞ୍ଚଳରେ ମରୁଡ଼ିର ଘୋର ଅବସ୍ଥା । ସାରା କର୍ଣ୍ଣାଟକ ରାଜ୍ୟରେ ଅନାବୃଷ୍ଟି ପଡ଼ିଥାଏ । କେବଳ ନଈକୂଳିଆ ଅଞ୍ଚଳରେ କିଛି କିଛି ବନ୍ଧ ବାନ୍ଧି ପାଣି ରଖି ଲୋକେ ଫସଲ ଉଠାଇ ଥାନ୍ତି । କିଛି ଲୋକ ଶଗଡ଼ ନେଇ ସେ ଅଞ୍ଚଳକୁ ଯାଇ ପଚାଶ ଟଙ୍କାରେ ଶଗଡ଼େ ଲେଖାଏଁ ପାଳ କିଣିଆଣି ରଖିଥାନ୍ତି । ପରେ ଯାଇ ବୁଝିଲା ବେଳକୁ ଗାଡ଼ିଏ ପାଳ କୁଟାର ଦାମ୍ ପଅଁଷଠୀ ଟଙ୍କା । ନଞ୍ଜିଙ୍କାର ବୁଦ୍ଧିବଣା ହୋଇଗଲା । ଗାଈ ଦୁଇଟାଙ୍କର ଜୀବନ ଯିବା ଉପରେ । ଦିନେ ଗାଈକୁ ନେଇ ଗୁଣ୍ଡଗୌଡ଼ଙ୍କ ଘରେ ପହଞ୍ଚିଲା ଏବଂ କହିଲା - "ଆଜ୍ଞା ଏମାନଙ୍କୁ ମୁଁ ଆପଣଙ୍କୁ ଦାନ କରି ଦେଉଛି । ଦିନକୁ ଗଣ୍ଡେ ଲେଖାଏଁ ପାଳ ପକାଇ ଏମାନଙ୍କ ଜୀବନ ବଞ୍ଚାନ୍ତୁ । ବଞ୍ଚିଗଲେ ଭବିଷ୍ୟତରେ ଆପଣଙ୍କ ପୁଅ ନାତି ପାଇଁ ଦୁଧ ଦେବେ । ଏମାନଙ୍କୁ ଉପାସରେ ମରିବାର ମୁଁ ଦେଖି ସହିପାରୁନି ।"

"ଭଉଣୀ ମୁଁ ଜାତିରେ ଚଷା । ମୁଁ କ'ଣ ଗୋଦାନ ନେବା ପାଇଁ ଯୋଗ୍ୟ ।" ଗୌଡ଼ କହିଲେ ।

"ତାହାହେଲେ ଏ ତିନିଟା ପାଇଁ ତିନି ପଇସା ମୋତେ ଦେଇ ନେଇ ଯାଆନ୍ତୁ । କେମିତି ହେଲେ ବଞ୍ଚିଯାଆନ୍ତୁ ।"

ଗୌଡ଼ଙ୍କର ମଧ୍ୟ ନଡ଼ା ପାଳ ବିଶେଷ ନଥିଲା । ସେ ଅଞ୍ଚଳରେ ଜଣେ ପ୍ରତିଷ୍ଠିତ ଲୋକ ହିସାବରେ ସେ ବର୍ଷକର ଜିନିଷ ଆଗରୁ ସାଇତି ରଖୁଥିଲେ । ଆରବର୍ଷ ଯଦି ପୁଣି ବର୍ଷା ନହୁଏ ତେବେ କ'ଣ ହେବ ? କିନ୍ତୁ ଦୁଆରକୁ ଆସିଥିବା ଗୋ ମାତାଙ୍କୁ କିପରି ଫେରାଇବେ ଭାବି ଗୌଡ଼ କହିଲେ - "ହଉ, ମୋର ଦାନ ଲୋଡ଼ା ନାହିଁ । କି ମୁଁ କିଣିବିନି । କିନ୍ତୁ ଏମାନଙ୍କୁ ମୁଁ ପାଳିବି । ବଡ଼ ହେଲେ ଏ ଧଳା ବାଛୁରୀଟା ମତେ ଦେଇ ଦେବ । ଭାରି ସୁନ୍ଦର ହୋଇଛି ।"

ନଞ୍ଜିଙ୍କା ମୁଣ୍ଡରୁ ବୋଝ ଗଲା । ସେ ଗାଁକୁ ଫେରିଲା । ଗାଁର ସବୁ ଗୋରୁ ଗାଈ ମୃତପ୍ରାୟ ହୋଇ ଯାଇଥାନ୍ତି । ମା'ଝିଅ ମିଶି ଖଲି ତିଆରି କରିବାରୁ ମାର୍ଗଶିର ମାସ ବେଳକୁ ସବୁ ପତ୍ର ସରିଗଲା । ଘରୁ ମାଣିଆ ଚଙ୍କ ମଧ୍ୟ ସରି ଆସିଲାଣି । ଆଟୁରେ ଚଢ଼ି ନଞ୍ଜିଙ୍କା ଗଣି ଦେଖିଲା ଯେ କୋଡ଼ିଏ ହଜାର ଖଲି ଅଛି । ଏବେ ଦାମ୍ ମଧ୍ୟ ବଢ଼ିଯାଇଥିବ । ସବୁ ଜିନିଷର ଦର ବଢ଼ିଛି ତେବେ ଯ୍ୱାର ମଧ୍ୟ ବଢ଼ିଥିବ । ଶହେ ଖଲିକୁ ଆଠଅଣା ହିସାବରେ ପୁରା ଶହେ ଟଙ୍କା ହେବ । ନଞ୍ଜିଙ୍କା ଦୁଇଟା ଶଗଡ଼ରେ ଖଲିଚକ ଲଦି ରାମନ୍ନା ଏବଂ ରେବଣସେଠୀର ସ୍ତ୍ରୀକୁ ସାଙ୍ଗରେ ଧରି ତିପଟୁରକୁ ଗଲା । ସେଠିଆଣୀ ଛଅ ହଜାର ଖଲି ମଧ୍ୟ ନେଇଥାଏ । ଏତେ ଖଲି ଦେଖି ଦୋକାନୀ କହିଲା - "ଭଉଣୀ ଚାରିଆଡ଼େ ତ ଦୁର୍ଭିକ୍ଷ ପଡ଼ିଛି । ଖାଇବାକୁ ତ ମିଳୁନି । ଖଲି କିଣୁଛି କିଏ ସେ ? ଶହ ଚାରିଅଣା ଲେଖାଏଁ ଦେବତ କିଣିବି ।"

"ଏପରି କୁହନ୍ତୁନି । ଆମେ କେତେ କଷ୍ଟକରି ପତ୍ର ତୋଳି ଗୁନ୍ଥି, ଶୁଖାଇ ତୁମ ପାଖକୁ ଆଣିଛୁ । ଏତେ ପରିଶ୍ରମକୁ ଚାରିଅଣା ପଇସା ଏ କେଉଁଠିକାର ଧର୍ମ ?" ନଞ୍ଜିଙ୍କା କହିଲା ।

Digitized by srujanika@gmail.com

"ଧର୍ମ, କର୍ମ କଥା କାହିଁକି କହୁଛ ? ଇଚ୍ଛା ନପାଇଲେ ଆଉ କେଉଁଠି ପଚାର।"

ଆଉ ଠାଏ ଯାଇ ପଚାରିବାରୁ ଶହେ ତିନିଅଣା ବତାଇଲା, ତେଣୁ ପ୍ରଥମ ଦୋକାନୀକୁ ଖଳିତକ ବିକି ପଇସା ବାଣ୍ଟିଲେ। ନଈଜ୍ନା ନିଜ ପାଇଁ ଏବଂ ଝିଅ ପାଇଁ ଦୁଇଖଣ୍ଡ ଶାଢ଼ୀ ତିନି ଟଙ୍କାରେ କିଣିଲା। ରାମନ୍ନା ପାଇଁ ଖଣ୍ଡେ କୁର୍ତ୍ତା ଏବଂ ସାନପୁଅ ପାଇଁ ଚଡ଼ି ଏବଂ ଗେଞ୍ଜି କିଣିଲା। ସବୁ ଖର୍ଚ୍ଚ ସାରି ତା'ପାଖରେ ସର୍ତ୍ତତିରିଶି ଟଙ୍କା ବଳିଲା। ସାଙ୍ଗରେ ବାନ୍ଧି ନେଇଥିବା ମାଣ୍ଡିଆ ଚକୁଳି ଖାଇ ଗାଁକୁ ଫେରିଲା। ଏତିକି ଟଙ୍କାରେ ବା' କେତେ ମାଣ୍ଡିଆ ହେବ ? ଏବେ ଦାମ୍ ଆହୁରି ତିନିଗୁଣ ହୋଇଗଲାଣି।

ଏତିକି ବେଳକୁ ପୁଣି ଥରେ ପ୍ଲେଗ ମହାମାରୀ ବ୍ୟାପିଲା। ଏଥର ଆଗରୁ କେହିହେଲେ ମହାମାରୀର ସଙ୍କେତ ଜାଣିପାରିଲେ ନାହିଁ। ହଠାତ୍ ରୋଗ ବ୍ୟାପୀ ଗାଁର ଅନେକ ଲୋକଙ୍କ ପ୍ରାଣ ଗଲା। ଏଥର ମୂଷାମାନେ ମରି ପଡ଼ିବାର ଖବର ଜାଣିବା ଆଗରୁ ଗାଁରେ ରୋଗ ମାଡ଼ିଗଲା। ରାମସନ୍ଦ୍ର ଗାଁର ଲୋକ ଶୀଘ୍ର ଗାଁ ଖାଲି କରି ବିଲ ମଝିକୁ ପଳାଇଲେ। ନିଜ ନିଜ ଜମିରେ କୁଡ଼ିଆ କରି ରହିଲେ। ନିଜର ଜମିବାଡ଼ି କିଛି ନଥିବାରୁ ନଈଜ୍ନା, ଗଙ୍ଗାମ୍ନା ଏବଂ ରେବଣସେଠୀର ସ୍ତ୍ରୀ ଗାଁ ଠାକୁରାଣୀଙ୍କ ମନ୍ଦିରରେ ଆସି ରହିଲେ।

ବର୍ଷା ଆଦୌ ନହେବାରୁ ଏବର୍ଷ ପଳାଶ ଗଛର ନୂଆ ପତ୍ର ଗୁଡ଼ାକ ରୋଗୀଣା ପରି ସରୁଆ ସରୁଆ ହେଲେ। ପୁରୁଣା ପତ୍ରଗୁଡ଼ିକ ଖରାରେ ଶୁଖି ମଡ଼ ମଡ଼ ହୋଇ ଯାଇଥିଲା। ସେଥିରେ ଖଲି ତିଆରି ହୋଇ ପାରିବନି। ଖଲି ବସି ବସି କରିବେ ବା' କ'ଣ ? ଖଲି ବିକି ଯେତକ ପଇସା ବଳିଥିଲା ସେଥିରେ କିଣିଥିବା ମାଣ୍ଡିଆତକ ଶେଷ ହୋଇ ଆସିଲାଣି। ଆଉ ଦି ଦିନ ପରେ ଚୁଲୀ ମଧ୍ୟ ଜଳିବ ନାହିଁ। କେତେ ଲୋକ ଭୋକ ଦାଉରେ ନଡ଼ିଆ ଗଛରେ ଚଢ଼ି କଷା ପାକଳ ଯାହା ମିଳିଲା ତାକୁ ଖାଇ ପେଟର ଜ୍ୱାଳା ଶାନ୍ତ କରୁଥିଲେ। ଯାହାର ନଡ଼ିଆ ଗଛ ସେମାନେ ରାତିରେ ପହରା ଦେବାରୁ ପଥର ମାଡ଼ ହେଲା। ସେମାନେ ଡରି ଗଛ ଜଗିବା ଛାଡ଼ିବାରୁ ଭୋକିଲା ଲୋକେ ଗଛରେ ଚଢ଼ି ନଡ଼ିଆ ତୋଳି ଭୋକ ମେଣ୍ଟାଉ ଥିଲେ। ଯାହାର ଅନ୍ୟ କିଛି ଚାରା ନଥିଲା, ସେଘରର ସୁନା, ରୁପା, କଂସା, ସବୁ ନେଇ ମହାଜନ ପାଖରେ ବନ୍ଧାରଖି ଦିନେ ଦୁଇଦିନ ପାଇଁ ପେଟ ଶାନ୍ତ କଲେ। ଜଠରାଗ୍ନିର ଜ୍ୱାଳା ଆଗରେ ସମସ୍ତଙ୍କର ବୁଦ୍ଧିବଣା ହୋଇ ଯାଇଥାଏ।

ନଈଜ୍ନାର ମାଣ୍ଡିଆତକ ସରିଗଲା। ତା'ପରଦିନ ସକାଳୁ ପୁଅ ରାମନ୍ନା ଉପବାସରେ ସ୍କୁଲକୁ ଗଲା। ପାଠ ପଢ଼ାରେ ପିଲାଟାର ଭାରି ଉତ୍ସାହ। କ୍ଲାସରେ ପଢ଼ା ହେବା ଆଗରୁ ନିଜେ ନିଜେ ଆଗ ବିଷୟ ଗୁଡ଼ିକ ପଢ଼ି ପକାଉଥାଏ। ଉଦାହରଣ ଦେଖି ଦେଖି ଗଣିତ ଅଧ୍ୟାୟ ଗୁଡ଼ିକ ଆଗରୁ କଷି ପକାଉ ଥିଲା। ଇଂରାଜୀ ବହିର ପ୍ରଥମ ଅଧ୍ୟାୟଟା'ତ ତା'ର କଣ୍ଠସ୍ଥ ହୋଇ ସାରିଥିଲା। ଦିନେ ହେଲେ ସ୍କୁଲ ଯିବା ବନ୍ଦ କରେ ନାହିଁ। ସ୍କୁଲରେ ଅନୁପସ୍ଥିତ ରହିବା ତାକୁ ମୋଟେ ଭଲ ଲାଗେ ନାହିଁ। ଆଜି ଉପବାସରେ ମଧ୍ୟ ପାଞ୍ଚମାଇଲ ଚାଲି ହାଲିଆ ହୋଇ ଯାଇ ସ୍କୁଲରେ ପହଞ୍ଚିଲା। ଦ୍ୱିପହର ବେଳକୁ

Digitized by srujanika@gmail.com

ଖେଳ ଛୁଟିରେ ସବୁ ପିଲେ ନିଜ ନିଜ ଘରକୁ ଖାଇବାକୁ ଗଲେ । ରାମନ୍ନା ସ୍କୁଲ ପଛଆଡ଼େ ଗୋଟିଏ ଗଛ ମୂଳେ ବସି ପଡ଼ିଲା ।

ପିଲାଟା ଭୋକରେ ସ୍କୁଲକୁ ଯାଇଥିବାରୁ ନଞ୍ଜିମ୍ମାକୁ ମଧ୍ୟ ଭଲ ଲାଗୁନଥାଏ । ପାର୍ବତୀ ଅଭିମାନରେ ଗୋଟିଏ କଡ଼କୁ ବସିଥାଏ ଏବଂ ସାନପୁଅ ଖାଇବାକୁ ମାଗି କାନ୍ଦୁଥାଏ । ଉପବାସରେ ଦିନେ ରହିଯିବ ସିନା କିନ୍ତୁ କେତେଦିନ ଏପରି ଚଳିବ ? ଏପର୍ଯ୍ୟନ୍ତ ନଞ୍ଜିମ୍ମା ମହାଜନ ପାଖରେ ଗୋଟିଏ ହେଲେ ବାସନ ବନ୍ଧା ରଖିନଥିଲା । ସେ ମଧ୍ୟ କୋଡ଼ିଏ ଟଙ୍କାର ବାସନ ରଖିଲେ ଦୁଇଟା ଟଙ୍କା ଦେଉଥିଲା । ମାଣ୍ଡିଆ ଦର ମଧ୍ୟ କାହିଁରେ କ'ଣ ବଢ଼ି ଗଲାଣି । ଟଙ୍କାକୁ ଦୁଇସେର ହୋଇଥାଏ । ଦିଟଙ୍କାର ମାଣ୍ଡିଆ ଦିନେ କିମ୍ବା ଅତିକଷ୍ଟରେ ଦେଢ଼ଦିନ ଯିବ । ଏମିତି ପନ୍ଦରଟା ଦିନରେ ସାରା ଘରର ବାସନ କୁସନ ବନ୍ଧା ପଡ଼ିଯିବ । ଏବଂ ତା'ପରେ କ'ଣ କରିବ ? ମାଣ୍ଡିଆ ଫସଲ ତ ଏବର୍ଷ ନହେଲେ ଆରବର୍ଷ ହେବ । କିନ୍ତୁ ବାସନତକ ବିକିଦେଲେ ଆଉ କିଣି ହେବନି ତା'ଛଡ଼ା ଇଏ ପୁଣି ବାପଘରୁ ଆଣିଥିବା କଂସା ବାସନ ।

ନଞ୍ଜିମ୍ମାର ମନଟା ସିନା ଏପରି ଚିନ୍ତା କରୁଥିଲା କିନ୍ତୁ ପେଟର ଜ୍ୱାଳାଟା ବଢ଼ି ଚାଲିଥାଏ । ପାର୍ବତୀ ଶୋଇ ପଡ଼ିଥିଲା ଏବଂ କାନ୍ଦି କାନ୍ଦି ସାନପୁଅଟା ହାଲିଆ ହୋଇ ଯାଇଥାଏ । ସ୍ୱାମୀଙ୍କର ମଧ୍ୟ ଦେଖା ନଥାଏ । ବୋଧହୁଏ ମା' ପାଖରେ ଯାଇ କିଛି ଖାଇଥିବେ । ଗଙ୍ଗାମ୍ମା ପାଖରେ ଏବେ ମଧ୍ୟ ମାଣ୍ଡିଆ ଥିଲା । ମା'ପୁଅ ଦୁଇ ଜଣଙ୍କ ପାଇଁ ଆଗରୁ ଗଦା କରି ରଖିଥିବା ମାଣ୍ଡିଆ ଢେର ଥାଏ । ଗତ ତିନିମାସ ଧରି ସେମାନେ ଜଳସେଚିତ କେନାଲ ଅଞ୍ଚଳରେ ଭିକ୍ଷା ମାଗି ଚାଉଳ ଗଣ୍ଡିକାମାନ ଆଣିଥିଲେ । ରାମନ୍ନା ସ୍କୁଲରୁ ଫେରିନଥାଏ । ମୁହଁ ଅନ୍ଧାର ହୋଇ ଆସିଲାଣି । "ପିଲାଟା ଭୋକ ଉପବାସରେ ଯାଇଥିଲା । ବାଟ ଚାଲି ନପାରି କେଉଁଠି ପଡ଼ିଗଲାକି ଆଉ ? ଏତେ ଅନ୍ଧାରରେ ମୁଁ ମାଇପି ଲୋକ କେଉଁଠି ଯାଇ ଦେଖିବି ? ପାର୍ବତୀ ମଧ୍ୟ ଭୋକରେ ଉଠି ଚାଲିବାକୁ ଅସମର୍ଥ । ତାକୁ ସାଙ୍ଗରେ ନେଲେ ସାନପୁଅଟା କୁଡ଼ିଆରେ ଏକୁଟିଆ ରହିବ । କୁଡ଼ିଆ ଖୋଲା କରି ଗଲେ ଚୋର ପଶି କଂସା ବାସନ ଦି ଖଣ୍ଡ ନେଇଯିବ ।" ନଞ୍ଜିମ୍ମା ଏପରି ବସି ଭାବୁଥାଏ ।

କିଛି ସମୟ ପରେ ପିଲା ଦୁଇଟାକୁ ଛାଡ଼ି କମ୍ପନକେରେ ରାସ୍ତାରେ ଚାଲିଲା । ତିନିଫର୍ଲଙ୍ଗ ଦୂରରେ ପୁରୁଣା ଆମ୍ବ ଗଛଟାଏ ଥିଲା । ତା'ର କୋରଡ଼ରେ ପେଚା ବସା କରିଥାଏ । ରାତିରେ ତା'ର ବିକଟାଳ ସ୍ୱର ଗାଁ ପର୍ଯ୍ୟନ୍ତ ମଧ୍ୟ ଶୁଣାଯାଏ, ଏବଂ ଭାରି ଡର ଲାଗେ । ଗାଁରେ ସମସ୍ତେ ପେଚା ରାବିବାଟାକୁ ବିପତ୍ତିର ସଙ୍କେତ ବୋଲି ଭାବନ୍ତି । ଯା ଚାଳରେ ବସି ପେଚା ବୋବାଇ ଦିଏ ତା'ଘରେ କେହି ନା କେହି ମରିଯାଆନ୍ତି । ସେଇ ଗଛ ପାଖରେ ପହଞ୍ଚି ନଞ୍ଜିମ୍ମାକୁ ମଧ୍ୟ ଡର ଲାଗିଲା । ଭାବିଲା ଫେରିଯିବ । କିନ୍ତୁ ରାମନ୍ନା କଥା ଭାବି ଆଗକୁ ଚାଲିଲା । ଆଗରେ ଗୋଟିଏ ପଥର ଚଟାଣ ଉପରେ ଚଢ଼ି ଅଧ ଘଣ୍ଟାଏ ବସିଲା । ହେଲେ ରାମନ୍ନାର ଦେଖା ନାହିଁ । ତା' ମନରେ ଶଙ୍କା ଆସିଲା, ଆଖି ଲୁହରେ ଭରିଗଲା । ରାସ୍ତାଯାକ ଉଚ୍ଚନୀଚା । ସାପ ନିଶ୍ଚୟ ରହୁଥିବେ । କାଳେ ଆଉ ପିଲାଟାକୁ ସାପ କାମୁଡ଼ି

Digitized by srujanika@gmail.com

ଦେଇଛି କି ? "ହେ ଭଗବାନ୍, ମୋ ପୁଅକୁ ଭଲରେ ଭଲରେ ଘରେ ପହଞ୍ଚାଇ ଦିଅ ।" ନଷ୍ଟିଆର ମା'ମନ ବ୍ୟାକୁଳ ହୋଇ ଉଠିଲା ।

ଏମିତି ସବୁ କେତେ କ'ଣ ଭାବି ଭାବି ନଷ୍ଟିଆ ସେଇ ପଥରଟା ଉପରେ କେତେବେଳକୁ ଯାଏଁ ଠିଆ ହୋଇ ରହିଲା । ଫେର ଭାବିଲା, ଗାଁକୁ ଯାଇ କେଉଁ ପୁରୁଷ ଲୋକକୁ ସାଙ୍ଗରେ ଧରି ଖୋଜି ଆସିବ । ଘର ଆଡ଼କୁ ମୁହଁ ବୁଲାଇ ଠିଆ ହେଲା । ପୁଣି କିଛି ସମୟ ପଛକୁ ଚାହିଁଲା । ଯେଉଁ ପଥରଟା ଉପରେ ସେ ଠିଆ ହୋଇଥିଲା ସେଠି ମଧ୍ୟ ଦି ବର୍ଷ ଆଗରେ ଡାକୁମାନେ ଜଣକୁ ମାରି ଦେଇଥିଲେ । ତା'ପରଠୁ ଲୋକେ କହନ୍ତି ସେଇ ଯାଗାରେ ଗୋଟେ ଭୂତ ବୁଲେ । ଏକଥା ମନେ ପଡ଼ିବାରୁ ନଷ୍ଟିଆର ଦେହ ଭୟରେ ଥରିଗଲା । ଫେରି ଆସିବ ବୋଲି ଭାବିଲା କିନ୍ତୁ ପୁଣି ପୁଅ କଥା ଭାବି ଠିଆ ହୋଇ ରହିଲା । କିନ୍ତୁ ଅନ୍ଧାର ହୋଇଥିବାରୁ ବାଟ ମଧ୍ୟ ଦିଶୁ ନଥାଏ । ଡରି ଡରି ଭାବିଲା ଆଉ କ'ଣ ପିଲାଟା ଭୂତ ପ୍ରେତ ଦେଖି ଡରିଗଲା କି ? ପୁଣି ନିଜ ମନକୁ ଦମ୍ ଦେଇ ଭାବିଲା,"ଭୂତ ପ୍ରେତ ସବୁ ମିଛ କଥା । ମୋ ବାପ, ଭାଇ ପୁଣି ତ ଅନ୍ଧାରରେ ବର୍ଷ ବର୍ଷ ଧରି ଯିବା ଆସିବା କରନ୍ତି । ଭୂତ ପ୍ରେତ ଥିଲେ ସେମାନେ କ'ଣ ଡରନ୍ତେ ନାହିଁ ।"

ଏତିକି ବେଳକୁ କିଏ ଜଣେ ଆସିବାର ଦିଶିଲା । ତା'ମୁଣ୍ଡରେ ଗୋଟିଏ ଗଣ୍ଠିଟେ ଥିଲା । "ମୋ ପୁଅ କ'ଣ ଗଣ୍ଠିଟା ମୁଣ୍ଡାଇ ଆସୁଛି କି ?"ତାକୁ ଦେଖି ସେ ଲୋକଟି ବାଟ ଛାଡ଼ି ଅନ୍ୟ ବାଟ ଧରିଲା । ନଷ୍ଟିଆ କିଏ ଯାଉଛି ବୋଲି ପଚାରିବାରୁ ଲୋକଟି ବେଗେ ବେଗେ ପାଦ ପକାଇ ଚାଲି ଯାଉଥିଲା । ପୁଣି ଡାକିବାରୁ ଉତ୍ତର ଆସିଲା - "କିଏ ମା ?" ଏ ଶବ୍ଦ ଶୁଣି ନଷ୍ଟିଆ ଜାଣି ପାରିଲା ଯେ ଏହା ରାମନ୍ନାର ତୁଣ୍ଡ । ନଷ୍ଟିଆ କହିଲା - "ଅବାଟରେ କୁଆଡ଼େ ଯାଉଛୁରେ ପୁଅ । ଏ ଆଡ଼େ ଆସ୍ । ପାଖକୁ ଆସିବାରୁ ଦେଖିଲା ପିଲାଟା ମୁଣ୍ଡରେ ତିନିଟା ଖଣ୍ଡେ ବଡ଼ ବଡ଼ କଞ୍ଚା ପଣସ ଗାମୁଛାରେ ବାନ୍ଧି ମୁଣ୍ଡାଇଛି । ରାମନ୍ନା କହିଲା - "ଦୂରରୁ ତତେ ଦେଖି ଭୂତ ବୋଲି ଭାବି ଡରି ଯାଇଥିଲି ।" ପୁଅ ମୁଣ୍ଡରୁ ପଣସତକ ନିଜ ମୁଣ୍ଡକୁ ନେଇ ନଷ୍ଟିଆ ପଚାରିଲା - "ଏଗୁଡ଼ାକ କେଉଁଠୁ ଆଣିଲୁ ?" "ମୁଁ ସ୍କୁଲ ଗଲା ବାଟରେ ଗୋଟିଏ ବାଡ଼ିରେ ବହୁତ ପଣସ ଫଳିଥିଲା । ସ୍କୁଲରୁ ଜାଣି ଜାଣି ଡେରି କରି ଆସିଲି ଏବଂ ଅନ୍ଧାର ହେଲା ପରେ ବାଡ଼ ଡେଇଁ ବାଡ଼ିରେ ପଶି ପଣସ ତୋଳି ଆଣିଲି । ତରକାରୀ କରି ଖାଇଲେ ଭୋକ ତ ମରିବ ।"

ନଷ୍ଟିଆ ବୁଝି ପାରୁନଥିଲା ପୁଅର ଦୁଃସାହସ ଏବଂ ବୁଦ୍ଧିକୁ କ'ଣ କହିବ । ସେ ସବୁବେଳେ ପିଲାକୁ ଶିଖାଇଥିଲା ଚୋରି କରିବା ଏବଂ ମିଛ କହିବା ପାପ । ରାମନ୍ନା ଆସି ତ ମାଇନର୍ ପଢିଲାଣି । ଭଲ, ମନ୍ଦ, ପାପ, ପୁଣ୍ୟ ବୁଝିବା ଜ୍ଞାନ ତାର ଆସିଲାଣି । କିନ୍ତୁ ବର୍ତ୍ତମାନ ପୁଅକୁ ବୁଝାଇବା ସମୟ ନୁହେଁ ବୋଲି ଭାବି ଗାଁ ଆଡ଼େ ଚାଲିଲେ । ଘରେ ପିଲା ଯୋଡ଼ାକ ଭୋକରେ ଶୋଇଥାନ୍ତି । ରାମନ୍ନା ଦଶମାଇଲ ଚାଲି ଚାଲି ଆସିଛି । କଞ୍ଚା ପଣସ ଭାଜିଲେ ଯାଇ ପେଟରେ ଆହାର ପଡ଼ିବ ।

Digitized by srujanika@gmail.com

ନନ୍ଦିନୀ ଘରକୁ ଫେରିଲା ବେଳକୁ ସ୍ୱାମୀ ଆସି ନିଦରେ ଘୁଙ୍ଗୁଡ଼ି ମାରୁଛନ୍ତି । ଏହାର ଅର୍ଥ ପେଟଟା ନିଶ୍ଚୟ ପୁରିଛି । ରାମନାଥ ମଧ୍ୟ ବାପାଙ୍କର ନିଦ ଦେଖି ବୁଝିଗଲା । କିନ୍ତୁ ମା'ପୁଅ କିଛି ନକହି ତାଙ୍କୁ ନଉଠାଇ ପଣସ କାଟିବାରେ ଲାଗିଗଲେ । କରେଇ ବସାଇ ସୋରିଷ ଫୁଟାଇ ଦେଲା ଏବଂ ଲୁଣ, ହଳଦୀ ପକାଇ ପଣସଚକ ସିଝାଇଲା । ସିଝିଲାରୁ ଉପରେ ଲଙ୍କାମରିଚ ଗୁଣ୍ଡ ପକାଇଲା । ଏସମୟରେ ପୁଅ ପଚାରିଲା - "ମା' ଚଷା ଘରେ ଖାଇଲେ କ'ଣ ପାପ ?"

"କାହିଁକି ରେ ବାପ ପଚାରୁଛୁ ?"

"ଦ୍ୱିପହରରେ ଭାରି ଭୋକ ଲାଗିଲା । ଏକୁଟିଆ ଗଛମୂଳେ ବସିଥିଲି । ମୋର ଜଣେ ସାଙ୍ଗ ଯେ ଜାତିରେ ଚଷା ତା'ପାଖରେ ଖଣ୍ଡେ ରୁଟି ବଳିପଡ଼ିଥିଲା । ସେ ମତେ ପଚାରିଲା ତୁ କିଛି ଖାଇ ନାହୁଁ କି ? ମୁଁ କିଛି ନ କହିବାରୁ ମତେ ରୁଟି ଖଣ୍ଡକ ଏବଂ କିଛି ଚଟଣି ଦେଇ କହିଲା - 'ଏ ରୁଟି ଖଣ୍ଡକ ଖାଇଦେ କିଛି ହେବ ନାହିଁ । ମୁଁ କାହାକୁ ହେଲେ କହିବି ନାହିଁ ।' ରାମନାଥ ପୁଣି ପଚାରିଲା - "ମା' ତୁ କହୁନୁ କାହିଁକି ? ଭଗବାନ୍ ମତେ ଅଭିଶାପ ଦେବ ନାହିଁ ତ ?"

"ତୋ ସାନ ଭାଇ ବିଶ୍ୱ ତ ପୁଣି ମହାଦେବଯ୍ୟାଙ୍କ ସାଙ୍ଗରେ ଗୋଟିଏ ଥାଳିରେ ଖାଉଥିଲା ।"

"ସେତ ପିଲା ଲୋକ । ମୁଁ ତ ବଡ଼ ହେଲିଣି ।"

ନନ୍ଦିନୀ ପୁଅର ପ୍ରଶ୍ନର କି ଉତ୍ତର ଦେବ ଜାଣି ପାରିଲା ନାହିଁ । ଛୋଟ ଶିଶୁ ପାଇଁ ଯାହା ପାପ ନୁହେଁ, ବଡ଼ ପିଲାଙ୍କ ପାଇଁ ତାହା କିପରି ପାପ ହେଲା ? ମନେ ମନେ କେତେ କଥା ଭାବିଲା । ରାମନାଥ ମଧ୍ୟ ଆଉ ପଚାରିଲା ନାହିଁ । ପଣସ ସିଝିଯିବା ପରେ ଚୁଲୀରୁ ଓହ୍ଲାଇ ଦେଲା । ପାର୍ବତୀ ଓ ବିଶ୍ୱକୁ ଉଠାଇଲା । ସ୍ୱାମୀଙ୍କୁ ଉଠାଇ ପଚାରିବାରୁ ସେ କହିଲେ "ମୋର କିଛି ଦରକାର ନାହିଁ", କହି ପୁଣି ଘୁଙ୍ଗୁଡ଼ି ମାରିବାରେ ଲାଗିଲେ । ସକାଳୁ କେହି ହେଲେ କିଛି ନ ଖାଇଥିବାରୁ ପଣସ ତରକାରୀ ଏତେ ସୁଆଦ ଲାଗିଲା ଯେ ସମସ୍ତେ ପେଟେ ପେଟେ ଖାଇଗଲେ । ରାତିରେ ଶୋଇବାକୁ ଗଲା ପରେ ନନ୍ଦିନୀ ରାମନାଥକୁ କହିଲା, "ଆଉ କେବେ ସେ ବାଡ଼ିରେ ପଶିବୁ ନାହିଁ । ଧରାପଡ଼ିଲେ ମାରିବେ ।"

## 5

ଦୁର୍ଭିକ୍ଷର ପ୍ରକୋପ ବଢ଼ିବା ସଙ୍ଗେ ସଙ୍ଗେ ହା' ଅନ୍ନର ଚିତ୍କାର ମଧ୍ୟ ବଢ଼ି ଚାଲିଲା । ନଈ କୂଅ ପୋଖରୀ ସବୁ ଶୁଖିଯାଇଥିଲା । ଏବଂ ଜମି ଫାଟି ଆଁ ହୋଇ ରହିଥାଏ । ଲୋକଙ୍କର ମଧ୍ୟ ଭୋକ ଦାଉରେ ଖାଦ୍ୟ ଅନ୍ୱେଷଣର ପ୍ରଚେଷ୍ଟା ବଢ଼ି ଚାଲିଲା । ମାଟା ଚେଲି ଦିନେ ଶୁଖିଲା ପୋଖରୀ ମାଟିରୁ ଖୋଳି ପଦ୍ମମୂଳ ଆଣିଲା । ବାସ୍, ତା'ପରେ ସାରା ଗାଁ ଲୋକେ ପୋଖରୀ ଭିତରକୁ ଧାଇଁଲେ । ସମସ୍ତେ

Digitized by srujanika@gmail.com

ଖଣ୍ଡେ ଖଣ୍ଡେ ଜାଗା ଖୋଳିବା ଆରମ୍ଭ କରିଦେଲେ । ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଯଦି ଜଣେ ଲୋକ ଖୋଳେ ତେବେ ଚାରିଜଣଙ୍କର ଗୋଟେ ଓଳି ଖାଇବା ପାଇଁ ପଦ୍ମମୂଳ ମିଳିଯାଏ । ବୋଇଁ, କୋଦାଳ, ନେଇ ନନ୍ଦିକା ଏବଂ ପାର୍ବତୀ ମଧ୍ୟ ବାହାରି ପଡ଼ିଲେ । ମୁଣ୍ଡରେ ଲୁଗା ବାନ୍ଧିଲେ ମଧ୍ୟ ଟାଣ ଖରାରେ ହସା ଉଡ଼ି ଯାଉଥାଏ । ପ୍ରଥମଦିନ ପଦ୍ମମୂଳ ଆଣି କୂଅ ପାଣିରେ ଘଷି ଘଷି ସଫା କରି ଲୁଣ, ଲଙ୍କା ପକାଇ ଶିଝାଇଲେ । ତଥାପି କେମିତି ଗୋଟିଏ ପଙ୍କୁଆ ଗନ୍ଧ ସେଥିରୁ ବାହାରୁଥାଏ । ଏଣେ ଭୋକରେ ତ ଜୀବନ ଛାଡ଼ି ଯାଉଛି, ଗନ୍ଧ ବା' ଧରୁଛି କିଏ ? ସବୁଚକ ସଫା କରିଦେଲେ । ମା'ଝିଅ ଠିକ୍ କଲେ ଯେ କାଲି ରାତି ନ ପାହୁଣୁ ପୋଖରୀ ଭିତରକୁ ଯାଇ ଜାଗା ଆବୋରି ଯିବେ ।

ତା'ପର ଦିନ ସକାଳୁ ପୋଖରୀ ପାଖରେ ରେବଣସେଠୀର ସ୍ତ୍ରୀ ମଧ୍ୟ ଆସି ପହଞ୍ଚିଲା । ତିନିଜଣ ମିଶି ପଦ୍ମମୂଳ ଖୋଳିବା ଆରମ୍ଭ କଲେ । ନନ୍ଦିକା କହିଲା – "ଦେଖିଲ ମହାଦେବଯ୍ୟା ଯେଉଁଦିନଠୁ ଏ ଗାଁରୁ ଗଲେଣି ଏ ଗାଁର ଦଶା ଏପରି ହୋଇଛି । କଥାରେ ଅଛି ସାଧୁ ସନ୍ଥଙ୍କ ଅଭିଶାପ ସତ ହୋଇଯାଏ ।"

"କେଉଁ ଚଣ୍ଡାଳ କେଜାଣି ତାଙ୍କ ଭଳି ଲୋକକୁ ଏପରି କହିଲା, ଗାଁଟା ଯାକ ଲୋକଙ୍କୁ ବିପତ୍ତିରେ ପକାଇବାକୁ ?"

"କିଏ ଜଣେ କହୁଥିଲା ଯେ ତୁମରି କୁଟୁମ୍ବର କିଏ ଜଣେ ତାଙ୍କୁ ଗାଳି ଦେଉଥିଲା ।"

"ନନ୍ଦିକା ତୁମକୁ କଣ ଭିତରି କଥା ଜଣା ନାହିଁକି ? ମୋ ସ୍ୱାମୀ ପରା ନିଜେ ଆମ କୁଟୁମ୍ବ ଲୋକଙ୍କୁ ଏପରି କହିବାକୁ ଶିଖେଇ ଥିଲେ । ଏଭଳି କପଟ ବୁଦ୍ଧି ଆଉ କାହା ମୁଣ୍ଡରୁ ବାହାରିବ ?"

"ମୁଁ ଭାବୁଛି ମହାଦେବଯ୍ୟା ନିଶ୍ଚୟ ଫେରି ଆସିବେ । ମନ୍ଦିର ବେଦୀରେ ଏବେ ମଧ୍ୟ ତାଙ୍କର ବାସନ କୁସନ, ଭିକ୍ଷା ଆଣି ରଖିଥିବା ମାଣ୍ଡିଆ, ଡାଲି ସବୁ ସେମିତି ଅଛି ।"

ରେବଣସେଠୀର ସ୍ତ୍ରୀ ନନ୍ଦିକା ସାଙ୍ଗରେ ସାତ ଆଠଦିନ ପୋଖରୀକୁ ପଦ୍ମମୂଳ ଖୋଳିବାକୁ ଆସିଲା । ଦିନେ ସେ ନନ୍ଦିକାର କୁଡ଼ିଆକୁ ଲୁଚି ଲୁଚି ଆସି ପାଞ୍ଚସେର ମାଣ୍ଡିଆ ଏବଂ ଏକ ସେର ଚାଉଳ ଥୋଇ ଦେଇଗଲା । ତାକୁ କହିଲା ଯେ, "କାହାକୁ ତୁମେ କହିବନି । ଆମର ସିଏ କାଲି କାହାର କଚେରୀ କାମରେ ତିପଟୁର ଯାଇଥିଲେ ଯେ ଦି ବସ୍ତା ମାଣ୍ଡିଆ, ପଚିଶି ସେର ଚାଉଳ ଏବଂ ଚା କଫି ଆଣିଛନ୍ତି ।"

ସେଇ ମାଣ୍ଡିଆକୁ ରଖି ଅଳ୍ପ ଖର୍ଚ୍ଚ କଲେ ବଡ଼ ପୁଅ ରାମନ୍ନା ଏବଂ ସାନପୁଅ ବିଶ୍ୱନ୍ନକୁ ଅନ୍ତତଃ ଦିନକୁ ଥରେ ମାଣ୍ଡିଆ ଚକୁଳି ଦେଇ ହେବ । ପଦ୍ମମୂଳ ଖାଇଖାଇ ବିରକ୍ତ ମଧ୍ୟ ଲାଗିଲାଣି । ତା'ଛଡ଼ା ଏତକ ଚାଉଳ ଭାତ ରାନ୍ଧି ତେନ୍ତୁଳି ପାଣିର ଖଟା କରି ଗୋଟିଏ ଦିନ ଆରାମରେ ଖାଇ ହେବ । ସେଠିଆଣୀର

Digitized by srujanika@gmail.com

ସହାନୁଭୂତି ପାଇଁ ନନ୍ଦିନୀ ତାକୁ ମନେ ମନେ ଧନ୍ୟବାଦ ଦେଲା । ରେବଣସେଠୀର ଯେତେ ମନ୍ଦବୁଦ୍ଧି ହେଉନା କାହିଁକି ଠିକ୍ ବିଷୟ୍ରେ ଜାଣି କାମ ହାସଲ କରେ । କେଉଁ ମହାବିଲକୁ ନିଶ୍ଚୟ ପାଲରେ ପକାଇଥିବ । ନହେଲେ ଏତେଟଙ୍କା ତା'ପାଖରେ କୁଆଡୁ ଆସନ୍ତା । କିନ୍ତୁ ଯେତେ ରୋଜଗାର କଲେ କ'ଣ ହେବ ସବୁ ବେଳେ ଫକତ ଅବସ୍ଥାରେ ରହିଲା ।

ପାଞ୍ଚ ଛଅ ଦିନ ପରେ ଗାଁ ଲୋକଙ୍କ ଭିତରେ ଦି'ଦଳ ହୋଇ ମନୋମାଳିନ୍ୟ ଆରମ୍ଭ ହେଲା । ଏହାର କାରଣ ହେଲା ମହାଦେବଯ୍ଯା ମନ୍ଦିର ଭିତରେ ଛାଡିଯାଇଥିବା ମାଣ୍ଡିଆ ଚାଉଳ ଇତ୍ୟାଦି । ନନ୍ଦିନୀ ରେବଣ ସେଠୀର ସ୍ତ୍ରୀକୁ ଏ ବିଷୟ୍ ଆଗରୁ କହି ଦେଇଥିଲା ଏବଂ ସେ ଯାଇ ତା' ସ୍ୱାମୀକୁ କହିଲା । ରେବଣସେଠୀର ମନରେ ବୋଧହୁଏ ମାଣ୍ଡିଆ, ଚାଉଳ ଚକ ହାସଲ କରିବା ପାଇଁ ଲୋଭ ହୋଇଥିବ । ଏଭଳି ବିଷୟରେ ରେବଣସେଠୀର ବୁଦ୍ଧି ଖୁବ୍ କାମ କରେ । ସେ ମନେ ମନେ ଭାବିଲା ମନ୍ଦିର କବାଟ ଭାଙ୍ଗି ଦିନେ ପଶି ମାଣ୍ଡିଆ ଚକ ନେଇ ଆସିଲେ ହେବ । କିନ୍ତୁ ପ୍ଲେଗକୁ ଡରି ଲୋକେ ଗାଁ ଖାଲି କରି ଦେଇଥିବାରୁ ଏକୁଟିଆ ଗାଁ ଭିତର ଟାରେ ପଶିବାକୁ ମଧ୍ୟ ତାର ସାହସ ହେଉ ନଥାଏ । ତା'ଛଡା ଏଭଳି କାମ ପାଇଁ ରାତି ଅନ୍ଧାରରେ ଲୁଚି ଛପି ଯିବାକୁ ପଡିବ । ଏବଂ ତାର ଭୟ ହେଉଥିଲା ରାତିରେ ଗାଁ ଦାଣ୍ଡରେ କାଳେ ଠାକୁରାଣୀଙ୍କ ହାବୁଡରେ ପଡିଯିବ । ମହାଦେବଯ୍ଯା ମାଣ୍ଡିଆ ଚକ ମନ୍ଦିରର ଭିତର ପଟ ଅଗଣାରେ ଥିବା ଗୋଟିଏ କୋଠରୀରେ ବନ୍ଦ କରି ରଖିଥିଲେ । ଯଦି ଠାକୁରାଣୀଙ୍କ ସାଙ୍ଗରେ ଭେଟଣା ହୋଇଗଲା ତେବେ ରକ୍ତ ବାନ୍ତି କରି ମରିବା କଥା ସିନା, କିନ୍ତୁ ଏତେ ଗୁଡିଏ ମାଣ୍ଡିଆ, ଚାଉଳର ଲୋଭ ମଧ୍ୟ ତ ଛାଡି ହେଉ ନାହିଁ । ପୁଣି ଭାବିଲା ଦୁଇଜଣ ମିଶିକରି ଗଲେ ଏତେ ଡର ଲାଗିବ ନାହିଁ । ତେଣୁ ନିଜର ଯୋଜନା ପୁଟଣ ସେଠୀକୁ କହିଲା । ପୁଟଣ ସେଠୀ ସେଦିନ ରାତିରେ ଫୁସ୍ ଫୁସ୍ କରି ନିଜ ସ୍ତ୍ରୀର କାନରେ ଏକଥା କହି ଦେଲା । ତା'ପରେ ଗାଁଟା ସାରା ଲୋକଙ୍କୁ ଜାଣିବା ପାଇଁ ବେଶି ସମୟ ଲାଗିଲା ନାହିଁ । ବେପାରୀ ସାହିର ଲୋକେ କଥା ହେଲେ ଯେ ମହାଦେବଯ୍ଯା ତ ଆମ ଜାତିର ଲୋକ, ତାଙ୍କ ମାଣ୍ଡିଆ ଚକ ଆମେ ସମସ୍ତେ ବାଣ୍ଟି ନେବା । ଏକଥା ଅନ୍ୟ ଜାତିର ଲୋକେ ଯେମିତି ଜାଣିଛନ୍ତି ଆରମ୍ଭ ହୋଇଗଲା କଳ୍ପନା ଜଳ୍ପନା । କିଏ କହିଲା ମହାଦେବଯ୍ଯା ତ ହେଲେ ଯୋଗୀ ଲୋକ । ତାଙ୍କର ଗୋଟେ ଜାତି କ'ଣ ? ତା'ଛଡା ଏ ଗାଁର ସମସ୍ତଙ୍କ ଘରୁ ସେ ଭିକ୍ଷା ମାଗି ଚଳୁଥିଲେ ତେଣୁ ସେ ଛାଡି ଯାଇଥିବା ମାଣ୍ଡିଆରେ ସମସ୍ତଙ୍କର ଅଧିକାର ଅଛି । ଏମିତି ହେଉ ହେଉ ଦୁଇଦଳ ମଧ୍ୟରେ ଝଗଡା ଆରମ୍ଭ ହୋଇଗଲା । ଶେଷରେ ଗାଁ ମୁଖିଆ ଶିବଗୌଡ ନ୍ୟାୟ ଶୁଣାଇ କହିଲା – "ମାଣ୍ଡିଆ ଚକ ସମସ୍ତଙ୍କୁ ସମାନ ଭାବରେ ବାଣ୍ଟିଦିଆ ଯିବ ।" ଏହାର କେହି ପ୍ରତିବାଦ କରିପାରିଲେ ନାହିଁ । ପ୍ରତ୍ୟେକଙ୍କୁ ଦୁଇ ଦୁଇ ସେର ଲେଖାଏଁ ମାଣ୍ଡିଆ ଭାଗ ପଡିବା କଥା ।

ଦିନେ ଦ୍ୱିପହରରେ ପ୍ରତ୍ୟେକ ଘରୁ ଦୁଇଜଣ ଲେଖାଏଁ ଲୋକ ହିସାବରେ ଗାଁ ଭିତରକୁ ଗଲେ । ମନ୍ଦିର ଭିତରେ ପଶି ଦେଖନ୍ତି ତ ମହାଦେବଯ୍ଯାଙ୍କ କୋଠରୀ ଖୋଲା ଏବଂ ଭିତରେ ମାଣ୍ଡିଆ ଚାଉଳ ଆଦି କିଛି ନାହିଁ । କେବଳ ଆଲୁମିନିୟମର ବାସନ ଦିଖଣ୍ଡ ପଡିଥାଏ । ଏ କାଣ୍ଡ କିଏ କରିଛି ? କେହି

Digitized by srujanika@gmail.com

ଜାଣିପାରିଲେ ନାହିଁ ଏବଂ ନିରାଶ ହୋଇ ଫେରିଲେ ।

ଏଣେ ପୋଖରୀରୁ ପଦ୍ମମୂଳ ମଧ୍ୟ ସରିଗଲା । ପୋଖରୀ ଆଖପାଖ ଜାଗା ମଧ୍ୟ ଲୋକେ ଖୋଳି ପକାଇଲେ । ଖୋଳୁ ଖୋଳୁ ଯେଉଁ ମୂଳ ମିଳିଲା ଖାଇଗଲେ । ଗାଁ ମୁଣ୍ଡରେ ଥିବା କେତକୀ ବୁଦାକୁ ମଧ୍ୟ କାଟି ତାର ମୂଳ ଉପାଡି ଖାଇ ଗଲେ । ଧୀରେ ଧୀରେ ସେତକ ମଧ୍ୟ ଶେଷ ହେଲା । କିନ୍ତୁ କେତକୀ ମୂଳ ଖାଇ ଗାଁ ସାରା ଲୋକଙ୍କର ତରଳଝାଡା ଆରମ୍ଭ ହେଲା । ଲୋକ ଉପବାସର ଦୁର୍ବଳତା ଉପରେ ବାରମ୍ବାର ତରଳ ଝାଡାରେ ଅନେକ ଲୋକ ବିଛଣାରୁ ଉଠି ପାରିଲେ ନାହିଁ । ଷୋହଳ ଜଣ ଲୋକ ସେଥିରେ ମରିଗଲେ ।

**6**

ଆଉ ଦିନେ ନକ୍ଷତ୍ରା, ପାର୍ବତୀ ଓ ରେବଣ ସେଠୀର ସ୍ତ୍ରୀ ପୋଖରୀରେ ପଦ୍ମମୂଳ ଖୋଳିବା ବେଳେ ପାର୍ବତୀର ବହୁତ ଜୋରରେ ମୁଣ୍ଡ ବିନ୍ଧା ଆରମ୍ଭ ହେଲା । ମୁଣ୍ଡରେ ଲୁଗାକାନି ଘୋଡାଇଲେ ମଧ୍ୟ ଖରାର ଜୋର ସହିପାରିଲା ନାହିଁ । ନକ୍ଷତ୍ରା ଝିଅର ଏ କଷ୍ଟ ଦେଖି ତାକୁ ଘରକୁ ଫେରି ଯିବାକୁ କହିଲା । ପାର୍ବତୀ ପୋଖରୀ ପାଖ ମନ୍ଦିର ବାଟେ ହୋଇ ଉଠାଣି ପାର କରି କୁଡିଆ ଆଡେ ଗଲାବାଟରେ ନରସୀ ସାଙ୍ଗରେ ଦେଖା ହେଲା । ସେ ବୋଧହୁଏ ପାଣି ଆଣିବା ପାଇଁ ଯାଇଥିଲା । ନରସୀ ପାର୍ବତୀକୁ ପଚାରିଲା – "କ'ଣ ଝିଅ ପଦ୍ମମୂଳ ଖୋଳି ଯାଇଥିଲୁ ?"

"ହଁ । କିନ୍ତୁ ମୁଣ୍ଡ ବିନ୍ଧିବାରୁ ପଳାଇ ଆସିଲି ।"

"ମୋ ସାଙ୍ଗରେ ମୋ ଦୋକାନକୁ ଚାଲ,ତତେ ଗୁଡ, ଚଣା ଦେବି ।"

ପାର୍ବତୀ କିଛି ଉତ୍ତର ନ ଦେଇ ନିଜ କୁଡିଆ ଆଡେ ଚାଲିଲା । ନରସୀ ପଛରୁ କହିଲା,"ଏଥିରେ ଲାଜ କରିବାର କ'ଣ ଅଛି ଝିଅ । ମୋ ଘରୁ ଚଣା ଖାଇଲେ ତୁମର କିଛି ହେବ ନାହିଁ ।"

ଏତିକିବେଳକୁ ସାନଭାଇ ବିଶ୍ୱ କେଉଁଠି ଖେଳୁଥିଲା, ଆସି ପହଞ୍ଚିଗଲା ଏବଂ ନରସୀ ଠାରୁ ଚଣା କଥା ଶୁଣି ନାନୀ ସାଙ୍ଗରେ ଆଜ କଲା ଚଣା ଖାଇବାକୁ । ତା'ପରେ ଭାଇ, ଭଉଣୀ ଦୁହେଁ ନରସୀର ଦୋକାନକୁ ଗଲେ । ନରସୀ ଦୁଇଜଣଙ୍କୁ ଦିମୁଠା ଚଣା ଏବଂ ଟେଳାଏ ଲେଖାଏଁ ଗୁଡ ଖାଇବାକୁ ଦେଲା । ବିଶ୍ୱ ସାଙ୍ଗେ ସାଙ୍ଗେ ଖାଇବା ଆରମ୍ଭ କରି ଦେଲା, ପାର୍ବତୀ କିନ୍ତୁ ମୁହଁ ପାଖକୁ ନେଇ ଅଟକି ଗଲା । ତା' ଆଖିରେ ଲୁହ ଭରିଗଲା । ନରସୀ ଯେମିତି ପଚାରିଛି - "କାହିଁକି କାନ୍ଦୁଛୁ ଲୋ ଝିଅ ?" ପାର୍ବତୀ ଆଖିରୁ ଜୋରରେ ଲୁହଧାର ବୋହିଲା ଏବଂ କହଁ କହଁ ହୋଇ କାନ୍ଦିବାକୁ ଆରମ୍ଭ କଲା । ନରସୀ ପାଖକୁ ଆସି ପିଠି ଆଉଁସି ଦେଇ କଥିଲେଇ ପଚାରିବାରୁ କହିଲା – "ମୋ ଭାଇ ରାମନ୍ନା, ଲୋକ ଉପବାସରେ କମ୍ପନକେରେ ଯାଇଛି ।"

Digitized by srujanika@gmail.com

ନରସୀ ମନ ମଧ୍ୟ ଦୁଃଖ ହେଲା । ଆଉ ଦି ମୁଠା ଚଣା ଏବଂ ଦି ମୁଠା ଗୁଡ ପାର୍ବତୀର ଶାଢ଼ୀ କାନିରେ ବାନ୍ଧିଦେଲା ଏବଂ କହିଲା – "ନେ ରାମନ୍ନାକୁ ଦେଇ ଦେବୁ ।" ପାର୍ବତୀର ଛୁନ୍ନ ବନ୍ଦ ହେଲା । ତା'ପରେ ଉଠି ଭାଇକୁ ସାଙ୍ଗରେ ଧରି ନିଜ କୁଡିଆ ଆଡେ ଚାଲିଲା । ଟାଲା ଖୋଲି ଭିତରକୁ ଯାଇ ମଶିଣା ଖଣ୍ଡେ ପକାଇ ଶୋଇ ରହି ଭାବିବାକୁ ଲାଗିଲା – 'ଏ ନରସୀ ସାଙ୍ଗରେ ମୁଁ ଆଜି ଯାଏଁ କଥା ହୋଇ ନଥିଲି । ସମସ୍ତେ କହନ୍ତି ଭାରି ଖରାପ ମାଇକିନା । ଆଜି ସିଏ ଆମକୁ ଡାକି ଚଣା ଦେଲା । ତା'ଠୁ ଚଣା ଖାଇବାଟା ବୋଧେ ଠିକ୍ ହେଲା ନାହିଁ । ମା' ଜାଣିଲେ ନିଶ୍ଚୟ ଗାଳି ଦେବ ।' ମନେ ମନେ ଠିକ୍ କଲା ମା'କୁ ଏକଥା କହିବ ନାହିଁ । କିନ୍ତୁ ରାମନ୍ନା ପାଇଁ ରଖିଥିବା ଚଣା ଗୁଡ କଥା ମନେ ପଡିଲା । ତାକୁ ଦେଖି କେଉଁଠୁ ଆଣିଲୁ ବୋଲି ମା' ପଚାରିଲେ କଣ କହିବ । ବିଶ୍ୱଟାତ କିଛି ଲୁଚାଇବ ନାହିଁ, ମା ଘରକୁ ଆସିଲା ମାତ୍ରେ ସବୁ କହିଦେବ । 'ଏବେ କଣ କରିବି ?' ଅଧଘଣ୍ଟାଏ ଭାବିଲା ପରେ ଗୋଟିଏ ଉପାୟ ଦିଶିଲା । ଲୁଗା କାନିର ଚଣା ଗୁଡ଼କେ ଫିଟାଇ ବିଶ୍ୱକୁ କହିଲା – "ନେ ତୁ ଏତକ ଖାଇ ଦେ ।"

"ରାମନ୍ନା ପାଇଁ ରଖିବୁନି ?" ବିଶ୍ୱ ପଚାରିଲା ।

"ସିଏ ଫେରିଲାବେଳକୁ ପଦ୍ମମୂଳ ସିଝା ହୋଇଯାଇଥିବ ତାକୁ ଚଣା ଗୁଡ ଭଲ ଲାଗେ ନାହିଁ । ତୁ ଏତକ ଖାଇ ଦେ ।"

ବିଶ୍ୱ କହିଲା – "ଦିହେଁ ସାଙ୍ଗ ହୋଇ ଖାଇବା ।" ପାର୍ବତୀ ତା' କଥା ନ ଶୁଣି, ତାକୁ ସବୁ ଦେଇ ଦେଲା । ବିଶ୍ୱ ଚଣାଗୁଡ ଖାଇସାରିଲା ପରେ ତାକୁ ଢାଳେ ପାଣି ଦେଲା ।

ବିଶ୍ୱକୁ ବୁଝେଇଲା ଯେ – "ଦେଖ ବିଶ୍ୱ, ମା' ଯଦି ଜାଣିବ, ଆମେ ନରସୀ ଠାରୁ ଚଣା ଗୁଡ ଖାଇଛେ ତେବେ ଆମ ଦୁହିଁଙ୍କୁ ମାଡ ପଡିବ । ତୁ କିଛି କହିବୁ ନି, ହେଲା ।"

"ମାରିବ କାହିଁକି ?"

"କାହିଁକି ? ନରସୀ ଟା' ଖରାପ ମାଇକିନା ବୋଲି ସମସ୍ତେ କହନ୍ତି ଶୁଣିନୁ ?"

"ହଁ ।"

"ତେବେ ରାଣ ପକା କାହାକୁ କହିବୁନି ।"

ବିଶ୍ୱ ନାନୀର ହାତ ପାପୁଲିରେ ନିଜ ପାପୁଲି ରଖି ରାଣ ପକାଇଲା ଯେ କାହାକୁ ହେଲେ କହିବ ନାହିଁ । ପାର୍ବତୀର କିନ୍ତୁ ପୁରା ବିଶ୍ୱାସ ଆସିଲା ନାହିଁ । ତାକୁ କାଳୀ ମନ୍ଦିରକୁ ନେଇ ଠାକୁରାଣୀଙ୍କ ଆଗରେ ରାଣ ପକାଇଲା । ପାର୍ବତୀ କହିଲା – "ଦେଖ ତୁ ଦେବୀଙ୍କ ଆଗରେ ରାଣ ପକାଇଛୁ । ଯଦି କହିବୁ ତେବେ ତତେ ଦେବୀଙ୍କର ବେତାଳ ଆସି ଖାଇଯିବ ।"

"ମୁଁ କହିବିନି, ମୁଁ କିଛି ଜାଣିନି ।" ବିଶ୍ୱ ରାଗିଯାଇ କହିଲା ।

ସନ୍ଧ୍ୟା ବେଳକୁ ମା' ଘରକୁ ଆସିଲା । ପଦ୍ମମୂଳକୁ ମାଟି ଛଡାଇ ଧୋଇ ରାନ୍ଧିବା ଆରମ୍ଭ କଲା ।

Digitized by srujanika@gmail.com

ତା'ର କିଛି ସମୟପରେ ରାମନ୍ନା ସ୍କୁଲରୁ ଫେରିଲା । ଚେନ୍ନିଗରାୟ୍ ମଧ୍ୟ କୁଆଡେ ଯାଇଥିଲା ଫେରିଆସିଲା । ସମସ୍ତେ ମୁହଁ ସିଧେ ଖାଇ ବସିଲେ । ବିଶ୍ୱ ଅଧା ଖାଇ ଉଠି ପଡିଲାରୁ ନଞ୍ଜମ୍ମା ପଚାରିଲା – "କିରେ ଏତିକି କ'ଣ ଖାଇଲୁ । କେଉଁଠି କଣ ଖାଇଥିଲୁ କି ?" ପାର୍ବତୀର ଛାତି ଖାଲି ଦୁମ୍ ଦୁମ୍ ପଡୁଥାଏ । ବିଶ୍ୱ କହିଲା – "ଆଜି ବେଶୀ ଗନ୍ଧ ବାହାରୁଛି ମା'।"

ସମସ୍ତେ ଖାଇସାରିବା ପରେ ନାନୀକୁ କୁଡିଆ ବାହାରକୁ ଡାକି ବିଶ୍ୱ କହିଲା -

"ଦେଖିଲୁ ମୁଁ କଣ କହିଲି ?"

"ନାଁ, ତୁ ଆମର ବଡ ଚାଲାଖ ।"

7

ଆଖପାଖ ଅଞ୍ଚଳରେ ପ୍ଳେଗର ପ୍ରାଦୁର୍ଭାବ କମିବାରୁ ସମସ୍ତେ ନିଜ ନିଜ କୁଡିଆ ଛାଡି ଗାଁ ଘରମାନଙ୍କୁ ଫେରିଗଲେ । ରାମସନ୍ଦ୍ର ଗାଁର ଲୋକେ ମଧ୍ୟ ଗାଁକୁ ଫେରିଲେ । କିନ୍ତୁ ଘରକୁ ଫେରିଲେ ମଧ୍ୟ ଲୋକର ଡର କମିଲା ନାହିଁ ।

ନଞ୍ଜମ୍ମା ଏଥର ଗୋଟିଏ ଉପାୟ ଭାବିଲା । ଅପନ୍ନା ଯେଉଁଠି କୁଡିଆ କରି ଆଗରୁ ରହୁଥିଲା ସେ ଜାଗା ଟା' ଗୁଣ୍ଡ ଗୌଡଙ୍କର । ସେ ବର୍ଷ ମରୁଡି ପଡିବା ଯୋଗୁଁ ସରକାର କେତୋଟି ଅଞ୍ଚଳ ଛଡା ଅନ୍ୟ ସବୁ ଜମିରୁ ଖଜଣା ଛାଡ କରି ଦେଇଥିଲେ । ତେଣୁ ଏ ବର୍ଷ ଗୁଣ୍ଡଗୌଡଙ୍କ ଠାରୁ ଖଜଣା ବାବଦକୁ ଅଗ୍ରୀମ ରସିଦ ଲେଖାଇ ନେବା ଏବଂ ସେ ବାବଦକୁ ଆଣିଥିବା ଟଙ୍କା କିପରି ପରିଶୋଧ କରାଯିବ । ଚେନ୍ନିଗରାୟ୍ ଗତ ଆଠଦିନ ହେଲା ଗାଁରେ ନଥିଲା । ସେ କୁଆଡେ ଯାଇଛି ବୋଲି କେହି ଜାଣି ନଥିଲେ ।

ନଞ୍ଜମ୍ମା ନିଜେ କୁରୁବରହଳ୍ଳୀ ଯାଇ ଗୁଣ୍ଡଗୌଡଙ୍କୁ କହିଲା – "ଏ ବର୍ଷ ତ ଖଜଣା ଅସୁଲି ନାହିଁ । ତେଣୁ ତୁମର ଦେଇଥିବା ଟଙ୍କା ଆରବର୍ଷର ହିସାବରେ ଲେଖି ଦେଉଛି ।"

"ସେ କଥା ଛାଡ ଭଉଣୀ, ମୁଁ ଏବେ ଟଙ୍କା ମାଗିଲେ ତୁମେ କେଉଁଠୁ ଆଣିବ ?"

"ହଁ ଆଉ ଗୋଟିଏ କଥା । ଆପଣଙ୍କର ଯେଉଁ ଜାଗାଟା ଆମ ଗାଁରେ ଅଛି ସେଠି ବାଡ ଦେଇ, ମୁଁ ଭାବୁଛି କିଛି ପନିପରିବା ଲଗେଇବି ।"

Digitized by srujanika@gmail.com

"ହଁ ହଁ ଲଗାଅ । ମୋର କିଛି ଆପତ୍ତି ନାହିଁ ।"

ଗୁଣ୍ଡୁଗୌଡ ନଞ୍ଜିମ୍ମାକୁ ସବୁଥର ପରି ନଡିଆ ଏବଂ ସେରେ ମାଣ୍ଡିଆ ବୁନା ଦେଇ ବିଦା କଲେ । ନଞ୍ଜିମ୍ମା ତାଙ୍କ ପରିବାରକୁ କଲ୍ୟାଣ କରି ଗାଁକୁ ଫେରିଲା । ବାଟରେ ଭାବିଲା ଏ ବର୍ଷର ଖଜଣା ସିନା ସରକାର ନେବେ ନାହିଁ କିନ୍ତୁ ସର୍ବରାକାରଙ୍କ ପାଉଣାଟା ତ ମିଳିବା କଥା । ଯଦି ( ପାଉଣାଟା ଚେନ୍ନିଗରାୟୁଙ୍କ ହାତରେ ପଡିଯାଏ ତେବେ ପଇସା ତକ ଶେଷ ନହେଲା ପର୍ଯ୍ୟନ୍ତ ତିପଟୁର ହୋଟେଲରୁ ଉଠିବେ ନାହିଁ । ଏଇଛି ଏକ ଉପାୟ କରିବାକୁ ହେବ ଯେପରି ଟଙ୍କା ତକ ତାଙ୍କ ହାତରେ ନ ପଡେ । କାହାକୁ କହିଲେ ହେବ ? ଶେଷରେ ଠିକ୍ କଲା କମ୍ବନକେରେ ଯାଇ ଇଲାକାଦାରଙ୍କୁ ଅନୁରୋଧ କରିବ ।

ଚେନ୍ନିଗରାୟୁ ଏବେ ମଧ୍ୟ ଗାଁକୁ ଫେରି ନଥାଏ । ଅପନ୍ନାୟା ଓ ଗଙ୍ଗାମ୍ମା ମଧ୍ୟ ଗାଁରେ ନଥାନ୍ତି । ସେମାନେ କେନାଲ ଅଞ୍ଚଳକୁ ଭିକ୍ଷା ମାଗିବା ପାଇଁ ଯାଇଥାନ୍ତି । ଚେନ୍ନିଗରାୟୁ ମଧ୍ୟ,ବୋଧହୁଏ ମା' ସାଙ୍ଗରେ ଚାଲିଯାଇଛି ।

ତା'ପର ଦିନ ନଞ୍ଜିମ୍ମା ପୁଅକୁ ସାଙ୍ଗରେ ଧରି କମ୍ବନକେରେ ଗଲା । ଇଲାକାଦାରଙ୍କୁ ଦେଖାକରି ନମସ୍କାର କଲା । ଇଲାକାଦାର ପଚାରିଲେ,"କୁଆଡେ ଆସିଲ ଭଉଣୀ ? ଏ ବର୍ଷ ତ ଖଜଣା ଆଦାୟ ନାହିଁ, ହିସାବ ପାଇଁ ମଧ୍ୟ ଦରକାର ନାହିଁ । ଆଉ ବର୍ଷକୁ କଣ ହେଉଛି କେଜାଣି ?"

ନଞ୍ଜିମ୍ମା ସବୁକଥା ଖୋଲି କହିଲା । ନିଜ ସ୍ୱାମୀର ସ୍ୱଭାବ କଥା ଜଣାଇ କହିଲା । କିପରି ସବୁ ବର୍ଷ ଗୁଣ୍ଡୁଗୌଡଙ୍କ ଠାରୁ ଖଜଣା ବାବଦକୁ ଅଗ୍ରୀମ ରସିଦ ଲେଖାଇ ନେଇ ତାଙ୍କଠାରୁ ଖାଇବା ପାଇଁ ମାଣ୍ଡିଆ ଇତ୍ୟାଦି ଆଣୁଥିଲା । ଏ ବର୍ଷ ଖଜଣା ଛାଡ ହୋଇଥିବାରୁ ଗୌଡଙ୍କ ଠାରୁ ଆଣିଥିବା ଟଙ୍କା ଶୁଝିବା ସମସ୍ୟା ବିଷୟରେ ମଧ୍ୟ ଇଲାକାଦାରଙ୍କୁ ଜଣାଇଲା ।

ସେ କହିଲା "ଭଉଣୀ ଚେନ୍ନିଗରାୟୁର ପ୍ରକୃତି ମତେ ଅଜଣା ନାହିଁ । ଏ ଅଞ୍ଚଳର ସବୁ ସର୍ବରାକାର ମାନେ ତୁମ ସ୍ୱାମୀଙ୍କର ପ୍ରକୃତି ବିଷୟରେ କଥାବାର୍ତ୍ତା ହୁଅନ୍ତି । କିନ୍ତୁ ଆଇନ୍ ଅନୁସାରେ ମୁଁ କିଛି କରିପାରିବି ନାହିଁ । ତେବେ ବଡ ହାକିମଙ୍କ ଆଗରେ କହି ଦେଖିବି ।"

"ଆପଣ କ'ଣ ହେଲେ ଉପାୟ କରି ମୋ ପିଲାଙ୍କ ଦାନା ଗଣ୍ଡାକ ବଞ୍ଚାନ୍ତୁ ।"

ଇଲାକାଦାରଙ୍କ ସ୍ତ୍ରୀ କହିଲେ – "ହଇ ହୋ ତୁମେ ପରା ଆଜି ତିପଟୁର ଯାଉଛ । ଏମାନଙ୍କୁ ମଧ୍ୟ ସାଙ୍ଗରେ ନେଇଯାଅ, ଏବଂ ହାକିମଙ୍କୁ ସବୁକଥା କହ । ସେ ମଧ୍ୟ ଚେନ୍ନିଗରାୟୁଙ୍କ ପ୍ରକୃତି ବିଷୟରେ ଜାଣନ୍ତୁ ।"

ଇଲାକାଦାର ରାଜି ହୋଇ କହିଲେ – "ଏଗାରଟା ବେଳେ ମୁଦାଲିୟର କମ୍ପାନୀ ବସ ଏକ୍ସାଟେ

Digitized by srujanika@gmail.com

ଚିପ୍ରୁର ଯିବ । ସେଥିରେ ସମସ୍ତେ ବସି ଗାଲିଯିବା ।'' ନନ୍ଦିନୀ କହିଲା – ''ମୋ ପାଖରେ ଟିକଟ ପାଇଁ ମଧ୍ୟ ପଇସାଟିଏ ନାହିଁ ।''

''ତୁମେ ସେ ଚିନ୍ତା କର ନାହିଁ । ତୁମ ଦୁଇଜଣଙ୍କର ଟିକଟ ପଇସା ମୁଁ ଦେଇ ଦେବି ।''

ମା' ପୁଅ ଦୁହେଁ ତାଙ୍କ ଘରେ ଜଳଖିଆ କରି ମଟର ଗାଡିରେ ବସିଲେ । ପ୍ରାୟ ବାରଟାବେଳେ ଚିପ୍ରୁର କଚେରୀରେ ପହଞ୍ଚିଲେ । ଇଲାକାଦାର କିରାଣୀଙ୍କୁ ପଚାରିବାରୁ ସେ କହିଲା – ''ସାର୍ ରାମଚନ୍ଦ୍ର ଗାଁର ସର୍ବରାକାରୀ ବାବଦକୁ ବାର୍ଷିକ ଦେୟ ନେବାର ଆଠ ଦିନ ହେଲାଣି ।''

ନନ୍ଦିନୀ ଅବାକ୍ ହୋଇ ରହିଗଲା । ଇଲାକାଦାର ପଚାରିଲେ – ''ଏବେ କଣ କରିବ ଭଉଣୀ ?''

''ସେ ନିଶ୍ଚୟ ଏଇ ଚିପ୍ରୁରରେ ଥିବେ । ସବୁ ଟଙ୍କା ଏ ପର୍ଯ୍ୟନ୍ତ ଖର୍ଚ୍ଚ କରି ପାରି ନଥିବେ । ଆପଣ ଦୟାକରି ତାଙ୍କୁ ଖୋଜାଇ ଆଣି ଗାଳି କଲେ ସେ ଟଙ୍କା ଚକ ଫେରାଇ ଦେବେ ।''

କିରାଣୀ ଶୁଣି କହିଲା – ''ସାର୍ ସିଏ ମାଧବ ଭଟ୍ଟର ହୋଟେଲ୍ ପାଖରେ ରହୁଛନ୍ତି । ବର୍ତ୍ତମାନ ଗଲେ ହୋଟେଲ୍‌ରେ ଖାଇ ବସିଥିବେ ।''

ତିନିଜଣଯାକ ବରଗଛ ତଳେ ଥିବା ସେଇ ହୋଟେଲ୍ ଆଡେ ଗଲେ । ନନ୍ଦିନୀ ଏବଂ ରାମନ୍ନା ବାହାରେ ଠିଆ ହୋଇ ରହିଲେ । ଇଲାକାଦାର ଭିତରକୁ ଯାଇ ଦେଖନ୍ତି ତ, କିରାଣୀ ଯାହା କହୁଥିଲା ତାହା ପ୍ରକୃତରେ ସତ । ଆସନରେ ବସି ଭାତ, ଡାଲି, ତରକାରୀ ମହାଖୁସିରେ ଚେନ୍ନିଗରାୟ ଖାଇଯାଉଥାଏ । ଇଲାକାଦାର ସେଠାରେ କିଛି ନକହି ବାହାରକୁ ଆସି ଗୋଟିଏ ଚୌକିରେ ଅପେକ୍ଷା କରି ବସିଲେ । ପ୍ରାୟ ଅଧଘଣ୍ଟାଏ ପର୍ଯ୍ୟନ୍ତ ସେମିତି ବସିରହିବାକୁ ପଡ଼ିଲା । ପେଟପୁରା ଭୋଜନ ସାରି ସର୍ବରାକାର ମହାଶୟ ବାହାରକୁ ଆସି ଦେଖନ୍ତି ତ, ଇଲାକାଦାର ବସିଛନ୍ତି । ସାଙ୍ଗେ ସାଙ୍ଗେ ହାତ ଯୋଡି ନମସ୍କାର କଲା । ଇଲାକାଦାର ପଚାରିଲେ – ''କିହୋ ଏଠି କିପରି ?''

''ଆଜ୍ଞା ଟିକିଏ କା - ଆ - ମ, ଥି - ଲା ।''

''ହଉ ହୋଟେଲ୍ ବାଲାକୁ ପଇସାଟା ଦେଇ ଦିଅ । ତା'ପରେ କଥାବାର୍ତ୍ତା ହେବା ।''

ଚେନ୍ନିଗରାୟ ଦଶଅଣା ଦେଇ ବାହାରକୁ ଆସି ଦେଖେତ ପୁଅ ଏବଂ ସ୍ତ୍ରୀ ଠିଆ ହୋଇଛନ୍ତି, ଇଲାକାଦାର କହିଲେ – ''ଦେଖ ତୁମ ନାଁରେ ପୋଲିସ୍ ୱାରଣ୍ଟ ଜାରୀ ହୋଇଛି । ତୁମକୁ ବର୍ତ୍ତମାନ ଆରେଷ୍ଟ କରାଯିବ ।''

ଚେନ୍ନିଗରାୟର ଦେହ ମୁଣ୍ଡ ଥରି ଉଠିଲା । ଇଲାକାଦାର ପୁଣି କହିଲେ – ''ଚାଷୀମାନଙ୍କ ଠାରୁ ଖଜଣା ବାବଦକୁ ଅଗ୍ରୀମ ପଇସା ନେଇ ବର୍ଷ ଶେଷ ପାଉତିରୁ କାଟି ଦେବାକୁ କହି, ଏଠି ଆସି ସବୁ ପଇସା ହୋଟେଲ୍‌ରେ ଖାଇ ଉଡାଇ ଦେଉଛ । ଏହା ଏକ ବଡ ଅପରାଧ ।''

Digitized by srujanika@gmail.com

"ଭୁଲ ହୋଇଯାଇଛି ହଜୁର । କ୍ଷମା କରି ଦିଅନ୍ତୁ । ଯ୍ୟାରି - - - - (ଗାଳି ଦେବା ଇଚ୍ଛା କୁ ବନ୍ଦ କରି) କଷ୍ଟରେ ପଡି ମୁଁ ଏପରି କରିଛି ଆଜ୍ଞା ।"

"ଯିଏ ଯାହା କହିଲେ ତୁମେ କରିଦେବ । ଚାଲ ବଡ ହାକିମଙ୍କ ପାଖକୁ ।"

"ଆଜ୍ଞା, ଆପଣଙ୍କ ଗୋଡ ଧରୁଛି, ପୋଲିସ୍‌ରେ ଦିଅନ୍ତୁ ନାହିଁ । ମୋର ଇଜ୍ଜତ୍ ଚାଲିଯିବ ।"

"ଆଚ୍ଛା ଏବେ ତୁମ ପାଖରେ କେତେ ଟଙ୍କା ଅଛି ଶୀଘ୍ର ବାହାର କରି ଦିଅ । ଡେରି କଲେ ପୁଲିସ ଡାକିବି । ଏଇକ୍ଷଣି ବାହାର କର ।"

"ଦେଉଛି ଆଜ୍ଞା ଭିତରେ ଅଛି ।"

"ହଁ ହଁ ଶୀଘ୍ର ବାହାର କର ।"

ଚେନ୍ନିଗରାୟ୍ କୁର୍ତ୍ତା ତଳେ ଧୋତିର ଗଣ୍ଠି ଫିଟାଇ ଅଣ୍ଟାରେ ବନ୍ଧା ହୋଇଥିବା ଗୋଟିଏ ଛୋଟ ମୁଣ୍ଡା ବାହାର କଲା । ସେଥିରେ ମାତ୍ର ପଞ୍ଚଷଠୀ ଟଙ୍କା ଥିଲା । ଟଙ୍କା ନେଇ ଇଲାକାଦାର ପଚାରିଲେ – "ଆଉ ଟଙ୍କାତକ କୁଆଡେ ଗଲା ।"

"ଆଜ୍ଞା ଖର୍ଚ୍ଚ ହୋଇଗଲା ।"

"ଘରେ ଭୋକିଲା ସ୍ତ୍ରୀ ଓ ପିଲାମାନଙ୍କୁ ଛାଡି ଏଠି ବସି ଟଙ୍କା ପକାଇ ଘୁଷୁରିଙ୍କ ଭଳି ଗିଳି ଯାଉଛ । ତୁମକୁ ଟିକିଏ ହେଲେ ଲଜ୍ଜା ନାହିଁ । କୁକୁର ହେଲେ ମଧ୍ୟ ତା' ପିଲାକୁ ନେଇ ଖୁଆଉଛି ଏବଂ ତୁମେ - - - - ।" ଏପରି ଗାଳି ଦେଇ ପଇସାତକ ନଞ୍ଜମ୍ମା ହାତରେ ଦେଲେ । ଚେନ୍ନିଗରାୟ୍‌କୁ ପୁଣି କହିଲେ – "ସର୍ବସାଧାରୀ କାମ ଏବଂ ହିସାବ କିତାବ ରଖିବା ତ ତୁମକୁ ଜଣା ନାହିଁ । ମୁଁ ସବୁ ଜାଣେ ଯେ ଏଇ ଭଉଣୀ ସବୁ ହିସାବ ରଖେ । ଯଦି କେବେ ଏଭଳି ଚୁଟି ଚୁଟି ବାର୍ଷିକ ପାଉତି ଟଙ୍କା ଖର୍ଚ୍ଚ କରିବ ତେବେ ପୁଲିସ୍‌ରେ ଦେଇ ବନ୍ଦେଇ ନେବି । ମୋର ବଦଳି ହୋଇଗଲେ ମଧ୍ୟ ମୋ ଜାଗାରେ ଯିଏ ଆସିବ ତାକୁ କହିଦେଇ ଯିବି । ଏବଂ ବଡ ହାକିମଙ୍କୁ ମଧ୍ୟ କହିଦେବି ।"

ଚେନ୍ନିଗରାୟ୍ ସେଇଠି ରାସ୍ତାଟା ଉପରେ ଇଲାକାଦାରଙ୍କ ଗୋଡଟା ଧରି ବସି ପଡିଲା । "ଆଜ୍ଞା ମୁଁ ଗରିବ ଲୋକ, ବଡ ହାକିମଙ୍କୁ କହନ୍ତୁ ନାହିଁ ।" ତାପରେ ଇଲାକାଦାର ନଞ୍ଜମ୍ମାକୁ କହିଲେ – "ଭଉଣୀ ପେରନ୍ତୁ ବସ୍ ଚାରିଟା ବେଳକୁ ଯିବ ।" ତୁମେ ଯଦି କିଛି ସଉଦା ପତ୍ର କିଣିବ କିଣ । ମୁଁ କଚେରୀ କାମ ସାରି ସେଇ ବସ୍‌ରେ ଫେରିବି ।"

ଚେନ୍ନିଗରାୟ୍ ଅପମାନିତ ହୋଇ ବରଗଛ ମୂଳରେ ମୁଣ୍ଡରେ ହାତ ଦେଇ ବସିଲା । ରମନ୍ନା ମା'କୁ କହିଲା - "ମା'ମୁଁ ହୋଟେଲ୍‌ରେ କେବେ ଖାଇନାହିଁ । ଆଜି ଇଚ୍ଛା ହେଉଛି ।"

"ଗାଁରେ ନାନୀ ଓ ବିଶ୍ୱ ଭୋକରେ ଅଛନ୍ତି ତୁ' ଜଣ ଜାଣିନୁ ?"

Digitized by srujanika@gmail.com

ଏକଥା ଶୁଣି ରମନ୍ନାର ମୁହଁ ଶୁଖିଗଲା । ନଞ୍ଜିନ୍ନା ପୁଅର ହତାଶିଆ ଚେହେରା ଦେଖି ବହୁତ ଦୁଃଖିତ ହେଲା । କହିଲା –"ହଉ ଆସ ।" ହୋଟେଲ ବାଲାକୁ ପଚାରିଲା – "ଏ ପିଲା ପାଇଁ ଖାଇବାକୁ କେତେ ପଇସା ଲାଗିବ ?' ହୋଟେଲବାଲା କହିଲା - "ଛଅ ଅଣା ।" ନଞ୍ଜିନ୍ନା କହିଲା ହଉ ତେବେ । ଯା'କୁ ଖାଇବାକୁ ଦିଅ ।" ରମନ୍ନା ଜିଦ୍ କଲା – "ମା' ତୁ ନ ଖାଇଲେ ମୁଁ ଖାଇବି ନାହିଁ ।" ତେଣୁ ନଞ୍ଜିନ୍ନା ମଧ୍ୟ ବସିଗଲା । ଭାତ, ଡାଲି, ତରକାରୀରୁ ଖୁବ୍ ବାସନା ଆସୁଥାଏ । ନଞ୍ଜିନ୍ନା କହିଲା – "ଘରେ ଯଦି ସବୁ ଜିନିଷ ଥାଆନ୍ତା ତେବେ ମୁଁ ଏହାଠାରୁ ଆହୁରି ଭଲ ରାନ୍ଧି ଦିଅନ୍ତି । ତୁ ଯେତେବେଳେ ବଡ ହୋଇ ରୋଜଗାର କରିବୁ ତତେ ଆହୁରି ଭଲ ଜିନିଷ ରାନ୍ଧି ଖୁଆଇବି ।" ଦୁଇଜଣଙ୍କର ଖର୍ଚ୍ଚ ଟଙ୍କାଏ ହେଲା । ପିଲା ଦୁଇଟାଙ୍କ ପାଇଁ ଚାରିପଣାର ସେଉ ଗାଣ୍ଠିଆ, ଚାରିଅଣାର ମୁଢି ଚଣା ଓ ଆଠ ଅଣାର ମିଠାଇ କିଣିଲା । ତା'ପରେ ଗୋଟିଏ ବଡ ଦୋକାନରେ ମାଣ୍ଡିଆର ଦର ବୁଝିଲା ଯେ ତାଙ୍କ ଗାଁ ଦର ଠାରୁ ବହୁତ କମ୍ । ସେଠାରୁ ଖଣ୍ଡିଏ ଟଙ୍କାର ମାଣ୍ଡିଆ କିଣିଲା । ଏବଂ ଦୋକାନୀକୁ କହିବାରୁ ସେ ବସ୍‌ରେ ଚଢାଇ ଦେଲା । ଲଲାକାଦାର ବସ୍‌ବାଲାକୁ କହି ଦେବାରୁ ସେ ମାଣ୍ଡିଆ ବସ୍ତା ପାଇଁ ପଇସା ନେଲା ନାହିଁ । ଚେନ୍ନିଗରାୟ୍ କୁଆଡେ ଗଲା କେହି ଜାଣିପାରିଲେ ନାହିଁ ।

ଗାଁ ପାଖରେ ବସ୍‌ବାଲା ବସ୍ତାଟକ ଓହ୍ଲାଇ ଦେଇ ଚାଲିଗଲା । ନଞ୍ଜିନ୍ନା ବସ୍ତା ଜଗି ଠିଆ ହେଲା ଏବଂ ରମନ୍ନା ଗାଁକୁ ଧାଇଁ ଯାଇ ଲୋକଟାଏ କରି ଶଗଡ ଧରି ଆସିଲା । ସଂଧ୍ୟା ସୁଦ୍ଧା ମାଣ୍ଡିଆ ଟକ ଘରେ ପହଞ୍ଚିଗଲା । ତା'ପର ଦିନ ଚେନ୍ନିଗରାୟ୍ ଘରକୁ ଫେରିଲା । ରମନ୍ନା ବାପାର ଏ ପ୍ରକୃତି ଦେଖି କ'ଣ ସବୁ କହି ଗାଳିଦେବାକୁ ଆରମ୍ଭ କରିବାରୁ ନଞ୍ଜିନ୍ନା ତାକୁ ବୁଝାଇଲା - "ପୁଅରେ, ଯେତେ ଯାହା କଲେ ସୁଦ୍ଧା ସେ ତୋର ବାପା, ତୁ ନିଜ ବାପାକୁ ଏପରି ଗାଳି ଦେବାଟା ଠିକ୍ ହେବ ନାହିଁ ।" ରମନ୍ନା କଣ ଭାବି ଚୁପ୍ ରହିଲା ।

ଘରକୁ ତିନି, ଚାରି ବସ୍ତା ମାଣ୍ଡିଆ ଆସିଯିବାରୁ ସମସ୍ତଙ୍କ ମନ ଟିକିଏ ଖୁସିଥାଏ । ଏଇ କେତେ ଦିନ ଖାଇବା ଅଭାବରେ ନଞ୍ଜିନ୍ନା ଅତ୍ୟନ୍ତ ଦୁର୍ବଳ ହୋଇ ପଡିଥିଲା । ପାର୍ବତୀ ଏବଂ ରମନ୍ନାର ମଧ୍ୟ ଦେହ ଖୁବ୍ ଝଡିଯାଇ ଥିଲା । ସାନପୁଅ ବିଶ୍ୱର ହୃଷ୍ଟପୁଷ୍ଟ ଗୋଲ ଚେହେରା ମଧ୍ୟ ଶୁଖି ଯାଇଥିଲା । କେବଳ ଏହି ପରିବାର ଟି ନୁହେଁ, ଗାଁର ସମସ୍ତେ ଏଭଳି ଦୁର୍ବଳ ହୋଇ ଯାଇଥାନ୍ତି । ଶହେକେ ପାଞ୍ଚ ଜଣ ଛଡା ବାକି ସମସ୍ତେ ରୋଗୀଣା ଭଳି ଦିଶୁଥାନ୍ତି । ଚେନ୍ନିଗରାୟ୍ ବେଶୀ ଝଡି ନଥିଲା । କିନ୍ତୁ ଆଗ ଅପେକ୍ଷା ଦୁର୍ବଳ ନିଷ୍କ୍ରିୟ ହୋଇଯାଇଥିଲା ।

ସବୁଦିନ ପେଟପୁରା ଖାଇଲେ ସେ ମାଣ୍ଡିଆ ଟକ ଦୁଇମାସରେ ଶେଷ ହୋଇଯିବ । ତେଣୁ ନଞ୍ଜିନ୍ନା ଠିକ୍‌କଲା ଯେ ଦିନକୁ ଦୁଇ ସେରରୁ ଅଧିକା ଖର୍ଚ୍ଚ କରିବ ନାହିଁ । ଭାବିଲା, ଯଦି ଏ ବର୍ଷ ମଧ୍ୟ ବର୍ଷା ନହୁଏ ତେବେ ଆହୁରି ଖରାପ ଅବସ୍ଥା ହୋଇପାରେ । ପାର୍ବତୀକୁ କହିଲା – "ସବୁଦିନ ସକାଳୁ ସାତଟି

Digitized by srujanika@gmail.com

ଚକୁଳି ତିଆରି କରିବୁ । ସମସ୍ତଙ୍କର ଗୋଟିଏ ଲେଖାଏଁ । ରାମନ୍ନା ଗୋଟିଏ ସ୍କୁଲକୁ ନେଇକରି ଯିବ । ଦ୍ୱିପହରରେ ତୁ ଏବଂ ବିଶ୍ୱ ଗୋଟିଏ ଚକୁଳି ଅଧା ଅଧା କରି ଖାଇବ । ରାତିକୁ ଠିକ୍ ସେହିରେ ଚୁନାରେ ପିଲାଙ୍କର ପେଟ ପୂରି ଯାଉଥିଲା । ନକ୍ଷିନ୍ନା ଭୋକରେ ରହିବା ପାଇଁ ପ୍ରସ୍ତୁତ ହୋଇଯାଇଥିଲା । କିନ୍ତୁ ଚେନ୍ନିଗରାୟ୍ ପାଇଁ ବହୁତ ଅସୁବିଧା ହୁଏ । ସେ ସ୍ତ୍ରୀ କୁ ଗାଳିଦେଲେ ପିଲା ତିନିଟା ମା' ପଟିଆ ହୋଇ ବାହାରନ୍ତି । ସାନ ପୁଅ ବିଶ୍ୱ କହେ – "ତୁମେ ପରା ଆମ ବାପା, ଚାଉଳ ଆଣି ଦେଉନ । ଆମର ଭାତ ଖାଇବାକୁ ଇଚ୍ଛା ହେଉଛି ।" ସେ ଖାଲି ଗାଳି ଗୁଡ଼ିଏ ବକି ଦାଣ୍ଡକୁ ଚାଲିଯାଏ ।

ରୋଷାରନ୍ଧି ଏବଂ ଘରର ଅନ୍ୟାନ୍ୟ କାମ ପାର୍ବତୀ ଉପରେ ପୂରା ଛାଡ଼ି ଦେଇ ନକ୍ଷିନ୍ନା ଗୁଣ୍ଡୁଗୌଡଙ୍କର ଖୋଲା ଡିହରେ ଫସଲ ଲଗାଇବା କାମରେ ଲାଗି ପଡ଼ିଲା । ଅପନ୍ନା ସେଠି ଘର କରି ନିଆଁ ଲଗାଇବା ପରଠାରୁ ସେଠି କାନ୍ଥ ଗୁଡ଼ିକ ସେହିପରି ଥାଏ । ପ୍ରଥମେ କାନ୍ଥକୁ ଭାଙ୍ଗି କୂଅରୁ ପାଣି କାଢ଼ି ସେଠାରେ ସକାଳୁ ସନ୍ଧ୍ୟାଯାଏଁ ପକାଇଲା । ମାଟି ଶୁଖି ରହିଥିବାରୁ ବହୁତ ପାଣି ଖାଇଲା । ମାଟି ବତୁରିବାରୁ ନିଜେ ଗୋଟିଏ କଡ଼ରୁ ଖୋଳିବା ଆରମ୍ଭ କଲା । ବାଉରୀ ପୁଅ ବେଲୁରାକୁ ଦି ଟଙ୍କା ଦେଇ ତା' ହାତରେ ଗୋଟିଏ ଶଗଡ ବାଉଁଶ ଅଣାଇଲା । ବଗିଚା ଚାରିକଡ଼ରେ କଣ୍ଟା ଡାଳ ପୋତି ବାଉଁଶ ବତାରେ ମଜଭୁତ୍ କରି ବାନ୍ଧି ଦେଲା । ମଝିରେ ମଝିରେ ଖଜୁରୀ ଡାଳ ଆଣି ପୋତି ଦେଲା, ଗୋଟିଏ ଚାଟି ବାନ୍ଧି ଦେଇ ଚାଲା ପକାଇବା ବ୍ୟବସ୍ଥା କରି, ବଗିଚାକୁ ପୂରା ନିବୁଜ କରିଦେଲା । ତା'ପର ଦିନ ହାଟପାଳି ଦିନ ଥିଲା । କମ୍ବନକେରେ ଯାଇ ଶିମ୍ବ ଏବଂ ବାଇଗଣ ମଞ୍ଜି କିଣି ଆଣି ବାଡ଼ିରେ ଲଗାଇଲା । ଭୋକ ଲାଗିଲେ ଅତିକମ୍‌ରେ ପରିବା ଦୁଇଟା ତ ଅନ୍ତତଃ ରାନ୍ଧି ଖାଇ ପାରିବେ । ଏଥର ଛତା ବର୍ଷା ନହେଲେ ମଧ୍ୟ କୂଅରୁ ତ ପାଣି ଶୁଖି ନାହିଁ । ଏପରି ସବୁଦିନ ଦି ଓଳି ବଗିଚାରେ ପାଣି ପକାଉଥାଏ ।

ଏ ମଧ୍ୟରେ ରେବଣ ସେଠୀର ଝିଅ ରୁଦ୍ରାଣୀକୁ ଝାଡା ବାନ୍ତି ବୋଲି ଶୁଣାଗଲା । ଦୁଇଟା ଦିନରେ ପିଲାଟା ମରିଗଲା । ନକ୍ଷିନ୍ନା ଖବର ପାଇ ତାଙ୍କ ଘରକୁ ଗଲାବେଳକୁ ଶବ ଉଠାଇ ନେଇ ସାରିଥିଲେ । ରେବଣ ସେଠୀ ଝିଅର ଶବ ସତ୍କାର ପାଇଁ ଯାଇଥିଲା । ରେବଣ ସେଠୀର ସ୍ତ୍ରୀ ଦୁଆର ମୁହଁରେ ମୁଣ୍ଡ ପିଟି ପିଟି କାନ୍ଦୁଥିଲା ।

ରୁଦ୍ରାଣୀ ପାର୍ବତୀ ଠାରୁ ଚାରି ବର୍ଷ ବଡ ଥିଲା । ବିଭା ହୋଇଥିଲେ ଦି, ଦିଟା ଛୁଆର ମା' ହୋଇଥାନ୍ତା । ଝିଅଟାର ଭରପୁର ଦେହ । ପଛଆଡୁ ଦେଖିଲେ ମା' ଝିଅକୁ ଚିହ୍ନିବା କଷ୍ଟ । ନକ୍ଷିନ୍ନା ପାଖରେ ବସି ସେଠାଆଣୀକୁ ସାନ୍ତ୍ୱନା ଦେବାକୁ ଲାଗିଲା । "ମୁଣ୍ଡ ପିଟିଲେ କଣ ହେବ ଭଉଣୀ ଧୈର୍ଯ୍ୟ ଧର ।"

ଶବ ସତ୍କାର କରି ରେବଣସେଠୀ ଘରକୁ ଫେରିଲା ପର୍ଯ୍ୟନ୍ତ ନକ୍ଷିନ୍ନା ସେଠି ବସି ରହିଲା । ପାଖ ପଡ଼ିଶାର ଅନେକ ସ୍ତ୍ରୀ ପୁରୁଷ ମଧ୍ୟ ଠିଆ ହୋଇଥାନ୍ତି । ରେବଣସେଠୀ ଆସିଲା ମାତ୍ରେ ସବୁ ସ୍ତ୍ରୀ ଲୋକ ନିଜ ନିଜ ଘରକୁ ଚାଲିଗଲେ । ନକ୍ଷିନ୍ନା ମଧ୍ୟ ନିଜ ଘରକୁ ଫେରିଲା । ତା' ପରଦିନ ସେଠିଆଣୀକୁ

Digitized by srujanika@gmail.com

ତାର ବଗିଚାକୁ ନେଇ ସେଠାରେ ବସି କେତେ ବୁଝେଇଲା, "କିଏ ଏ ସଂସାରରେ ଆମର କହିଲ ? ଯାହାର ସେ ପାରିରୁ ଡାକରା ଆସିଲା, ସେ ଚାଲିଲା । ମୋ ପୁଅ ମୋ ଝିଅ, ମୋ ଘର ଏସବୁ କହିବା କେବଳ ମାୟା ।" ଯେତେ ବୁଝେଇଲେ ମଧ୍ୟ ମା'ର ମନ କ'ଣ ବୁଝୁଛି । ସେଠିଆଣୀ ଚୁପଚାପ ହୋଇ ବସିରହେ । ନକ୍ଷିନା ଦୁଇଟା ଲେଖାଏଁ ମାଠିଆରେ କୂଅରୁ ପାଣି ଆଣି ବାଇଗଣ କିଆରୀରେ ପକାଏ । ମଝିରେ ମଝିରେ ସେ ସେଠିଆଣୀ ସାଙ୍ଗେ କଥା ହୋଇ ପୁଣି କୂଅ ମୂଳକୁ ଚାଲିଯାଏ । ସେଠିଆଣୀ କିନ୍ତୁ ସେଇମିତି ଚୁପ ହୋଇ ବସିଥାଏ । କେତେ ଦିନ ପରେ ସେଠିଆଣୀ ନକ୍ଷିନା କୁ କହିଲା "ଜନ୍ମକଲା ବାପ ଯଦି ଝିଅକୁ ମାରି ଦେବ ତେବେ କିଏ କଣ କରିପାରିବ ?"

"ଏମିତି କ'ଣ କହୁଛ ?"

"ଛାଡ ସେ କଥା ।"

"ତୁମକୁ ମୋ ରାଣ, ମତେ କୁହ । ମୁଁ କାହା ଆଗରେ କହିବି ନାହିଁ ।"

"ଦିନେ ତୁମକୁ ମାଣ୍ଡିଆ, ଚାଉଳ ଦେଇ ଆସିଥିଲି ଓ କହିଥିଲି ଯେ ମୋ ସ୍ୱାମୀ ତିପଟୁର କୋଟ୍ କେଷରେ ଯାଇଥିଲେ ଯେ ଆଣିଛନ୍ତି ।"

"ହଁ ହଁ ମନେ ପଡିଲା ।"

"ପରେ ଜାଣିଲି ଯେ ସେଗୁଡାକ ତିପଟୁରରୁ ଆଣିନଥିଲେ । ମୁଁ ତୁମ ସାଙ୍ଗରେ ପୋଖରୀରୁ ପଦ୍ମମୂଳ ଖୋଳିବାକୁ ଆସେ ତ, ସେତିକି ବେଳେ ମୋ ସ୍ୱାମୀ ସେ ଜାଣାବତ୍ତି ମହାଜନଠୁ ଟଙ୍କା ନେଇ ତା'କୁ ଆମ ଘରକୁ ଆଣି ମୋ ଝିଅ ପାଖରେ ଛାଡନ୍ତି । କିଛିଦିନ ପରେ ରୁଦ୍ରାଣୀର ଗର୍ଭ ରହିଗଲା ।"

ନକ୍ଷିନା ଏ କଥା ଶୁଣି ଅବାକ୍ ହୋଇଗଲା । ସେ ଶୁଣିଥିଲା ଯେ ଏଗାଁର ଅନେକ ଲୋକ ପେଟ' ବିକଳରେ ଇଜ୍ଜତ୍ ବିକୁଥିଲେ । କିନ୍ତୁ ଜଣେ ବାପା ନିଜ ଝିଅକୁ ଏପରି କାମ କରାଇବ ଏକଥା ତାର ବିଶ୍ୱାସ ହେଉନଥିଲା । ସେଠିଆଣୀ କହିଲା – "ତାହା ମୋ କପାଳ ଲଉଣୀ । ବାପା ଯିନା ଲମ୍ପଟ, ହେଲେ ମୋ ଝିଅ କିପରି ମାନିଗଲା । ଶିବଗେରେ ଗାଁରୁ ପ୍ରସ୍ତାବ ଆସିଥିଲା । ମୁଁ କେତେ କହିଲି ଶୀଘ୍ର ବିଭାଘର କରିଦିଅ । ସବୁବେଳେ କହନ୍ତି, ଏବେ ତ ଘରେ ଖାଇବାକୁ ଅଭାବ, ପରେ ଦେଖିବା ।"

"ସେଠୁ କ'ଣ ହେଲା ?"

"ମତେ ତ ଏସବୁ ଜଣାନଥିଲା । ତିନିମାସ ପରେ ଜାଣିଲି । ରୁଦ୍ରାଣୀ କୁ 'ତୋ ଦୋଷ' କହି କେତେ ମାରିଲି । ରୁଦ୍ରାଣୀ ମତେ ସବୁ କହିଦେଲା ଯେ ନିଜ ବାପ 'କିଛି ହେବ ନାହିଁ, କହି ସେ ମହାଜନ ପୁଅକୁ ଘରେ ପୂରାଇ ବାହାରୁ କବାଟ ଦେଇ ଦିଅନ୍ତି । ତା'ପରେ ଗର୍ଭପାତ କରାଇବା ଛଡା ଉପାୟ ନଥିଲା । ସେଇ ପୁଣି ଯାଇ ନରସୀ ଠାରୁ କ'ଣ ଔଷଧ ଆଣି ମୋ ପିଲାକୁ ଖୁଆଇଲେ ଯେ, ରକ୍ତ ବାହାରି ଚାଲିଲା । ମୋଟେ ବନ୍ଦ ହେଲା ନାହିଁ । ସେଇଥିରେ ରୁଦ୍ରାଣୀର ପ୍ରାଣ ଗଲା ।"

Digitized by srujanika@gmail.com

ନଈଜା ଏକଥା ଶୁଣି ଆଉ କଣ ବା କହିବ । ସେଠିଆଣୀ କାନ୍ଦିବାରେ ଲାଗିଲା । ନଈଜାକୁ ନିଜ ଝିଅ ପାର୍ବତୀ କଥା ମନେ ପଡିଲା । ତାକୁ ଆସି ବାରବର୍ଷ ପୂରିଲା । ପେଟପୂରା ଖାଇବାକୁ ପାଉଥିଲେ ବୋଧହୁଏ ଝିଅଟାର ଋତୁମତୀ ହେବାର ସମୟ ଆସି ଯାଆନ୍ତାଣି । ଏବେ ଯଦି ହୋଇଯାଏ ତେବେ କ'ଣ କରିବି ? ଏ ଦୁର୍ଭିକ୍ଷ ଅବସ୍ଥାରେ ବାହାଘର କିପରି କରିବି ? ଅତିକମ୍‌ରେ ସାତ, ଆଠ ଶହ ଟଙ୍କା ତ ଲାଗିବ । ଏବେ ତ ଦି ଓଳି ଗୋଟିଏ ମାଣ୍ଡିଆ ଚକୁଳି ଛଡା ଦୁଇଟା ଚକୁଳି ମଧ୍ୟ ପେଟରେ ପଡି ପାରୁନାହିଁ । ଏତେ ଟଙ୍କା ଆସିବ କେଉଁଠାରୁ ?

ସେଠିଆଣୀ କହିଲା, "ନଈଜା ତୁମେ ଏକଥା କାହାକୁ କହିବ ନାହିଁ ।"

"ଠାକୁରଙ୍କ ରାଣ, ତୁମ ଇଜ୍ଜତ କ'ଣ ମୋ ଇଜ୍ଜତ ନୁହେଁ ।"

ନଈଜା ପ୍ରଥମରୁ ଭାବୁଥିଲା ଯେ —"ମୋ ଜୀବନରେ ମଧ୍ୟ ମୁଁ କଣ ପାଇଛି । ନା ସ୍ୱାମୀର ପ୍ରେମ, ନା ଶାଶୁଘରର ସ୍ନେହ, ନା ନିଜ ବାପା ଘରର ସୁଖ । ତଥାପି ଜୀବନ ଧରି ରହିବାକୁ ପଡୁଛି । ପିଲାଙ୍କୁ ଦେଖି ଏ ଜୀବନ ରହିଛି । ସକାଳୁ ସନ୍ଧ୍ୟା ଯାଏଁ ବଗିଚାରେ ପାଣି ପକାଇ, ସ୍ୱାମୀଙ୍କଠାରୁ ସର୍ବରକାରୀ ଟଙ୍କା କେତଟା ଜବରଦସ୍ତି ଛଡାଇ ରଖି, ପଳାଶପତ୍ରର ଖଲି ସିଲେଇ କରି ମାଣ୍ଡିଆ ଚକୁଳି ଖଣ୍ଡେ ଭଙ୍ଗା ଆଲୁମିନିୟମ୍ ବାସନରେ ଖାଇ ବଞ୍ଚିବା କ'ଣ ଜୀବନ ? ଆଉ କ'ଣ ବା ଏ ଜୀବନରୁ ଆଶା କରାଯାଇପାରେ ।" ଏମିତି କେତେ କ'ଣ ବସି ଭାବିଲା ।

୪

ପ୍ଲେଗ ରୋଗ ପରେ ଏବେ ଗାଁକୁ ଆସିଲା ଚର୍ମରୋଗ । ବହୁତ ଲୋକଙ୍କ ଦେହରେ ଘା' ଘଉତ ହୋଇଯାଇଥାଏ । ଯାହାକୁ ଦେଖିଲେ ଖାଲି ହାତ, ଗୋଡ କୁଣ୍ଡାଉଥାନ୍ତି । କିଏ ପୁଣି ଛୋଟେଇ ଚାଲିଲାଣି ତ, କାହାର ହାତ ଆଙ୍ଗୁଠି ସନ୍ଧିରେ ଘା' ଯୋଗୁଁ ହାତଟା କେମା ହୋଇଗଲାଣି ।

ନଈଜା ଘରେ ପ୍ରଥମେ ରାମନାଥର ଘା' ବାହାରିଲା । ତା'ପରେ ପାର୍ବତୀ,ବିଶ୍ୱ ଏବଂ ନଈଜାର ମଧ୍ୟ ହେଲା । କେବଳ ନିଆଁରେ ସେକିବା ଛଡା ଆଉ କୌଣସି ଉପାୟ ନଥିଲା । ସକାଳୁ ଉଠିଲା ବେଳକୁ ଆଣ୍ଠୁଗଣ୍ଠି କହୁଣୀରେ ଦୁଇ ଚାରିଟା ଲେଖାଏଁ ବାହାରି ଥିବ । ସନ୍ଧ୍ୟା ବେଳକୁ ସେଥିରେ ପୂଜ, ପାଣି ଭର୍ତ୍ତି ହୋଇଯାଏ ଓ ସେଗୁଡିକ କଣ୍ଟାରେ ଫୋଡି ପୂଜ ବାହାର କରିବା ଗୋଟିଏ କାମ ହୋଇଗଲା ।

ସେ ପୂଜ ପୁଣି ଯେଉଁଠି ଲାଗିଲା ସେଠି ଘା' ବାହାରିଲା । ବେଳେବେଳେ ଏତେ ଜୋର୍‌ରେ କୁଣ୍ଡେଇ ହୁଏ ଯେ ଅସହ୍ୟ କଷ୍ଟରେ ପିଲା ଗୁଡାକ ଛଟପଟ ହୁଅନ୍ତି । ଆଜି ପର୍ଯ୍ୟନ୍ତ ଘରର ସାରାକାମ

Digitized by srujanika@gmail.com

ପାର୍ବତୀ କରୁଥିଲା । କିନ୍ତୁ ଦି' ହାତ ଯାକରେ ଘା ହୋଇ ଯିବାରୁ ବାସନ ମଜାମଜି କାମ କରିପାରିଲା ନାହିଁ । ନଈଜା ମଧ୍ୟ କୂଅରୁ ପାଣି ବାହାର କରି ପାରିଲା ନାହିଁ । କଷ୍ଟ ମେହନତ କରି ଯେଉଁ ଗଛ ଗଣ୍ଡାକ ବଞ୍ଚାଇ ଥିଲା, ସେ ଗୁଡ଼ିକ ଶୁଖି ଶୁଖି ରହିଲେଣି ।

ଗାଁ ଲୋକେ ଏ ରୋଗରୁ ରକ୍ଷା ପାଇବା ପାଇଁ ନାଗ ଦେବତାଙ୍କ ପୂଜା ମନାସିଲେ । ନଈଜା ମଧ୍ୟ ଆଠ ଦିନ ଯାଏଁ ପିଲାଙ୍କୁ ଥଣ୍ଡା ପାଣିରେ ଗାଧୋଇ ନିଜେ ମଧ୍ୟ ଗାଧୋଇ ଅଧ ଡାଳେ କ୍ଷୀର ନେଇ ଉଇ ହୁଙ୍କା ପାଖରେ ଢାଳି ମୁଣ୍ଡିଆ ମାରି, ପିଲାମାନଙ୍କୁ ମୁଣ୍ଡିଆ ମରାଇ ଆସିଲା । ତଥାପି ମଧ୍ୟ ଗାଁରେ ରୋଗର ପ୍ରକୋପ କମିଲା ନାହିଁ । ବରଂ ବଢ଼ିବାରେ ଲାଗିଲା ।

ପ୍ରାୟ ମାସେ ପରେ ଚେନ୍ନିଗରାୟ ଦେହରେ ମଧ୍ୟ ବଥ ଉଠିଆ ବାହାରିଲା । ପ୍ରଥମ ଘା'ରେ ତାଙ୍କର ନାକେଦମ୍ ହୋଇଗଲା । ଗାଁରେ କେତେ ଜଣ ବଡ ବଡିଆଙ୍କୁ ଛାଡି ଆଉ ସମସ୍ତଙ୍କୁ ରୋଗ ଆସି ବ୍ୟାପି ଯାଇଥିଲା । ମୁଖିଆ ଶିବଗୌଡ, ଗଙ୍ଗାମ୍ମା ଏବଂ ଅପନ୍ନାଙ୍କୁ ଏ ରୋଗ ଧରିନଥିଲା । ପୂଜ ବୋହୁଥିବା ହାତରେ ଚେନ୍ନିଗା ମା' ପାଖକୁ ଗଲାରୁ ସେ କହିଲେ – "ଆରେ ବାସନ୍ଦ କରାଯାଇଥିବା ସେ ମାଇକିନାଟା ପ୍ରାୟଶ୍ଚିତ ତ କଲା ନାହିଁ, ଆଉ ଛୁଆଁଛି ମଧ୍ୟ ମାନିଲା ନାହିଁ । ଶୁଦ୍ଧ, ଅଶୁଦ୍ଧ ବାରଣ ରହିଲା ନାହିଁ । ତେଣୁ ନାଗ ଦେବତାର ଅଭିଶାପ ପଡିଲା । ତା'ଠୁ ତତେ ମଧ୍ୟ ଡେଇଁଲାଣି । ଆରେ ତା'କୁ ନଛାଡିଲେ ତୋର ଆଉ ଭଲ ଗତି ନାହିଁ ।" ଚେନ୍ନିଗାକୁ ଜଣଥିଲା ଯେ ଛାଡି ଚାଲିଯିବା ଧମକରେ ତା' ସ୍ତ୍ରୀ ଡରିବା ଲୋକ ନୁହେଁ । ତାକୁ ଛାଡିଦେଲେ ପେଟ ପୂଜାଟା ବା' ହେବ କିପରି ? ଯଦି ସେ ଯାଇ ଇଲାକାଦାରଙ୍କୁ କହିଦିଏ, ତେଣୁ ମା'ର ଏକଥା ପ୍ରତି ଚେନ୍ନିଗା ଧ୍ୟାନ ଦେଲା ନାହିଁ । କିନ୍ତୁ ଘା'ଗୁଡିକ ଯେ ବଡ କଷ୍ଟ ଦେଲେଣି । କିଛି ଗୋଟିଏ କରିବାକୁ ହେବ । ମା' ପୁଅ ଦୁହେଁ ଅନ୍ନାଜୋଇସ ପୁରୋହିତଙ୍କ ଘରକୁ ଗଲେ । ସେ କ'ଣ ସବୁ ବତାଇଲା ବେଳକୁ ଯାଗ୍ୟାଶାସ୍ତ୍ରୀ ମଧ୍ୟ ସେଠି ଆସି ପହଞ୍ଚିଲେ । ଶାସ୍ତ୍ରୀ ମହାଶୟ ଗଙ୍ଗାମ୍ମାକୁ ଦେଖି କହିଲେ – "ତୁମର ତ ମନେ ଥିବ ତୁମ ସ୍ୱାମୀ କେତେଥର ନାଗ ପୂଜା କରାଇଛନ୍ତି । ତାଙ୍କର ମୃତ୍ୟୁପରେ ତୁମେ ଥରେ ହେଲେ ନାଗପୂଜା କରାଇ ନାହଁ । ତେଣୁ ନାଗ ଦେବତାଙ୍କର ଅଭିଶାପ ପଡିବ ନାହିଁ ତ ଆଉ କ'ଣ ହେବ?"

ଗଙ୍ଗାମ୍ମା ର ମନେ ପଡିଗଲା । ଏ ପୂଜାଟା ବଡ ପବିତ୍ର ଭାବେ କରିବା କଥା । ଶାସ୍ତ୍ରୀ ପୂଜା ବିଧି କହି ବସିଲେ – "ଯେ କୌଣସି ଷଷ୍ଠୀ ତିଥିରେ ଗାଁ ଘର ପଛ ପାଖ ବିଲରେ ଗୋଟିଏ ଛୋଟ କୂଅ ଖୋଳାଯିବ । ଏ କାମ ଘରର ପୁରୁଷ ଲୋକ କରିବେ । ସେଥିରୁ ଯେଉଁ ପାଣି ବାହାରିବ ସେଥିରେ ପଲାଉ, ଖିରୀ ଆଦି ବ୍ୟଞ୍ଜନ ରନ୍ଧା ଯିବ । ଦୁଇଜଣ ପୁରୋହିତ ଏବଂ ତାଙ୍କ ସ୍ତ୍ରୀମାନେ ତଥା ଜଣେ ବିଧବା, ଯାହାର ସ୍ତ୍ରୀ ମରିଯାଇଥିବ ସେପରି ଜଣେ ବ୍ୟକ୍ତି ଏବଂ ଜଣେ ବ୍ରହ୍ମଚାରୀ, ଏମାନଙ୍କୁ ଖାଇବାକୁ ଡାକିବ । ଗହମ ଏବଂ ଚାଉଳ ଚୂନା ମିଶାଇ ସେଥିରେ ଗୋଟିଏ ଫଣା ଟେକି ଥିବା ନାଗ ସାପର ମୂର୍ତ୍ତି ତିଆରି କରି ତାକୁ ପୂଜା କରାଯିବ । ପୂଜାପରେ ବ୍ରାହ୍ମଣ ଏବଂ ସଧବା, ବିଧବା ଏବଂ ବ୍ରହ୍ମଚାରୀଙ୍କୁ ଏକାଠି ବସାଇ ଖାଇବାକୁ ଦେବ । ଦକ୍ଷିଣା ହିସାବରେ ଟଙ୍କାଏ ଲେଖାଏଁ ଦେବ । ପୁରୁଷ ଲୋକଙ୍କୁ ଧୋତି, ସ୍ତ୍ରୀଙ୍କୁ

Digitized by srujanika@gmail.com

ଖାଦ୍ୟ ଏବଂ ବ୍ରାହ୍ମଣମାନଙ୍କୁ ଯେତି ଓ ପଇସା ଦକ୍ଷିଣା ଦେଇ ସନ୍ତୋଷ କରାଇବ । ସେଦିନ ସନ୍ଧ୍ୟାରେ ନାଗ ଦେବତାଙ୍କର ମନ୍ଦିର ଆରତି କରି ବାକି ଯେତିକି ଭାତ, ଡାଲି, ତରକାରୀ ବଳିଯିବ ସେ ସବୁ ସେ କୂଅରେ ପକାଇ ଫୋପାଡ଼ି ଦେବ । ପଛକୁ ନ ଚାହିଁ ଘରକୁ ଫେରିଯିବ । ଏପରି ପୂଜା ପାଠ କଲେ ବ୍ରଣ ଆଦି ରୋଗର ଉପଦ୍ରବ କମିଯିବ ।'' ପୁରୋହିତ ପୁଣି କହିଲେ – ''ତୁମ ସ୍ୱାମୀ ବଞ୍ଚିଥିଲା ବେଳେ ଏପରି ରୋଗ ହେବାର କେବେ ଦେଖିଛ ? ଆଜିକାଲି ତୁମେ ସବୁ ନିଜର ଧର୍ମ କର୍ମ ଭୁଲିଯିବାରୁ ଏପରି ଅଘଟଣ ହେଉଛି ।'' ଏପରି କହି ଶାସ୍ତ୍ରୀ ପୁରୋହିତ ନିଜର ହାତର ଘା'ଟାକୁ କୁଣ୍ଡାଇବାରେ ଲାଗିଲେ । ଗଙ୍ଗାମ୍ମା ମନେ ମନେ ନିଷ୍ପତ୍ତି କଲା ଯେ ଯାହା ହେଉନା କାହିଁକି ନାଗ ପୂଜାଟା ସେ ନିଷ୍ପତ୍ତି କରାଇବ ।

ପଦ୍ମାଜୋଇସ କହିଲେ – ''ମୁଁ ଏବଂ ଶାସ୍ତ୍ରୀ ଦୁହେଁଇ ତ ପୁରୋହିତ ହୋଇଯିବୁ, ମୋ ସ୍ତ୍ରୀ ଏବଂ ଝିଅ ଯିବେ । ତା ଛଡ଼ା ମୋ ପୁଅ ନରସିଂହ ବ୍ରହ୍ମଚାରୀ କାମ ଚଳାଇବ । ମୋର ବିଧବା ଭଉଣୀ ଏବଂ ମୋର ଶଳା ଯାହାର ସ୍ତ୍ରୀ ମରିଯାଇଛି ତାକୁ ଡକାଇ ପଠାଇବି । ତୁମେ ବାକି ସବୁ ଆୟୋଜନରେ ଲାଗିପଡ ।'' ଆଉ ଅନ୍ତଦିନରେ ଏ ପୂଜାଟା କରିବ ବୋଲି କହି ଗଙ୍ଗାମ୍ମା ଘରକୁ ଫେରିଲା । ଚେନ୍ନିଗରାୟଙ୍କୁ କହିଲା, ''ତୋ ସ୍ତ୍ରୀକୁ ଏ ପୂଜାର ଅଧା ଖର୍ଚ୍ଚ ଦେବାକୁ କହି ଦେ ।'' ସ୍ୱାମୀଠାରୁ ପୂଜା କଥା ଶୁଣି ନଞ୍ଜମ୍ମା ହିସାବ କରି ଦେଖିଲା ଯେ ଏଥିପାଇଁ ଅତିକମ୍‌ରେ ଶହେ ଟଙ୍କା ଲାଗିବ । ତା' ଭାଗକୁ ପଚାଶ ପଡ଼ିବ । ତା' ସାଙ୍ଗକୁ ଦୁଇ ପୁରୋହିତ ଗାଁ ବାସନ୍ଦ କଥା ଉଠାଇ ପ୍ରଥମେ ଜୋରିମାନା ଟଙ୍କା ମାଗିବେ । ଏବେ ତ ପେଟ ପୋଡ଼ିଯାଉଛି ଖାଇବାକୁ ନାହିଁ ବୋଲି, ଆଉ ଏତେ ଖର୍ଚ୍ଚ ପାଇଁ ପଇସା ଆସିବ କେଉଁଠୁ ? ତେଣୁ ସେ ନାଗ ପୂଜା କରିପାରିବ ନାହିଁ, ବୋଲି ମନା କରିଦେଲା । କିନ୍ତୁ ତାର ମନରେ ଡର ପଶିଲା ଯେ କାଳେ ନାଗ ଦେବତା ରାଗରେ ତାର କିଛି କ୍ଷତି କରିବେ ।

ଗଙ୍ଗାମ୍ମା ମନରେ ଡର ପଶିଲା ଯେ ତା'ର ଏବଂ ଅପନ୍ନାୟାର ଯଦି ଘା' ବାହାରିବ ତେବେ ସେ କ'ଣ କରିବ ? ତେଣୁ ଘାନପୁଅକୁ ଧରି ଦୂର ନଇକୂଳ ପ୍ରଦେଶ ଆଡେ ଭିକ୍ଷା ମାଗିବା ପାଇଁ ବାହାରି ପଡ଼ିଲା । ସେଠି ନାଗ ଦେବତାଙ୍କ ପୂଜା ପାଇଁ ଦାନ ଦିଅ ବୋଲି କହିବାରୁ ଚାଉଳ ପଇସା ଆଦି ଖୁବ୍ ମିଳିଲା । ମାସେ ଭିତରେ ଶହେ ଟଙ୍କା ଏକାଠି କରି ଗାଁକୁ ଫେରିଲା ଏବଂ ନାଗ ପୂଜା ଦିନ ଠିକ୍ କଲା ।

ରମନ୍ନା ଘା' ଦେହରେ ଦିନେ ମଧ୍ୟ ସ୍କୁଲ ଯିବାର ବନ୍ଦ କରି ନଥିଲା । ବର୍ତ୍ତମାନ ସେ ସପ୍ତମ ଶ୍ରେଣୀରେ ପଢୁଛି । ତାଙ୍କ ସ୍କୁଲରେ ମଧ୍ୟ ଅନେକ ପିଲାଙ୍କ ଦେହରେ ଘା' ଘଉଡ ହୋଇଥିଲା । ଏ ଚର୍ମ ରୋଗ ପାଖ ପାଖ ସବୁ ଗାଁରେ ବ୍ୟାପିଯାଇଥିଲା । ଘା' ହୋଇଥିବା ପିଲାଙ୍କୁ ମାଷ୍ଟ୍ରେ ଅଲଗା ବସାଉଥିଲେ । ପିଲାମାନଙ୍କର ଏପରି କଷ୍ଟ ଦେଖି ଦିନେ ହେଡମାଷ୍ଟ୍ର ବଡ ଡାକ୍ତରଖାନାର ଡାକ୍ତରଙ୍କୁ କହିଲେ । ଡାକ୍ତର ବାବୁ ସରକାରଙ୍କୁ ଏକଥା ଜଣାଇ ଇଞ୍ଜେକସନ ମଗାଇଲେ । ପ୍ରତି ଛାତ୍ରକୁ ଦୁଇଟା ଲେଖାଏଁ ଇଞ୍ଜେକସନ୍ ଇଗାଇ ଘା'ରେ ଲଗାଇବା ପାଇଁ ଔଷଧ ଦେବା ପରେ ଘା' ଶୀଘ୍ର ଶୁଖିଗଲା । ରମନ୍ନା ମା'କୁ କହିଲା, ''ମା' ଇଞ୍ଜେକସନ୍ ନେଲାବେଳେ ସିନା କଷ୍ଟ ହେଉଛି କିନ୍ତୁ ମୋର ଘା' ସବୁ

Digitized by srujanika@gmail.com

ଶୁଖିଗଲାଣି । ତୁମେମାନେ ମଧ୍ୟ ମୋ ସାଙ୍ଗରେ ଡାକ୍ତରଖାନାକୁ ଯାଇ ଏଇ ଇଞ୍ଜେକ୍‌ସନ୍ ନିଅ ।''

ଦିନେ ପାର୍ବତୀ ଏବଂ ବିଶ୍ୱକୁ ନେଇ ନକ୍ଷିଆ କମ୍ପନକେରେ ଗଲା । ତାଙ୍କର ବିନା ପଇସାରେ ଇଞ୍ଜେକ୍‌ସନ୍ ଦେଇ ଦେଲେ । ଚାରିଦିନ ପରେ ଆଉଥରେ ଯାଇ ଇଞ୍ଜେକ୍‌ସନ୍ ନେବାରୁ ସମସ୍ତଙ୍କର ଦେହରୁ ଘା'ସବୁ ଶୁଖିଗଲା । ରମାନ୍ନା କହିଲା, "ମା' ମାଷ୍ଟ୍ରେ କହୁଥିଲେ ଯେ ଗଲାବର୍ଷ ପେଟ ବିକଳରେ ପଦ୍ମମୂଳ ଆଦି ଚାଡ଼ି ଖାଇବାରୁ ରକ୍ତ ଦୂଷିତ ହୋଇ ଏପରି ଚର୍ମରୋଗ ହୋଇଛି । ନାଗ ଦେବତାଙ୍କର ଅଭିଶାପରୁ ଏପରି ହୋଇଛି ବୋଲି ଯାହା କହୁଛନ୍ତି ତାହା ମିଛ କଥା ।''

ଏଣେ ଗଙ୍ଗାମ୍ମା ଏବଂ ତା'ର ଦୁଇ ପୁଅ ଭକ୍ତିପୂର୍ଣ୍ଣ ଭାବରେ ପୁରୋହିତଙ୍କୁ ଅତିଥି ତର୍ଜ୍ଜା କରି ନାଗ ପୂଜା କରାଇଲେ । ଗଙ୍ଗାମ୍ମା ଯେତେବେଳେ ନକ୍ଷିଆର ଇଞ୍ଜେକ୍‌ସନ୍ ନେବା କଥା ଜାଣିଲା କହିଲା, - "ହଉ ନାଗ ଦେବତାଙ୍କୁ ଏତେ ଅସମ୍ମାନ । ଯଦି ସଢ଼ି ସଢ଼ି ତାର ପ୍ରାଣ ନଯାଇଛି ତେବେ କହିବ । ନାଗ ଦେବତାଙ୍କୁ କ'ଣ ବୋଲି ଭାବିଛ କି ?''

କିଛିଦିନ ପରେ ନକ୍ଷିଆ ଏବଂ ତା'ର ପିଲାମାନେ ସମ୍ପୂର୍ଣ୍ଣ ସୁସ୍ଥ ହୋଇଗଲେ । ତାଙ୍କୁ ଦେଖି ଗାଁର ଲୋକେ ଜଣେ ଜଣେ ହୋଇ କମ୍ପନକେରେ ଗଲେ, ଏବଂ ଇଞ୍ଜେକ୍‌ସନ୍ ନେଇ ଆସିଲେ । ଏଥର କିନ୍ତୁ ପ୍ରତି ଇଞ୍ଜେକ୍‌ସନ୍‌ର ଦାମ ପାଞ୍ଚଟଙ୍କା ହୋଇ ଯାଇଥିଲା ।

## 9

ସେ ବର୍ଷ ଆଷାଢ଼ ମାସ ପରେ ମଧ୍ୟ ବର୍ଷାର ଦେଖା ନାହିଁ । ଏବର୍ଷ ମଧ୍ୟ ଗତ ବର୍ଷ ପରି ଦୁର୍ଭିକ୍ଷ ପଡ଼ିବା ନିଶ୍ଚିତ ବୋଲି ଜଣା ଗଲା । ଗତବର୍ଷ ଯେଉଁ ଧନୀ ଲୋକଙ୍କ ପାଖରେ ଧାନ ମାଣିଆ ଥିଲା, ସେମାନଙ୍କୁ ମଧ୍ୟ ଏବର୍ଷ କଷ୍ଟରେ ଚଳିବାକୁ ହେବ । ଆକାଶରେ ମେଘ ଉଠେ । କିନ୍ତୁ ପବନରେ ଉଡ଼ାଇ ନିଏ । ପାଞ୍ଜିରେ ଭବିଷ୍ୟତ ବାଣୀ ହୋଇଥିଲା ଯେ ଏବର୍ଷ ତିନି ଭାଗ ବର୍ଷାକୁ ପାଞ୍ଚଭାଗ ପବନ ହେବ । କିନ୍ତୁ ସବୁବେଳେ ପବନ ଗୁଡ଼ାଏ ହୋଇ ମେଘ ସବୁକୁ ଉଡ଼ାଇ ନେଉଥାଏ । ବର୍ଷାର ନାମଗନ୍ଧ ମଧ୍ୟ ନଥିଲା । ଘା' ଘାଉଡ଼ ଶୁଖି ଯିବାରୁ ନକ୍ଷିଆ ଆଗଭଳି ବଗିଚାରେ ପାଣି ଦେବାରେ ଲାଗିଗଲା । କିଛିଦିନ କେବଳ ଦିନକୁ ସେରେ ଲେଖାଏଁ ମାଣ୍ଡିଆ ତୁନା ଖାଇ ତା ସାଙ୍ଗକୁ କିଛି ବାଇଗଣ ଶିମ୍ବ ଏବଂ ପରିବା ମିଶାଇ ହେବ । କେବଳ ନକ୍ଷିଆ ହିଁ ଏପରି ଯୋଜନା ଆଗରୁ କରିଥିଲା । ରାତିରେ ଚୋରି ହେବ ବୋଲି ଚରି ପିଲାଙ୍କୁ ନେଇ ବଗିଚାରେ ଜଗେ । ବର୍ଷା ଅଭାବରୁ ଏବର୍ଷ ନଡ଼ିଆ ଗଛ ମଧ୍ୟ ଖାଲି । ଏବର୍ଷ ଗଛର ମାଲିକ ମାନେ ନଡ଼ିଆ ତୋଳାଇ ତିପଟୁରରେ ବିକିଦେଲେ ।

Digitized by srujanika@gmail.com

ଦିନେ ଅଧରାତିରେ ହଠାତ୍ ବର୍ଷା ଆରମ୍ଭ ହେଲା । ଏତେ ଜୋରରେ ବର୍ଷା ହେଲା ସତେ ଯେପରି ଆକାଶଟା ଫାଟି ପଡୁଛି । ଗାଁ ଯାକ ଲୋକ ଉଠି ପଡ଼ିଲେ । ଏତେ ବର୍ଷାରେ ଟିକିଏ ପବନ ମଧ୍ୟ ବୋହୁ ନଥାଏ । ଚାରିଆଡ଼ ଅନ୍ଧାର ଦିଶୁଥାଏ । ମେଘରେ ଏତେ ପାଣି ଅଟକିଯାଏ କେଉଁଠି ଥିଲା । ସମସ୍ତେ ଟୋଟେଶ୍ୱର ମହାଦେବଙ୍କୁ କୃତଜ୍ଞତା ଜଣାଇଲେ । ଅଧଘଣ୍ଟାଏ ଭିତରେ ନଦୀ ନାଳ ପୋଖରୀ ଗାଡ଼ିଆ ସବୁ ଭରିଗଲା । ଗାଁ ଦାଣ୍ଡ ଭିତରେ ଆଣ୍ଠୁଏ ପାଣି ଚାଲିଲା । ନଣ୍ଡିଜ୍ଞାର ଡ଼ର ହେଲା ଯେ, ପରିବା ବଗିଚାରେ ପାଣି ପଶି କୁଆଡ଼େ ବୋହି ନେବ । ଖୁସି ମଧ୍ୟ ହେଲା ଯେ ବର୍ଷା ହେଲେ ଗାଁରେ ଫସଲ ଭଲ ହେବ ଏବଂ ଖାଇବାକୁ ଅନ୍ତତଃ କିଛି କିଛି ମିଳିବ । ବଗିଚାଟା ନଷ୍ଟ ହୋଇଗଲେ ଆଉଥରେ ଭଲ ହେବ । ଫସଲଟା ଉଠି ଯାଆନ୍ତା କି ଏବର୍ଷ ।

ବର୍ଷା ନ ହୋଇଥିବାରୁ ସେ ବର୍ଷ କେହି ଘର ଛପର କରିନଥିଲେ, କି ଭଙ୍ଗା ଖପର ବଦଳାଇ ନଥିଲେ । ଆଗରୁ ପବନରେ ଚାଳ ଘୁଡ଼ାକରୁ ଖଣ୍ଡେ ଖଣ୍ଡେ ଉଡ଼ି ଯାଇଥିଲା । ତେଣୁ ସେ ରାତିରେ ସମସ୍ତଙ୍କ ଘର ଭିତରେ ପାଣି ପଶିଥାଏ । ତଥାପି ମଧ୍ୟ ଲୋକଙ୍କ ମନ ଭାରି ଖୁସି । ଯାହାହେଉ କେତେ ଦିନ ପରେ ମଣିଷ ବର୍ଷା ହେବାର ଦେଖିଲା ।

ସେ ରାତି ସାରା ବର୍ଷା ହୋଇ ସକାଳ ହେବା ଆଗରୁ ବନ୍ଦ ହୋଇଗଲା । ସମସ୍ତେ ସକାଳୁ ବିଲ ବାଡ଼ି ବୁଲି ବାହାରି ପଡ଼ିଲେ । ବର୍ଷାଟା ପ୍ରକୃତରେ ଭାରି ଜୋରରେ ହୋଇଥିଲା । ନଣ୍ଡିଜ୍ଞା ବଗିଚା ଆଡ଼କୁ ଗଲାବେଳେ ବାଟରେ ମହାଦେବସ୍ୱାମୀଙ୍କୁ ଦେଖିଲା । ସେ ତ ଭାବିଥିଲା ଏ ଯୋଗୀ ଆଉ ଏ ଗାଁକୁ ଆସିବେ ନାହିଁ । ପଚାରିଲା - "ଆପଣ ଏତେ ଦିନ ଯାଏଁ ଆମକୁ ଛାଡ଼ି କୁଆଡ଼େ ଯାଇଥିଲେ ?"

"ଭଉଣୀ କାଶୀରେ ଯାଇ ରହିଥିଲି । ଏଠାକୁ ଆସିବାକୁ ଇଚ୍ଛା ହେବାରୁ ଚାଲି ଆସିଲି ।"

ମହାଦେବସ୍ୱାମୀଙ୍କୁ ନିଜ ଘରକୁ ନେଇ ବସାଇଲେ । ଚେନ୍ନିଗରାୟ ସକାଳୁ କେଉଁଆଡ଼େ ଚାଲି ଯାଇଥିଲା । ନଣ୍ଡିଜ୍ଞା ପଚାରିଲା - "ଆପଣ କେତେବେଳେ ଆସିଲେ ?" ରାତି ହୋଇ ଯାଇଥିଲା । ମୁଁ ତୁମମାନଙ୍କୁ ଡାକିବି ବୋଲି ଭାବିଲା ବେଳକୁ ବର୍ଷା ଆସିଗଲା ।"

ସେତେବେଳକୁ ରେବଣସେଠୀର ସ୍ତ୍ରୀ ସର୍ବକ୍କା ଆସି ପହଞ୍ଚିଲା । ସେ ମହାଦେବସ୍ୱାମୀଙ୍କୁ ଦେଖି ଭାବିଲା ଯେ ଏ ଯୋଗୀ ଗାଁକୁ ଫେରି ଆସିବାରୁ ଏତେ ବର୍ଷା ହେଲା । ସେ ମନ ଦୁଃଖରେ ଗାଁ ଛାଡ଼ି ଚାଲି ଯାଇଥିବାରୁ ସିନା ଲୋକେ ଏତେ କଷ୍ଟ ପାଇଲେ । ଆମ ଲୋକେ ସାଧୁସନ୍ଥଙ୍କର ପ୍ରକୃତ ସମ୍ମାନ କରି ଜାଣନ୍ତି ନାହିଁ । ନଣ୍ଡିଜ୍ଞା ପଚାରିଲା - "ଆପଣ ମନ ଦୁଃଖରେ ଗାଁ ଛାଡ଼ି ଚାଲି ଯାଇଥିଲେ ନା ?"

"ନାଇଁ ଭଉଣୀ ଯିବାକୁ ଇଚ୍ଛାହେଲା । ମୋ ଭଳି ସାଥୀ ମଧ୍ୟ ମିଳିଗଲା । ତେଣୁ କାଶୀ ବିଶ୍ୱନାଥଙ୍କ ଦର୍ଶନ ପାଇଁ ଚାଲିଗଲି । ସେଠି ଗୋଟିଏ ମଠରେ ରହିଲୁ । ଦିନ ରାତି ଭଜନ ଗାଏଁ, ଅନେକ ଦିନ ସେଠି ରହିଲା ପରେ ଏପଟ କଥା ମନେ ପଡ଼ିବାରୁ ଚାଲି ଆସିଲି ।"

Digitized by srujanika@gmail.com

"ତୁମର ମାଣ୍ଡିଆ ଚାଉଳ ଆଦି ଚୋରୀ ହୋଇ ଯାଉଛି ।" ସର୍ବଜ୍ଞା କହିଲା ।

"ହଁ ଉଡିରେ ଆସି ଦେଖୁଛି । ଦୁର୍ଭିକ୍ଷ ତ ପଡ଼ିଥିଲା, କିଏ ଚୋରେଇ ନେଇ ଖାଉଥିବ । ଯିଏ ଖାଉଛି ମଧ୍ୟ ସେଇ ମାଟି ପିଣ୍ଡକୁ ତ ଗଲା ।"

ସର୍ବଜ୍ଞା ନନ୍ଦିନୀ ପାଖରୁ ସେଦିନ ମାଣ୍ଡିଆ ବୁନ୍ଦା ଉଧାର ନେଇ ଚାଲିଗଲା । ତାଙ୍କ ଘରକୁ ମଧ୍ୟ ଭୁଣିଆ ଆସିଥିଲେ । ତା'ପରେ ମହାଦେବୟ୍ୟା କହିଲେ - "ନନ୍ଦିନୀ ମୁଁ ତୁମର ବାପାଙ୍କୁ ଦେଖିଛି ।"

"କେଉଁଠି ?" ଉତ୍ସୁକତାର ସହିତ ନନ୍ଦିନୀ ପଚାରିଲା । କଣ୍ଡୋଜୋଇସ ଚାଲିଯିବାର ପ୍ରାୟ ବାରବର୍ଷ ହେବଣି । ସେ ମନେ ମନେ ଭାବିଥିଲା ଯେ ଆଉ ଜୀବନରେ ସେ ନଥିବେ । "କେଉଁଠି ତାଙ୍କର ଦେଖାମିଳିଗଲା ।"

"ତାଙ୍କୁ କାଶୀରେ ଦେଖିଥିଲି । ମଁସେ ଖଣ୍ଡେ ଚନ୍ଦେ ମୁଁ ଦିନେ ନଦୀକୁ ଗୋଧୋଇ ଯାଇଥିଲି । ସେ ଘାଟର ନାମ ହନୁମାନ ଘାଟ । ଆମ ଆଡ଼ର ଅନେକ ବ୍ରାହ୍ମଣ ଗାଧୋଉଥିଲେ । ତା'ଛଡ଼ା ସାରା ଭାରତ ବର୍ଷର ସବୁ ପ୍ରଦେଶରୁ ମଧ୍ୟ ଲୋକେ ସେଠାକୁ ତୀର୍ଥ କରି ଆସିଥାନ୍ତି । ତୁମ ବାପା ମଧ୍ୟ ସେଠି ଘାଟରେ ବସି ଜୋରରେ ମନ୍ତ୍ର ଉଚ୍ଚାରଣ କରୁଥିଲେ । ମୁଁ ଚିହ୍ନା ଦେଇ କଥା ହେଲି । ତାର ଦୁଇଦିନ ପରେ ସେ ଆମ ମଠକୁ ଆସିଥିଲେ ଓ ଧୀରେ ପଚାରିଲେ - "ମତେ ବାନ୍ଧିବା ପାଇଁ ପୋଲିସ ୱାରେଣ୍ଟ ଆହୁରି ଜାରୀ ଅଛି କି ?" ମୁଁ ପଚାରିଲି - କେଉଁ ୱାରେଣ୍ଟ ? ସେ କହିଲେ - "ଆମ ଗାଁର ସର୍ବାଧିକାର ଶ୍ୟାମଣ୍ଣାର ମର୍ଡ଼ର କେସ୍‌ର ।" ମୁଁ ତ ସବୁ କଥା ଜାଣିନଥିଲି । ଯାହା ଜାଣିଥିଲି କହିଲି, - ଆପଣ ତ କେସ୍ ଜିତିଥିଲେ ତା'ପରେ ଗାଁ ଛାଡ଼ି କାହିଁକି ପଳାଇଲେ ବୋଲି ପଚାରିବାରୁ ସେ ତା'ର କୌଣସି ଉତ୍ତର ଦେଲେ ନାହିଁ । କିନ୍ତୁ ପରେ କହିଲେ - "ମୁଁ ଗାଁ ଛାଡ଼ିବାର ବାରବର୍ଷ ହୋଇଗଲାଣି । ଏଥର ଗାଁକୁ ଯିବି ।" ତାପରେ ଆଉ ତାଙ୍କୁ ଦେଖିନି । ସେ କେଉଁଠି ରହୁଥିଲେ ତାହା ମଧ୍ୟ କହିଲେ ନାହିଁ ।"

ନନ୍ଦିନୀ ବର୍ତ୍ତମାନ ବୁଝିଗଲା ଯେ ତା'ବାପା କାହିଁକି ଘରକୁ ଫେରୁ ନାହାନ୍ତି । ଶ୍ୟାମଣ୍ଣା କଚେରୀରୁ ଫେରି କହୁଥିଲା ଯେ ଜୋଇସ ଗାଁକୁ ଫେରିଲେ ପୋଲିସ ଧରି ଫାଶି ଦେବ । ବାରବର୍ଷ ପର୍ଯ୍ୟନ୍ତ ଏଭଳି କେସ୍ ରହେ, ତା'ପରେ ଦୋଷୀ ନମିଳିଲେ କେସ୍ ଉଠାଇ ନିଆଯାଏ । ପୁଣି ଭାବିଲା - 'ସତେ ମୋ ବାପାଙ୍କର କି ଭାଗ୍ୟ ଯେ ଘର ଦ୍ୱାର ଛାଡ଼ି କେଉଁ ଦେଶ ବିଦେଶରେ ବୁଲୁଛନ୍ତି ।' ତା'ପରେ ଚେନ୍ନିଗରାୟ ଘରକୁ ଫେରିଲେ । ମହାଦେବୟ୍ୟାଙ୍କୁ ଦେଖି ବହୁତ ଖୁସି ହେଲେ । ତାଙ୍କଠୁ ଭଜନ ଶୁଣି ଶୁଣି ତାଙ୍କର ଦିନ କଟି ଯାଉଥିଲା । ମହାଦେବୟ୍ୟାଙ୍କ ଠାରୁ କାଶୀ କଥା ଶୁଣି ଚେନ୍ନିଗରାୟ ତାଙ୍କୁ କିଛି ପଚାରିବାକୁ ବ୍ୟାକୁଳ ହୋଇ ଉଠିଲା । ପଚାରିଲା - "ତୁମେ ତ ଦେଖିଥିବ ଯେ ସେଠି ପରା ରାଜା ମହାରାଜାମାନେ ପୂଜା ପାଠ କରାଇ ବ୍ରାହ୍ମଣମାନଙ୍କୁ ଲଡୁ ଏବଂ ଗୋଟିଏ ଲେଖାଏଁ ଟଙ୍କା ଦକ୍ଷିଣା ଦିଅନ୍ତି । ଏହା କ'ଣ ସତ ?"

Digitized by srujanika@gmail.com

"ହଁ ରାଜା ମହାରାଜାଙ୍କର ଧର୍ମଶାଳା ବହୁତ ଅଛି । ଆଗନ୍ତୁକମାନଙ୍କୁ ଗୋଟିଏ ଧର୍ମଶାଳାରେ ତିନି ଦିନ ପର୍ଯ୍ୟନ୍ତ ମାଗଣାରେ ଖାଇବାକୁ ଦିଅନ୍ତି । ତା'ଛଡ଼ା ପର୍ବ ପର୍ବାଣୀରେ ମଧ୍ୟ ଭଲ ଭୋଜନ ମିଳେ । ବଡ଼ ବଡ଼ ମିଠେଇ ଏକା ଥରକେ ଖାଇ ଦେଲେ ଟଙ୍କାଏ ଲେଖାଏଁ ଦକ୍ଷିଣା ମିଳେ ।"

"ତାହାହେଲେ ସେଇଠି ଯାଇ ରହିବା କଥା ।"

"ତୁମେ କ'ଣ ଭାବୁଛ କାଶୀରେ ଭିକାରୀ ନାହାନ୍ତି । କିନ୍ତୁ ତୁମେ କାହିଁକି ସେଠାକୁ ଯିବ ? କେଉଁ ରାଜାଟା ବା' ସବୁଦିନ ତୁମକୁ ମାଗଣାରେ ଖାଇବାକୁ ଦେଇ ପାରିବ ?"

କିଛି ସମୟ ପରେ ମହାଦେବଯ୍ୟା ଯିବାକୁ ବାହାରିବାରୁ ନଞ୍ଜମ୍ମା କହିଲା - "ଆପଣଙ୍କର ତ ସବୁ ଚାଉଳ, ମାଣ୍ଡିଆ ଚୋରୀ ହୋଇଗଲା । ମୁଁ ଆଜି ପାଇଁ ଆପଣଙ୍କୁ ମାଣ୍ଡିଆ, ଚୂନା, ଡାଲି ଏବଂ ଲୁଣ, ଇଙ୍କା ଦେଉଛି ରାନ୍ଧି ପକାନ୍ତୁ । ନହେଲେ ଆଜି ଆମ ଘରେ ଖାଆନ୍ତୁ ।"

ଟିକିଏ ଭାବି କହିଲେ - "ଏଇ ଗାଁରେ ରହିବି ବୋଲି ତ ଆସିଛି । ପୁଣି ବୃତ୍ତି ଆରମ୍ଭ କରିବି । ହଉ ଆଜି ତୁମ ଘରେ ଭୋଜନ କରିବି ।" ତାପରେ ବାହାରକୁ ଚାଲିଗଲେ ।

ସେ ମନ୍ଦିରରେ ପହଞ୍ଚିବାର ଅଧଘଣ୍ଟାଏ ଭିତରେ ଗାଁର ସବୁ ବୈଶ୍ୟ ସମ୍ପ୍ରଦାୟର ଲୋକେ ଆସି ତାଙ୍କର ପାଦ ଛୁଇଁ ମୁଣ୍ଡିଆ ମାରିଲେ । ତାଙ୍କ ମଧ୍ୟରେ ରେବଣ ସେଠୀ, ଶେଠପପା, ମଲ୍ଲନପପ ସେଠୀ, ଲିଙ୍ଗଦେବ ଥିଲେ ।

ରେବଣ ସେଠୀ କହିଲା - "ଆପଣ ପ୍ରକୃତରେ ମହାନ୍ ଆତ୍ମା । ଆପଣ ମନ କଷ୍ଟରେ ଗାଁ ଛାଡ଼ି ଚାଲିଗଲେ ବୋଲି ଦୁର୍ଭିକ୍ଷ କଷ୍ଟ ପଡ଼ିଲା । କାଲି ରାତିରେ ଫେରୁ ଫେରୁ ପୁଣି ବର୍ଷା ଆସିଗଲା । ଆମେ ଆପଣଙ୍କୁ ଭୁଲ ବୁଝି ପାପ କରିଛୁ । ଆପଣ ପଛ କଥା ଭୁଲିଯାଇ ଆଜିଠାରୁ ଆମ ଗାଁରେ ଆମ ଜାତିର ଲୋକଙ୍କ ଠାରୁ ପାଳିକରି ଦାନ ନେବେ ।

ମହାଦେବଯ୍ୟା ଘଟଣାଟା ଭୁଲି ଯାଇଥିଲେ । ଏ ଲୋକମାନେ ଆସି ଏକଥା କହୁଛନ୍ତି । ମୁଁ ଗାଁ ଛାଡ଼ି ଗଲି ବୋଲି କ'ଣ ବର୍ଷା ହେଲା ନାହିଁ । ଏଗାଁରେ ତ କେବଳ ନୁହେଁ ସାରା ପ୍ରଦେଶରେ ଦୁର୍ଭିକ୍ଷ ପଡ଼ିଥିଲା । ତା'ଛଡ଼ା ସେ ଫେରିଲେ ବୋଲି ଯେ ବର୍ଷା ହେଲା ଏକଥା ତ ସତ ନୁହେଁ । ଆଖ ପାଖ ଚାରିଆଡ଼େ ତ ବର୍ଷା ହୋଇଛି । ଲୋକଙ୍କୁ କହିଲେ - "ଦେଖନ୍ତୁ ମୁଁ ମହାନ୍ ନୁହେଁ । ବର୍ଷା ହେବା ନହେବା ସେଇ ଈଶ୍ୱରଙ୍କ ଇଚ୍ଛା । ଲୋକଙ୍କର ପାପ ପୁଣ୍ୟ ଅନୁସାରେ ଫଳ ମିଳେ । ସମସ୍ତେ ନିଜ ନିଜର ଫଳ ଭୋଗନ୍ତି ।"

କିନ୍ତୁ ସେମାନେ କ'ଣ ମାନିବା ଲୋକ । ପୁଣି ହାତ ଯୋଡ଼ି କହିଲେ - "ଆପଣ ଦୟା କରି ଆମ ଗାଁର ଆମ ଜାତି ଲୋକଙ୍କ ଘରୁ ଭିକ୍ଷା ଗ୍ରହଣ କରନ୍ତୁ ।" ମହାଦେବଯ୍ୟା ନାହିଁ କେଲେନି । ସେ

Digitized by srujanika@gmail.com

ଜାଣିଥିଲେ ଯେ ଗାଁର ପ୍ରତ୍ୟେକ ଘରେ ଅଭାବ ଲାଗିଛି । ଦ୍ୱିପହର ବେଳେ କେଉଁଠୁ କେଉଁଠୁ ଭିକ୍ଷା ଆଣି ଭୋଜନ କଲେ । ସନ୍ଧ୍ୟାବେଳେ ନଞ୍ଜାର ଘରେ ଖାଇଲେ । ନଞ୍ଜାର ସାନପୁଅ ବିଶ୍ୱ ଏବେ ମହାଦେବୟାଙ୍କୁ ଆଉ ଚିହ୍ନି ପାରୁ ନାହିଁ । ପିଲାବେଳେ ସବୁଦିନ ତାଙ୍କ କୋଳରେ ବସି ତାଙ୍କ ସାଙ୍ଗରେ ଖାଉଥିଲା । ଏବେ ବଡ଼ଟିଏ ହୋଇ ସ୍କୁଲକୁ ପଢ଼ି ଗଲାଣି ।

ଗାଁ ଯାକ ବର୍ତ୍ତମାନ ଭାବିଲେ ଯେ ମହାଦେବୟା ଗାଁ ଛାଡ଼ି ଯାଇଥିବାରୁ ବର୍ଷା ହେଉନଥିଲା । ସେ ଫେରି ଆସିବାରୁ ବର୍ଷା ହେଲା । ସବୁ ଜାତିର ଲୋକେ ମନ୍ଦିର ଆସି ତାଙ୍କ ପାଦ ଛୁଇଁ ମୁଣ୍ଡିଆ ମାରିଗଲେ । ମୁଖିଆ ଶିବଗୌଡ଼ର କିନ୍ତୁ ଏକଥାରେ ବିଶ୍ୱାସ ହେଲା ନାହିଁ । ସେଦିନ ରାତିରେ, ପ୍ରାୟ ଅଧ ରାତି ବେଳକୁ ମହାଦେବୟା ମନ୍ଦିରରେ ଶୋଇଥାନ୍ତି, କିଏ ଜଣେ ଆସି ଡ଼ାକିଲା । ଉଠି ଦେଖିଲେ ଯେ ଶିବଗୌଡ଼ର ଚାକର ଗୌରବ । ସେ ମହାଦେବୟାଙ୍କ ଗୋଡ଼ତଳେ ପଡ଼ି କହିଲା - "ଆଜ୍ଞା ମତେ ଅଭିଶାପ ଦିଅନ୍ତୁ ନାହିଁ । ମୋର କିଛି ଦୋଷ ନାହିଁ ।"

"କିରେ କ'ଣ ହୋଇଛି ?"

"ଆପଣଙ୍କର ମାଣ୍ଡିଆ, ବିରି, ଚାଉଳ ଆଦି ସବୁ ଦିନେ ରାତିରେ ମନ୍ଦିର ଭିତରେ ପଶି ଆମ ସାହୁକାର ଶିବଗୌଡ଼ ନେଇଗଲେ । ସେତେବେଳେ ପ୍ଲେଗ ଲାଗି ଗାଁ ଘର ଛାଡ଼ି ସବୁ ଲୋକେ ବିଲ ମଝିରେ କୁଡ଼ିଆ କରି ରହୁଥିଲେ । ମୁଖିଆ ନିଜେ ତାଲା ଭାଙ୍ଗିଲେ । ମୁଁ ଖାଲି ମୁଣ୍ଡରେ ମୁଣ୍ଡାଇ ନେଇଗଲି । ମୁଁ ମୋ ଘରକୁ କିଛି ନେଇ ନାହିଁ ।"

"ହଉ ଯା' ତୋର କିଛି ଦୋଷ ନାହିଁ ।"

"ଆଜ୍ଞା କାହାକୁ କହିବେ ନାହିଁ, ମୁଁ ଏକଥା ଆପଣଙ୍କୁ କହିଛି ବୋଲି ।"

"ଆରେ କହିବିନି, ତୁ ଯା ।"

ମୁଖିଆ ଶିବଗୌଡ଼ର ପ୍ରକୃତି ମହାଦେବୟା ଆଗରୁ ଜାଣିଥିଲେ । ସେ ମଧ୍ୟ ଆଗରୁ ଭାବୁଥିଲେ ଯେ କିଏ ଜଣେ ବଡ଼ ଲୋକ ଛଡ଼ା ଏ ଚୋରୀରେ ଆଉ କାହାରି ହାତ ନାହିଁ ।

ତା'ପର ଦିନ ସକାଳେ ଗୋଟିଏ ବିଶେଷ ଘଟଣା ଘଟିଲା । ଆକାଶରେ ଗୋଟିଏ ବଡ଼ ଶବ୍ଦ ଶୁଭିଲା । ସମସ୍ତେ ଉପରକୁ ଚାହିଁ ଦେଖିଲେ ଯେ ଗୋଟିଏ ବିରାଟ ପକ୍ଷୀ ଆକୃତିର ଜିନିଷଟିଏ ଉଡୁଛି । କିଛି ସମୟ ପରେ ସେଥିରୁ ଧଳା ଧଳା କାଗଜ ଖସି ଆକାଶରେ ଛୋଟ ପତକାମାନ ଉଡ଼ିଲା ଭଳି ଦେଖାଗଲା । ଜାଣିବା ଶୁଣିବା ଲୋକ ବୁଝିଲେ ଯେ ଏଇଟା ଉଡ଼ାଜାହାଜ । ପଡ଼ିଥିବା କାଗଜରୁ ଗୋଟିଏ ଉଠାଇ ନଞ୍ଜା ପଢ଼ିଲା ଯେ କର୍ଣ୍ଣାଟକ ରାଜ୍ୟ ସରକାରଙ୍କ ତରଫରୁ ଏହା ଛପା ହୋଇଛି । ଲେଖା ହୋଇଛି ଯେ ବର୍ତ୍ତମାନ ଦ୍ୱିତୀୟ ବିଶ୍ୱଯୁଦ୍ଧ ଚାଲିଛି । ଜର୍ମାନୀ ରାଜ୍ୟ ୟୁରୋପରେ ଯୁଦ୍ଧ ଜିଣି ଚାଲିଛି । ଏଣେ ଜାପାନ୍ ଆସି ଭାରତକୁ ଆକ୍ରମଣ କରିବା ପାଇଁ ଚେଷ୍ଟା ଚଳାଇଛି । କର୍ଣ୍ଣାଟକ ରାଜ୍ୟରେ ମଧ୍ୟ ବୋମା ପଡ଼ିପାରେ । ତେଣୁ ବିମାନ ଉଡ଼ିଲା ସମୟରେ ଲୋକେ ଉପରକୁ ନ ଚାହିଁ

Digitized by srujanika@gmail.com

ଯିଏ ଯେଉଁଠି ଥିବ ସେଇଠି ଚଳେ ମୁଣ୍ଡ ମାଡ଼ି ଶୋଇ ପଡ଼ିବା ଉଚିତ୍ । ତା'ଛଡ଼ା ଯୁଦ୍ଧ ପାଣ୍ଠିକୁ ମଧ୍ୟ ସାହାଯ୍ୟ କର ବୋଲି ଲୋକଙ୍କୁ ଅନୁରୋଧ କରାଯାଉଥିଲା ।

ଏହାର ସପ୍ତାହେ ପରେ ଇଲାକାଦାର ସାହେବ ରାମଚନ୍ଦ୍ର ଗାଁକୁ ଆସିଲେ । ଯୁଦ୍ଧ ପାଣ୍ଠି ପାଇଁ ଟଙ୍କା ସଂଗ୍ରହ କରିବାକୁ । ଦୁର୍ଭିକ୍ଷ ଅବସ୍ଥାରେ ଗାଁ ଲୋକଙ୍କ ଏପରି କଷ୍ଟ ଦେଖି ସରକାର ଖଜଣା ଛାଡ଼ କରିଥିଲେ । ସେଇ ସରକାର ପୁଣି ଯୁଦ୍ଧ ପାଣ୍ଠି ଆଦାୟ କରିବାକୁ ଆସିଛନ୍ତି । ଇଲାକାଦାର ସାହେବ ଆସିଗଲେଣି, କ'ଣ ବା କରାଯିବ । ନରସୀ ପାଞ୍ଚଟଙ୍କା ଦେଲା । ଗାଁରୁ ମୋଟେ ଶହେ ଟଙ୍କା ଆଦାୟ ହେଲା । ଇଲାକାଦାର ଗଲାବେଳେ କହିଲେ - "ଯାହାହେଉ ତୁମ ଗାଁର ମାନ ମହତ ରହିଗଲା ।"

ତା'ପରଦିନ ସ୍କୁଲରୁ ଫେରିଲା ବେଳକୁ ରମାନ୍ନା ତା'କୁର୍ତ୍ତାର ପକେଟ୍ ଉପରେ ଇଂରେଜ ଅକ୍ଷର 'ଭି' ପରି ଖଣ୍ଡେ ରଙ୍ଗୀନ୍ କନା ସିଲେଇ କରି ଆସିଥିଲା । ଘରେ ଆସି ମା'କୁ କହିଲା - "ମା' ଆମ ହେଡ୍‌ମାଷ୍ଟ୍ରେ କହିଛନ୍ତି ପ୍ରତ୍ୟେକ ଛାତ୍ର ଦୁଇ ଅଣା ଲେଖାଏଁ ଚାନ୍ଦା ଦେବେ । ଆଜି ଆମେ ସହର ଯାକ ଧାଡ଼ିବାନ୍ଧି ବୁଲିଲୁ । ଏଇ 'ଭି' ଅକ୍ଷରର ଅର୍ଥ ହେଲା 'ବିଜୟ' ମାନେ ବ୍ରିଟିଶ ସରକାର ଏ ଯୁଦ୍ଧରେ ନିଶ୍ଚୟ ଜିତିବ ।"

ନଈଜା ବସି ଭାବୁଥିଲା ;"ଦୁଇଅଣା ପଇସା କେଉଁଠୁ ଆସିବ ?"

Digitized by srujanika@gmail.com

# ଏକାଦଶ ଅଧ୍ୟାୟ

1

କଳେଶ ବିଭା ହେବାର ଅନେକ ଦିନ ବିତି ଯାଇଥିଲେ ସୁଦ୍ଧା ତା'ର ପିଲା ଛୁଆ କିଛି ନଥିଲା । ଜେଜେମା ଅକ୍କଳା ସେଥିପାଇଁ କଳେଶର ସ୍ତ୍ରୀ କମଳୁ ଉପରେ ଅସନ୍ତୁଷ୍ଟ । ତା'ଛଡ଼ା କମଳୁର ଖଣ୍ଡାଖାଇ ପ୍ରକୃତି ଯୋଗୁଁ ମଧ୍ୟ ଘରେ କେତେବେଳେ ଶାନ୍ତି ନଥାଏ ।

ସେ ବର୍ଷ ନାଗଲାପୁରରେ ମଧ୍ୟ ଅନ୍ୟାନ୍ୟ ଗାଁ ଭଳି ମରୁଡ଼ି ଅବସ୍ଥା । କିନ୍ତୁ କଳେଶ ଭାରି ଚାଲାକଲୋକ । ଅଟିକମ୍‌ରେ ବର୍ଷକର ଧାନ, ଚାଉଳ, ମାଣ୍ଡିଆ ଇତ୍ୟାଦି ରଖିଥିଲା । ମରୁଡ଼ିର ପ୍ରଥମ ସଙ୍କେତ ଜଣା ପଡ଼ୁ ପଡ଼ୁ ଜମିରେ କନ୍ଦମୂଳ ଲଗେଇ ଦେଲା । ବର୍ଷା ନହେଲେ ମଧ୍ୟ ଖଗଡ଼େ ଖଣ୍ଡେ ଆଦାୟ ହେଲା । ଘରେ ଆଗରୁ ମାଣ୍ଡିଅ ଥିଲା । କେବଳ ଧାନ ସେତେ ବେଶି ନଥିଲା । କନ୍ଦମୂଳ ଖାଇବା ପାଇଁ ମଧ୍ୟ ସୁସ୍ୱାଦୁ । କଳେଶକୁ ଅବଶ୍ୟ ତାହା ଭଲ ଲାଗୁ ନଥିଲା । ଖାଇଲା ମାତ୍ରେ ପେଟରେ ବାୟୁ ଦୋଷ ହୋଇ ତା'ର ରୋଗାଣ୍ଡ ବାଁ ହାତ ବେଶି ଫୁଲୁଥିଲା । ଘରେ ଯେତକ ଧାନ ଥିଲା ତାକୁ କୁଟାଇ ଦେଲେ ପ୍ରାୟ ପଚାଶ, ପଞ୍ଚାବନ ସେର ଖଣ୍ଡେ ଚାଉଳ ହେବ । ପ୍ରତିଦିନ ରୁଟି ସଙ୍ଗରେ ମିଶାଇ ଖାଇଲେ ଅନେକ ଦିନ ଚାଲିଯିବ । ଜେଜେ ବୁଡ୍ଢୀ କିନ୍ତୁ କନ୍ଦମୂଳ ଖାଇ ପାର କରି ନେଉଥିଲା । ବୁଡ୍ଢୀ ଠିକ୍ କଲା, ସେ ଏବଂ ନାତୁଣୀ ବୋହୂ ଦୁଇଜଣ କନ୍ଦମୂଳ ଖାଇବେ ।

କମଳୁ କିନ୍ତୁ ଏପରି ପାତର ଅନ୍ତର ଦେଖି ଚିଡ଼ିଗଲା । ସେ ଭାବିଲା ତା'ସ୍ୱାମୀ ଭଳି ସେ ମଧ୍ୟ ଜଣେ ମଣିଷ । ସେ କାହିଁକି ଭାତ ରୁଟି ଖାଇବେ ମୁଁ କାହିଁକି କନ୍ଦମୂଳ ସିଝା ଖାଇବି ? ଏ ଘରକୁ ବୋହୂ ହୋଇ ଆସିବାର ବାର ବର୍ଷ ପରେ ସୁଦ୍ଧା ସେ ଭୁଲି ପାରି ନଥିଲା ଯେ ସେ ହାସନ୍ ସହରର ଝିଅ । ସେଇ ଜିଦ୍‌ରେ ସେ ଆଜି ପର୍ଯ୍ୟନ୍ତ ଭୁଲରେ ସୁଦ୍ଧା ମାଣ୍ଡିଆ ଚକୁଳି ଖାଇନାହିଁ । ସେ ପୁଣି କନ୍ଦମୂଳ ସିଝା ଖାଇବ ? ଦିନେ ରାନ୍ଧି ରନ୍ଧି ସାରି ଜେଜେ ବୁଡ୍ଢୀ ବଗିଚାରେ କାମ କରୁଥିବା କଳେଶ ପାଖରେ ଯାଇ ବସିଥିଲା । ମରୁଡ଼ି ହେଉ ବା ନହେଉ ପନି ପରିବା ବାଡ଼ି ବଗିଚାରେ ଲଗାଇବା ତା'ର ଅଭ୍ୟାସ । ଅଳସୁଆ ହୋଇ ବସି ରହିବାକୁ ତାକୁ ଭଲ ଲାଗେ ନାହିଁ । ମାଟି ଗୋଳି ସାରି ଗୋବର ଆଦି ମିଶାଇ ରଖିଲା । ବେଳ ବହୁତ ହୋଇଯିବାରୁ ଭାବିଲା ଖାଇସାରି ଉପରଓଳା କାମ କରିବ । ତେଣୁ ଜେଜେମାକୁ କହିଲା - "ଟାଇ ଖାଇବାକୁ ଦେବୁ ।" ବୁଡ୍ଢୀ ଘରକୁ ଗଲା ।

Digitized by srujanika@gmail.com

କଳେଶ କୁଅ ମୂଳକୁ ଯାଇ ପାଣି ମାଠିଏ କାଢ଼ି ହାତ, ମୁହଁ ଧୋଉଥିଲା । ବୁଢ଼ୀ ଯାଇ ଦେଖେ ତ, କମଳୁ ଅଳିନ୍ଦରେ ସବୁଯାକ ଭାତ ବାଢ଼ି ଖାଇ ବସିଛି । ଭାତରେ ଡାଲି ଓ ଘିଅ ଗୋଳାଇ ବଡ଼ ଆରାମରେ ଖାଉଥିଲା । ଅନ୍ନପୂର୍ଣ୍ଣା ଏକଥା ଦେଖି ଅବାକ୍ ହୋଇ ଠିଆ ହୋଇ ରହିଗଲା । କମଳୁ ମଧ୍ୟ ବୁଢ଼ୀକୁ ଦେଖି ନ ଦେଖିଲା ପରି ହୋଇ ଖାଇବାରେ ବ୍ୟସ୍ତ ରହିଲା । ଏତେବେଳକୁ କଳେଶ ମଧ୍ୟ ଘରକୁ ଆସିଲା । ଘଟଣା ଦେଖି ସବୁ ବୁଝିଗଲା । ସିଧା ବୁଢ଼ୀ ମୁଣ୍ଡକୁ ଯାଇ ପୋଡ଼ା କାଠ ଖଣ୍ଡାକୁ ଉଠାଇ କମଳୁର ପିଠି, ମୁଣ୍ଡ, ଗୋଡ଼, ହାତ ଉପରେ ମାଡ଼ ବର୍ଷାକରି ଗଲା । ବୁଢ଼ୀ ପାଟିକଲା - "ଆରେ ଝଉରେ ଝଉ, ମାରନା ତାକୁ ।" ନାତିର ହାତଟାକୁ ଧରିବାକୁ ଚେଷ୍ଟା କରୁ କରୁ ଛିଟିକି ପଡ଼ି କାନ୍ଥ ମୂଳରେ ପଡ଼ିଲା । କମଳୁ ପାଟି କରୁଥାଏ, "ତୋର ଭାତ ଖାଇଦେଲି ବୋଲି ମତେ ମାରୁଛୁ । ମାଉପକୁ ଭାତ ମୁଠେ ଦେବାକୁ ବଳ ନାହିଁ । ନିଜେ ଖାଇବୁ ଭାତ ଏବଂ ଆମକୁ ଦେବୁ କନ୍ଦମୂଳ ସିଝା । ଘାଢ ମାବୁ ନାହିଁ ତତେ ।"

କଳେଶ ମଧ୍ୟ ରାଗରେ ଅଗ୍ନିଶର୍ମା ହୋଇ ଉଠିଲା । ଏତେ ଜୋରରେ ମାଡ଼ ମାରିଲା ଯେ କାଠ ପାଳିଆ ମଧ୍ୟ ଭାଙ୍ଗିଗଲା । ତା'ହାତରେ ମଧ୍ୟ କାଠ ପଶି ରକ୍ତ ବୋହୁଥାଏ, କାଠ ପାଳିଆଟା ଭାଙ୍ଗିଦେଇ ଘରୁ ଆସି କଳେଶ କୁର୍ତ୍ତାଟା ପିନ୍ଧି ରାଗରେ ବାହାରକୁ ଚାଲିଗଲା । ଏଭଳି ଅନେକ ଥର କଳେଶ ଘରୁ ରାଗରେ ବାହାରି ଯାଏ । ଏହିପରି ସମୟରେ କୁଆଡ଼େ ଯାଏ କେହି ନ ଜାଣିଲେ ମଧ୍ୟ ଅନ୍ନପୂର୍ଣ୍ଣା ଜାଣେ । କମଳୁ ମଧ୍ୟ କିଛିଟା ଅନ୍ଦାଜ କରେ । କେତେବେଳେ ମନୁବନ୍ଧନଙ୍କ ଭାର ଦେବୀ ଘରକୁ, ବା ଦୋବରପାଲ୍ଲୀ ଗାଁର ମୁଖିଆ ଘରକୁ, କେତେବେଳେ ସେଇ ଗାଁର ପୁଲିସ୍ କନେଷ୍ଟବଲର ତୃତୀୟ ସ୍ତ୍ରୀ ପାଖକୁ ଯାଏ । ଯେଉଁଠିକି ଯାଏ ସେଠି ଖାଇ ପିଇ ଅଧ ରାତି ଯାଏଁ ରହେ ରହେ ଏବଂ ତା'ପରେ ଘରକୁ ଫେରିଆସେ ।

କଳେଶ ଚାଲିଯିବା ପରେ, କମଳୁ ସବୁ ରାଗ ବୁଢ଼ୀ ଅନ୍ନପୂର୍ଣ୍ଣା ଉପରେ ଢାଳି ଦେଲା । "ପୋଡ଼ାମୁହିଁ ବୁଢ଼ୀ, ନାତିକୁ କହି ମତେ ଏଭଳି ମାଡ଼ ଦିଆଇଲୁ ତୋ ପେଟରେ କେବେହେଲେ ଅନ୍ନ ନପଡୁ । ତୋ ଶବକୁ କୁଆ ଖାପୁରା ଖାଇବେ ।" ଅନ୍ନପୂର୍ଣ୍ଣା କିଛି କହିଲା ନାହିଁ । ଭାବିଲା ଏଘରେ ସବୁବେଳେ କିଛି ନା କିଛି ଗଣ୍ଡଗୋଳ ଲାଗି ରହିଛି । ମଣିଷ କେବେହେଲେ ଶାନ୍ତିରେ ବସି ଖାଇ ପାରିବା ନାହିଁ । କେତେବେଳେ ନାତି ଗଣ୍ଡଗୋଳ ଆରମ୍ଭ କରୁଛି ତ କେତେବେଳେ ନାତୁଣୀ ବୋହୂ । ଏପରି ମନ ଦୁଃଖ କରି ଯାଇ ବାଡ଼ିପଟ ଗଛମୂଳରେ ବସିଲା ।

ସ୍ତ୍ରୀକୁ ମାଡ଼ମାରିଲା ବେଳେ କଳେଶ ତାର ପୁଲିସ୍ ଚାକିରୀ ଅଭିଜ୍ଞତାରୁ ବାଛି ବାଛି କିଛିଟା ଗାଳି ମଧ୍ୟ ପ୍ରୟୋଗ କରେ । ମାଡ଼ର ଶବ୍ଦ ପାଖରେ ଚାରି ପାଞ୍ଚ ଘର ପର୍ଯ୍ୟନ୍ତ ଶୁଣାଗଲେ, ଗାଳିର ଶବ୍ଦ ପ୍ରାୟ ପନ୍ଦର, କୋଡ଼ିଏ ଘର ପର୍ଯ୍ୟନ୍ତ ଶୁଣାଯାଏ । କଳେଶ ଘରୁ ବାହାରି ଯିବାର ଅଳ୍ପ ସମୟ ପରେ, ସର୍ବରାକାର ଝୁମ୍ମନାଥର ବୋହୂ ଆସି ପହଞ୍ଚିଲା । ତା' ବୟସ ମଧ୍ୟ କମଳୁ ବୟସ ସଙ୍ଗେ ସମାନ । ଗତ ପାଞ୍ଚ ଛଅ ବର୍ଷ ଧରି ଏ ଦୁଇଜଣ ଭାରି ସାଙ୍ଗ ହୋଇଥାନ୍ତି । ସାଙ୍ଗ ହୋଇ ପୋଖରୀକୁ ଗାଧୋଇ

Digitized by srujanika@gmail.com

ଯାଆନ୍ତି ଏବଂ ଏକାଠି ବସି ଗପସପ କରନ୍ତି । ଶ୍ୟାମନ୍ତର ସ୍ତ୍ରୀ ମରିବାର ଦୁଇ ବର୍ଷ ହେଲାଣି । ଏବେ ବୋହୂ ଘରର ସବୁ କାମ ସମ୍ଭାଳେ । ତା'ସ୍ୱାମୀ ତା' କଥାରେ ଚଳେ । କମଳୁକୁ ମଧ୍ୟ ସବୁ ବୁଦ୍ଧି ଶିଖାଏ । ସିଏ ଘରକୁ ଆସିଲେ କିମ୍ବା କମଳୁକୁ ଯନ୍ତ୍ରଣା କହିଲେ ମଧ୍ୟ କଳେଶ ପାଟି ଫିଟାଏ ନାହିଁ । ଅକ୍କାକୁ କିନ୍ତୁ ତାର ଏଘରକୁ ଆସିବାଟା ପସନ୍ଦ ହୁଏନାହିଁ । ମନା ମଧ୍ୟ କରିଥିଲା । କିନ୍ତୁ ସେ ମାଇକିନା ମନା ମାନିଲେ ସିନା । ଘରକୁ ଆସି କମଳୁ ସାଙ୍ଗରେ କଥା ହୁଏ । ତାକୁ ତାଙ୍କ ଘରକୁ ନେଇଯାଏ । ବୁଢ଼ୀ ଭାବୁଥିଲା ଶ୍ୟାମନ୍ତ ଜାଣିଶୁଣି ସବୁ ନାଟ ଲଗାଇବା ପାଇଁ ତା' ବୋହୂକୁ ଏଘରକୁ ପଠାଉଛି । କଳେଶ ମଧ୍ୟ ସେଥିପା ଭାବୁଥିଲା, କିନ୍ତୁ ଆଉ ବିରୋଧ କରୁ ନଥିଲା । ଅକ୍କା ନାତିର ଏପ୍ରକାର ପରିବର୍ତ୍ତନ ବୁଝିପାରିନଥିଲା । ଶ୍ୟାମନ୍ତ ବୋହୂ ପୁଟୁଗୌରୀ କମଳୁ ସାଙ୍ଗରେ ମିଳାମିଶା ନକଲେ ବୋଧହୁଏ କମଳୁକୁ କାବୁ କରି ଯାଇପାରନ୍ତା ।

ସେଦିନ ପୁଟୁଗୌରୀ ଆସିଲାବେଳକୁ କମଳୁ ଶୋଇବା ଘରେ ମଶିଣା ପକାଇ ଶୋଇଥାଏ । ପୁଟୁଗୌରୀ ପାଖରେ ବସି ମାଡ଼ ବାଜି ଫାଟିଥିବା ଯାଗାରେ ଗରମ ପାଣି ସେକ ଦେଇ ସାନ୍ତ୍ୱନା ଦେଲା । ସନ୍ଧ୍ୟା ବେଳକୁ ନିଜଘରୁ ଥାଳିରେ ଭାତ, ଡାଲି, ତରକାରୀ ଇତ୍ୟାଦି ଆଣି କମଳୁକୁ ଖୁଆଇଲା । ଏହାଠାରୁ ବଳି ଅପମାନ ଏଘରର ଆଉ କ'ଣ ହୋଇପାରେ । ପାଖ ପଡ଼ିଶା ସବୁଆଡ଼େ କହି ଆସିଲା ଯେ - "କଳେଶ ତା' ସ୍ତ୍ରୀକୁ ଖାଇବାକୁ ଦେବାକୁ ମନା କରିଛି । ମୁଁ ଭାତ, ଡାଲି ନେଇ ଖୁଆଇ ଆସୁଛି ।"

ତା'ପର ଦିନ କଳେଶ ଫେରିଲା । କମଳୁ ତାକୁ ଦେଖି କିଛି ନକହି ନିଜେ ମୁହଁ ହାତ ଧୋଇ କପି ତିଆରି କରି ପିଇଲା ଏବଂ ତା'ପରେ ଯାଇ ମୁହଁ ମାଡ଼ି ଶୋଇବା ଘରେ ମଶିଣାରେ ଶୋଇଗଲା । ଗତକାଲି ମାଡ଼ ଖାଇଲା ବେଳେ କମଳୁର କାନ ଫୁଲଟା ଛିଣ୍ଡି ଖଣ୍ଡ ଖଣ୍ଡ ହୋଇ ଯାଇଥିଲା । କମଳୁ ସକାଳେ ଉଠି କହିଲା - " ବୁଢ଼ୀ ନାତୁଣୀକୁ ନେଇ ଦେବ ବୋଲି ଲୁଚାଇ ରଖିଥିବ ।" ଅକ୍କା କହୁଥିଲା - "ମୁଁ ତୋତାବୁଣୀ ନୁହେଁ ବୁଝିଲୁ ।" କମଳୁ ଉତ୍ତର ଦେଲା - "ସେଇଟା ମୋ ବିଭାଘରର କାନଫୁଲ । ସେହିପରି ଗୋଟିଏ ଗଢ଼ାଇ ଦିଅ । ନହେଲେ ବାପାକୁ ଚିଠି ଲେଖି ଜଣାଇ ଦେବି ।"

କଳେଶର ରାଗ ବହୁତ କମି ଯାଇଥାଏ । ନିଜେ ଯାଇ ଘରର ଉଳା ମଇଳା ଯେଉଁଠି ପଡ଼ିଥିଲା ସେଇଠି ଖୋଜିଲା । ସ୍ତ୍ରୀର ଅଭିଯୋଗ ଯେ ବୁଢ଼ୀଆଣୀ ନଣିମା ପାଇଁ ଲୁଚାଇ ରଖିଥିବ । ଏ କଥାରେ କଳେଶର ବିଶ୍ୱାସ ହେଉ ନଥାଏ । ସେ ଅନୁତାପ କଲା ଯେ କାନକୁ ନ ମାରି ପିଠିକୁ ମାରିବା ଉଚିତ୍ ଥିଲା । ଦୁଇମାସ ଯାଏଁ କମଳୁ ଫୁଙ୍କୁଳା କାନରେ ରହିଲା । କାନ ଖାଲି ରହିଲେ ସ୍ୱାମୀକୁ ଦୋଷ ବୋଲି କୁହନ୍ତି । ତେଣୁ କୁଆଡୁ କୁଆଡୁ ପଇସା ଯୋଗାଡ଼ କରି ଆଉ ଯୋଡ଼ାଏ କାନ ଫୁଲ ତିଆରି କରାଇ ଦେଲା ।

Digitized by srujanika@gmail.com

## 2

ଗ୍ରୀଷ୍ମ ବର୍ଷେ ହେଲା ବର୍ଷା ହୋଇ ନଥିବାରୁ ପିଇବା ପାଣିର ମଧ୍ୟ ଅଭାବ ପଡ଼ିଲା । କମଳୁ ମାଇଲିଏ ବାଟ ଚାଲି ଗୋଟିଏ ପୋଖରୀରୁ ପାଣି ଆଣେ । ସେ ପୋଖରୀଟା ମଧ୍ୟ ଶୁଖି ଯିବାରୁ ତା' ମଝିରେ ଚାରିଟା ଛୋଟ ଛୋଟ କୁଅ ଖୋଳା ଗଲା । ଦିନେ କମଳୁ ପୋଖରୀ ଆଡ଼କୁ ଗଲା । ସେଦିନ ଏକାଦଶୀ ଥିବାରୁ ଅଳ୍ପଣା ଗାଁ ମୁଣ୍ଡରେ ଥିବା ଶିବ ମନ୍ଦିରକୁ ଯାଇଥିଲା । ପୁଟୁଗୌରୀ ଦୁଇଟା ମାଠିଆ ଧରି କମଳୁ କମଳୁ ବୋଲି ଡ଼ାକି ଡ଼ାକି ତାଙ୍କ ଘରକୁ ଯାଇ ଦେଖେତ କେହି ନାହାନ୍ତି । ବାଡ଼ିପଟ ଅଗଣା ପର୍ଯ୍ୟନ୍ତ ଯାଇ ଡ଼ାକିଲା । ଫେରିଯିବାକୁ ବୁଲି ପଡ଼ିଲା ବେଳକୁ ଭିତର ପଟୁ କେହି କବାଟ ବନ୍ଦ କରିଦେବାର ଶବ୍ଦ ଶୁଣାଗଲା । ପାଟି କରି ଉଠିବା ପୂର୍ବରୁ କେହି ଜଣେ ଆସି ତାର ମୁହଁରେ ହାତ ଦେଇ ବନ୍ଦ କରି ଦେଲା ।

ଘରକୁ ଫେରିଲା ବେଳକୁ ପୁଟୁଗୌରୀର ଛାତି ପତ୍‌ଥାଏ ଉଠୁଥାଏ ଖାଲି । ସେ ଆଗରୁ ଶୁଣିଥିଲା ଯେ କଳେଣ ଏଗାଁର ସ୍ତ୍ରୀଲୋକଙ୍କ ଆଡ଼କୁ ଆଖି ଉଠାଏ ନାହିଁ, ଅନ୍ୟ ଗାଁରେ ଯାଇ ଯାହା କରୁ ପଛକେ । କିନ୍ତୁ ମୋ ପରି ଜଣେ ବ୍ରାହ୍ମଣ ଘର ବୋହୂକୁ ଘର ଭିତରେ କବାଟ ବନ୍ଦ କରି ଏପରି ଅତ୍ୟାଚାର କରିବାଟା କ'ଣ ଉଚିତ୍ ? ତା'ର ହାତ ଗୋଡ଼ କମ୍ପି ଉଠୁଥାଏ । ଦେହଟା ମଧ୍ୟ ଶୀତେଇ ଯାଉଥାଏ ।

ରାସ୍ତାରେ ଚାରି ପାଞ୍ଚ ଜଣ ପଡ଼ୋଶୀ ଲୋକ ପୁଟୁଗୌରୀକୁ ଦେଖି ପଚାରିଲେ - "ତୁମର ପାଟି ଶୁଣି ଆମେ ଦୌଡ଼ି ଆସିଲୁ । କ'ଣ ହେଲା ?" ଶ୍ୱଶୁର ଓ ସ୍ୱାମୀ ଘରେ ଥିଲେ । ଗୌରୀ କହିଲା - "ନାହିଁ ନାହିଁ କିଛି ହୋଇନି । ତାଙ୍କ ଘରେ ମୋ ଉପରେ ବିଲେଇଟା ଡେଇଁ ପଡ଼ିବାରୁ ମୁଁ ଡରି ପାଟି କରିଥିଲି ।"

"ଆମେ ତ ଭାବିଥିଲୁ କିଛି ଦୁର୍ଘଟଣ ହେଲା । କିନ୍ତୁ ବାଡ଼ିପଟ କବାଟ ତ ବନ୍ଦ ଥିଲା ?"

"ହଁ କମଳୁ ମଧ୍ୟ ଘରେ ଥିଲା ।" ତରତର ହୋଇ କହି ପକାଇଲା । ଲୋକେ ଚାଲିଗଲେ । ଠିକ୍ ସେତିକି ବେଳକୁ କମଳୁ ପୋଖରୀରୁ ପାଣି ଧରି ଫେରିଲା । ତାକୁ ଦେଖି ଗୌରୀର ଶ୍ୱଶୁର ମନରେ ଶଙ୍କା ପଶିଲା । ଘରକୁ ଯାଇ ବୋହୂକୁ ପଚାରିଲା - "ସତ ସତ କହ କ'ଣ ହେଲା ? ତୋ ଉପରେ ଯଦି କେହି ଅସଦ୍ ବ୍ୟବହାର କରିଥାଏ ତେବେ ତାକୁ ଜେଲ୍ ପଠାଇବି ।"

"ମୁଁ କମଳୁକୁ ଡାକି ଡାକି ତାଙ୍କ ବାଡ଼ିପଟ ଅଗଣା ପର୍ଯ୍ୟନ୍ତ ଗଲି, କେହି ନଥିଲେ । ଫେରିଲା ବେଳକୁ କଳେଣ ମତେ ରାଗି କରି ପଚାରିଲା - 'ତୁ ଆମ ଘରକୁ କାହିଁକି ଆସିଛୁ ?' ମୁଁ ଡରିଯାଇ ପାଟିକଲି ଏବଂ ଦୌଡ଼ିଯାଇ ବାଡ଼ିପଟ ବାଟେ ବାହାରି ଆସିଲି । ମତେ କ'ଣ ତାର ଏଭଳି ପ୍ରଶ୍ନ

Digitized by srujanika@gmail.com

ପଚାରିବାଟା ଠିକ୍ ।'' ଶ୍ୟାମନ୍ନା ଭାବିଲା ବୋହୂ କଥାରେ ବିଶ୍ୱାସ କରି ହେବନାହିଁ । କିନ୍ତୁ ବର୍ତ୍ତମାନ ଗଣ୍ଡଗୋଳ କଲେ ନିଜ ପରିବାରର ମାନ ମହତ ପଦାରେ ପଡ଼ିବ । ତାଙ୍କ ପୁଅ ନଞ୍ଜୁଣ୍ଡିଆ ମୁଣ୍ଡରେ ଏକଥା ପଶିଲା ନାହିଁ । ସ୍ତ୍ରୀର କଥା ଶୁଣି କେବଳ କହିଲା - ''ଆଚ୍ଛା ସେ ପୁଣି ଥରେ ଏକଥା କହିଲା । ତୁ ଆଉ ସେ ଦୁଆର ମାଡ଼ିବୁ ନାହିଁ ।''

ଶ୍ୟାମନ୍ନା କିନ୍ତୁ କଲ୍ଲେଶ ଘରକୁ ଗଲା । କମଳୁ ଏବଂ ବୁଢ଼ୀ ଅଲ୍ଲମ୍ମା ଥାଆନ୍ତି । କଲ୍ଲେଶ କେଉଁଆଡ଼େ ଯାଇଥାଏ । କମଳୁକୁ ଦେଖି କହିଲା - ''ମୋ ବୋହୂ ଥରେ ପାଣି ଆଣିଯିବା ପାଇଁ ଡାକି ଆସିବାରୁ ତୋ ସ୍ୱାମୀ ତାକୁ କେତେ ଖରାପ ଭାଷାରେ ଗାଳି ଦେଲା । ଇଚ୍ଛା କଲେ ମକଦ୍ଦମା କରି ଜୋରିମାନା କରାଇ ଦିଅନ୍ତି । ଏବେ କହି ରଖୁଛି ତୁ ଆଉ ଆମ ଘରକୁ ଆସିବୁ ନାହିଁ । ମୋ ବୋହୂ ମଧ୍ୟ ତୁମ ଘରକୁ ଆସିବ ନାହିଁ ।''

ଦୁଇଦିନ ପର୍ଯ୍ୟନ୍ତ କଲ୍ଲେଶ ଗାଁକୁ ଫେରିଲା ନାହିଁ । ତୃତୀୟ ଦିନ ରାତି ଅଧକୁ ଫେରିବାରୁ ବୁଢ଼ୀ ଉଠି ଭାତ ରାନ୍ଧି ବାଢ଼ିଲା । କଲ୍ଲେଶ ପଚାରିଲା, ''ଶ୍ୟାମନ୍ନା କିଛି କହୁଥିଲା କି ?'' ''ହଁ, କହିଲା ଯେ ତୁ ତା' ବୋହୂକୁ କ'ଣ ସବୁ କହି ଘରୁ ବାହାର କରିଦେଲୁ । କହିଛି ଯେ ତା' ବୋହୂ ଆଉ ଆମ ଘରକୁ ଆସିବ ନାହିଁ କି କମଳୁ ତା' ଘରକୁ ଯିବ ନାହିଁ । ଭଲ ହେଲା । ଗୋଟେ ବୋଝ ଗଲା । ଏଇ କଥା ତୁ ଯଦି ଦୁଇ ତିନି ବର୍ଷ ଆଗରୁ କହିଥାନ୍ତୁ ତେବେ ସେ ଘରକୁ ଆସି କମଳୁକୁ ଏତେ ବିଗାଡ଼ି ପାରି ନଥାନ୍ତା । କମଳୁର ମୁଣ୍ଡ ଏତେ ଖରାପ ହୁଅନ୍ତା ନାହିଁ ।''

କଲ୍ଲେଶ ମନରେ ଶାନ୍ତି ଆସିଲା ଯେ ଶ୍ୟାମନ୍ନା ବେଶି ପାଟି ତୁଣ୍ଡ କରିନାହିଁ । ସେ ବୁଝିଗଲା ଯେ ସେ ଯାହା କରିଛି ତାହା ତା'ର ସ୍ତ୍ରୀ ଏବଂ ଜେଜେମା'କୁ ଜଣା ପଡ଼ି ନାହିଁ ।

ପୁଟ୍ଟଗୌରୀ ଏବଂ କମଳୁ ଭିତରେ ସମ୍ପର୍କ ପୁରା ତୁଟିଗଲା । ଦିନେ ପୋଖରୀରୁ ପାଣି ଆଣିଲାବେଳେ ଦୁହିଁଙ୍କର ଦେଖାହେଲା । କିନ୍ତୁ କମଳୁ କଥା ଆରମ୍ଭ କଲାବେଳକୁ ଗୌରୀ ମୁହଁ ମୋଡ଼ି ଦେଇ ଚାଲିଗଲା । କମଳୁ ଜାଣିଲା ଯେ ଗୌରୀ ସାଙ୍ଗରେ ଆଉ କଥାବାର୍ତ୍ତା କରିବା ସମ୍ଭବ ହେବ ନାହିଁ । ଏତେ ସୁନ୍ଦର ସାଥୀ ସାଙ୍ଗ ହୋଇଥିଲେ, ତାହା ମଧ୍ୟ ଯିବାରୁ କମଳୁର ମନ ଆହୁରି ଖରାପ ହୋଇଗଲା । କିନ୍ତୁ ଏକଥା କାହାକୁ କହିବ ? ତା'ମନ କଥା କିଏ ବୁଝିବ ?

ସାତ ଆଠ ଦିନ ମନ କଷ୍ଟରେ ରହିଲା ପରେ ଆଉ ସମ୍ଭାଳି ନପାରି ଦିନେ ସକାଳୁ ଉଠି ସିଧା ଶ୍ୟାମନ୍ନା ଘରକୁ ଗଲା । ସେ ଜାଣିଥିଲା ଯେ ସେ ସମୟରେ ବାପ, ପୁଅ ଘରେ ନଥାନ୍ତି । ସିଧା ଭିତରକୁ ଯାଇ ପୁଟ୍ଟଗୌରୀ ଆଗରେ ଠିଆ ହୋଇ କହିଲା - ''ସିଏ କ'ଣ ଏମିତି କହିଦେଲେ ବୋଲି ଆମ ଭିତରେ ଥିବା ସମ୍ପର୍କକୁ ପୁରା ତୁଟାଇ ଦେଉଛ ।''

Digitized by srujanika@gmail.com

ପୁଟୁଗୌରୀ କ'ଣ କହିବ କିଛି ଭାବି ପାରିଲା ନାହିଁ । କିଛି ସମୟ ପରେ କହିଲା - "କହିଦେଲେ, ହୁଁ, ଯାଉ ଯାଉ ଆଉ କହନା । ମତେ ତୋର ସ୍ନେହ ଦରକାର ନାହିଁ କି ମୁଁ ଆଉ ମଧ୍ୟ ତୁମ ଘରକୁ ଯିବି ନାହିଁ । ତୁ ଏଠୁ ଚୁପଚାପ ବାହାରିଯା । ଯଦି ମୋର ଶ୍ୱଶୁର ଦେଖିବେ ତୋର ଗୋଡ଼ ଭାଙ୍ଗିଦେବେ ।"

"ହଁ, ହଁ ଯାଉଛି, ମୋ କାନ ଫୁଲ ଆଉ ପଇସା ଫେରାଇ ଦେ ।"

"କେଉଁ କାନଫୁଲ, କି ପଇସା ।" ନ ଜାଣିଲା ପରି ପୁଟୁଗୌରୀ କହିଲା ।

"ଆଲୋ ଏମିତି କ'ଣ କହୁଛୁ ? ବର୍ଷକ ଆଗରୁ ମତେ ଯେଉଁଦିନ ମୋ ସ୍ୱାମୀ ମାଡ଼ ମାରିଥିଲେ ସେଦିନ ତତେ ଦେଇନଥିଲି ? ତା'ଛଡ଼ା ସବୁଦିନ ପାଣି ଆଣି ଗଲା ବେଳେ ଘରୁ ଚାଉଳ ଚୋରାଇ ତତେ ଦେଉଛି । ସେ ସବୁର ପଇସା ପ୍ରାୟ ପନ୍ଦର ଟଙ୍କା ହେବ ।"

"କମଳୁ ମିଛ କହୁଛୁ ଯେ ତୋ ମୁହଁରେ ପୋକ ପଡ଼ିବ । ଭଲ ଦଶା ଅଛି ତ ମୋ ଶ୍ୱଶୁର ଘରକୁ ଆସିବା ପୂର୍ବରୁ ଏଠୁ ଚାଲିଯା ।"

କମଳୁ ରାଗ ଓ ଦୁଃଖରେ ଥରିବାକୁ ଲାଗିଲା । କିନ୍ତୁ କିଛି କହି ପାରୁ ନଥାଏ । "ମୋର କେତେ ପୁରୁଣା ମଜଭୁତ କାନ ଫୁଲ ଅତିକମ୍‌ରେ ଅଣାଟଙ୍କା ହେବ । ତା'ଛଡ଼ା ଆଉ ପନ୍ଦର ଟଙ୍କା । ଏ ପୋଡ଼ାମୁହିଁ ସବୁତକ ଖାଇବାକୁ ବସିଛି । ଟଙ୍କାତକ ଖାଇବ ବୋଲି ଖାଲିଟାରେ ମୋ ସ୍ୱାମୀର ବଦନାମ କରୁଛି, ଏବଂ ମୋ ସାଙ୍ଗରେ କଥାବାର୍ତ୍ତା ବନ୍ଦ କରି ଦେଇଛି । ଯଦି ଏ ରାଣ୍ଡି ପାଖରୁ ପଇସା ଆଦାୟ ନ କରିଛି ତେବେ ମୁଁ ହାସନ୍ ସନ୍ଦରର ଝିଅ ନୁହେଁ ।" ଏଭଳି ମନରେ ବିଶ୍ୱାସ କରି ଚାରିଆଡ଼କୁ ନଜର ପକାଇଲା । ପଛପଟ ବଖରାରେ ଗୋଟିଏ ବଡ଼ ପିତଳ ହଣ୍ଡା ଦେଖା ଗଲା । ସେ କ'ଣ କରୁଛି ଏବଂ ତାର ପରିଣାମ କ'ଣ ହେବ ସେଥିପାଇଁ ଭ୍ରୂକ୍ଷେପ ନକରି ସେ ଘରକୁ ଧାଇଁଗଲା । ତରତରରେ ହଣ୍ଡାରୁ ପାଣିତକ ତଳେ ଅଜାଡ଼ି ଦେଇ ହଣ୍ଡାଟାକୁ ଟେକି ଧରି ଯିବାକୁ ବାହାରିଲା । କହିଲା ଯେ, "ମୋ ଟଙ୍କାତକ ଫେରାଇ ଦେଲେ ହଣ୍ଡାଟା ଫେରାଇ ଦେବି ।" ପୁଟୁଗୌରୀ ବଡ଼ ପାଟିରେ ଚିତ୍କାର କଲା - "ଧାଇଁ ଆସ ହେ ଲୋକେ, ମୋ ଘରୁ ହଣ୍ଡା ଚୋରାଇ ନେଇ ଯାଉଛି ।" କମଳୁକୁ ମଧ୍ୟ ଧରି ରଖିବାକୁ ଚେଷ୍ଟା କଲା । କିନ୍ତୁ କମଳୁ ତାକୁ ଗୋଟାଏ ଧକ୍କାରେ ତଳେ ପକାଇ ହଣ୍ଡାଧରି ଚାଲିଗଲା ଏବଂ ମୁଣ୍ଡ ଉପରେ ହଣ୍ଡାଟା ରଖି ଦାଣ୍ଡ ବାଟେ ଧାଇଁ ଧାଇଁ ନିଜ ଘରକୁ ଚାଲିଗଲା ।

କମଳୁକୁ ମୁଣ୍ଡ ଉପରେ ହଣ୍ଡାଟା ଧରି ଦୌଡ଼ିବା ଆଠଦଶ ଜଣ ଲୋକ ଦେଖିଲେ । କିନ୍ତୁ ଘଟଣା କ'ଣ ବୁଝିପାରିନଥିଲେ । କମଳୁ ଘରକୁ ଗଲାବେଳକୁ କହେଁଣ ଘରେ ନଥିଲା । ହଣ୍ଡାଟାକୁ ରୋଷେଇ ଘର ଭିତରେ ରଖି ବାହାରୁ କବାଟ ବନ୍ଦ କରିଦେଲା । ବୁଢ଼ୀ ଅକ୍କା କିଛି ବୁଝି ପାରୁନଥାଏ । ପଚାରିଲା - "କିଲୋ, କାହା ଘର ହଣ୍ଡା ଆଣିଲୁ ?" କମଳୁ କିନ୍ତୁ କିଛି ଉତ୍ତର ଦେଲା ନାହିଁ । ମନକୁ ମନ କହୁଥାଏ, "ଚୋରଣୀ, ପୋଡ଼ାମୁହିଁ ମୋ ଟଙ୍କାତକ ଖାଇବ ବୋଲି ନାଟକ କରିଛି । ମୋ

Digitized by srujanika@gmail.com

ସ୍ୱାମୀ ରାଗୀ ମଣିଷ ବୋଲି କ'ଣ ଜାଣି ନଥିଲୁ । ସେ ଏବେ ପଚାରିଦେଲେ ଯେ କ'ଣ ପାଇଁ ଏଠିକି ଆସିଛୁ ? ସେଇ ବାହାନାରେ ମୋ ଟଙ୍କାଟକ ପକାଇ ଦେବାକୁ ବସିଛୁ । ହଣ୍ଡା ନେବାକୁ ମୋ ଘରକୁ ଆସିଲେ ଚତେ ଦେଖାଇ ଦେବି ଯେ ମୁଁ କିଏ ?'' ଅକ୍କାଙ୍କା ସବୁ ଶୁଣିପାରି ମଧ୍ୟ ବୁଝି ପାରୁନଥାଏ ଯେ ଘଟଣା ଟା' କ'ଣ ?

ଏତିକିବେଳେ ଦାଣରେ ପାଟିତୁଣ୍ଡ ଶୁଭିଲା । ଶ୍ୟାମନନ୍ଦ ବଡ଼ ପାଟିରେ କହୁଥିଲା, ''ମୋ ଘରେ ପଶି ହଣ୍ଡା ଚୋରାଇ ଆଣିଛି । ଏ ମାଇକିନାର କେଡ଼େ ସାହସ । କୋଡ଼ିଏ ତିରିଶି ଜଣ ଲୋକ ମଧ୍ୟ ଜମା ହୋଇଥିଲେ । ଶ୍ୟାମନନ୍ଦ ଆସି କଲ୍ୟେଶ ଘର ଦାଣ ଦୁଆର ପାଖରେ ଡାକିଲା । କମଳୁ କହିଲା - ''ସେ ନ ଆସିବା ଯାଏଁ ଦୁଆର ଖୋଲିବ ନାହିଁ ।'' କିନ୍ତୁ ବୁଢ଼ୀ ଅକ୍କାଙ୍କା ଯାଇ ଦୁଆର ଖୋଲିଦେଲା । ଶ୍ୟାମନନ୍ଦ କହିଲା - ''ଅକ୍କାଙ୍କା ତୁମର ବୋହୂ ଆମ ଘରୁ ହଣ୍ଡାଟା ନେଇ ଆସିଛି । ଫେରାଇ ଦିଅ ।''

''ମୋ ଟଙ୍କା ନମିଳିଲା ଯାଏ ମୁଁ ଫେରାଇବି ନାହିଁ ।'' କମଳୁ ଭିତରୁ ପାଟିକଲା । କିଛି ନ ବୁଝିପାରି ଅକ୍କାଙ୍କା କହିଲା - ''କଲ୍ୟେଶ ଏବେ ଘରେ ନାହିଁ । ଗାଁରେ କେଉଁଠି ବସିଥିବ । କିଏ ଜଣେ ଯାଇ ଡାକିଦିଅ । ସେ ନ ଆସିବା ଯାଏଁ ମୁଁ କିଛି କହି ପାରିବି ନାହିଁ ।'' ଦିଜଣ ଲୋକ ଧାଇଁ ଧାଇଁ ଗଲେ କଲ୍ୟେଶକୁ ଡାକିବା ପାଇଁ ।

କଲ୍ୟେଶ ଘରକୁ ଫେରିଲା । ବାଟରେ ନିଜ ସ୍ତ୍ରୀର କାର୍ଯ୍ୟ କଳାପ ବିଷୟରେ ସେ ଲୋକଙ୍କ ଠାରୁ ଶୁଣିଥିଲା । କିନ୍ତୁ କମଳୁ କାହିଁକି ଏପରି କଲା ନଜାଣି ଥିବାରୁ ଘରକୁ ଯାଇ ଧୀରେ ଧୀରେ ସ୍ତ୍ରୀକୁ ପଚାରିଲା - ''ଏସବୁ କ'ଣ ହେଉଛି ?''

''ସେ ଚୋରଣୀ ମୋ ଟଙ୍କା ଦେବନି ବୋଲି କହୁଛି ।''

''କି ଟଙ୍କା ? କେଉଁଠୁ ଆସିଲା ?'' ଶ୍ୟାମନନ୍ଦ ପଚାରିଲା ।

''ମୁଁ ମୋର କାନ ଫୁଲ ଦୁଇଟା ଏବଂ ପନ୍ଦର ଟଙ୍କା ତାକୁ ଦେଇଥିଲି ।''

''କାହାର କାନଫୁଲ ?''

''ମୋର ଯେଉଁ କାନଫୁଲଟା ଭାଙ୍ଗି ଯାଇଥିଲା ତାକୁ ଠିକ୍ କରିବା ପାଇଁ ନେଇ ଯାଇଥିଲା ।'' ଶ୍ୟାମନନ୍ଦ କହିଲା - ''ତୋର କାନଫୁଲ ଠିକ୍ କରାଇବା ପାଇଁ ତୁ ତୋ ସ୍ୱାମୀକୁ ନ ଦେଇ ତା'କୁ କାହିଁକି ଦେଲୁ ? ଆଉ ପନ୍ଦର ଟଙ୍କା କ'ଣ ?''

''ମୋଠୁ ଚାଉଳ ଓ କଫି ମଞ୍ଜି ମଧ୍ୟ ନେଇଛି ।''

''ଶୁଣିଲ ସମସ୍ତେ ଏ ମାଇକିନାର କଥା, କିଏ ବିଶ୍ୱାସ କରିବ ?'' ଶ୍ୟାମନନ୍ଦ ଉପସ୍ଥିତ ଜନତାକୁ ସମ୍ବୋଧନ କରି କହିଲା ।

Digitized by srujanika@gmail.com

"ତୁମେ ବିଶ୍ୱାସ କର ବା ନକର । ମୋ ପଇସା ଚକ ଖାଇବ ବୋଲି ସେ ମୋ ସ୍ୱାମୀ ନାଁରେ ମିଛ ସତ କହି ମୋ ସାଙ୍ଗରେ କଥାବାର୍ତ୍ତା ବନ୍ଦ କରି ଦେଇଛି । ମୋ ସ୍ୱାମୀ ତାକୁ ଏମିତି କ'ଣ କହିଲେ କି ? ତା'କୁ ଏଠିକି ଡ଼ାକ । ସେ ତା' ପୁଅ ମୁଣ୍ଡରେ ହାତ ଦେଇ ସମସ୍ତଙ୍କ ଆଗରେ କହୁ ମୋ ସ୍ୱାମୀ ତାକୁ କ'ଣ କହିଲେ ।"

ଶ୍ୟାମନ୍ଧ କହିଲା –"ଆଲୋ ଚୋର ତ ପୁଅ ଝିଅ ନାହିଁ, ତୁ କାହା ମୁଣ୍ଡରେ ହାତ ଦେଇ ପ୍ରମାଣ କରିବୁ ?"

କଳେଶ ଜାଣିପାରିଲା ଯେ କଥାଟାର ମୋଡ଼ ଖରାପ ଆଡ଼କୁ ଯାଉଛି । ତାର ଭୟ ମଧ୍ୟ ହେଲା ଯେ ଯଦି ପ୍ରମାଣ ଆଡ଼େ କଥା ଯାଏ ତେବେ କାଳେ ପୁଟୁଗୌରୀ ସତ କଥା କହିଦେବ । ତେଣୁ ବୁଢ଼ୀମା'କୁ ପଚାରିଲା - "ହଣ୍ଡାଟା କେଉଁଠି ଅଛି ?"

"ରୋଷେଇ ଘରେ ।"

ତୁପତୁପ ରୋଷେଇ ଘର ଭିତରକୁ ଯାଇ ହଣ୍ଡାଟା ଆଣି ଶ୍ୟାମନ୍ଧ ଆଗରେ ଥୋଇଦେଲା । କମଳୁ ପାଟି କରି କରି ଆସିଲା - "ମୋ କାନଫୁଲ ଟଙ୍କା ନଦେଲା ଯାଏଁ ହଣ୍ଡାଟା ଦିଅ ନାହିଁ ।" କଳେଶ ଧକ୍କା ମାରି ତାକୁ ହଟାଇ ଦେଲା । ଶ୍ୟାମନ୍ଧ ମଧ୍ୟ କମଳୁକୁ ଗାଳି ଦେଇ ସାରି ପାଖରେ ଠିଆ ହୋଇଥିବା ଗାଁ ଚଉକିଦାରକୁ ହଣ୍ଡାଟା ଉଠାଇ ଘରକୁ ନେଇ ଯିବାକୁ ଆଦେଶ ଦେଲା ।

ଧୀରେ ଧୀରେ ଜମା ହୋଇଥିବା ଲୋକ ମଧ୍ୟ ଚାଲିଗଲେ । କିନ୍ତୁ କେତେ ଜଣ ଏ ନାଟକର ପର ଭାଗ ଦେଖିବାକୁ ଠିଆ ହୋଇ ରହିଲେ । କଳେଶର ଘର ଆଗରେ ଠିଆ ହୋଇ ଥଟ୍ଟା ତାମସା କରିବାକୁ ଲାଗିଲେ ।

କଳେଶ କବାଟ ବନ୍ଦକରି ଘରକୁ ଆସିଲା । ଗୋଟିଏ ଠେଙ୍ଗାଧରି, ପୁଲିସ୍ ଅପରାଧୀକୁ ମାରିଲା ପରି ନିଜର ପତ୍ନୀର ଶରୀର ଉପରେ ଠେଙ୍ଗାଟାକୁ ପ୍ରହାର କରିବା ଆରମ୍ଭ କଲା । ବୁଢ଼ୀ ମଧ୍ୟ ଡ଼ରି ମନା କରିବାକୁ ପାଖକୁ ଗଲା ନାହିଁ । ସେ ଜାଣିଥିଲା ଏପରି ସମୟରେ କଳେଶ ପାଖକୁ ଗଲେ ତା'ଉପରେ ମଧ୍ୟ ଗୋଟେ ଅଧେ ମାଡ଼ ବସି ଯାଇପାରେ । ତେଣୁ ବାଡ଼ିପଟେ ଯାଇ ଚୁପ ହୋଇ ବସିଲା । ଏଣେ ପ୍ରହାର କରୁ କରୁ କଳେଶ ପଚାରିଲା - "କହ କାନଫୁଲ ନେଇ ସେ ମାଇକିନାକୁ କାହିଁକି ଦେଇଥିଲୁ ?" ପନ୍ଦର କୋଡ଼ିଏ ପାହାର ବସିଲା ପରେ କମଳୁ ମୁହଁ ଖୋଲିଲା - "ମୋ ଭଉଣୀ ରଙ୍ଗମଣିର ବିଭାଘରକୁ ତାକୁ ଦେବି ବୋଲି ନେଇ ରଖିଥିଲି ।"

"ଚାଉଳ କଣ ମଣ୍ଟି କାହିଁକି ଦେଲୁ ?"

ପୁଣି କମଳୁର ମୁହଁ ବନ୍ଦ । ଫେରେ ପନ୍ଦର ପାହାର ବସିଲା ପରେ କହିଲା - "ପାଣି ଆଣିଗଲା ବେଳେ ମାଠିଆରେ ପୁରାଇ ନେଇ ତାକୁ ଦେଇ ଆସୁଥିଲି ।"

Digitized by srujanika@gmail.com

କଳେଶ ବାଡ଼ିଟା ପକେଇଦେଲା । ରୋଷେଇ ଘରକୁ ଯାଇ ନିଆଁ ଖୁଣ୍ଟାଟାଏ ଧରି ଆସିଲା । ତାହା ଦେଖି କମଳୁ ଡ଼ରି ମାଲୋ ବାପାଲୋ ବୋଲି ରଡ଼ି ଛାଡ଼ିଲା । କଳେଶର ଦାଣ୍ଡ ଦୁଆରେ ଏପର୍ଯ୍ୟନ୍ତ ଯେଉଁ ଲୋକମାନେ ଠିଆ ହୋଇଥିଲେ ସେମାନେ ଘର ପାଖକୁ ଆସିଲେ ଘଟଣା କ'ଣ ଜାଣିବା ପାଇଁ । ଘର ଭିତରୁ କାଠ ଫାଳିଆରେ ମାଡ଼ ମାରିବା ଶବ୍ଦ, କମଳୁର ଚିତ୍କାର ଏବଂ ମଝିରେ ମଝିରେ କଳେଶର ମୁହଁରୁ ଅକଥ୍ୟ ଗାଳି ଶୁଣାଯାଉଥାଏ । ଲୋକେ କବାଟ ଭାଙ୍ଗି ଘରେ ପଶିବେ ବୋଲି ବିଚାର କଲା ବେଳକୁ ପାଖ ପଡ଼ୋଶୀ ଲୋକ ଏଇଯ୍ୟା କହି ମନା କଲେଯେ ଏଇଟା କିଛି ନୂଆ କଥା ନୁହେଁ ।

କାଠଫାଳିଆଟା ଭାଙ୍ଗିଗଲା ବୋଲି କି ନିଜେ ହାଲିଆ ହୋଇଗଲା ବୋଲି କଳେଶ ମାଡ଼ ମାରିବା ବନ୍ଦ କଲା । ଏତେ ମାଡ଼ ଖାଇଥିଲା ଯେ କମଳୁ କାନ୍ଦି ବି ପାରୁ ନଥାଏ । ଖାଲି ଇଁ ଇଁ ହୋଇ ପଡ଼ିଥାଏ । ପିଠି, ହାତ ଗୋଡ଼ ଫାଟି ରକ୍ତ ବାହାରୁ ଥାଏ । କଳେଶ କମଳୁ କାନରୁ କାନଫୁଲ ହଳକ କାଢ଼ି ନେଇ ନିଜ ବାକ୍ସରେ ରଖି ତାଲା ପକାଇ ଦେଲା । ଦାଣ୍ଡଦୁଆର ଖୋଲି ଦେଖେତ ଲୋକେ ଜମା ହୋଇଛନ୍ତି । ଚିତ୍କାର କରି କହିଲା - "କାହିଁକି ଏଠି ଠିଆ ହୋଇଛ ? ଏଠି କ'ଣ ନାଟ ତାମସା ହେଉଛି ?" ତା'ର ଏପରି ଚିତ୍କାର ଶୁଣି ଡ଼ରି ଯାଇ ଲୋକେ ଯିଏ ଯୁଆଡ଼େ ଦୌଡ଼ି ପଳାଇଲେ । କଳେଶ ମଧ୍ୟ ବାହାରକୁ ଚାଲିଗଲା ।

କମଳୁ ପ୍ରାୟ ଦୁଇ ଘଣ୍ଟା ପର୍ଯ୍ୟନ୍ତ ପଡ଼ି ରହି କାନ୍ଦିଲା । ସ୍ୱାମୀଙ୍କର ହାତଗୋଡ଼ ଭାଙ୍ଗିଯିବା ପାଇଁ ଅଭିଶାପ ଦେଇସାରି ସକାଳୁ ହୋଇଥିବା ଘଟଣା ବିଷୟରେ ଭାବିଲା । ଭାବିଲା କାନଫୁଲ, ଓ ଆଉ କିଛି ଟଙ୍କା ପଛେ ଯାଇଥାନ୍ତା କିନ୍ତୁ ତା'ଘରୁ ହଣ୍ଡାଟା ଆଣିବା ଭୁଲ ହେଲା । ଏହାଦ୍ୱାରା ତା'ର ନିଜର କାର୍ଯ୍ୟ କଳାପ ପଦାରେ ପଡ଼ିଗଲା । ତା' ଛଡ଼ା ମାଡ଼ଖାଇ ଦରମରା ମଧ୍ୟ ହୋଇଗଲା । ତେଣୁ ମନେମନେ ଠିକ୍ କଲା ଯେ ସ୍ୱାମୀକୁ ନିଶ୍ଚୟ ଏଥିପାଇଁ ଉଚିତ୍ ଶିକ୍ଷା ଦେବ । ନହେଲେ ଚୁପଚାପ ରହିଲେ ଏ ଗଣ୍ଡର ପୁଅ ପୁଣି ମାରି ମାରି ଦରମରା କରିବ ।

3

ସେଦିନ ଘରୁ ବାହାରି ଯାଇ କଳେଶ ମନ୍ଦୁବନ୍ଦନ୍ଦନ୍ଦକୀର ଦେବୀର ଘରେ ରହିଲା । ତାପରଦିନ ସକାଳୁ ଉଠି ନିଜ ଗାଁକୁ ଫେରିଲା । ଗାଁ ମୁଣ୍ଡ କିଆବଣ ବାଟେ ଫେରିଲା ବେଳେ ତା' କାନ ପାଖଦେଇ ଚାରି ପାଞ୍ଚଟା ପଥର ସାଇଁ ସାଇଁ ଚାଲିଗଲା । ହଠାତ୍ ବସିପଡ଼ି ପୁଣି ଉଠିଲା ବେଳକୁ ଆଉ ଗୋଟିଏ

Digitized by srujanika@gmail.com

ହେଲା ଆସି ପାଖରେ ପଡ଼ିଲା । "କିଏ ରେ ଶଳା, ତୁମ . . .. " ଗର୍ଜନ କରି ଉଠିଲା । ଆଉ ଢେଲା ପଡ଼ିଲା ନାହିଁ । ତାକୁ କିନ୍ତୁ ଆଗକୁ ଯିବାକୁ ଡ଼ର ଲାଗୁଥାଏ । କାଳେ ଏକାଥରକେ ଲୁଚିଥିବା ଲୋକେ ମିଶି, ଆକ୍ରମଣ କରିବେ । ଏଠୁ ଲୁଚି ଖସିଗଲେ ମଧ୍ୟ, କିଏ ପଥର ମାରୁଥିଲେ ତାହା ଜାଣି ପାରିବ ନାହିଁ । କିନ୍ତୁ ଦିନ ବେଳଟାରେ ଏତେ ଡ଼ରିଲେ କ'ଣ ହେବ ? ଏହା ଭାବି କିଆ ବୁଦା ଭିତରକୁ ଭଣ୍ଡି ଦେଖିଲା । ବୁଦା ପଛରେ ଲୁଚିଥିବା ଲୋକେ, କଳେଶ ସେମାନଙ୍କ ଆଡ଼କୁ ଗଡ଼ୁଥିବା ଦେଖି ଦୌଡ଼ି ପଳାଇଲେ ।

କଳେଶ ଚିହ୍ନିଲା ଯେ, ସେ ଲୋକମାନେ ଶ୍ୟାମନ୍ନାର ହଳିଆ ମୁଲିଆ ଏବଂ ଗାଁର ଚଉକିଦାର ଏବଂ ଆଉ ଜଣେ ଦି'ଜଣ ସେବାଯତ । କିନ୍ତୁ ଏମାନଙ୍କର ମୋ ପ୍ରତି କାହିଁକି ବା ଶତ୍ରୁତା ହେବ । କିନ୍ତୁ ପରେ ଭାବିଲା, ଗାଁର ସର୍ବସାକାର ଶ୍ୟାମନ୍ନା ଏମାନଙ୍କୁ ମତେଇ ଶିଖେଇ ଏପରି କରୁଛି । ମାଇଚିଆ କେଉଁଠିକାର, ବଳ ଯଦି ଅଛି ନିଜେ ସାମନାକୁ ଆସି ଲାଗନ୍ତା । ଏପରି ଲୁଚି ଲୁଚି ଅନ୍ୟ ଲୋକ ହାତରେ ପଥର ପିଙ୍ଗାଇବା ଛଡ଼ା ଆଉ କ'ଣ ବା କରିପାରେ । ବାପା ଗାଁରେ ଥିଲାବେଳେ ଥରେ ଏପରି ପଥର ପିଙ୍ଗାଇଥିଲା, ଲୋକ ଲଗାଇ । ସେଥିପାଇଁ ବାପା, ଦିନ ଦି'ପହରେ ଯାଇ ତା'ଘରର ଚାଳ ଖପର ଭାଙ୍ଗି ଗୁଣ୍ଡ କରି ଦେଇଥିଲେ । ବାପାଙ୍କ ପରି ଦୁଃସାହସିକ କାର୍ଯ୍ୟ କରିବାକୁ କଳେଶ ଅସମର୍ଥ ଥିଲା । ତେଣୁ ଭାବିଲା, ଏ ଶ୍ୟାମନ୍ନା ଏପରି କାହିଁକି ହେଉଛି ? କମଳୁ ତା'ଘରୁ ହଣ୍ଡା ନେଇ ଆସିଥିଲା ବୋଲି ଏପରି କରାଉଛିକି ? କିନ୍ତୁ ସେ ତ ହଣ୍ଡାଟା ଫେରାଇ ଦେଇଥିଲା । ଆଉ କ'ଣ ମୁଁ ତା ବୋହୂକୁ ଯାହା କରିଥିଲି ସେ ଜାଣି ପାରିଲା କି ? ଏକଥା ପାଇଁ ଝଗଡ଼ା କଲେ ତା'ର ନିଜ ଘରର ଲଜ୍ଜତ କେବଳ ପଦାରେ ପଡ଼ିବ ସିନା । କିନ୍ତୁ ଶ୍ୟାମନ୍ନାର ପ୍ରକୃତିଟା ଏହିପରି । ସବୁବେଳେ ଏପରି ଆମ ସାଙ୍ଗରେ ଲାଗିଥିବ । ତା' ସାଙ୍ଗରେ ବଡ଼ ଝଗଡ଼ା ନକରି କୌଶଳରେ କାମ ହାସଲ କରିବାକୁ ପଡ଼ିବ । ସେ ଯାହାହେଉ ପୁତୁରୌଟୀ ଟୀ'କୁ ସେଇଯ୍ୟା କରି ନଥିଲେ କ'ଣ ବା ଭାସି ଯାଉଥିଲା । ସେଇଟା ସେମିତି ସୁନ୍ଦର ବେଶି ମଧ୍ୟ ନୁହେଁ । କିନ୍ତୁ ବହୁତ ଦିନରୁ ଇଚ୍ଛାଟା ଥିଲା । ଏବଂ ସେଥିପାଇଁ ସୁବିଧା ମିଳିବାରୁ ଇଚ୍ଛାଟା ପୂରଣ ହୋଇଗଲା । ଏହିପରି ଭାବି ଭାବି ଘରକୁ ଫେରିଲା ବେଳକୁ ଆଉ ଗୋଟିଏ ଘଟଣା ଘଟିଥାଏ ।

ଘରେ ପଶୁ, ପଶୁ, ଅକୁଳା କହିଲେ - "ତୁ କାଲି କୁଆଡ଼େ ପଳାଇଲୁ । ତୋ ମାଇପ ଦିନଯାକ ମତେ ଧମକ ପକାଉଛି ଯେ "କୂଅକୁ ଡ଼େଇଁ ପଡ଼ିବି ଏବଂ ତୁମ ବଂଶକୁ ଫାଶି ଚଢ଼ାଇବି ।" ମୁଁ ଦିନଯାକ ରାତିଯାକ ତାକୁ ଜଗି ବସିଛି ।" କମଳୁ ଏବେ ମଧ୍ୟ ଘରଟା ଭିତରେ ମଶିଣାରେ ମୁହଁ ମାଡ଼ି ପଡ଼ିଥାଏ । କଳେଶ ଘରକୁ ଆସିବାର ଶୁଣି ଭିତରୁ ଫାଟିକଲା - "ହଁ, ହଁ ତତେ ଫାଶୀରେ ଚଢ଼ାଇଲେ ଯାଇ ମତେ ଶାନ୍ତି ମିଳିବ ।" କଳେଶ ହଠାତ୍ ଭାବିଲା ଆଉ ପାନେ ମାଡ଼ ବସାଇବ । କିନ୍ତୁ ପୁଣି ଭାବିଲା - କାଲି କେତେ ମାରିଥିଲି, ଏ ମାଇକିନା ଉପରେ ଟିକିଏ ପ୍ରଭାବ ପଡ଼ୁନାହିଁ । ସ୍ତ୍ରୀକୁ ପଚାରିଲା - "କ'ଣ କୂଅରେ ଡ଼େଇଁବାକୁ କହୁଥିଲୁ ପରା ?" କମଳୁ କହିଲା - "ହଁ ରେ ହଁ ।"

Digitized by srujanika@gmail.com

"ତା' ହେଲେ ଚାଲ", ଏହା କହି କଳେଶ କମଳୁର ହାତ ଦୁଇଟା ଧରି ଘୋଷାଡ଼ି ଘୋଷାଡ଼ି କୁଅ ମୁହଁକୁ ନେଇଗଲା । ବୁଢ଼ୀ ଅକ୍କମା କହୁଥାଏ - "କିଛି କରନାରେ, କିଛି କ'ଣ ହେଲେ ଆମେ ଦୋଷୀ ହେବା ।" କଳେଶ ତା କଥା ନଶୁଣି କୁଅ ଦଉଡ଼ିଟା ଆଣି କମଳୁର ଛାତିରେ ବାନ୍ଧିଦେଲା । ସେ ଖାଲି ଛଟପଟ ହଉଥାଏ । ତାପରେ କୁଅ ଟାନ୍ଦିନୀ ଉପରେ ଠିଆ ହୋଇ ଅରଟ କଳରେ ଦଉଡ଼ିଟା ଲଗାଇ କମଳୁକୁ ଧୀରେ ଧୀରେ କୁଅ ଭିତରକୁ ଛାଡ଼ିଲା । ସେ ଖାଲି ରଡ଼ି ଛାଡୁଥାଏ "ମରିଗଲି, ମରିଗଲି" । କଳେଶ ତାକୁ ଧୀରେ ଧୀରେ ପାଣି ସ୍ତର ପର୍ଯ୍ୟନ୍ତ ନେଇଗଲା । ତା'ପରେ ଅଣ୍ଟା ପର୍ଯ୍ୟନ୍ତ ପାଣିରେ ବୁଡ଼ାଇଲା । ଆହୁରି ପାଟି କଲାରୁ ପୂରା ପାଣି ଭିତରକୁ ଛାଡ଼ିଦେଇ ପୁଣି ଉପରକୁ ଉଠାଇ ଆଣିଲା । କମଳୁ ଡରରେ ଥରି ଯାଉଥାଏ । ତା' ଦେହରୁ ଯମଝାଳ ମଧ୍ୟ ବୋହି ଯାଉଥାଏ । ଉପରୁ କଳେଶ ପଚାରିଲା - "ଏଥର କହ ଆଉ କୁଅରେ ପଡ଼ିବୁ ?" କମଳୁ ଚିତ୍କାର କଲା - " ନା - ହିଁ - ନା - ହିଁ ।" କଳେଶ ପୁଣି ପଚାରିଲା - "ଆଉ ମତେ ତୁ ତା କରି ଗାଳି ଦେବୁ ?"

"ନାହିଁ , ନାହିଁ , ତୁମ ଗୋଡ଼ ଧରୁଛି । ମତେ ଉପରକୁ ନେଇଯାଅ ।"

କୁଅ ଟାନ୍ଦିନୀ ଉପରେ ଭରା ଦେଇ କଳେଶ ଏଥର ଦଉଡ଼ି ଟାଣିବାରେ ଲାଗିଲା । କିନ୍ତୁ ତାକୁ ମନେ ହେଲା ଯେ ଏକୁଟିଆ କୁଅ ଭିତରୁ କମଳୁକୁ ବାହାର କରିବା ତା ପକ୍ଷରେ ଅସମ୍ଭବ । ଆଉଜଣେ କାହାର ସାହାଯ୍ୟ ନେବାକୁ ପଡ଼ିବ । ଏତିକି ବେଳକୁ ଦାଣ୍ଡ ଦୁଆରେ କିଏଜଣେ ଡାକିବାର ଶୁଣାଗଲା । କଳେଶ ପାଟିକରି କହିଲା - "କେଜେମା' କବାଟ ଖୋଲ ନାହିଁ । ବାହାରୁ ପୁଣି ପାଟି ଶୁଭିଲା - "ଆରେ କଳେଶ, ହେ, ମା' କବାଟ ଖୋଲ ।"

ଅକ୍କମା ପୁଅ କଣ୍ଡୀକୋଇସ୍ଵର ସ୍ଵର ଚିହ୍ନି ପାରିଲା ଏବଂ କବାଟ ଖୋଲି ସେ ଭିତରକୁ ଆସିବା ପରେ କବାଟ ପୁଣି ବନ୍ଦ କରିଦେଲା । କଣ୍ଡୀକୋଇସ୍ଵଙ୍କର ପୂରାପୂରି ଯୋଗୀ ବେଶ । ବାଁ କାନ୍ଧରେ ଝୁଲାମୁଣି । ଲମ୍ବାଦାଢ଼ୀ, ଗେରୁଆବସ୍ତ୍ର । କୁଶଳ ସମାଚାର ପଚାରିବା ପୂର୍ବରୁ ମା' କହିଲା - "କଣ୍ଡୀ ଟିକିଏ ସେଠାକୁ ଯାଆ । ପାଟି ତୁଣ୍ଡ କରିବୁ ନାହିଁ ।" ବାପ ପୁଅ ମିଶି କମଳୁକୁ କୁଅ ଭିତରୁ ଉପରକୁ ଆଣିଲେ । କମଳୁ ଚୁପଚାପ ରହିଥାଏ । କମଳୁର କୁଅ ଭିତରେ ପଡ଼ିବା ଘଟଣା ବାହାରେ କେହି ଜାଣି ପାରିଲେ ନାହିଁ ।

ତା'ପରେ ବାପ ପୁଅ ବସି ପଚରା ପଚରି ହେଲେ । କଣ୍ଡୀକୋଇସ୍ ନିଜର କାଶୀ ଯାତ୍ରା ବିଷୟରେ ବର୍ଣ୍ଣନା କଲେ । କାହିଁକି କାଶୀ ଗଲେ ବୋଲି ପଚାରିବାରୁ କିଛି ଉତ୍ତର ମିଳିଲା ନାହିଁ । କଣ୍ଡୀକୋଇସ୍ ଗାଁକୁ ଆସିବା ପୂର୍ବରୁ ପାଖ ଆଖ ଗାଁ ଲୋକଙ୍କ ଠାରୁ ପଚାରି ବୁଝିଥିଲେ ଯେ ଶ୍ୟାମନ୍ନା ଜୀବିତ ଅଛି କି ନାହିଁ ।

ମା' ପଚାରିଲେ - "ଏତେ ଦାଢ଼ୀ କାହିଁକି ରଖିଛୁ ? କ'ଣ ସନ୍ୟାସୀ ହୋଇଗଲୁ କି ?" "ଆରେ ନାହିଁ । ଏ କଳେଶ ଗଲୁ ଭଣ୍ଡାରୀ ଡାକି ଆଣିବୁ ।"

Digitized by srujanika@gmail.com

ଭଣ୍ଡାରୀ ଆସିଲା । ଜୋଇସ୍ ପୂର୍ବ ପରି ଚୁଟି ଛଡ଼ା ଦାଢ଼ୀ ଏବଂ ମୁଣ୍ଡର ବାଳ ମଧ୍ୟ କାଟି ସଫା କରିଦେଲେ । ଏଇ ବାରବର୍ଷରେ ତାଙ୍କ ଚେହେରାରେ କୌଣସି ପରିବର୍ତ୍ତନ ଦେଖା ଯାଉନଥିଲା । ଶରୀର ହୃଷ୍ଟପୃଷ୍ଟ ଏବଂ ଗୋଲଗାଲ ହୋଇ ରହିଥାଏ । ବାଳ କଟାଇ ସାରି ସ୍ନାନ କରି ଜୋଇସ ପୂଜାପାଠ କରି ବସିଲେ । କାଶୀରେ ଥିଲାବେଳେ ଯେଉଁ ମନ୍ତ୍ର ଜପ ଶିଖିଥିଲେ ତାହା ମଧ୍ୟ ବଡ଼ ପାଟିରେ ବୋଲିବା ଆରମ୍ଭ କଲେ । ତାପରେ ଖାଇ ବସିଲା ବେଳେ ବୁଢ଼ୀମା ପଚାରିଲା - "କଣ୍ଠୀ ତୁ ଘରୁ ଯିବାର ବାରବର୍ଷ ହୋଇଗଲା ନା ? ତୀର୍ଥ ସ୍ଥାନରୁ ଫେରିଛୁ ତେଣୁ ଘରକୁ ଆସିବା ପୂର୍ବରୁ କେଉଁ ଏକ ଦେବ ମନ୍ଦିରରେ ପୂଜା ପାଠକରି ଆସିବା ଉଚିତ ହୋଇଥାଆନ୍ତା । ଆଲୋ ମା କାଶୀରୁ ଗଙ୍ଗାଜଳ ଏବଂ ଗଙ୍ଗାଦେବୀଙ୍କ ମୂର୍ତ୍ତି ଆଣିଛି । ଏହା ପାଖରେ ଥିଲେ କୌଣସି ଦେବ ମନ୍ଦିରର ପୂଜା ଦରକାର ନାହିଁ । କିନ୍ତୁ ଆମକୁ ଗଙ୍ଗାଦେବୀଙ୍କର ପୂଜା ଆରାଧନା କରି ପ୍ରତିଷ୍ଠା କରାଇବାକୁ ପଡ଼ିବ ।"

"ଏ ମହର୍ଘ କାଳରେ ଦେବୀପୂଜା ଏବଂ ପ୍ରତିଷ୍ଠା କେତେ କଷ୍ଟକର ଜାଣିଛୁ ତ ? ଗତବର୍ଷ ମରୁଡ଼ି ପଡ଼ିବାରୁ ଘରୁ ପ୍ରାୟ ଧାନ, ଚାଉଳ ଶୂନ୍ୟ କହିଲେ ଚଳେ ।" କଳେଶ କହିଲା ।

"ଆରେ ଟଙ୍କା ମୁଁ ଆଣିଛି । ତୁ ଚିନ୍ତା କରନା, କେତେ ଟଙ୍କା ଏମିତି ଖର୍ଚ୍ଚ ହେବ କି ?"

କଣ୍ଠୀଜୋଇସଙ୍କ ଗାଁକୁ ଫେରିବା ଖବର ପାଇ ଗାଁର ବହୁତ ଲୋକ ତାଙ୍କୁ ଦେଖା କରିବାକୁ ଆସିଲେ ଏବଂ ଭଲମନ୍ଦ ଖବର ପଚାରିଗଲେ । ବାରବର୍ଷ କାଶୀରେ ରହି ଆସିଥିବାରୁ ଲୋକେ ତାଙ୍କୁ ମହାପଣ୍ଡିତର ସମ୍ମାନ ଦେଲେ । ଯେଉଁମାନଙ୍କର କାଶୀ ଯାତ୍ରା ଯିବାର ଇଚ୍ଛା ପୂରଣ ହୋଇ ପାରିନଥିଲା ସେମାନେ କଣ୍ଠୀଜୋଇସଙ୍କ ପାଦ ଛୁଇଁ ମୁଣ୍ଡିଆ ମାରି ଗଲେ । ଏଭଳି ଲୋକଙ୍କୁ କଣ୍ଠୀଜୋଇସ କାଶୀରୁ ଆଣିଥିବା କାଳ ଭୈରବ ଗ୍ରନ୍ଥରୁ ଗୋଟିଏ ଲେଖାଏଁ ଦେଲେ । ଆଠଦିନ ଧରି ବଡ଼ ଧୁମ୍‌ଧାମରେ ଗଙ୍ଗାଦେବୀଙ୍କର ପୂଜା ଆରାଧନା କରାଇଲେ । ପୂଜା ଉଦ୍ୟାପନ ଦିନ ଗାଁର ସମସ୍ତଙ୍କ ଘରୁ ଲୋକ ଆସିଥିଲେ । କିନ୍ତୁ ଶ୍ୟାମନ୍ନାଙ୍କ ଘରୁ କେହି ଆସିଲେ ନାହିଁ । କଣ୍ଠୀଜୋଇସ କିଛି ଦିନ ମଧ୍ୟରେ ନିଜର ପୁରୁଣା ଚିହ୍ନା ପରିଚିତ ଲୋକଙ୍କ ସାଙ୍ଗରେ କଥା ହୋଇ ଗତ ବାରବର୍ଷ ଭିତରେ ଘଟିଥିବା ସବୁ ଘଟଣା ବିଷୟରେ ଖବର ନେଲେ । ଦିନେ ଜହ୍ନ ପକ୍ଷ ରାତିରେ ବାଡ଼ିପଟ କୂଅ ଚାନ୍ଦିନୀ ଉପରେ ବସି ସେ କଳେଶକୁ ପଚାରିଲେ - "କିରେ, ମୁଁ କ'ଣ ଶୁଣିଲି ଯେ ତୋ ସ୍ତ୍ରୀ ତୋ ଠାରୁ ମାଡ଼ ଖାଇ ରାଗରେ ନିଜର କାନଫୁଲ ଲୁଚାଇ ତା' ସାନଭଉଣୀ ପାଖକୁ ପଠାଇବା ବ୍ୟବସ୍ଥା କରୁଥିଲା । ଶ୍ୟାମନ୍ନାର ବୋହୂ ମଧ୍ୟ ଏକାମରେ ସାହାଯ୍ୟ କରିଥିଲା । ଏହା କ'ଣ ସତ ?"

"ହୁଁ ।"

"ମୁଁ ଶୁଣିଲି ତୁ କୁଆଡ଼େ ଶ୍ୟାମନ୍ନାର ବୋହୂ ସାଙ୍ଗରେ କିଛି ଅସଦ୍ ବ୍ୟବହାର କରିଛୁ ।" ନା, ନା, ମୁଁ ଖାଲି ତାକୁ ଏତିକି କହିଲି, ଯେ ଆମ ଘରକୁ ଆଉ ଯା, ଆସ କରନା ।" "ଦେଖ, ମୁଁ କାଶୀରୁ ଫେରିଛି ତା'ଛଡ଼ା ତୋର ବାପା । ମତେ ସବୁକଥା ସତ କରି କହ । କେବଳ ତାକୁ ଏଇଯା

Digitized by srujanika@gmail.com

କହିଥିଲୁ ନା, ଆଉ କିଛି କରିଥିଲୁ ?''

''ତୁମେ କ'ଣ ଶୁଣିଛ ?''

''ଗାଁ ସାରା ଅନ୍ୟ କେତେ ପ୍ରକାର କହୁଛନ୍ତି । ଲୋକେ କହୁଛନ୍ତି ଯେ ଶ୍ୟାମନ୍ନା ଲାଜରେ ଏକଥା କାହା ଆଗରେ କହି ପାରୁନି ।''

କଳେଶ ଚଳକୁ ମୁହଁ ପୋତି କହିଲା - ''ଶ୍ୟାମନ୍ନା ଜାଣିଶୁଣି ତା'ବୋହୁକୁ ଆମ ଘରକୁ ପଠାଉଥିଲା । ମୋ ସ୍ତ୍ରୀକୁ ମତାଇ ଆମ ଘରେ କଳି ଲଗାଇବା ପାଇଁ । ଏଭଳି ସ୍ତ୍ରୀ ସାଙ୍ଗରେ ଆଉ କି'ପ୍ରକାର ବ୍ୟବହାର କରାଯାଇପାରେ ।'' କଣ୍ଟୀଜୋଇସ୍ କହିଲେ - ''ଏଇଟା ତୋର କରିବା ଠିକ୍ ହୋଇନାହିଁ । ପୁରୁଷ ସବୁବେଳେ ନିଜର ପୌରୁଷ ବଜାୟ ରଖିବା ଦରକାର ଏବଂ ଏଥିପାଇଁ ବହୁତ ସଂଯମ ଆବଶ୍ୟକ । ଯେଉଁଦିନ ଏ ସଂଯମର ଶିଥିଳତା ଦେଖାଦିଏ ସେଦିନ ସେ ପୁରୁଷର ପରାଜୟ ଘଟେ ।'' କଳେଶକୁ ବହୁତ ଲଜ୍ଜାବୋଧ ହେଲା, କିନ୍ତୁ ନିଜର ସମର୍ଥନ ପାଇଁ କହିଲା, ''ଯେଉଁଦିନ ତୁମେ ଗାଁକୁ ଫେରିଲ ସେଦିନ ସକାଳୁ ମୁଁ ମଗୁବନହଲ୍ଲୀରୁ ଫେରୁଥିଲି । ରାସ୍ତାରେ ଶ୍ୟାମନ୍ନା ତାର ଚାକର ହଳିଆକୁ ପଠାଇ ମୋ ଉପରକୁ ପଥର ଫିଙ୍ଗାଇଥିଲେ । ଏଇଟା କ'ଣ ତାର କରିବା ଠିକ୍ ହେଲା ?''

''ଆରେ ସେ ହାରମଜାଦାର ଏଡ଼େ ସାହସ । ଆମ ଘରକୁ ପଥର ଫିଙ୍ଗାଇ ଥିଲା ବୋଲି ଆଜି ଯାଏଁ ଏ ନାଟ ଲାଗିଛି । ସେ କ'ଣ ଭାବିଛି ମୁଁ ମରିଗଲିଣି । ରହ ମୁଁ ତାକୁ ଦେଖିନେବି ।''

କଣ୍ଟୀଜୋଇସ୍ ମନେମନେ କ'ଣ ସବୁ ଠିକ୍ କରିନେଲେ, କିନ୍ତୁ କ'ଣ କରିବେ ସେ କଥା କହିଲେ ନାହିଁ । ଦୁଇଦିନ ପରେ ଶୁକ୍ରବାର ପଡ଼ିଲା । ସେଦିନ ନାଗଲାପୁରର ହାଟପାଳି । ଏଇ ହାଟକୁ ଗାଁର ସବୁଲୋକ ଯାଆନ୍ତି । ସେଦିନ ଦିପହର ତିନିଟା ବେଳକୁ ଶ୍ୟାମନ୍ନା ଘରୁ ବାହାରି ହାଟ ଆଡ଼କୁ ବାହାରିଥାନ୍ତି । ସଫା ଧୋତି, ସଫା ଇସ୍ତ୍ରୀକରା କୁର୍ତ୍ତା ଏବଂ କାନ୍ଧରେ ରଙ୍ଗୀନ୍ ଗାମୁଛା ପକାଇଥାନ୍ତି । ମୁଣ୍ଡରେ ତିଳକ ଲଗାଇ ବଡ଼ ଗର୍ବରେ ଗାଁ ଦାଣ୍ଡରେ ସର୍ବରାକାର ମହାଶୟ ଚାଲୁଥାନ୍ତି । ଏତିକି ବେଳକୁ ହଠାତ୍ କେଉଁଆଡୁ କଣ୍ଟୀଜୋଇସ୍ ଆସି ଶ୍ୟାମନ୍ନାର ସାମ୍ନାରେ ଠିଆ ହୋଇଗଲେ । କଣ୍ଟୀଜୋଇସ୍ ଗେରୁଆ ଧୋତି, ଗେରୁଆ ପଞ୍ଜାବୀ ପିନ୍ଧି ବେକରେ ରୁଦ୍ରାକ୍ଷ ମାଳା ପକାଇଥାନ୍ତି । ତାଙ୍କ ହାତରେ ଗୋଟିଏ ମାଠିଆ ଥିଲା । ଏବଂ ସେଥିରୁ ବାହାରୁଥିବା ଦୁର୍ଗନ୍ଧରେ ନାକ ଫାଟି ପଡୁଥାଏ । ''ହଇରେ ମାଇଚିଆ ହ୍ୟାପ, ମୋ ପୁଅ ଉପରକୁ ପଥର ଫିଙ୍ଗିବାକୁ ଲୋକ ପଠାଇଥିଲୁ ।'' ଏକଥା କହି କଣ୍ଟୀଜୋଇସ୍ ମାଠିଆଟା ଶ୍ୟାମନ୍ନାର ମୁଣ୍ଡ ଉପରେ ଓଲଟାଇ ଦେଲେ । ମାଠିଆରେ ଥିବା ବିଷ୍ଠା ଶ୍ୟାମନ୍ନାର ମୁଣ୍ଡରୁ ବୋହି ମୁହଁ ଦେଇ ଲୁଗାପଟା ସବୁ ବୋଳି ହୋଇଗଲା । ଆଖପାଖ ଲୋକ ଗନ୍ଧରେ ପାଖରେ ପଶି ପାରିଲେ ନାହିଁ । କଣ୍ଟୀଜୋଇସ୍ ଏତେ ବିଷ୍ଠା କିପରି ଏକାଠି କଲେ, ଏବଂ ତାକୁ କିପରି ଲୁଚାଇ ରଖିଥିଲେ, ସେ କଥା କାଶୀ ବିଶ୍ୱନାଥଙ୍କୁ ହିଁ ଜଣା, ଯାହାଙ୍କୁ ସେ ବାରବର୍ଷ କାଳ ପୂଜା କରିଥିଲେ । ଶ୍ୟାମନ୍ନାକୁ ବିଷ୍ଠାରେ ଅଭିଷେକ କରାଇ କଣ୍ଟୀଜୋଇସ୍ ହଠାତ୍ କୁଆଡ଼େ ଅନ୍ତର୍ଦ୍ଧାନ ହୋଇଗଲେ ।

Digitized by srujanika@gmail.com

ଏ ଘଟଣା ପରେ ମାସେ ପର୍ଯ୍ୟନ୍ତ କଣ୍ଡାକୋଇସ୍ ଗାଁକୁ ଫେରିଲେ ନାହିଁ । କେଉଁ ଗାଁରେ ରହିଲେ କେହି ଜାଣି ପାରିଲେ ନାହିଁ । କଳେଶ ପ୍ରତି ତିନି ଚାରିଦିନ ପରେ ଥରେ ଲେଖାଏଁ କେଉଁ ଆଡ଼େ ଯାଇ ଆସେ । ଲୋକେ ସନ୍ଦେହ କରୁଥିଲେ ଯେ କଳେଶ ତା ବାପା ପାଖକୁ ଯାଇ ସବୁ ହାଲଚାଲ କହି ଆସୁଛି । କଳେଶ ସବୁବେଳେ ରାତିରେ ଯାଇ ସକାଳେ ଫେରୁଥିବାରୁ ଭୟରେ ତାର ପିଛା କରିବାକୁ କେହି ମଧ୍ୟ ସାହସ କରୁନଥିଲେ । ତା'ଛଡ଼ା କଣ୍ଡାକୋଇସ୍ କେଉଁଠି ଲୁଚିକରି ଅଛନ୍ତି ସେ କଥା ଜାଣି କାହାର ବା କ'ଣ ଲାଭ ହେବ ? ବାରବର୍ଷ ହେଲା ଗାଁ ଛାଡ଼ି ଯାଇଥିଲେ ଯେ ଲୋକେ ତାଙ୍କୁ ଭୁଲି ଯିବାକୁ ବସିଥିଲେ । ଏବେ ଫେରୁ ଫେରୁ ଏପରି ଦୁଃସାହସିକ କାମ କରି ଦେଖାଇଲେ ଯାହା କେହି ଆଜି ପର୍ଯ୍ୟନ୍ତ କରିନଥିଲେ ।

ସେଦିନ ମୁଣ୍ଡ ଉପରେ ମଇଳା ପଡ଼ିବା ସଙ୍ଗେ ସଙ୍ଗେ ଶ୍ୟାମନ୍ନ ଘରକୁ ଦୌଡ଼ିଲେ । ଘରେ ପହଞ୍ଚି ସଙ୍ଗେ ସଙ୍ଗେ ଗାଧୁଆ ଘରେ ପଶି ଖାର୍ ସାବୁନ୍ ଲଗାଇ ଦେହକୁ ନଡ଼ିଆ କତାରେ ଘଷି ଘଷି ସଫାକଲେ । ଆଜିର ଘଟଣା ଅତି ବେଶି ହେଲେ ପନ୍ଦର କୋଡ଼ିଏ ଲୋକ ଦେଖିଥିବେ । ଘର ପାଖକୁ ଦୌଡ଼ି ଆସିଲା ବେଳେ ଆଉ କେତେ ଜଣ ମଧ୍ୟ ଦେଖିଥିବେ । କିନ୍ତୁ ଗାଁ'ଟାଯାକ ଯାହାକୁ ପଚାରିବ ସିଏ କହିବ ଯେ ସେ ଶ୍ୟାମନ୍ନର ମୁଣ୍ଡ ଉପରେ ବିଷ୍ଠା ପଡିବାଟା ନିଜ ଆଖିରେ ଦେଖିଛି । ଖାଲି ସେତିକି ନୁହେଁ କିଏ କେତେପ୍ରକାର ରଙ୍ଗ ବିରଙ୍ଗ କରି ସେ ଦୃଶ୍ୟର ବର୍ଣ୍ଣନା ମଧ୍ୟ କରୁଥାନ୍ତି ।

କଣ୍ଡାକୋଇସ୍ ନା'ରେ କ'ଣ ଆଉ ଗୋଟିଏ ମକଦ୍ଦମା କରାଯାଇ ପାରନ୍ତା ନାହିଁ ? ଶ୍ୟାମନ୍ନ ଏକଥା ଭାବିଲା । କିନ୍ତୁ ସେ ଚେଷ୍ଟା କରି ଘଟଣାର ପ୍ରତ୍ୟକ୍ଷଦର୍ଶୀ ଜଣେ ହେଲେ ଲୋକ ମନେ ପକାଇ ପାରିଲା ନାହିଁ । ତା'ଛଡ଼ା ସେ ଘଟଣାଟା ମନେ ପଡ଼ିଲେ ମଧ୍ୟ ମନରେ ବିକାର ଆସୁଛି । ତେଣୁ ସେ ବିଷୟରେ କାହା ସାଙ୍ଗରେ କଥା ମଧ୍ୟ ହେବ ନଥିଲା । ଭାବିଲା ଘଟଣାଟାକୁ ଆଉ ଖୋଳି ତାଡ଼ି କୋର୍ଟ କଚେରୀକୁ ଯିବାଟା ମଧ୍ୟ ସୁନ୍ଦର ହେବ ନାହିଁ । ତାର ମନେ ପଡ଼ିଲା ଯେ ଆଗରୁ ମଧ୍ୟ ଥରେ ସେ କଣ୍ଡାକୋଇସ୍ ନାଁ ରେ ମକଦ୍ଦମା କରି ଜିଣି ସୁଦ୍ଧା ନରସାପୁରଠାରେ ତା'ହାତରୁ ବହୁତ ମାଡ଼ ଖାଇବାକୁ ପଡ଼ିଥିଲା । "ଏ ରାକ୍ଷସଟା ମରିଗଲାଣି ବୋଲି ଭାବି ସିନା ଆମେ ଖୁସି ହେଉଥିଲୁ । କଳେଶର ସ୍ତ୍ରୀ ସାଙ୍ଗରେ ବୋହୁଟାକୁ ସାଙ୍ଗ ହେବାକୁ ଛାଡ଼ି ସିନା ଆଜି ଏ ଅପମାନ ସହିବାକୁ ପଡୁଛି । ଏ ବୁଢ଼ା ବୟସରେ ସେ କଚେରୀ ମାମଲା କିଏ କରୁଛି ?" କିନ୍ତୁ ଆଉ ଗୋଟିଏ ବିଷୟ ଭାବି ତା'ର ମନଟା ଟିକିଏ ଖରାପ ହେଲା । "ଏ କଳେଶ ମଧ୍ୟ ତା' ବାପ ପରି ବାଘ ପ୍ରକୃତିର ହୋଇଛି । ବହୁତ ହଇରାଣ କଲାଣି । ଆଉ ମୋର ପୁଅ ନାଗୁଡ଼ିଟା ଏଡ଼ିକି ମାଇଚିଆ ହୋଇଛି, କାହା ବଳରେ ଆଉ ମୁଁ ମକଦ୍ଦମା ଇତ୍ୟାଦି କରିବି ?"

Digitized by srujanika@gmail.com

ମାସେ ପରେ କଣ୍ଟାଜୋଳସ ଗାଁକୁ ଫେରିଲେ । ସେ ଘଟଣା ବିଷୟରେ ତାଙ୍କୁ କେହି କିଛି ପଚାରିଲେ ନାହିଁ କି ସେ ମଧ୍ୟ କାହାକୁ କିଛି କହିଲେ ନାହିଁ । ଗାଁ ଦାଣ୍ଡରେ ଗେରୁଆ ବସ୍ତ୍ର ପିନ୍ଧି, କପାଳରେ ଚିତ୍ରକ ଲଗାଇ ଯେତେବେଳେ ଯାଆନ୍ତି, ଗାଁ ଲୋକେ ତାଙ୍କୁ ଦେଖି ଭାରି ଖାତିରି କରନ୍ତି ଏବଂ ଆଡ଼େଇ ହୋଇ ଯାଆନ୍ତି ।

Digitized by srujanika@gmail.com

# ଦ୍ୱାଦଶ ଅଧ୍ୟାୟ

1

ସେ ବର୍ଷ ମଧ୍ୟ ବର୍ଷା ଅଳ୍ପ ହେଲା । ତଥାପି ମାଣ୍ଡିଆ ଫସଲଟା ହୋଇଥିଲା । ସେତେବେଳକୁ ୟୁରୋପରେ ଜର୍ମାନୀ ଓ ବ୍ରିଟେନ ମଧ୍ୟରେ ଘମାଘୋଟ ଯୁଦ୍ଧ ଚାଲିଥାଏ । ଏପଟେ ବର୍ମାରେ ମଧ୍ୟ ଯୁଦ୍ଧ ଆରମ୍ଭ ହୋଇଥାଏ । ଚାଉଳ, ଗହମ ଆଦି ସବୁ ସରକାର କିଣି ନେଉଥାନ୍ତି । ଦିନେ ସେ ଅଞ୍ଚଳର ଇଲାକାଦାର ରାମଚନ୍ଦ୍ର ଗାଁକୁ ଆସିଲେ । ସେ ନଣ୍ଡିକାକୁ ଏ ନୂତନ ବ୍ୟବସ୍ଥା ସମ୍ବନ୍ଧରେ ସବୁ ବୁଝାଇ ଦେଲେ ଯେ ପ୍ରତି ପରିବାର ଠାରୁ ଟଙ୍କା ବଳକା ଧାନ ଚାଉଳ, ମୁଗ, ବିରି ଆଦି ସରକାର କିଣିବେ । ଏଥିପାଇଁ ଗାଁର ସର୍ବରାକାର ହିଁ ହିସାବ କିତାବ ରଖିବେ । ବର୍ଷ ଆରମ୍ଭର ହିସାବ ଲେଖିଲା ବେଳେ ପ୍ରତି ପରିବାରର ଜମି ଅନୁସାରେ କେତେ ଫସଲ ଆଦାୟ ହେବ ଅନ୍ଦାଜିରେ ଲେଖିବାକୁ ପଡ଼ିବ ଏବଂ ସେଇ ଅନୁସାରେ ଫସଲ ଉଠିଲା ବେଳକୁ ଘର ଖର୍ଚ୍ଚ ଓ ବିହନ ଛାଡ଼ି ବାକି ଧାନ, ଚାଉଳ, ମାଣ୍ଡିଆ ସରକାରୀ ଦରରେ ସରକାର ଆସି କିଣିନେବେ । ଏହାର ଅର୍ଥ ହେଲା ଯେ ପ୍ରତି ଅଞ୍ଚଳର ସର୍ବରାକାରମାନଙ୍କୁ ଏକ ନୂଆ ଅଧିକାର ମିଳିଗଲା ।

ନଣ୍ଡିକା ଦିନେ କୁରୁବରହେଲଙ୍ଗୀ ଯାଇ ଏ ନୂଆ କଥା ଗୁଣ୍ଡଗୌଡ଼ଙ୍କୁ କହିଲା । ସେ ରାଗିଯାଇ କହିଲେ - "ପରିଶ୍ରମ କରିବୁ ଆମେ କିନ୍ତୁ ଫସଲ ନେବେ ସରକାର ?" "ସରକାର ନିୟମ କରିଛନ୍ତି, ପୁଲିସ୍ ସାଙ୍ଗରେ ଆଣି ଧାନ, ମାଣ୍ଡିଆ କିଣିନେବେ ।"

ଆଉ କାହାର ଅସୁବିଧା ହେଉ କି ନହେଉ, କୁରୁବରହେଲଙ୍ଗୀର ଲୋକଙ୍କର କ୍ଷତି ନହେଉ ବୋଲି ନଣ୍ଡିକା ଚାହୁଁଥିଲା । କାରଣ ସେ ଗାଁ ଲୋକଙ୍କର କ୍ଷତି ହେଲେ ଗୁଣ୍ଡଗୌଡ଼ଙ୍କର ସମ୍ମାନ ଉପରେ ଆଞ୍ଚ ଆସିବ । ତା'ଛଡ଼ା ଯେଉଁ ଗ୍ରାମରୁ ଧାନ, ଚାଉଳ ନେଇ ସେ ତାର ପିଲାଙ୍କ ପେଟ ପାଳୁଛି ସେ ଗାଁର ଜାଣି ଶୁଣି କିପରି ବା କ୍ଷତି କରାଇବ ? କିନ୍ତୁ ସେ ଗାଁର ଲୋକେ ଜମିରେ ଗାଈ, ଛେଳି ବାନ୍ଧୁଥିବାରୁ ତାଙ୍କର ଗୋବରରେ ଜମି ଭାରି ଉର୍ବର ହୋଇଥାଏ । ପ୍ରାୟ ସବୁ ଜମିରୁ ଏକର ପିଛା ଛଅ ଖଣ୍ଡି ଲେଖାଏଁ ମାଣ୍ଡିଆ ଆଦାୟ ହୁଏ । ଅର୍ଥାତ୍ ଏ ଜମି ଉପରେ ନୂଆ ସରକାରୀ ନିୟମ ପୁରା ଲାଗୁ ହେବ । ତେଣୁ ନଣ୍ଡିକାକୁ ହିଁ ହିସାବରେ ଏ ଗାଁର କ୍ଷେତରୁ ଆଦାୟ କମ ଲେଖିବାକୁ ପଡ଼ିବ । କିନ୍ତୁ ଇଲାକାଦାର କହିଥିଲେ ଯେ ସର୍ବରାକାରମାନେ କାଳେ ଫସଲର ଅନ୍ଦାଜରେ ଏପାଖ ସେପାଖ କରିବେ, ତେଣୁ

Digitized by srujanika@gmail.com

ତାହା ଚେକ୍ କରିବାକୁ ଅମଲଦାର ନିଜେ ଆସିବେ ।

ଏ ବିଷୟରେ ଅନେକ ଆଲୋଚନା ପରେ ନଷ୍ଟିଜା ଏବଂ ଗୁଣ୍ଡଗୌଡ଼ ଗୋଟିଏ ଉପାୟ ଭାବିଲେ । ନଷ୍ଟିଜା ଫସଲ କମ ଦେଖାଇ ହିସାବ ଲେଖିବ ଏବଂ ସାରା ଗାଁରୁ ପ୍ରାୟ ଶହେ ଟଙ୍କା ଖଣ୍ଡେ ଆଦାୟ କରି ଇଲାକାଦାରଙ୍କୁ ଦେବାକୁ ପଡ଼ିବ । ତା'ଛଡ଼ା ମାଣିଆରୁ ଦଶବାର ଖଣ୍ଡି ସରକାରଙ୍କୁ ବିକି ଏ କାମରୁ ଉଦ୍ଧାର ମିଳିବ ।

ନଗଦ ଶହେ ଟଙ୍କା ଏବଂ ବାରଖଣ୍ଡି ମାଣିଆ ଦେଇ ଚାଳିଶି ପରିବାରର ଗାଁ କୁରୁବରହେଜହାର ଲୋକେ ପାର ହୋଇଗଲେ । ସେ ଗାଁରୁ ନଷ୍ଟିଜାକୁ ସର୍ବରାକାରୀ ପାଉଣା ଛଡା ଏ ପ୍ରକାର ସାହାଯ୍ୟ ପାଇଁ ଆଉ ଦଶସେର ମାଣିଆ ମଧ୍ୟ ପ୍ରତିଘରୁ ମିଳିଲା ।

ରାମସନ୍ଦ୍ର ଏବଂ ଲିଙ୍ଗାପୁର ଗାଁରେ ଏ ପ୍ରକାର ସରକାରୀ ଆଦେଶ ଫଳରେ ବହୁତ କ୍ଷତି ହେଲା । ଏ ଦୁଇ ଗାଁର ମୁଖିଆ ଶିବଗୌଡ଼ ଓ ପୁରୁଦପପ ନୂଆ ନିୟମ ବିଷୟରେ କିଛି ବୁଝି ପାରିଲେ ନାହିଁ । ନଷ୍ଟିଜା ତାଙ୍କର ସବୁ ବର୍ଷର ଫସଲ ଯେତିକି ସେ ଅନୁସାରେ ହିସାବ ଲେଖିଦେଲା ।

ଦିନେ ଇଲାକାଦାର ଦୁଇଜଣ ଚପରାସୀ ତଥା ଦୁଇଜଣ ପୁଲିସ୍ କନେଷ୍ଟବଲ ଧରି ଗାଁରେ ହାଜର ହୋଇଗଲେ । ଆଦେଶ ପାଇ ଚପରାସୀ ମାନେ ଘର ଘର ପଶି ଘରଦ୍ୱାର ବୁଲି କେତେ ଲେଖାଏଁ ମାଣିଆ ଆଦାୟ ହୋଇଛି ମନଇଚ୍ଛା ଅନ୍ଦାଜ କରି ଆସି ଇଲାକାଦାରଙ୍କୁ କହିଲେ, ଏବଂ ସେ ଅନୁସାରେ ଜବରଦସ୍ତି ପ୍ରତି ଘରୁ ମାଣିଆ ଆଣି ଗାଁ ମୁଣ୍ଡ ମନ୍ଦିର ପାଖରେ ଜମା କଲେ । ଏପ୍ରକାର ପରିସ୍ଥିତିରେ ଚପରାସୀମାନେ ମଧ୍ୟ ଦଶ କୋଡ଼ିଏ ଟଙ୍କା ଉପୁରି ନେଇ ଅମୁକ ଘରର କମ ଆଦାୟ ହୋଇଛି ବୋଲି କହି ତାକୁ ଛାଡ଼ି ଦେଉଥିଲେ । ସେ ଟଙ୍କା ଚକ ପରେ ଇଲାକାଦାର ଓ ପୁଲିସ ଚପରାସୀମାନେ ବାଣ୍ଟି ନେଉଥିଲେ ।

ଗୋଟିଏ ଦିନରେ ରାମସନ୍ଦ୍ରରୁ ମୋଟେ ଚାରିଶହ ଟଙ୍କା ଏବଂ ସେହି ପରିମାଣରେ ମାଣିଆ ଧରି ଇଲାକାଦାର ଚାଲିଗଲେ । ଯାହାଙ୍କ ଠାରୁ ମାଣିଆ ଯାଇଥିଲା ସେମାନେ ସର୍ବରାକାର ଓ ଗାଁ ମୁଖିଆଠାରୁ ରସିଦ୍ ଲେଖାଇ ନେଇ ପୁଣି ଅଫିସର, କିରାଣୀ ମାନଙ୍କୁ ଲାଞ୍ଚ ଦେଇ ମାଣିଆର ପଇସା ଆଣିବାକୁ ପଡ଼ିବ । ମାଣିଆ ମାପିବାକୁ ଯେଉଁ ସରକାରୀ ଚପରାସୀ ଆସିଥିଲେ ସେମାନେ ମଧ୍ୟ ମାପିଲାବେଳେ ଚାଲାକି କରି ଅଧିକା ଅଧିକା ମାଣିଆ ନେଇଯାଉଥିଲେ ।

ପନ୍ଦରଦିନ ପରେ ଦିନେ ଗାଁ ମୁଖିଆ ଶିବଗୌଡ଼ ଲୋକ ପଠାଇ ନଷ୍ଟିଜାକୁ ଡ଼କାଇଲା । ମୁଖିଆ ଡ଼କାଇଲେ ସର୍ବରାକାର ଯିବା କଥା । ସର୍ବରାକାର ମଧ୍ୟ ମୁଖିଆକୁ ଡ଼କାଇ ପାରେ । କିନ୍ତୁ ଏହା ପ୍ରଚଳିତ ପ୍ରଥା ଏବଂ ଏହା ସର୍ବରାକାର ଓ ମୁଖିଆଙ୍କ ବ୍ୟକ୍ତିତ୍ୱ ଉପରେ ନିର୍ଭର କରେ । ଆଜି ପର୍ଯ୍ୟନ୍ତ ଶିବଗୌଡ଼ ଚେନ୍ନିଗାକୁ ଡ଼କାଇ ପଠାଉଥିଲେ । ଆଜି କିନ୍ତୁ ନଷ୍ଟିଜାକୁ ଡ଼କାଇ ପଠାଇଥିବାରୁ ନଷ୍ଟିଜାକୁ

Digitized by srujanika@gmail.com

ରାଗ ଲାଗିଲା, ତେଣୁ ପଠାଇଥିବା ଲୋକକୁ କହିଲା - "ଯଦି କିଛି କାମ ଥାଏ, ତେବେ ତାଙ୍କୁ ଏଠାକୁ ଆସିବାକୁ କହିଦେ ।"

କିଛି ସମୟପରେ ମୁଖିଆ ନିଜେ ଆସିଲା ଏବଂ ତା ପଛରେ ଲୋକଟା ଆସି ବାହାରେ ଠିଆ ହେଲା । ବାରଣ୍ଡାରେ ମଣ୍ଡିଆରେ ବସି ଶିବଗୌଡ଼ ଭାବୁଥିଲା କିଭଳି କଥାଟା ଆରମ୍ଭ କରିବି । ପାଞ୍ଚ ମିନିଟ୍ ପରେ କହିଲା - "ମୁଁ ଶୁଣୁଛି କୁରୁବରହଳ୍ଳୀକୁ ମାତ୍ର ବାରଖଣ୍ଡି ମାଣିଆ ସରକାରଙ୍କୁ ମିଳିଲା । ଆମ ଗାଁରୁ କାହିଁକି ଏତେ ଅଧିକା ନେଲେ ?"

"ମୁଁ ଏହା କିପରି ଜାଣିବି ?"

"ତୁ ତ ହିସାବ ଲେଖୁଛୁ ତେଣୁ ତତେ ହିଁ ଏହା କହିବାକୁ ପଡ଼ିବ ।"

"ଆପଣ ଗାଁ ମୁଖିଆ, ଏଭଳି ତୁ'ତା କରି କ'ଣ କଥାବାର୍ତ୍ତା କରୁଛନ୍ତି ? ଯାହାକୁ ଯେପରି ସମ୍ମାନ ଦେବା କଥା ସେପରି କଥାବାର୍ତ୍ତା କରନ୍ତୁ ।" ଏହା କହି ରୋଷେଇ ଘରକୁ ଚାଲିଗଲା ।

"ମୁଁ ଚେନ୍ନିଗାକୁ ପିଲାଟି ଦିନରୁ ଜାଣିଛି ।"

"ତାହାହେଲେ ତାଙ୍କୁ ଯାଇ ପଚାରନ୍ତୁ । ଗାଁ ମୁଖିଆ ହେଲେ ବୋଲି ମୁଲିଆ ପଠାଇ ମୋତେ ଡ଼କାଇ ପଠାଉଛନ୍ତି । ନିଜକୁ ଏତେ ବଡ଼ ବୋଲି କାହିଁକି ଭାବୁଛନ୍ତି ?"

ଶିବଗୌଡ଼କୁ ଏକଥା ଜୋତା ମାରିଲା ପରି ଲାଗିଲା । ସେ ଆଜି ପର୍ଯ୍ୟନ୍ତ ଏ ସ୍ତ୍ରୀ ଲୋକ ସାଙ୍ଗରେ କଥା ହୋଇ ନଥିଲା । ଜମିବାଡ଼ି ନଥିବା ଏବଂ ଖାଲି ସିଁଝି ସିଁଝି ପେଟ ପୋଷୁଥିବା ଏ ସ୍ତ୍ରୀର ଏତେ ଦର୍ପ ଦେଖି ଶିବଗୌଡ଼ର ଦେହଟା ସାରା ଜଳିଗଲା । ପଚାରିଲା - "ଆମର ହିସାବ ଲେଖିଲା ବେଳେ କମ୍ କରି କାହିଁକି ଲେଖିଲ ନାହିଁ ଭଉଣୀ ?"

"ଏକଥା ମତେ ପଚାରିବାକୁ ତୁମେ କିଏ ?" ନଞ୍ଜମ୍ମା ଘର ଭିତରୁ ଉତ୍ତର ଦେଲା । "ମୁଁ ଯାଇ ସରକାରୀ ଅଫିସରେ ପଚାରିବି, ଏ ସର୍ବରାକାରୀ ହିସାବ କ'ଣ ଜଣେ ସ୍ତ୍ରୀ ଲୋକ ଲେଖିପାରେ ?" ରାଗିଯାଇ ଏହା କହି ଶିବଗୌଡ଼ ଉଠି ଚାଲିଗଲା । ଗାଁଟା ଯାକରେ ରାଜା ଭଳି ମନେ କରୁଥିବା ଲୋକ ଆଜି ଏ ସ୍ତ୍ରୀ ଲୋକଟା ପାଖୁ ଅପମାନିତ ହୋଇ ଚାଲିଗଲା । ତା'ଛଡ଼ା ହଳିଆଟା ଆଗରେ ଏତେ ଅପମାନ ତାକୁ ବାଧିଲା । ସେଦିନ ନିଜ ଶଳା ଶିବଲିଙ୍ଗ ଗୌଡ଼କୁ ସାଙ୍ଗରେ ଧରି ସିଧା କମ୍ବନକେରେ ଗଲା । ସେଠି ଇଲାକାଦାରଙ୍କୁ ଭେଟି ପଚାରିଲା ଯେ ସ୍ତ୍ରୀ ଲୋକମାନଙ୍କର କ'ଣ ହିସାବ ପତ୍ର ଲେଖା ଲେଖି କରିବାର ଅଧିକାର ଅଛି ? ଇଲାକାଦାରଙ୍କୁ ରାମସନ୍ଦ୍ର ଗାଁର ସବୁ କଥା ଜଣା । ସେ ଏ ଅଞ୍ଚଳକୁ ମାତ୍ର ଛଅମାସ ହେଲା ଆସିଥିଲେ ସୁଦ୍ଧା ତାଙ୍କଠୁ ପୂର୍ବରୁ ଯିଏ ଇଲାକାଦାର ଥିଲେ ସେ ତାଙ୍କୁ ସବୁ ବିଷୟ ବୁଝାଇ ଦେଇଛନ୍ତି । କିନ୍ତୁ ସେ ନିଜଆଡୁ କଥାଟା ନକଢାଇ ଶିବଗୌଡ଼କୁ ଘଟଣା କ'ଣ ହୋଇଛି କହ ବୋଲି କହିଲେ । ଶିବଗୌଡ଼ ତା'ର ଅଭିଯୋଗ କହିଲା ଯେ ସର୍ବରାକାର ହିସାବରେ ଫସଲ

Digitized by srujanika@gmail.com

ଆଦାୟ ଅଧିକା ଲେଖି ଦେଇଛି । ଫସଲ ଅଧିକା ଲେଖିଲେ ବା କମ୍ ଲେଖିଲେ ଇଲାକାଦାରଙ୍କର ହିଁ ଲାଭ । ତେଣୁ ସେ ବା କାହିଁକି ସର୍ବରାକାରର ପକ୍ଷ ନନେବେ ? ତେଣୁ ଇଲାକାଦାର କହିଲେ - "ଦେଖ ଡ଼େପୁଟି କମିଶନର ସାହେବ ମଧ୍ୟ ଏକଥା ଜାଣନ୍ତି, ଯେ ତୁମ ଗାଁର ହିସାବ ଜଣେ ସ୍ତ୍ରୀ ଲୋକ ଲେଖୁଛନ୍ତି । ସେ ନିଜେ ତାଙ୍କ ରିପୋର୍ଟରେ ଲେଖୁଛନ୍ତି ଯେ ସାରା ତୁମ୍ଭକର ଜିଲ୍ଲାରେ ଏପରି ସୁନ୍ଦର ହିସାବ ଲେଖା ଆଉ କାହାର ନାହିଁ । ତା'ଛଡ଼ା ସ୍ତ୍ରୀଲୋକ ହିସାବ ଲେଖିବା ମନା ବୋଲି କିଛି ସରକାରୀ ନିୟମ ନାହିଁ ।"

ଇଲାକାଦାରଙ୍କଠାରୁ ଏପରି ଶୁଣି ଅପମାନିତ ହୋଇ ଶଳା ଭିଣେଇ ଦୁହେଁ ଗାଁକୁ ଫେରିଲେ । ବାଟରେ ଶିବଗୌଡ଼ ଶଳାକୁ ପଚାରିଲା, "ସେ ଶଳା ଇଲାକାଦାର ଯେତେବେଳେ ଗାଁକୁ ଆସିଲେ ସେ ମାଇକିନା ଉପମା, କପି ତିଆରି କରି ଦିଏ । ସେ ଆଉ ତା ପଟିଆ ନ କହି କ'ଣ ଆମ ପକ୍ଷରେ କହନ୍ତା ?"

"ଖାଲି କ'ଣ ସେତିକି । ମୁଁ ଶୁଣିଛି ତା'ଘରେ ତା'ସାଙ୍ଗରେ ମଧ୍ୟ ରାତିରେ ଶୁଏ ।"

"ଛି ଛି କେଡ଼େ ଖରାପ ସ୍ତ୍ରୀଲୋକଟା ।" ଏଇଭଳି ଗାଳି ଦେଇ ଶିବଗୌଡ଼ ନିଜ ମନକୁ ଶାନ୍ତ କଲା । କିନ୍ତୁ ଗାଁକୁ ଫେରି ଶଳା ଭିଣେଇ ଏକଥା ଆଉ କାହା ଆଗରେ କହିବାକୁ ସାହସ କଲେ ନାହିଁ ।

ଶିବଗୌଡ଼ର ପ୍ରତିପତ୍ତି ଦେଖି ନଞ୍ଜମ୍ମା ମଧ୍ୟ ମନେ ମନେ ଭାରି ଚିଡ଼ୁଥାଏ । ସେ ଶୁଣିଥିଲା ଯେ କାଶୀବନ୍ତୀ ମହାଜନ, ଶିବଗୌଡ଼ର ଟଙ୍କା ପଇସାରେ ହିଁ, ମହାଜନୀ କାରବାର କରେ । କାଶୀବନ୍ତୀ ହେଲା ବିଦେଶୀ । ସେ ଏ ଗାଁରେ ଘର କରି ରହିବାକୁ ଆସିନଥିଲା । ସେ ତାର ପାଉଣା ବାବଦକୁ ଟଙ୍କା ହିସାବ କରି ତା'ର ଗାଁକୁ ପଠାଇ ଦେଉଥିଲା । ବାକି ଶିବଗୌଡ଼ ରଖୁଥିଲା । ଏ ଦୁଇ ଜଣଙ୍କର ବ୍ୟବସାୟ ଥିଲା କେବଳ ସୁନା ରୂପା, ପିତଳ କଂସା ଜିନିଷ ବନ୍ଧକ ରଖି ଋଣ ଦେବା । ତା'ଛଡ଼ା ଜମିବାଡ଼ି ମଧ୍ୟ ବନ୍ଧା ରଖୁଥିଲେ । ଥରେ ତା'ପାଖରେ ବନ୍ଧା ରହିଲେ ଆଉ ଜିନିଷ ଫେରୁ ନଥିଲା । ସେମାନେ ମଧ୍ୟ ପ୍ରଥମରୁ ଋଣ ଟଙ୍କାରୁ ତିନିମାସର ସୁଧ ଟଙ୍କା କାଟି ରଖୁଥିଲେ । ଅର୍ଥାତ୍ ହଜାରେ ଟଙ୍କା ଋଣ ଦେଲେ ପାଞ୍ଚଶହ ଟଙ୍କା କାଟି ରଖୁଥିଲେ ଅଗ୍ରୀମ ସୁଧ ବାବଦକୁ । ଗତ ଦୁଇ ବର୍ଷରେ ମହାଜନି ଯୋଗୁଁ ଶିବଗୌଡ଼ର ପ୍ରତିପତ୍ତି ଟିକିଏ ବଢ଼ି ଯାଇଥିଲା । ତାକୁ ଜବାବ ଦେବାପାଇଁ ଗାଁଟା ଯାକରେ କେହି ଲୋକ ନଥିଲେ । ନଞ୍ଜମ୍ମା ଏସବୁ ଜାଣିଥିଲା, କିନ୍ତୁ ତା'ଘରକୁ ଆସି ତା'ଉପରେ ହାକିମ ଦେଖାଇଲାରୁ ଶିବଗୌଡ଼କୁ ଠିକ୍ ଉତ୍ତର ମିଳିଗଲା । ଫସଲ ଆଦାୟର ନୂଆ ସରକାରୀ ନିୟମ ଲାଗୁ ହେବା ଦିନଠାରୁ ଅନେକ ଥର ଗାଁକୁ ଇଲାକାଦାର ଆସିଲେ । ତାଙ୍କଠାରୁ ନଞ୍ଜମ୍ମା ଶୁଣିଲା ଯେ ଶିବଗୌଡ଼ ତାଙ୍କ ଆଗରେ ଯାଇ ଅଭିଯୋଗ କରିଥିଲେ । କିନ୍ତୁ ଶିବଗୌଡ଼ ସେଠାରୁ ଅପମାନିତ ହୋଇ ଫେରିଥିବା କଥା ଶୁଣି ନଞ୍ଜମ୍ମା ଚୁପ୍ ହୋଇ ରହିଲା ।

Digitized by srujanika@gmail.com

ସେବର୍ଷ ଭଲ ବର୍ଷା ହୋଇ ଫସଲ ଭଲ ଆଦାୟ ହୋଇଥିଲେ ମଧ୍ୟ ଧାନ, ମାଣ୍ଡିଆର ଅଭାବ ଲାଗି ରହିଲା । ସର୍ବରାକାରୀ କାମ ଛଡ଼ା ନୂଆ ନିୟମ ଅନୁସାରେ ଫସଲ ହିସାବ ଲେଖିବା ଏବଂ ମାଣ୍ଡିଆ ସଂଗ୍ରହ କରିବା ଆଦି କାମ ମଧ୍ୟ ନନ୍ଦିଆ ଉପରେ ପଡ଼ିଲା । ସରକାର ମଧ୍ୟ ଏଥିପାଇଁ ସର୍ବରାକାର ମାନଙ୍କର ବାର୍ଷିକ ପାଉଣା ବଢ଼ାଇ ଦେଲେ । ବର୍ତ୍ତମାନ ନନ୍ଦିଆ ପୂର୍ବୁଣା ପାଉଣା ଶହେ କୋଡ଼ିଏ ଟଙ୍କା ଉପରେ ଆଉ ଶହେ ଟଙ୍କା ପାଇଲା । ହିସାବ କିତାବ କାମ ବହୁତ ବଢ଼ି ଯାଇଥିବାରୁ ଖଜିପତ୍ର ସିଲାଇବା କାମପାଇଁ ସମୟ ମିଳୁ ନଥାଏ ।

ପାର୍ବତୀ ଘରର ସବୁ କାମ କରେ, ଏବଂ ପରିବା ବଗିଚାରେ ମଧ୍ୟ ପାଣି ପକାଏ । ଗୁଣ୍ଡଗୌଡ଼ଙ୍କ ଠାରୁ ଫେରାଇ ଆଣିଥିବା ଗାଈଙ୍କର ମଧ୍ୟ ଖାଇବା ପିଇବା ପାର୍ବତୀ ବୁଝେ । ରମନ୍ନା ଏବେ ଭଲ ପାଠ ପଢୁଛି ଏବଂ କ୍ଲାସରେ ପ୍ରଥମ ହେଉଛି । ସେ ମଧ୍ୟ ହିସାବ ଲେଖିବାରେ ମା'କୁ ସାହାଯ୍ୟ କରୁଛି । ବଡ଼ ବଡ଼ ହିସାବ ତୁଣ୍ଡରେ କରି ପାରୁଛି । ନନ୍ଦିଆର ହିସାବରେ ମଧ୍ୟ ବେଳେ ବେଳେ ଭୁଲ ବାହାର କରିଦିଏ । ଥରେ ଇଲାକାଦାର ମଧ୍ୟ ତାକୁ ଘରକୁ ଡାକି ହିସାବ କାମ ଦେଇଥିଲେ । ନନ୍ଦିଆ ରମନ୍ନାର ବୁଦ୍ଧି ଦେଖି ଆନନ୍ଦିତ ହେଉଥାଏ । କିନ୍ତୁ ସେ ଚାହୁଁନଥିଲା ଯେ ରମନ୍ନା ପାଠ ପଢ଼ି ସର୍ବରାକାର ହେଉ । ସେ ହାଇସ୍କୁଲ ପାସ କରି ଅତିକମ୍‌ରେ ଇଲାକାଦାରଟିଏ ହେବ ବୋଲି ଆଶା ରଖିଥାଏ । ଏଥିପାଇଁ ମନରେ ସବୁବେଳେ ଭଗବାନଙ୍କୁ ପ୍ରାର୍ଥନା କରୁଥାଏ ।

ବିଶ୍ୱ ଗାଁ ସ୍କୁଲରେ ତୃତୀୟ ଶ୍ରେଣୀରେ ପଢ଼ିଲାଣି । କିନ୍ତୁ ଭାରି ଦୁଷ୍ଟ ହୋଇଥାଏ । ଯେତିକି ଚଗଲା ସେତିକି ସାହସୀ ମଧ୍ୟ । ଗାଁ ପୋଖରୀରେ ମଝି ପର୍ଯ୍ୟନ୍ତ ପହଁରି ଯିବା, ଗାଁ ମଣ୍ଡାଣୀରେ ଏକୁଟିଆ ବୁଲି ମହୁଫେଣା ଭାଙ୍ଗିବା, ଯୁକ୍ତିତର୍କ ଇତ୍ୟାଦିରେ ଧୁରନ୍ଧର । ଠିକ୍ ତା ଅଜା କଣ୍ଡାକୋଇସ୍ ଭଳିଆ ହୋଇଥାଏ । ମହାଦେବୟା ତାକୁ ଖୁବ୍ ଭଲ ପାଉଥିଲେ । ସେ ଭଜନ ଗାଇଲେ ବିଶ୍ୱ ଏକତାରା ବଜାଏ । ତାଙ୍କ ସାଙ୍ଗରେ ଏକାଠ ବସି ମଧ୍ୟ ଖାଏ ।

ନନ୍ଦିଆର ପରିବାରର ଅବସ୍ଥା ଏବେ ଟିକିଏ ସୁଧୁରି ଆସିଲା । ନୂଆ ସରକାରୀ ନିୟମ ଲାଗୁ ହେଲା ଦିନଠାରୁ ଆୟ ମଧ୍ୟ ବଢ଼ିଗଲା । ଘରେ ସମସ୍ତଙ୍କ ଲାଗି ପିନ୍ଧିବାକୁ ଲୁଗା, ଧୋତି ହଳେ ଲେଖାଏଁ ଅଛି । ଶୀତ ଦିନେ ଘୋଡ଼ାଇ ହେବା ପାଇଁ କୁରୁବରହଳଙ୍କଠାରୁ ଚାରିଟା କମ୍ବଳ ମଧ୍ୟ କିଣି ଆଣିଛି । ତଥାପି ନନ୍ଦିଆ ମନରେ ସବୁବେଳେ ଗୋଟିଏ ଚିନ୍ତା ବଡ଼ ଝିଅ ପାର୍ବତୀକୁ ଅସି ତେର ବର୍ଷ ହେଲାଣି । ଦୁଇବର୍ଷ ଦୁର୍ଭିକ୍ଷ ନପଡ଼ିଥିଲେ ଝିଅଟା ଗୋଲ ଗାଲ ହୋଇ ବାହାରି ପଡ଼ନ୍ତାଣି । ଏବେ କିନ୍ତୁ ଖାଇବା ପିଇବାରେ ଅଭାବ ନଥିଲା । ତାର ପୁଣି ବିଭାଘର କରିବାକୁ ହେବ । କନ୍ୟା ବଡ ହେବା ଆଗରୁ ବିଭାଘର କରିଦେବା କଥା । ଯଦି ତା ଆଗରୁ ଋତୁମତୀ ହୋଇଯାଏ ତାହାହେଲେ ବହୁତ ଅସୁବିଧା

Digitized by srujanika@gmail.com

ହେବ । ଏ ଚିନ୍ତା ସବୁବେଳେ ନଷ୍ଟିକା ମୁଣ୍ଡରେ ଖେଳୁଥାଏ ।

ଝିଅ ବିଭାଘର କ'ଣ ପିଲା ଖେଳ ହୋଇଛି ? ଯେତେ ଗରିବ ଘରେ ହେଲେ ମଧ୍ୟ ସାତ ଆଠ ଶହ ଟଙ୍କାରୁ ତ କମ୍ ଲାଗିବ ନାହିଁ । କିନ୍ତୁ ବରପାତ୍ର ଟିଏ ଖୋଜିବା ଝିନା ପୁରୁଷଙ୍କ କାମ । ସ୍ୱାମୀଙ୍କର ଯୋଗ୍ୟତା ତ ତାକୁ ଜଣା । ତେଣୁ ଦିନରାତି ସବୁବେଳେ ଭଗବାନଙ୍କୁ ଡ଼ାକୁଥାଏ । କିପରି ଏ ଲକ୍ଷିଜରୁ ମୁକ୍ତି ପାଇବ ।

କାହାଠାରୁ ଶୁଣିଲା ଯେ ଚିପବୁର୍ ପାଖରେ ଚକ୍ରମଘୋଡ଼ନନ୍ଦଳକୀ ଗାଁରେ ଗୋଟିଏ ଭଲ ବରପାତ୍ର ଅଛି । ପିଲାଟାକୁ ଦେଖି ଆସିବା ପାଇଁ ନଷ୍ଟିକା ଚେନ୍ନିଗରାୟ୍ ଏବଂ ଗାଁର ନୂଆ ମାଷ୍ଟ୍ର ଭେଙ୍କଟେଶୟ୍ୟାଙ୍କୁ ପଠାଇଲା । ଦୁଇଦିନ ପରେ ମାଷ୍ଟ୍ରେ ଗାଁକୁ ଫେରି କହିଲେ - "ସର୍ବଗୁଣକାରଙ୍କୁ ସାଙ୍ଗରେ ନେଇ କୁଆଡ଼େ ଯିବା କଥା ନୁହେଁ । ତାଙ୍କ ଘରକୁ ଯାଇ ଆମେ ପିଲାଟିର ଜାତକ ଦେଖିବାକୁ ମାଗିଲୁ । ସେମାନେ ପ୍ରଥମେ ଝିଅର ଜାତକ ଦେଖିବେ ବୋଲି କହିଲେ । ମୁଁ ଦେଇଦେଲି । ସେମାନେ ଖାଇବା ପାଇଁ ଡ଼ାକିବାରୁ ମୁଁ କହିଲି - "ଆମର ହେଲା କନ୍ୟା ପକ୍ଷ, ଶାସ୍ତ୍ର ଅନୁସାରେ କନ୍ୟା ଦାନ ବିଧି ନ ସରିଲା ପର୍ଯ୍ୟନ୍ତ ଆମ୍ଭର ତୁମ ଘରେ ଅନ୍ନ ଗ୍ରହଣ ନିଷେଧ । ' କିନ୍ତୁ ଚେନ୍ନିଗରାୟ୍ କ'ଣ ମାନିବା ଲୋକ । ମୁଁ ଯେତେ ମନା କଲେ ବୁଢ଼ା, ଗୋଡ଼ହାତ ଧୋଇ ଖାଇବା ପାଇଁ ଚଟା ପକାଇ ବସିଗଲେ । ମୁଁ କିନ୍ତୁ ଖାଇଲି ନାହିଁ । ଖାଇବା ପରେ ବର ପିତା ବାହାରେ ଆସି ମତେ କହିଲେ - "କନ୍ୟାପିତା ତ ଆମ ଘରେ ଅନ୍ନ ଗ୍ରହଣ କରି ସାରିଲେଣି, ଶାସ୍ତ୍ରର ନିୟମତ ଆପଣ ଜାଣନ୍ତି । ତେଣୁ ଶାସ୍ତ୍ର ଅନୁସାରେ ଏ ପ୍ରସ୍ତାବକୁ ଆଉ ଆଗେଇବା ଠିକ୍ ନୁହେଁ ।" ଏକଥା ଶୁଣି ନଷ୍ଟିକାକୁ ଯେତିକି ଦୁଃଖ ହେଲା ସେତିକି ରାଗ ମଧ୍ୟ ଲାଗିଲା । ଚେନ୍ନିଗରାୟ୍ ଘରେ ମଣିଷ ପରି ଶୋଇଥାଏ । ତାକୁ ଯାଇ ପଚାରିଲା - "ତୁମେ କାହିଁକି ମନା ନମାନି ତାଙ୍କ ଘରେ ଖାଇଲ ?" ଚେନ୍ନିଗା ରାଗିଯାଇ କହିଲା - "ବହୁତ ଲୋକ ଲାଗୁଥିଲା ଆଉ କ'ଣ କରିଥାନ୍ତି ?" ଏଭଳି ପୁରୁଷ ସାଙ୍ଗରେ ଯୁକ୍ତି କଲେ ଲାଭ ନାହିଁ ଭାବି ନଷ୍ଟିକା ଚୁପ୍ ରହିଲା । ଭାବିଲା ଏପରି ବାପ ଥିଲେ କେତେ ନଥିଲେ କେତେ ?

ତାର ଦୁର୍ଭାଗ୍ୟକୁ ସେଇଦିନ ରାତିରେ ପାର୍ବତୀ ଋତୁମତୀ ହୋଇଗଲା । ଏପରି ହେବା ସ୍ୱାଭାବିକ ହେଲେ ବୁଢ଼ୀ ନଷ୍ଟିକାର ଛାତି ଦକ୍ ଦକ୍ ହେଲା । କନ୍ୟା ବଡ ହୋଇଗଲା ପରେ ତାର ବିଭାଘର କିପରି ହେବ ? ବଡ଼କନ୍ୟା ହେଲେ ବୋହୂ କରିବାକୁ କେହି ରାଜି ହେବେ ନାହିଁ । ସେ ଅବଶ୍ୟ ଶୁଣିଥିଲା ଯେ ଚିପଟୁର ଭଳି ସହରରେ ବଡ଼କନ୍ୟା ବିବାହ ଚାଲିଲାଣି । କିନ୍ତୁ ସେମାନେ ହେଲେ ଧନୀ ଲୋକ ଏବଂ ଆମେ ଗରିବ ଓ ଗାଁରେ ରହିବା ଲୋକ । ଯଦି ଏକଥା ବାହାରେ କିଏ ଜାଣେ ତେବେ ମହାଅସୁବିଧା ଗାଁ ପୁରୋହିତ ତାର ପରିବାରକୁ ଆଗରୁ ବାସନ୍ଦ କରି ରଖିଛନ୍ତି । ଯଦି ଟଙ୍କା ପଇସା ଯୋଗାଡ଼ କରି ବରପାତ୍ରଟାଏ ଠିକ୍ ହୋଇଯାଏ ତେବେ ଟଙ୍କା ନଖାଇ ଜୋରିମାନା ନନେଇ ପୁରୋହିତ ବିଭାଘରଟା କରାଇବେ ନାହିଁ । ଏବେ ଏଖବର ମିଳିଗଲେ ଅଧୁରି ହଇରାଣ କରାଇବେ । ଗାଁ ଲୋକ ଜାଣିଲେ, ବରପକ୍ଷ ଝିଅ ଦେଖି ଆସିବା ଆଗରୁ ତାଙ୍କ କାନରେ ପୋଡ଼ି କଥା ଭଙ୍ଗାଇବେ । ଏଭଳି ଦୁଶ୍ଚିନ୍ତାରେ ଘଣ୍ଟାଏ କାଳ ମଗ୍ନ ରହିଲା । ତେଣେ ଚେନ୍ନିଗରାୟ୍ ସୁଖ ନିଦ୍ରାରେ ମଗ୍ନ । ତାଙ୍କୁ ଉଠାଇ ଏକଥା ଜଣାଇବା ଅର୍ଥଗୀତା ଯାକ ଲୋକକୁ ଡ଼େଙ୍ଗୁରା ପିଟିବ ।

Digitized by srujanika@gmail.com

ନଷ୍ଟିନ୍ନା ଠିକ୍ କଲା ଏକଥା ଲୁଚାଇ ରଖିବ । ରାମନ୍ନା ଏବଂ ପାର୍ବତୀକୁ ଏକଥା କାହା ଆଗରେ ନ କହିବାକୁ କଡ଼ା ଆଦେଶ ଦେଇ, ନିଜ ଶେଯ ପାଖରେ ଶେଯ ପକାଇ ପାର୍ବତୀକୁ ଶୁଆଇଲା । ସକାଳୁ ଉଠି ନିଜେ ଘରକାମ କଲା, ଏବଂ ପାର୍ବତୀକୁ ଶେଯରେ ଶୋଇ ରହିବାକୁ କହିଲା । କିଏ ପଚାରିଲେ ପେଟ ବଥାଉଛି ବୋଲି କହିବୁ ବୋଲି କହିଲା ।

ରାମନ୍ନାକୁ ସବୁକଥା ଖୋଲି କହିଲା କାରଣ ପିଲାଟା ଭାରି ଚାଲାଖ ଏବଂ କାହା ଆଗରେ ମୁହଁ ଖୋଲି କହିବ ନାହିଁ । କିନ୍ତୁ ସାନ ପୁଅ ବିଶ୍ୱ ଅଜ୍ଞାନ ବାଳକ, ତାକୁ କିମ୍ବା ଚେନ୍ନିଗରାୟ୍ଯକୁ ଏବିଷୟରେ କିଛି କହିଲା ନାହିଁ । ଚେନ୍ନିଗରାୟ୍ ମଧ୍ୟ ପିଲାଙ୍କ ଭଲ ମନ୍ଦ କିଛି ବୁଝେ ନାହିଁ । ବିଶ୍ୱ କିନ୍ତୁ ଆସି ନାନୀର ପେଟରେ ହାତ ମାରି କେଉଁଠି ଦରଜ ହେଉଛି ବୋଲି ପଚାରିଲା । ତାପରେ ପିଲାଟା ସିଧା ରୋଷେଇ ଘରକୁ ଚାଲିଗଲା । ଝିଅ ପାର୍ବତୀ ଘରକାମ କଲାଦିନଠାରୁ ନଷ୍ଟିନ୍ନା ପ୍ରତିମାସ ଋତୁ ସମୟକୁ ଅଲଗା ହୋଇ ବସି ରହୁଥିଲା । ତା'ଛଡ଼ା ସେ ରୋଷେଇ ଘରେ ଦିଅଁଙ୍କ ପାଖରେ ଏକ ଶାଳଗ୍ରାମ ରଖି ପୂଜା କରୁଥାଏ । ଛୁଆଁ ହୋଇ ବସିଥିବା ପାର୍ବତୀକୁ ଛୁଇଁ ସାରି ବିଶ୍ୱ ରୋଷେଇ ଘରେ ପଶି ସାରିଥିଲା । ତେଣୁ ନଷ୍ଟିନ୍ନା ଭଲ ଶାଢ଼ୀଟିଏ ପିନ୍ଧି ଶାଳଗ୍ରାମକୁ ନେଇ ଭାଡ଼ି ଉପରେ ରଖିଦେଲା । ଶାଳଗ୍ରାମର ପୂଜା ବିଧାନ ବଡ଼ କଷ୍ଟ । ଆଉ ଯାହା ଛୁଆଁ ହେଲେ ମଧ୍ୟ ତାକୁ ନଷ୍ଟିନ୍ନାର ଡ଼ର ନଥିଲା, କିନ୍ତୁ ଶାଳଗ୍ରାମଙ୍କ କଥା ଭିନେ ।

ନଷ୍ଟିନ୍ନା ରାମନ୍ନା ହାତରେ କମ୍ବନକେରେରୁ ଭଲ ରାଶି କିଣାଇ ଆଣିଲା । ନିଜେ ଦିନେ କୁରୁବରହଲ୍ଲୀ ଯାଇ ପୂଜା ପର୍ବ ପାଇଁ ଦରକାର ବୋଲି କହି ଚାରି ପାଞ୍ଚ ଘରୁ ମାଗି କୋଡ଼ିଏଟା ଖଣ୍ଡେ ଖୁରୁଡ଼ି ନଡ଼ିଆ ମାଗି ଆଣିଲା । ପାର୍ବତୀକୁ ରୋଷେଇ ଘରେ ବସାଇ ଲୁଚାଇ ଲୁଚାଇ ଗୁଡ଼ରେ ତିଆରି ରାଶିଲଡୁ, ଗୁଡ଼ ନଡ଼ିଆରେ ତିଆରି ଅନ୍ୟ ପିଠା ପଣା ଏବଂ ମେଥିର ଲେହ୍ୟ ଖୁଆଇଲା । ରାମନ୍ନା ହାତରେ ଲହୁଣୀ କିଣାଇ ଝିଅକୁ ଖୁଆଇଲା । ପାର୍ବତୀର ବଡ଼ କନ୍ୟା ହେବା କଥା ସିନା ଲୁଚାଇ ରଖିହେବ, କିନ୍ତୁ ଏ ସମୟରେ ତାକୁ ଭଲ ଜିନିଷ ଖାଇବାକୁ ନଦେଲେ ଭବିଷ୍ୟତରେ ତାର ସ୍ୱାସ୍ଥ୍ୟ ଖରାପ ହୋଇପାରେ ।

ଏହିପରି ପାଞ୍ଚମାସ କଟିଗଲା । ବାହାରର କେହି ଏ ଘଟଣା ଜାଣି ପାରିଲେ ନାହିଁ । କିନ୍ତୁ ପାର୍ବତୀର ବଢ଼ିଲା ଶରୀରକୁ ଦେଖିଲେ କେହି ହେଲେ ଅନ୍ଦାଜ କରିପାରେ ଯେ ସେ ଘର ଯୋଗ୍ୟ ହୋଇଗଲାଣି । ଝିଅଟାର ଦେହ ଗଠନ ଠିକ୍ ତା' ମା'ଭଳି ଚଉଡ଼ା ଛାତି ଏବଂ ଉଚ୍ଚସାର ଦେହ । ଗରିବ ହେଲେ ମଧ୍ୟ ନଡ଼ିଆ, ରାଶି, ଗୁଡ଼, ଲହୁଣୀ ଏବଂ ମେଥି ଆଦି ଭଲ ଜିନିଷ ଖାଏ ଓ ସପ୍ତାହରେ ଥରେ ତେଲ ମାଲିସ୍ ହୋଇ ଗାଧାଏ । ତା'ଦେହର ରଙ୍ଗ ଏ ଭିତରେ ଅନେକ ପରିବର୍ତ୍ତନ ହୋଇ ଯାଇଥାଏ । ନଷ୍ଟିନ୍ନା ତାକୁ ଆଉ ପରିବା ବଗିଚାକୁ କାମ କରିବାକୁ ପଠାଇଲା ନାହିଁ । କିନ୍ତୁ ଯେତେ ଲୁଚାଇଲେ ମଧ୍ୟ ଝିଅଟାର ଦେହରେ ହେଉଥିବା ପରିବର୍ତ୍ତନକୁ କେତେ ଦିନ ଲୁଚାଇ ରଖିହେବ । ସେଥିପାଇଁ ତ ଆଉ ଏ ଭଲଭଲ ଜିନିଷ ଖୁଆଇବା ବନ୍ଦ ହୋଇ ପାରିବ ନାହିଁ । ଏ ଚିନ୍ତା

Digitized by srujanika@gmail.com

ନକ୍ଷତ୍ରା ମନରେ ସବୁବେଳେ ଘାରି ହେଉଥାଏ । ଝିଅର ବଢ଼ିଲା ଦେହକୁ ଦେଖି ବେଳେବେଳେ ଖୁସି ହେଉଥାଏ । କିନ୍ତୁ ତା'ପରକ୍ଷଣରେ ଭାବେ ସତରେ କ'ଣ ବିଭାଘର ହୋଇପାରିବ ଏବଂ ଆମର ଇଜ୍ଜତ ରହିବ ? ମନଟା ଭାରି ହୋଇଯାଏ ।

ପାର୍ବତୀର ବହୁତ ସୂକ୍ଷ୍ମ ବୁଦ୍ଧି । ମା'ମନର ଦ୍ୱନ୍ଦ ସେ ବୁଝିପାରୁଥିଲା । ସେ ଭାବେ ତାକୁ ନେଇ ତା'ର ମା' କେତେ ଚିନ୍ତିତ । ବିବାହ ତ କରିବାକୁ ପଡ଼ିବ । ସେ ଶୁଣିଥିଲା ଯେ ଆଗକାଳରେ ଝିଅ ଋତୁମତୀ ହୋଇଗଲେ ଆଖିରେ ଅନ୍ଧପୁଟୁଳି ବାନ୍ଧି ଜଙ୍ଗଲରେ ଛାଡ଼ିଦିଅନ୍ତି । ମା' କିପରି ତା'ର ବିଭାଘର କରିବ ? ବର ପିଲାଟି କିପରି ହୋଇଥିବ ? ମୋ ବାପାଙ୍କ ପରି, କକାଙ୍କ ପରି ? ନା କଳେଶ ମାମୁଁ ପରି ? ରେବଣ ସେଠୀ, ଶିବଗୌଡ଼ ଆଦି ଏ ଗାଁରେ ଯାହା କଥା ଭାବିଲେ ମଧ୍ୟ ତା ମନ କହେ ଯେ ସେଭଳି ସ୍ୱାମୀ ସେ ଚାହେଁ ନାହିଁ । ଅତିକମ୍‌ରେ ମାଁକୁତ କହିପାରିବ ଯେ ମତେ ଏଭଳି ସ୍ୱାମୀ ଦରକାର ନାହିଁ । କିନ୍ତୁ ମୁଁ ଭଲକରି ଜାଣିଛି ଯେ ଆମର ଇଚ୍ଛା ମୁତାବକ ବରପାତ୍ରଟିଏ ଖୋଜିବା ପାଇଁ ଶକ୍ତି ନାହିଁ । ପୁଣି ଭାବେ ମୁଁ ଜନ୍ମ ନ ହୋଇଥିଲେ ଭଲ ହୋଇଥାନ୍ତା । ଏବେ ମଧ୍ୟ ମରିଗଲେ ଗୋଟିଏ ଦୃଷ୍ଟିରୁ ଭଲ ହୋଇଥାଆନ୍ତା । ପୁଣି ମରିଯିବା ଅର୍ଥାତ୍ ମା' ଏବଂ ସାନଭାଇମାନଙ୍କୁ ଛାଡ଼ି ଚାଲିଯିବା ଏକଥା ଭାବି ସେ ବିଚାର ମନରୁ ବାହାର କରିଦେଲା । ଯେଉଁଭଳି ସ୍ୱାମୀ ମିଳିଲେ ମଧ୍ୟ ସଂସାର କରିବାକୁ ହେବ । ମା' ପୁଣି ନିଜ ସଂସାର ଚଳାଉଛି ତ । ଭାଗ୍ୟ ଭଲଥିଲେ ଉପଯୁକ୍ତ ସ୍ୱାମୀ ନିଶ୍ଚୟ ମିଳିବ । ଏଇ ଗାଁର ସ୍କୁଲ ମାଷ୍ଟ୍ର ଭେଙ୍କଟାଶାସ୍ତ୍ରୀ କେତେ ଭଲ ଲୋକ । ସ୍ତ୍ରୀକୁ ଗାଳି ଦିଅନ୍ତି ନାହିଁ । ପାନ, ବିଡ଼ି ବଦଭ୍ୟାସ ନାହିଁ । ମୁହଁରୁ ଖରାପ କଥା ବାହାରେ ନାହିଁ । ସେଭଳି ସ୍ୱାମୀଟିଏ ମିଳିଲେ ଭଲହୁଅନ୍ତା । ଏହିପରି ଅନେକ ବିଚାର ଏବଂ ଆଶାର ତରଙ୍ଗ ପାର୍ବତୀର ମନରେ ଖେଳୁଥାଏ ।

ଦିନେ ସନ୍ଧ୍ୟା ବେଳକୁ ଘରକୁ ଫେରି ଚେନ୍ନିଗରାୟ ପଚାରିଲା -"ପାର୍ବତୀ ବଡ଼କନ୍ୟା ହୋଇଗଲାଣି କି ?" ଏହା ପଚାରିଲା ବେଳେ ପାର୍ବତୀ ସେହିଠାରେ ଠିଆ ହୋଇଥିଲା । ନକ୍ଷତ୍ରାକୁ ଭାରି ବିରକ୍ତ ଲାଗିଲା, କହିଲା - "ତୁମର କ'ଣ ଟିକିଏ ବୁଦ୍ଧି ନାହିଁ । ତୁମକୁ ଏକଥା କିଏ କହିଲା ?"

ଅନ୍ନାଜୋଇସ୍ ପଚାରିଲେ - "ତୁମର ଝିଅ ଆଜିକାଲି ଘରୁ ବାହାରୁ ନାହିଁ, କ'ଣ ଘରଯୋଗ୍ୟ ହୋଇଗଲାଣି କି ?"

"ତୁମେ କ'ଣ କହିଲ ?"

"ମୁଁ କହିଲି ମୁଁ ଜାଣିନି । ଘରେ ପଚାରି ବୁଝିବି ।"

"ତୁମେ ନାହିଁ ବୋଲି କାହିଁକି କହିଲ ନାହିଁ ?"

"ମୋର ଏତେ କଥା କିଏ ଜାଣେ ।"

"ଏବେ କହିବ ଯେ ସେ ଘରେ ବସି ଖଲି ସିଉଁଛି ।"

ଗାଁର ବ୍ରାହ୍ମଣମାନଙ୍କୁ ଏ ବିଷୟରେ ସନ୍ଦେହ ହେଲା । ଯେତେ ଗୁପ୍ତ ରଖିଲେ ମଧ୍ୟ ଏଭଳି ବିଷୟ ବେଶି ଦିନ ଲୁଚି ରହେ ନାହିଁ ।

Digitized by srujanika@gmail.com

ତା'ପରଦିନ ଦ୍ୱିପହରରେ ନକ୍ଷିଜ୍ମାର ଘର ଆଗରେ ଗୋଟିଏ ଗୁଡ଼ି ଶଗଡ଼ ଆସି ପହଞ୍ଚିଲା । ବଳଦମାନଙ୍କ ବେକରେ ଘଣ୍ଟି ଲାଗିଥାଏ । ଶଗଡ଼ ଭିତରୁ ଜଣେ ହୃଷ୍ଟପୁଷ୍ଟ ଡେଙ୍ଗାବ୍ୟକ୍ତି ଓହ୍ଲାଇଲା । କପାଳରେ ଚିତ୍ରକ ଏବଂ ଗଳାରେ ରୁଦ୍ରାକ୍ଷ ମାଳା । ପାର୍ବତୀ ତାଙ୍କୁ ଦେଖି ଚିହ୍ନିପାରିଲା ନାହିଁ । ଶଗଡ଼ ଭିତରୁ ତା'ପରେ ବୁଢ଼ୀ ଅକ୍କାମ୍ମା ମଧ୍ୟ ଓହ୍ଲାଇଲା । ଚାରିବର୍ଷ ପରେ ଅକ୍କାମ୍ମା ଏ ଗାଁକୁ ଆସୁଛି । ବୁଢ଼ୀର ଅଣ୍ଟା ଆହୁରି ନଇଁ ଯାଇଥାଏ । ପାର୍ବତୀ ବୁଢ଼ୀକୁ ଦେଖି ଘର ଭିତରକୁ ଧାଇଁ ଯାଇ ମା'କୁ କହିଲା । ନକ୍ଷିଜ୍ମା ବାହାରକୁ ଆସି ଦେଖେତ ସାମନାରେ ବାପା ଏବଂ ଜେଜେମା ଠିଆ ହୋଇଛନ୍ତି । କଣ୍ଟାକୋଇସ୍ କହିଲେ - "ତୁ କେତେ ଦୁର୍ବଳ ହୋଇ ଯାଇଛୁ ନକ୍ଷୁ ? ଇଏ ତୋର ବଡ଼ ଝିଅ ଟି ।" ନିଜ ଅଜାଙ୍କ ବିଷୟରେ ପାର୍ବତୀ ଓ ଅନ୍ୟ ପିଲାପିଲି ମାନେ କେତେ କଥା ଶୁଣିଥିଲେ, କିନ୍ତୁ ତାଙ୍କୁ ଆଜି ଦେଖିବାକୁ ପାଇଲେ । ଜେଜେ ବୁଢ଼ୀ କେତେ ପିଠା ପଣା ଆଣିଥିଲା । ଅଜା ମଧ୍ୟ ନୂଆ ପ୍ୟାଣ୍ଟସାର୍ଟ ଓ ଶାଢ଼ୀ ଆଣିଥିଲେ, ତା ସାଥିରେ କିଛି ଗଙ୍ଗାଜଳ ମଧ୍ୟ । ସ୍କୁଲରୁ ଫେରି ବିଶ୍ୱର ଖୁସି କହିଲେ ନସରେ ।

ନକ୍ଷିଜ୍ମା ପଚାରିଲା - "ବାପାଙ୍କର ଯିବାର ବାରବର୍ଷ ହୋଇଯାଇଥିଲା ନା ? ଘରକୁ ଫେରିଲା ପୂର୍ବରୁ କେଉଁ ମନ୍ଦିରରେ ପୂଜାପୂଜି କରିଥିଲେ ଠିକ୍ ହୋଇଥାନ୍ତା ।" "ଆଲୋ ଝିଅ ଯିଏ କାଶୀରୁ ଫେରେ ତା'ର ଏସବୁ ଦରକାର ନାହିଁ । ସାଙ୍ଗରେ ଗଙ୍ଗାଜଳ ଆଣିଛି ପରା ।"

"କାଶୀରେ ଏତେ ବର୍ଷ ରହିବା କ'ଣ ଦରକାର ଥିଲା ?" ଏ ପ୍ରଶ୍ନର ଠିକ୍ ଉତ୍ତର କଣ୍ଟାକୋଇସ୍ ଦେଲେ ନାହିଁ । ଖାଲି କହିଲେ - "ବିଶ୍ୱନାଥଙ୍କ ଚରଣ ତଳେ ରହିବା ପାଇଁ ଇଚ୍ଛା ହେଲା ବୋଲି ଚାଲିଗଲି ।" ବୁଢ଼ୀ ଅକ୍କାମ୍ମା ଦିନଯାକ ନାତୁଣୀ ସାଙ୍ଗରେ ଦୁଃଖ ସୁଖ ହେଲା ଏବଂ ନାଗଲାପୁରର ସବୁ ଘଟଣା କହିଲା । କଣ୍ଟାକୋଇସ୍ ସେ ଗାଁର ଜଣେ ପୁରୋହିତଙ୍କ ଘରକୁ ଯାଇ ତାଙ୍କୁ କାଶୀରେ ବାରବର୍ଷ ରହିବାର ଅନୁଭୂତି ଶୁଣାଇ ପାନ, ନଡ଼ିଆ ଦାନ ଧରି ଘରକୁ ଫେରିଲେ । ଆସିବାର କାରଣ ବୁଝାଇ ଅକ୍କାମ୍ମା କହିଲା - "କଲେଶର ସ୍ତ୍ରୀ ଷୋହଳ ବର୍ଷ ହେଲା ବିଭା ହେଲେ ସୁଦ୍ଧା ତାର ପୁଅ ପିଲା ହେଉନାହିଁ । ସନ୍ତାନ ନହେଲେ ପିଣ୍ଡ ଦେବାକୁ ମଧ୍ୟ କେହି ରହିବେ ନାହିଁ ଏବଂ ବଂଶ ବୁଡ଼ିଯିବ । ତେଣୁ ଆମେ ଠିକ୍ କରିଛୁ କଲେଶ ସାଙ୍ଗରେ ଆଉ ଗୋଟିଏ କନ୍ୟା ବିବାହ କରାଇବୁ । "

"ଭାଇ କ'ଣ ଏଥିପାଇଁ ରାଜି ।"

"ରାଜି ହେବ ନାହିଁ କାହିଁକି ? ସେଇ ନିଜେ ଶଗଡ଼ ବାନ୍ଧି ଆମ ଦିଜଣଙ୍କୁ ପଠାଇଛି ।"

"ଏ ସମ୍ପର୍କରେ ମୁଁ ବା କ'ଣ କହିବି ?"

"ତୁ ପାର୍ବତୀକୁ ଦେବା ପାଇଁ ରାଜି ହୋଇ ଯା, ଗୋଟିଏ ଦିନରେ ବିଭାଘର କରାଇଦେବା ।" ବୁଢ଼ୀ ଏକଥା କହିଲା ବେଳେ ପାର୍ବତୀ ଶୁଣୁଥିଲା । ସେ ହଠାତ୍ କିଛି ବୁଝି ପାରିଲା ନାହିଁ । ନକ୍ଷିଜ୍ମା ମଧ୍ୟ

Digitized by srujanika@gmail.com

କିଛି ସମୟ ନ ବୁଝିଲା ପରି ରହିଲା । ବୁଢ଼ୀ ପୁଣି କହିଲା - "କଣ୍ଠୀ କାଶୀରୁ ତିନି ହଜାର ଟଙ୍କା ଓ କୋଡ଼ିଏଟି ସୁନା ମୁଦି ଆଣି ଆସିଛି । ସେ ସବୁ ଆମ ଝିଅର ହେବ । ରାଣୀ ଭଳି ରହିବ ।"

ନକ୍ଷିକା କହିଲା, "ପାର୍ବତୀର ବୟସ କେତେ, ଭାଇର ବୟସ କେତେ । ଏ ଦିଲଣ ମାମୁଁ ଭାଣିଜୀ । କଳେଶ ଭାଇର ପୁଅଟିଏ ଥିଲେ ସିନା ତା ସାଙ୍ଗରେ ବିଭାଘର କରିପାରନ୍ତେ ।"

"ତା'ର ଯଦି ପୁଅ ଥାଆନ୍ତା ଏ ଦ୍ୱିତୀୟ ବିବାହ କରନ୍ତା କାହିଁକି ? ତା'ଛଡ଼ା ମାମୁଁ ଭାଣିଜୀରେ କ'ଣ ବିଭାଘର ହେଉନାହିଁ ? ତାଙ୍କୁ ଅବା କେତେ ବୟସ ହୋଇ ଯାଇଛି ? ଛତିଶି ସଇଁତିରିଶି ହେବ । ଏବେ ମଧ୍ୟ ରାଜ କୁମାର ଭଳି ସୁନ୍ଦର ଚେହେରା ଅଛି ।"

"ଭାଉଜ କ'ଣ ଚୁପ୍ ରହିବ ?"

"ନ ରହିଲେ ତା' ବାପଘରକୁ ସିଏ ଯିବ ।"

ନକ୍ଷିକା ବୁଝିପାରୁନଥିଲା ଯେ 'ହଁ' କରିବ କି 'ନାହିଁ' କରିବ । ମନଟା ଭାରି ବ୍ୟସ୍ତ ହେଲା । ବୁଢ଼ୀ କହିଲା - "ତୁତ ଦେଖୁଛୁ ଆମ ଘରେ ଖାଇବା ପିଇବାରେ ଅଭାବ ନାହିଁ । କଳେଶ ପରିଶ୍ରମ କରି ବିଲବାଡ଼ି କଥା ବୁଝୁଛି । ଘରଦ୍ୱାର ତ ଅଛି । ତା'ଛଡ଼ା କଣ୍ଠୀ ତିନି ହଜାର ଟଙ୍କା ଆଣିଛି । ଦରକାର ହେଲେ ସେଥିରେ କେବଳ ସୁନା କିଣିଦେବ । ପାର୍ବତୀ ଆମର ନାତୁଣୀ ଏବଂ ବୋହୂ ଦୁଇଟା ଯାକ ହୋଇ ରହିବ । କଳେଶର ସନ୍ତାନ ନହେଲେ ଆମକୁ ପିଣ୍ଡ କିଏ ବାଢ଼ିବ ? ମା' ପେଟରୁ ଜନ୍ମ ହେଲା ପରେ ତୁମ ଭାଇ ଭଉଣୀ ଦୁହିଁଙ୍କୁ ମୁଁ ପାଳି ପୋଷି ବଡ଼ କରିଛି । ମୁଁ ନିଜେ ଆସି ତୋର ଝିଅକୁ ନାତୁଣୀ ବୋହୂ କରିବାକୁ ମାଗୁଛି । ଏଥିପାଇଁ ଏତେ ଭାବୁଛୁ କ'ଣ ?"

ନକ୍ଷିକା ମନରେ ସହାନୁଭୂତି ଆସିଲା । କିନ୍ତୁ, ତା'ର ହୃଦୟ ଭିତରେ ଏ ପ୍ରସ୍ତାବର ବିରୋଧ କରୁଥିଲା । ସେ କିଛି କହିଲା ନାହିଁ । ସେଦିନ ରାତିରେ ଖାଇ ବସିଲା ବେଳକୁ କଣ୍ଠୀକୋଇସ କଥା ପକାଇଲେ । ଚେନ୍ନିଗରାୟ-ମଧ୍ୟ ଥିଲା । ସେତ ପ୍ରଥମରୁ ଶ୍ୱଶୁରଙ୍କୁ ଡରେ । ତାଙ୍କରି ଦ୍ୱାରାତ ଏ ସର୍ବାଧିକାରୀ ମିଳିଥିଲା । ବୁଢ଼ୀ-ଅକ୍କମା ନକ୍ଷିକା ସାଙ୍ଗରେ ଯାହା କଥା ହୋଇଥିଲା ତାକୁ ଦୋହରାଇ ସାରି କଣ୍ଠୀକୋଇସ ଜୋଇଁଙ୍କ ଆଡ଼କୁ ଚାହିଁ କହିଲେ - "ଚେନ୍ନିଗା ତୁମେ କ'ଣ କହୁଛ ? ଆମର ଘର ବାଡ଼ି ଏବଂ ଜମି ଏବଂ ତିନି ହଜାର ଟଙ୍କା ତୁମ ଝିଅର ହେବ । ତୁମେ କାହିଁକି ଆଉ କେଉଁ ଆଡ଼େ ବର ଖୋଜି ବୁଲିବ । ଏ ପ୍ରସ୍ତାବରେ ରାଜି ହୋଇଯାଅ ।" ଚେନ୍ନିଗରାୟ ବା ନାହିଁ କାହିଁକି କରିବ ? କହିଲା - "ଠିକ୍ ଅଛି, ଏ ପୋଡ଼ା . . . . . ।" କ'ଣ ଗୋଟିଏ ଖରାପ ଶବ୍ଦ ପାଟିରୁ ବାହାରୁଥିଲା ତାକୁ ବନ୍ଦ କରି କହିଲା - "ତାକୁ ଆପଣ ପଚାରନ୍ତୁ, ମୋର ଆପତ୍ତି ନାହିଁ ।"

"ତୋର ସ୍ୱାମୀ ହଁ କଲେଣି ତୁ କ'ଣ କହୁଛୁ ନକ୍ଷୁ ?"

ନକ୍ଷିକା କ'ଣ କହିବ ବୁଝି ନପାରି କହିଲା - "ଆଜି ଥାଉ, କାଲି ଏ ବିଷୟ ଚିନ୍ତା କରି କହିବି ।"

Digitized by srujanika@gmail.com

"ଆଚ୍ଛା ଏଥିରେ ଚିନ୍ତାର ବିଷୟ କ'ଣ ଅଛି ? ଆମେ ସମସ୍ତେ ରାଜି ହେଲେ ହେଲା । ମୁଁ ଗାଁକୁ ଫେରି ଆଠଦିନ ଭିତରେ ସବୁ ଯୋଗାଡ଼ କରି ବିଭାଘର କରିଦେବି ।" କଣ୍ଟାଜୋଇସ କହିଲେ ।

"ଆପଣ ଆଉ ଦି ଚାରିଦିନ ଏଠାରେ ତ ରହିବେ ? ପରେ ଏ ବିଷୟରେ କଥା ହେବା ।"

"ଆଉ ରହିବାକୁ ସମୟ ନାହିଁ । ଗାଁକୁ ଗଲେ ବିଭାଘର ପାଇଁ ଯୋଗାଡ଼ କରିବାକୁ ପଡ଼ିବ । ତୋ ହାତରୁ ପଇସାଟିଏ ପଡ଼ିବ ନାହିଁ ।" ବୁଢ଼ୀ ଅକ୍କାମା କହିଲା ।

ଖାଇ ସାରିବା ପରେ ସମସ୍ତେ ଶୋଇଗଲେ । କ୍ଲାନ୍ତିଆ ହୋଇ ଆସିଥିବାରୁ କଣ୍ଟାଜୋଇସ ଏବଂ ଅକ୍କାମାକୁ ଶୀଘ୍ର ନିଦ ଲାଗିଗଲା । ଚେନ୍ନିଗା ମଧ୍ୟ ଘୁଙ୍ଗୁଡ଼ି ମାରୁଥାଏ । ପିଲାଗୁଡ଼ାକ କେତେବେଳୁ ଶୋଇ ଗଲେଣି । ନଞ୍ଜମ୍ମା ଆଖିରେ କିନ୍ତୁ ନିଦ ନଥାଏ । ଏପରି ଅପ୍ରତ୍ୟାଶିତ ଭାବେ ଏ ପ୍ରସ୍ତାବ ବିଷୟରେ ଶୁଣି ହଠାତ୍ କିଛି ନିର୍ଣ୍ଣୟ କରି ପାରୁନଥିଲା । ନାଗଲାପୁରରେ ଅବଶ୍ୟ ଖାଇବା ପିଇବା ଅଭାବ ରହିବ ନାହିଁ । ଦୁଧ ଦହି ମଧ୍ୟ ଢେର । ଜମିରୁ ବର୍ଷକର ଖାଇବା ପାଇଁ ଧାନ, ମାଣ୍ଡିଆ ମିଳିଯାଏ । ପାର୍ବତୀକୁ ତିନି ହଜାର ଟଙ୍କା ମଧ୍ୟ ମିଳିବ । ଏତେ ଟଙ୍କା ଆଜି ପର୍ଯ୍ୟନ୍ତ ଆମେ ଏକାଠି ଦେଖିନାହୁଁ ମଧ୍ୟ । ମୋ ଝିଅ ଜନ୍ମ ହେଲା ଦିନଠାରୁ କେଉଁ ସୁଖ ପାଇ ଯାଇଛି ? ଧାନ ଥିଲେ କନା ନାହିଁ ତ କନା ଥିଲେ ଧାନ ନାହିଁ । ଏପରି କେତେ ଭାବନା ମନରେ ଆସିଲା, ଯେ ଭାଇର ପ୍ରଥମ ସ୍ତ୍ରୀ ଥାଉ ଥାଉ ତାକୁ ନିଜ ଝିଅ ଦେବାଟା ଠିକ୍ ହେବ କି ? ପୁଣି ଭାବିଲା ମୋ ଠାରୁ ସାତ ବର୍ଷ ବଡ଼ ଅର୍ଥାତ୍ ପାର୍ବତୀ ଏବଂ କଲ୍ଲେଶ ମଧ୍ୟରେ ବାଇଶ ବର୍ଷର ତଫାତ୍ । ତିରିଶି ବର୍ଷ ତଫାତ୍‌ରେ ମଧ୍ୟ ଦ୍ୱିତୀୟ ପକ୍ଷ ତୃତୀୟ ପକ୍ଷ ବିବାହ କରିବାର ସେ ଦେଖିଛି । ସନ୍ତାନ ନହେବାରୁ ପ୍ରଥମ ସ୍ତ୍ରୀ ଥାଉ ଥାଉ ଆଉ ଗୋଟିଏ ବିବାହ କରିବା କିଛି ନୂଆ କଥା ନୁହେଁ । କିନ୍ତୁ ଭାଇର ସନ୍ତାନ କାହିଁକି ହେଉ ନାହାନ୍ତି, ତାର ଖରାପ ଚରିତ୍ର ଯୋଗୁଁ ନୁହେଁ ତ ? ଭାଉଜ ସନ୍ତାନ ଜନ୍ମ କରିବାରେ ଅସମର୍ଥ ? ଏ ବିବାହରେ ମୋ ଝିଅ କ'ଣ ସୁଖରେ ରହି ପାରିବ ?

୪

ଏତେ ସବୁ ପ୍ରଶ୍ନର ଉତ୍ତର ଖୋଜି କାଲି ସକାଳୁ ଉଠିଲେ ବାପାଙ୍କୁ କ'ଣ ହେଲେ ଜବାବ୍ ଦେବାକୁ ପଡ଼ିବ । ଏପରି ପରିସ୍ଥିତିରେ ମନକଥା ଖୋଲି କହିବାକୁ ମଧ୍ୟ କେହି ପାଖରେନାହାନ୍ତି । ଝିଅର ବାପ ତ ପ୍ରସ୍ତାବ ଶୁଣୁ ଶୁଣୁ 'ହଁ' କରି ଦେଲେ । ପୁଅ ଝିଅଙ୍କ ବିବାହ ବିଷୟ ମା ବାପ ଏକାଠି ହୋଇ ବିଚାର କରନ୍ତି । ମୋରି ଭାଗ୍ୟରେ ଏପରି ଗୋଟାଏ ଲୋକଥିଲା । ସ୍ୱାମୀ କଥା ଭାବିଲେ ବୃଥାରେ ମନ ଦୁଃଖ ହେବ ବୋଲି ଭାବି ଚୁପ ରହିଲା । ହଠାତ୍ ମହାଦେବୟାଙ୍କ କଥା ମନେ ପଡ଼ିଲା । ଭାବିଲା ତାଙ୍କୁ ପଚାରିଲେ ଭଲ ହେବ । ନଞ୍ଜମ୍ମା ଧୀରେ ଧୀରେ ଉଠି ଅନ୍ଧାରରେ ବାହାରକୁ ଚାଲିଗଲା । ଦାଣ୍ଡପଟ କବାଟ ଆସ୍ତେ ଆଉଜାଇ ନେଲା ବେଳକୁ ଦେଖିଲା ପଛରେ ପାର୍ବତୀ ଠିଆ ହୋଇଛି । ପାଟି ନକରି ଧୀରେ ଧୀରେ ପଛରେ ଆସିବାକୁ କହି କବାଟ ଆଉଜାଇ ମା'ଝିଅ ଦୁହେଁ ଅନ୍ଧାରରେ ଚାଲିଲେ । ମନ୍ଦିରକୁ ଯାଇ ମହାଦେବୟାଙ୍କୁ ଉଠାଇଲେ । ସେ ଉଠି ଦୀପଟା ଲଗାଇଲେ । ଦୀପ ଆଲୁଅରେ ନଞ୍ଜମ୍ମା

Digitized by srujanika@gmail.com

ଦେଖିଲା ପାର୍ବତୀ ଆଖିରେ ଲୁହ । ମହାଦେବଯ୍ୟା କହିଲେ –"କ'ଣ ଝିଅ ମାମୁଁ ସାଙ୍ଗରେ ବିଭା କରି ଦେଉଛନ୍ତି ବୋଲି କାନ୍ଦୁଛୁ କି ?"

"ଆପଣ କିପରି ଜାଣିଲେ ?" ନଞ୍ଜମ୍ମା ଆଶ୍ଚର୍ଯ୍ୟ ହୋଇ ପଚାରିଲା ।"

"ସନ୍ଧ୍ୟାବେଳେ ତୁମ ବାପା ଆସି ମତେ ସବୁ କହି ଯାଇଛନ୍ତି । ତୁମେ କ'ଣ ଠିକ୍ କଲ ?"

"ମୁଁ କିଛି ଠିକ୍ କରିପାରୁ ନାହିଁ ସେଥିପାଇଁ ତୁମ ପାଖକୁ ଆସିଛି ।"

ଏତିକି ବେଳକୁ ରାମନ୍ନା ମଧ୍ୟ ଆସି ସେଠାରେ ପହଞ୍ଚିଲା । ମା' ପଚାରିଲା,"ଘର ଛାଡିକରି ତୁ କାହିଁକି ଆସିଲୁ ?"

"ବାହାରୁ ତାଲା ପକାଇ ଆସିଛି । ମତେ ମଧ୍ୟ ଦନି ହେଲା ନାହିଁ । ମୁଁ ଜାଣି ପାରିଲି ଯେ ତୁମେ ଏଠାକୁ ଆସିଛ ।" ଏକଥା କହି ରାମନ୍ନା ମା'କୁ ଚାବି ଦେଲା ।

ମହାଦେବଯ୍ୟା ପଚାରିଲେ,"ନାନୀର ବିଭାଘର ବିଷୟରେ କଣ ଭାବୁଛୁରେ ପୁଅ ?""ନା, ନା, ଆମର ବିଭାଘର ଦରକାର ନାହିଁ । କଲ୍ଲେଶ ମାମୁଁ ନରସୀ ସାଙ୍ଗରେ - - - - ।" କ'ଣ ସବୁ କହି ଆସୁଥିଲା । କିନ୍ତୁ ଚୁପ ରହିଗଲା ପରେ କହିଲା –"ଏ ବିଭାଘର ନହେଲେ ଭଲ ।" ମହାଦେବଯ୍ୟା ନଞ୍ଜମ୍ମା ଅଡେ ଚାହିଁ କହିଲେ – "ଦେଖ ଭଉଣୀ ତୁମ ମନ କଥା ଯାହା ମୋ ମନ ମଧ୍ୟ ସେଯ୍ୟା, ନିଜ ଭାଇ ବୋଲି ଭାବି ସେଠି ଦିଅ ନାହିଁ । ମୋ ଇଚ୍ଛା ତ, ଏ ଆଖପାଖ ଗାଁରେ ମଧ୍ୟ ଦେବାକୁ ନୁହେଁ । ଏଠି ସମସ୍ତେ ଖରାପ ଲୋକ । ଯେତେ କଷ୍ଟ ହେଲେ ସୁଦ୍ଧା ଗୋଟିଏ ସରକାରୀ ମାଷ୍ଟ୍ରଟିଏ ଦେଖି ଦେଲେ ଝିଅ ଖୁସିରେ ରହିବ । ଏଠିତ ସମସ୍ତେ ମୂର୍ଖ । "

ପାର୍ବତୀର ମନ ମଧ୍ୟ ଏଇଯ୍ୟା ଚାହୁଁଥିଲା । ନଞ୍ଜମ୍ମା ମଧ୍ୟ ମହାଦେବଯ୍ୟା କଥାରେ ଏକମତ ହେଲା, କିନ୍ତୁ ଧୀରେ କହିଲା – "ଝିଅର ବୟସ ଆସି ଏତେ ହୋଇଗଲାଣି ଯଦି କନ୍ୟା ବଡ ହୋଇଯାଏ ତେବେ ମୁଁ କ'ଣ କରିବି ?"

"ଅନେକ ଗାଁରେ ବଡ କନ୍ୟା ବିବାହ ଆରମ୍ଭ ହେଲାଣି, ସେଇ ଗାଁମାନଙ୍କରେ ଯାଇ ବରପାତ୍ର ଦେଖିବା । ତୁମେ ତ ଏବେ ସରକାରଙ୍କର ଧାନମାଣ୍ଡିଆ କିଣା ହିସାବ ରଖୁଛ । ତୁମ ଅଧିକାରରେ ଥିବା ଗାଁମାନଙ୍କରେ ଚାନ୍ଦା ମାଗିଲେ ପାଞ୍ଚ ଶହ ଟଙ୍କା ମିଳିଯିବ ।"

ନଞ୍ଜମ୍ମା କହିଲା,"ମୁଁ ଶୁଣୁଛି ଯେଉଁଠି ବଡ ବରକନ୍ୟା ବିବାହ ହେଉଛି ବରପକ୍ଷ ଲୋକ ସେଠି

Digitized by srujanika@gmail.com

ବେଶି ଟଙ୍କା ମାଗୁଛନ୍ତି । ମତେ ଭାରି ଡର ଲାଗିଲାଣି । ଏ ଝିଅଟାର ବିଭାଘର କିପରି କରିବି ?"
ରମନ୍ନା କହିଲା –"ମା' ମୁଁ ନାନୀକୁ ପାଠ ପଢ଼ା ଶିଖେଇବି ଏବଂ ସେ ପ୍ରାଇଭେଟ୍ ହିସାବରେ ହାୟର ସେକେଣ୍ଡାରୀ ପରୀକ୍ଷା ଦେଇ ସ୍କୁଲ ମାଷ୍ଟ୍ରାଣୀ ହେବ । ବିଭାଘର ନହେଲେ ନାହିଁ ।" "ସେ କଥା ପରେ ଦେଖିବା । ଯଦି ତୋର ଇଚ୍ଛା ଅଛି ଭେଙ୍କଟସାମ୍ବା ମାଷ୍ଟ୍ରଙ୍କୁ ଥରେ ପଚାରିଦେ, ତାପରେ ତୋ ବାପକୁ ଯାଇ ଏକଥା କହିବୁ ।" ନକ୍ଷିମ୍ମା କହିଲା ।

ମା' କଥା ଶୁଣି ରମନ୍ନା ମାଷ୍ଟ୍ରଙ୍କ ଘରକୁ ଗଲା । ନକ୍ଷିମ୍ମା ସତର୍କ କରାଇ ଦେଲା – "କେହି ଯେପରି ନ ଜାଣନ୍ତି, ବୁଝିଲୁ ।" କିଛି ସମୟ ପରେ ମାଷ୍ଟ୍ର ମଧ୍ୟ ଆସିଗଲେ । ପାର୍ବତୀ ଯାଇ ଖମ୍ବ ଆଡୁଆଳରେ ବସିଲା ସବୁକଥା ଶୁଣିସାରି ମାଷ୍ଟ୍ରେ କହିଲେ – "ଭଉଣୀ ଅରସିକେରେ, ବାଣାବର ଭଳିଆ ଛୋଟ ଛୋଟ ଗାଁରେ ମଧ୍ୟ ଝିଅମାନେ ବିବାହ ପୂର୍ବରୁ ଋତୁମତୀ ହୋଇଥିବାର ଦେଖାଯାଉଛି । କେହି କେହି ଏକଥା ପ୍ରକାଶ କରନ୍ତି ନାହିଁ । ତେଣୁ ତୁମେ ଏଥିପାଇଁ ଡରନାହିଁ । ମତେ କହିଲେ ମୁଁ ଯାଇ ବରପାତ୍ର ଖୋଜି ଦେବି । ପ୍ରାଇମେରୀ ସ୍କୁଲମାଷ୍ଟ୍ର ମିଳିଯିବେ, କିନ୍ତୁ ସେମାନଙ୍କୁ ଦରମା କମ୍ ମିଳେ ତୁମେ ପଇସା ବ୍ୟବସ୍ଥା କର, ପାଞ୍ଚ ଛଅ ଶହ ଟଙ୍କା ଭିତରେ କାମ ତୁଟିଯିବ ।"

ନକ୍ଷିମ୍ମା କହିଲା – "ମାଷ୍ଟ୍ର ଆଜ୍ଞା, ବରପାତ୍ରଟିର ସ୍ୱଭାବ ଭଲ ହୋଇଥିବା ଦରକାର । ମୂର୍ଖଅବିବେକୀ ଯେପରି ନ ହୋଇଥାଏ । ଦରମା ପଛେ କମ୍ ହେଉ । ମୋ ଝିଅ ଖଟିସିଲେଇ ପଇସା ରୋଜଗାର କରିବ । ଏଥିରେ ମାସକୁ ପନ୍ଦର ଟଙ୍କା ଆଣିପାରିବ ।"

"ହଁ ହଁ, ସେ କଥା ଜାଣିଛି । ଏ ଝିଅର ହାତ ଯିଏ ଧରିବ ସିଏ ବଡ ପୁଣ୍ୟବାନ୍ ହୋଇଥିବ ।" ତେଣୁ ସମସ୍ତେ ଠିକ୍ କଲେ ଯେ ମାମୁଁ ଭାଣିଜୀରେ ବିବାହ କରାଯିବ ନାହିଁ । ମାଷ୍ଟ୍ରେ ବୁଝାଇଲେ, "ଝିଅକୁ କହ ମାମୁଁ ସାଙ୍ଗରେ ବିଭା ହେବି ନାହିଁ ବୋଲି ଜିଦ୍ ଧରି ବସୁ । ଝିଅ ଯଦି ଜିଦ୍ କରୁଛି ମୁଁ କଣ କରିପାରିବି । ଏଇଯା କହି ତୁମେ ଖସିଯିବ । ସିଧା ସଳଖ ମନାକର ନାହିଁ ।" ମନ୍ଦିରରୁ ଫେରି ନକ୍ଷିମ୍ମା, ପାର୍ବତୀ ଓ ରମନ୍ନା ଆସ୍ତେ କବାଟ ଖୋଲି ଘରେ ପଶିଲେ ।

ସକାଳୁ ଉଠୁ ଉଠୁ କଣ୍ଠୀଜୋଇସ ଗାଁକୁ ଫେରିବାର ଯୋଗାଡ କରୁକରୁ ପଚାରିଲେ – "ନକ୍ଷୁ ଆଠ ଦିନପରେ ଗୋଟିଏ ଶୁଭ ଦିନ ଅଛି । ବିଭାଘରଟା ଆମ ଗାଁରେ କରିବା କି ଏଇଠି କରିବା ।"

"ବାପା ଝିଅକୁ ମଧ୍ୟ ଥରେ ପଚାରିବା ଦରକାର । ଆମେ ଠିକ୍ କରିଦେଲେ କ'ଣ ହେବ ?"

"ଆରେ ତାକୁ କ'ଣ ପଚାରିବି ? ତୋର ବିଭାଘର ପାଇଁ ମୁଁ କ'ଣ ତତେ ପଚାରିଥିଲି ? ଆଲୋ ଝିଅ ପାର୍ବତୀ ଏଠିକି ଆସିଲୁ ।" ପାର୍ବତୀ ଆସିଲାରୁ କଣ୍ଠୀଜୋଇସ ପଚାରିଲେ –

"ତୋର କ'ଣ ଇଚ୍ଛା କହିଲୁ ।"

"ନା, ମୁଁ ବିଭା ହେବି ନାହିଁ ।"

Digitized by srujanika@gmail.com

"କାହିଁକି ?"

"ଏ ପ୍ରସ୍ତାବରେ ମୋର ପସନ୍ଦ ହେଉ ନାହିଁ ଅଜା, ମୁଁ ବିଭା ହେବି ନାହିଁ ।" ଏହା କହି ପାର୍ବତୀ ରୋଷେଇ ଘର ଭିତରକୁ ଚାଲିଗଲା । ହୋଇସ୍ ନଷ୍ଟଜ୍ଞାକୁ ଡାକି କହିଲେ – ଦେଖିଲୁ ଝିଏ କ'ଣ ଏପରି କହିଲାଣି ।"

"ତାର ଯଦି ପସନ୍ଦ ନ ହେଉଛି ତେବେ କାହିଁକି ବାଧ୍ୟ କରିବା ତାକୁ ।" ନଷ୍ଟଜ୍ଞା କହିଲା । କଣ୍ଠୀହୋଇସ୍ ରାଗିଗଲେ । ରୋଷେଇ ଘର ଭିତରକୁ ଯାଇ ପାର୍ବତୀ ଆଗରେ ଠିଆ ହୋଇ ପଚାରିଲେ – "କିଲୋ କାହିଁକି ବିଭା ହେବୁ ନାହିଁ ।"

"ମୋର ପସନ୍ଦ ହେଉ ନାହିଁ ମତେ ବାଧ୍ୟ କର ନାହିଁ ।" କଣ୍ଠୀହୋଇସ ରାଗିଯାଇ ପାର୍ବତୀକୁ ଏକ ଚାପୁଡା ମାରିଲେ । ପାର୍ବତୀକୁ ନଷ୍ଟଜ୍ଞା ମଧ୍ୟ ଏ ପର୍ଯ୍ୟନ୍ତ ହାତ ଉଠାଇ ନଥିଲା । ମାଡ ଶବ୍ଦ ଶୁଣି ରୋଷେଇ ଘରୁ ନଷ୍ଟଜ୍ଞା ବାହାରି ଆସି କହିଲା – "ବାପା ଝିଅଟାକୁ କାହିଁକି ମାରୁଛ ? ତୁମ ମନରେ ଯାହା ଆସିଲା ତାହା କରିବାକୁ ଜିଦ୍ ଧରି ବସିଛ । ମୋ ବିଭାଘର କଲାବେଳେ ମଧ୍ୟ ସେପରି ଆଗପଛ ବିଚାର ନକରି କରିଦେଲ । ସନ୍ତାନ ହେବା ନହେବା ଭାଗ୍ୟର କଥା । କିନ୍ତୁ ବିବାହ ପ୍ରସ୍ତାବ ଦେଖିଲା ବେଳେ ଝିଅର ଗୁଣ ବିଷୟରେ ବୁଝାବୁଝି କରିଥିଲେ ଭଲ ବୋହୂଟିଏ ତ ଘରକୁ ଆସିଥାନ୍ତା ।"

"ତୁ କ'ଣ ସବୁ ଏପରି କହୁଛୁ ?"

"ଯାହା ଭୋଗିଛି ତାହା କହୁଛି । ମୋ ସ୍ୱାମୀ ଘର ଦ୍ୱାର ଜମିବାଡି ସବୁ ଅନ୍ୟକୁ ଦେଇ ଆମକୁ ରାସ୍ତାର ଭିକାରୀ ଠାରୁ ମଧ୍ୟ ହୀନ ଅବସ୍ଥା କରିଦେଲେ । ଯଦି ମୁଁ ପରିଶ୍ରମ କରି ଦି'ପଇସା ରୋଜଗାର କରିନଥାନ୍ତି ତେବେ ସମସ୍ତେ ଲୋକ ଉପବାସରେ ମରିଥାନ୍ତୁ ।"

କଣ୍ଠୀହୋଇସ୍ କହିଲେ –"ସେଇଥିପାଇଁ ତ କହୁଛି କଳେଶକୁ ଝିଅ ଦେଲେ ଖାଇବା ପିଇବାର ଅଭାବ ରହିବ ନାହିଁ ।"

"ଝିଅର ମନ ନାହିଁ, ତେଣୁ ମୁଁ ତାକୁ ବାଧ୍ୟ କରି ସେଠି ବିଭା କରି ପାରିବି ନାହିଁ । ଭାଇ ପାଇଁ ଆଉ କେଉଁଠି କନ୍ୟା ଖୋଜନ୍ତୁ ।"

କଣ୍ଠୀହୋଇସ୍ ରାଗରେ ତମ ତମ ହୋଇ କହିଲେ – "ଆଜିଠୁଁ ତୁ ମୋର ଝିଅ ନୁହଁ କି ମୁଁ ତୋର ବାପ ନୁହଁ । ମା', ଉଠ ଚାଲ । ଏ ହାଡିଆଣୀର ଘରେ ପାଣି ବୁନ୍ଦେ ପିଇବା କଥା ନୁହେଁ ।"ଏହା କହି ନିଜର ଲୁଗା ପଟା ଉଠାଇ ଦାଣ୍ଡକୁ ଯାଇ ଶଗଡରେ ବସିଗଲେ । ବୁଢୀ ଅକ୍କଲ୍ମା ମଧ୍ୟ ନାରାଜ ଥିଲା ଯେ ସେ ଯାହା ଭାବି ଆସିଥିଲା ତାହା କିଛି ହେଲା ନାହିଁ । ସେ ମଧ୍ୟ ନିଜ ଲୁଗାପଟା ଧରି ଶଗଡରେ ଯାଇ ବସିଗଲା । ଶଗଡଯିବା ଆଗରୁ ନଷ୍ଟଜ୍ଞା ଦାଣ୍ଡକୁ ଆସି କହିଲା – "ବିଭାଘର ହେବାଟା ଯୋଗା-

Digitized by srujanika@gmail.com

ଯୋଗ କଥା । ଭାଗ୍ୟରେ ନଥିଲେ କେହି କରି ଦେଇ ପାରିବେ ନାହିଁ । ଏଥିପାଇଁ ମନବ୍ୟସ୍ତ କରି ଚାଲିଯାଅ ନାହିଁ । ଆଜି ଦିନଟା ଏଠି ରହି ଯାଅ ।'' ବୁଢ଼ୀ ମା କହିଲା – ''ଚଡେ ପାଳି ପୋଷି କରି ବଡ କରିଥିଲି ଯେ ଆଜି ତୁ ଭଲ ଉପକାର କଲୁ ।'' କଣ୍ଟାକୋଇଲ୍ କହିଲେ – ''ମୁଁ କହିଲି ପରା ଆଜିଠୁ ତୁ ମୋର ଝିଅ ନୁହଁକି ମୁଁ ତୋର ବାପ ନୁହେଁ ।'' ନଣ୍ଡଳା ଆଉ କିଛି ନ କହି ଚୁପ ରହିଲା ।

4

ସାତ ଆଠ ଦିନ ବିତିଗଲା । ଦିନେ ଦ୍ୱିପ୍ରହରେ ନଣ୍ଡଳା ଏବଂ ପାର୍ବତୀ ଘୋରଣାରେ ମାଣ୍ଡିଆ ଚୁନା କରୁଥିଲେ । ଘରେ ଆଉ କେହି ନଥାନ୍ତି । କିଏ ଜଣେ ଘରକୁ ପଶିଲା ଭଳି ଲାଗିଲା । ନଣ୍ଡଳା ମୁହଁ ବୁଲାଇ ଦେଖେ ତ ନରସୀ । ନରସୀ ଆଗରୁ କେବେ ଏ ଘରକୁ ଆସିନଥିଲା । ତାର ଦୋକାନ ବାଟେ ଗଲାବେଳେ ମଧ୍ୟ ନଣ୍ଡଳା ତା'ସାଙ୍ଗରେ କଥା ହୁଏ ନାହିଁ । କ'ଣ ପଚାରିଲେ କେବଳ ହୁଁ ମାରି ଚାଲିଯାଏ । ନରସୀ ଆଜି କିନ୍ତୁ ଘରକୁ ଆସିଛି । ତେଣୁ ତା' ସାଙ୍ଗରେ କଥାବାର୍ତ୍ତା କରିବାକୁ ହିଁ ପଡିବ । ତା' ସାଙ୍ଗରେ କଳିଗୋଳ ମଧ୍ୟ ତ ନାହିଁ, କିନ୍ତୁ ନରସୀର ଚରିତ୍ର ଲାଗି ତା'ଠାରୁ ଦୂରରେ ରହିବାକୁ ପଡିବ । ନଣ୍ଡଳା ନରସୀକୁ ବସିବାକୁ କହିବାରୁ ସେ ଖମ୍ବକୁ ଆଉଜି ବସି ପଡିଲା । ପାର୍ବତୀ ଉଠି ପଡି ଝୋଷେଇ ଘର ଭିତରକୁ ଚାଲିଗଲା । ନରସୀର ବୋଧହୁଏ କିଛି କାମ ପଡିଲାରୁ ଆସିଛି । ଏହାଭାବି ନଣ୍ଡଳା ପଚାରିଲା-'' କ'ଣ କାମ ଥିଲା କି ନରସୀ ?''

''ଭଉଣୀ ତୁମ ସାଙ୍ଗରେ ଗୋଟିଏ ବିଷୟ କଥା ହେବି ବୋଲି ଆସିଛି । ମୁଁ ଶୁଣିଲି ପାର୍ବତୀର ବିଭାଘର ତୁମ ଭାଇ କଳେଶ ସାଙ୍ଗରେ କରୁଛ । ଏହା କ'ଣ ସତ ?''

''ତୁ କେଉଁଠାରୁ ଶୁଣିଲୁ ?''

''ସିଙ୍ଗେହଳୀ ଗାଁରେ ଆମର ବନ୍ଧୁବାନ୍ଧବ ଅଛନ୍ତି । ସେମାନେ କୁଆଡେ ଏକଥା ଶୁଣିଲେ ଯେ ନାଗଲପୁର ଗାଁ ଟା ଯାକ ଏକଥା ଚର୍ଚ୍ଚା ହେଉଛି ।''

ନଣ୍ଡଳା କ'ଣ ଆଉ ତାକୁ ଭିତିରି କଥା ତକ କୁହନ୍ତା । ତେଣୁ କହିଲା – ''ଏହା ସବୁ ମିଛ ।''

''ତୁମ ବାପା ଓ ଜେଜେମା ଆସିଥିଲେ ନା ? ତାକୁ ଦେଖି ମୁଁ ଭାବିଲି ସେଥିପାଇଁ ଆସିଛନ୍ତି । ମିଛ ହେଲେ ହୋଇଥିବ । କିନ୍ତୁ ତୁମେ କାହାକୁ ଏକଥା କହିବନି ଯେ ମୁଁ ଏପରି କହୁଥିଲି । ସେ କଳେଶଟାକୁ ଝିଅ କେବେ ହେଲେ ଦେବ ନାହିଁ ।''

Digitized by srujanika@gmail.com

ନନ୍ଦିଆ ଏହାର ଉତ୍ତର କ'ଣ ଦେବ ଭାବି ନପାରି ନରସୀର ମୁହଁକୁ ଚାହିଁ ରହିଲା । ନରସୀ କହିଲା – "ଏଭଳି ଲୋକକୁ ଝିଅ ଦେବା ଅପେକ୍ଷା କୂଅରେ ପେଲିଦେଲେ ସୁଖରେ ପ୍ରାଣ ଯିବ ।"

"ମୋ ଭାଇ କ'ଣ ଏବେ ମଧ୍ୟ ତୋ ଘରକୁ ଆସୁଛି ?"

"ନାହିଁ, ଚାରି ବର୍ଷତଳେ ତାକୁ ଗୋଇଠା ମାରି ମୋ ଘରୁ ବାହାର କରି ଦେଇଥିଲି । ବେଶ୍ୟା ଘରୁ ମାଡ ଖାଇ ମଧ୍ୟ ତାକୁ ଟିକିଏ ଲାଜ ନାହିଁ ।"

ନନ୍ଦିଆ କିଛି କହିଲା ନାହିଁ । ବଡିଆ ଝିଅ ପାର୍ବତୀ ଖେଷେଇ ଘରେ ବସିଛି । ଏଭଳି କଥା ବଡ ପାଟିରେ କହିଲେ ତାକୁ ଶୁଭାଯିବ । ସେ ତେଣୁ ନରସୀକୁ କହିଲା – "ଛାଡ ଭଉଣୀ ସେପରି କଥା ନଶୁଣିବା ଭଲ ।"

"ନାଇଁ ଭଉଣୀ ମୁଁ କୌଣସି ଶତ୍ରୁତା କରି ଏକଥା କହୁନାହିଁ । କେତେ ଲୋକ ମୋ ଘରକୁ ଆସୁଛନ୍ତି । କିଏ ରାଗ ହେଲା, ବା ଗାଳି କଲା, ସେ ଆଡେ ମୁଁ ଧ୍ୟାନ ଦିଏ ନାହିଁ । ପାର୍ବତୀ ମୋର ଝିଅ ଭଳିଆ । ଭଲ ଘରଟିଏ ଦେଖି ତାକୁ ବିଭା କରାଇବ । ଆଉ ତୁମ ଭାଇ କଳେଶ, ମୋରି ସାଙ୍ଗରେ ରାତିରେ ଶୋଇଲା, ମତେ ନିଦ ଆସିଯିବାରୁ ଦୋକାନରୁ ପଇସା ଚୋରାଇ ନେଇ ପଳାଇଲା । ଏଇଟା କ'ଣ ଭଲ କଥା । ହଉ ମୁଁ ଯାଉଛି । ମନ ସକ ସକ ହେଲା ବୋଲି କହିଦେବି ବୋଲି ଆସିଗଲି ।" ନରସୀ ଉଠି ଚାଲିଗଲା । ସତେ ଯେପରି ଯେଉଁ ଉଦ୍ଦେଶ୍ୟରେ ଆସିଥିଲା ତାହା ପୂରଣ ହୋଇଗଲା ।

ସେ ଚାଲିଯିବା ପରେ ପାର୍ବତୀ ବାହାରକୁ ଆସି ପୁଣି ମା' ସାଙ୍ଗରେ ଘୋରଣା ରେ ମାଣ୍ଡିଆ ଚୂନା କରିବାରେ ଲାଗିଲା । ମା'ଝିଅଙ୍କ ମନରେ ଗୋଟିଏ ଭାବନା । ଦିହେଁ ଭାବୁଥିଲେ ଏ ବିବାହ ପ୍ରସ୍ତାବ ଟା ମନା କରି ଭଲ ହୋଇଛି । କିନ୍ତୁ ଦି'ଜଣ ଯାକ କେହି କାହାକୁ ପାଟି ଫିଟାଇ କହିଲେ ନାହିଁ ।

## 5

ନନ୍ଦିଆ ମନେ ମନେ ସ୍ଥିର କଲା ଯେ ଯେତେ ଶୀଘ୍ର ହେବ ଝିଅର ବିଭାଘର କରିବାକୁ ପଡିବ । ବିଚାର କଲା, ପ୍ରଥମେ ଟଙ୍କା ପଇସା ଯୋଗାଡ କରି ରଖିବାକୁ ପଡିବ । କାରଣ ହଠାତ୍ କେଉଁଠି ବିଭାଘର ଠିକ ହୋଇଗଲେ ପଇସା ଘରେ ନ ଥିଲେ ବେଙ୍କୁଚିତ ହେବାକୁ ପଡିବ । ସରକାରୀ ଗହମ ମାଣ୍ଡିଆ କିଣା ହେବା ଦିନଠାରୁ ନନ୍ଦିଆ ଆଉ ଗୁଣ୍ଡୁଗୌଡଙ୍କ ଠାରୁ ଅଗ୍ରୀମ ରସିଦ୍ ଲେଖାଇ ନେଇ ଟଙ୍କା

Digitized by srujanika@gmail.com

ନେଉନଥାଏ । ଏହା ଛଡା ନୂଆ ହିସାବ ରଖିବା ପାଇଁ ସରକାର ଶହେ ଟଙ୍କା ବର୍ଷକୁ ଦେଉଛନ୍ତି । ଏପରି ସବୁ ମିଶି ଦୁଇଶହ କୋଡିଏ ଟଙ୍କା ହେଉଛି । କିନ୍ତୁ ଏହା ମଧ୍ୟ ତର ଥାଏ ଯେ ବାର୍ଷିକ ପାଉଣା ମିଳିଲା ବେଳକୁ ତିପଟୁରରେ ରହି ସ୍ୱାମୀ ଯଦି ସବୁ ଟଙ୍କା ଖର୍ଚ୍ଚ କରି ଦିଅନ୍ତି । କିଛି ଦିନ ପରେ ଗୁଣ୍ଡଗୌଡ ଗାଁକୁ ଆସିଲେ । ନଞ୍ଜମ୍ମା ସ୍ୱାମୀଙ୍କୁ କହିଲା – "କୁରୁବରହଲ୍ଲୀ ଗାଁର ଛଅ ଜଣଙ୍କ ନାଁରେ ଅଗ୍ରୀମ ରସିଦ ଲେଖାଇ ଦିଅ ଯେ ଖଜଣା ପାଇ ଯାଇଛି ।" ଚେନ୍ନିଗା ମାନିଲା ନାହିଁ । ନଞ୍ଜମ୍ମା ଗୌଡଙ୍କୁ କହିଲା – "ଝିଅ ବିଭା କରିବା, ତେଣୁ ଟଙ୍କା ଦରକାର । ଆପଣ ତାଙ୍କୁ ରସିଦ ଟକ ଲେଖାଇ ଦିଅନ୍ତୁ ।"

ଗୁଣ୍ଡଗୌଡ କଥାଟା ବୁଝିଯାଇ କହିଲେ – "ଆରେ ଚେନ୍ନିଗା, ଶୀଘ୍ର ରସିଦ ଲେଖି ଦେବୁ ନା, ଦେବି ଦି ଚାରିଟା ମୁଥ ?"

"ଏ କି କଥା, ତୁମେ ଦି ଜଣ ମିଶି ମୋ ପାଉଣା ଟକ ନେଇଯାଉଛ । ମୁଁ କ'ଣ ସର୍କାରୀ ନୁହେଁ କି ? ମୁଁ ଯଦି ଦସ୍ତଖତ ନ କରିବି ତେବେ ?"

"ମୁଥ ଖାଇବାକୁ ଇଚ୍ଛା ହେଉଛି କି ? ଆମ ଗାଁକୁ ଆଉ ଯିବୁ ଯଦି ତୋର ଗୋଡ ଭାଙ୍ଗିଦେବି ।"

ଏହା କହି ଗୌଡ ଠେଙ୍ଗାଟିଏ ଧରି ଠିଆ ହେବାରୁ ଡରିଯାଇ ଚେନ୍ନିଗା ସବୁ ରସିଦମାନଙ୍କରେ ଦସ୍ତଖତ କରିଦେଲା । କିନ୍ତୁ ତା' ମନରେ ମଧ୍ୟ ରାଗ ଆସିଲା । ତେଣୁ ଗୁଡାଏ ଗାଳି ବକି ଦେଇ ବାହାରକୁ ଚାଲିଗଲା । ଗୌଡ ହସି ହସି ନଞ୍ଜମ୍ମାକୁ କହିଲେ – "ସଂସାର ଅର୍ଥ ହେଲା ଗୋଟିଏ ନାଟକ । ଦେଖିଲ ତ ?"

"ହଁ ଆପଣଙ୍କ ଭଳି ଲୋକ ନଥିଲେ ଏ ନାଟକକୁ ପୋତି ଜାଳି ଦିଅନ୍ତେଣି ଏମାନେ । ଏହିପରି ଦୁଇଶହ ଟଙ୍କା ହେଲା । ବିଭାଘର ପାଇଁ ଛଅ, ସାତ ଶହ ଟଙ୍କା ତ ଦରକାର । ଆଉ କ'ଣ କରିବି ମତେ ବୁଦ୍ଧି ଦିଶୁ ନାହିଁ । ଆପଣ ମତେ କିଛି ବାଟ ବତାନ୍ତୁ ।

"ତୁମ ଝିଅ ତ ସାକ୍ଷାତ୍ ଲକ୍ଷ୍ମୀ । ଆମ ଜାତିର ହୋଇଥିଲେ ପ୍ରସ୍ତାବମାନ କେବେଠାରୁ ଆସି ସାରନ୍ତାଣି । ତୁମର ଏ ବ୍ରାହ୍ମଣ ଜାତି ବଡ ଖରାପ ।"

"କ'ଣ କରିବା । ଜନ୍ମ ତ ହୋଇଛୁ ଏଇ ଜାତିରେ । ଏଇ ଜାତିର ନିୟମ ଅନୁସାରେ ଚଳିବାକୁ ପଡିବ ।"

"ହଉ ତୁମେ ନଡିଆ, ଡାଲି ଆଦି ପାଇଁ ଚିନ୍ତା କରିବ ନାହିଁ । ପ୍ରଥମେ ବରପାତ୍ର ଠିକ୍ କର । ଆମ ଗାଁରୁ ଦଶ, ପାଞ୍ଚ ଟଙ୍କା ଲେଖାଏଁ ଚାନ୍ଦା କରିଦେବି । ଚାଳିଶି ଘରୁ କିଛି ନହେଲେ ତିନିଶହ ଟଙ୍କା ଖଣ୍ଡେ ମିଳିଯିବ । ଫସଲ ହିସାବରେ ତୁମେ ଆମ ଗାଁ ଲୋକଙ୍କୁ ବହୁତ ସାହାଯ୍ୟ କରିଛ । ତେଣୁ ଆମ ଗାଁରୁ

Digitized by srujanika@gmail.com

ତିନିଶହ ଟଙ୍କା ଏବଂ ରସିଦ୍‌ରୁ ଦୁଇଶହ ଟଙ୍କା ଏମିତି ପାଞ୍ଚଶହ ଟଙ୍କା ହେଲା ତ ? ସେଥିରେ କୌଣସି ପ୍ରକାରେ ଚଳାଇ ନିଅ ।''

ଗୁଣ୍ଡୁଗୌଡଙ୍କ ଠାରୁ ଏପରି ଆଶ୍ୱାସନା ଶୁଣି ନଞ୍ଜାର ମନର ବୋଝ ହାଲୁକା ହୋଇଗଲା । ଶୀଘ୍ର ବରପାତ୍ର ଠିକ୍ କରିବା ପାଇଁ ସ୍ଥିର କଲା । ଗୁଣ୍ଡୁଗୌଡ ଗାଁକୁ ଫେରିଲା ପୂର୍ବରୁ ପାର୍ବତୀକୁ ତାକି ଆଶୀର୍ବାଦ ଦେଲେ,"ତୁ ଆମର ବଡ ସୁନ୍ଦର ଝିଅ, ତତେ ନିଶ୍ଚୟ ସୁନ୍ଦର ବର ମିଳିବ ।''

ନଞ୍ଜମ୍ମା ଭାବିଥିଲା ଯେ ବରପାତ୍ର ଖୋଜିବା ପାଇଁ କଲ୍ଲେଶର ସାହାଯ୍ୟ ନେବ । ସେ କ'ଣ ଜାଣିଥିଲା ଯେ କଲ୍ଲେଶ ନିଜେ ପାର୍ବତୀକୁ ବିଭା ହେବା ପାଇଁ ଚାହିଁବ । ବାପା ଏବଂ ଜେଜେ ବୁଢୀ ରାଗିକରି ଚାଲିଯିବା ପରେ ଆଉ ସାହାଯ୍ୟ କରିବାକୁ ନିଜର କେହି ନାହିଁ । କିଏ ଜଣେ ବିଶ୍ୱାସୀ ଲୋକ ସାହାଯ୍ୟ ନ କଲେ ଭଲ ବର ପାତ୍ରଟିଏ ମଧ୍ୟ ମିଳିବ ନାହିଁ । ନଞ୍ଜମ୍ମା ଏଥର ସାରାଭାର ମାଷ୍ଟ୍ର ଭେଙ୍କଟଶୟ୍ୟାଙ୍କୁ ଦେଇ କହିଲା – "କନ୍ୟାଦାନର ପୁଣ୍ୟ ଆପଣଙ୍କୁ ମିଳିବ । ଆପଣ ଦୟାକରି ମତେ ସାହାଯ୍ୟ କରିବେ ।''

ମାଷ୍ଟ୍ରେ ଚାରି, ପାଞ୍ଚ ଖଣ୍ଡ ଗାଁରେ ବୁଲି ଆସିଲେ । କେଉଁଠି କିଛି ଖବର ମିଳିଲା ନାହିଁ । ଅରସିକେରେ ଗାଁ ପାଖରେ ଜଣେ ଜମିଦାର ଖବର ପଠାଇଥିଲେ ଯେ ସେ ତାଙ୍କର ଦ୍ୱିତୀୟ ପୁଅ ପାଇଁ ବିବାହ ପ୍ରସ୍ତାବ ଖୋଜୁଛନ୍ତି ଏବଂ ପାର୍ବତୀ ପାଇଁ ରାଜି ଅଛନ୍ତି । ଭେଙ୍କଟଶୟ୍ୟା କହିଲେ – "ଭଉଣୀ ମୁଁ ତାଙ୍କୁ କୌଣସି ନିଶ୍ଚିତ ଜବାବ ଦେଇ ନାହିଁ । ମତେ ଲାଗୁଛି ଏତେ ବଡ ଜମିଦାର ଯଦି ଗରିବ ଘରୁ ଝିଅ ନେବାକୁ ରାଜି ଅଛନ୍ତି, ଏହାର ଅର୍ଥ ପୁଅରେ ନିଶ୍ଚୟ କିଛି ଦୁର୍ଗୁଣ କିମ୍ବା ଦୁର୍ଲକ୍ଷଣ ଥିବ ।''

"ହଁ ହୋଇଥିବ । କଥାରେ ଅଛି ବିବାଦ ଏବଂ ବିବାହ ସମାନ ସ୍ତରର ଲୋକଙ୍କ ସାଙ୍ଗରେ କରିବା କଥା । ଏତେ ବଡ ଘରେ ଆମେ ବିବାହ କରିବୁ ନାହିଁ ।'' ନଞ୍ଜମ୍ମା କହିଲା ।

ଏହିପରି ଚାରିମାସ ଖୋଜିବା ପରେ ଆଉ ଗୋଟିଏ ପ୍ରସ୍ତାବ ଆସିଲା । ଏ ପ୍ରସ୍ତାବଟି ତିମ୍ଲାପୁରର ଦ୍ୱାବରଶୟ୍ୟା ପଠାଇଥିଲେ । ବର ପାତ୍ରଟି ତାଙ୍କର ସ୍ତ୍ରୀଙ୍କର ଦୂରସମ୍ପର୍କୀୟ । ନାଁଟି ସୂର୍ଯ୍ୟନାରାୟଣ । ମାଟ୍ରିକ ପାସ୍ କରି ଗୋଟିଏ ମାଇନର ସ୍କୁଲରେ ମାଷ୍ଟ୍ର ଅଛି । ବୟସ ସତାଇଶି ବର୍ଷ । ତାର ପ୍ରଥମ ସ୍ତ୍ରୀ ମରିବାର ଚାରିମାସ ହୋଇଛି । ପ୍ରଥମ ସ୍ତ୍ରୀ ପକ୍ଷରୁ ଗୋଟିଏ ତିନିବର୍ଷର ଝିଅ ଅଛି । ପିଲାଟିର ବାପା, ମା' କେହି ନାହାନ୍ତି । ଝିଅଟିର ସବୁକଥା ନିଜେ ବୁଝେ । ସ୍କୁଲକୁ ଗଲାବେଳେ ସାଙ୍ଗରେ ନେଇଯାଏ । ପିଲାଟି ଦେଖିବାକୁ ମଧ୍ୟ ସୁନ୍ଦର । ମାସକୁ ଷାଠିଏ ଟଙ୍କା ବେତନ ମିଳେ । ବହୁତ ଗୁଣର । ଦ୍ୱାବରଶୟ୍ୟା ନିଜ ପୁଅ ହାତରେ କହି ପଠାଇଥିଲେ ଯେ ଏଇ ପ୍ରସଙ୍ଗଟା କରି ପକାଅ । ପିଲାଟି ଭଲ । ତୁମର ଝିଅ ସୁଖରେ ରହିବ । ତା' ଝିଅକୁ ତୁମ ଝିଅ ନିଜର କରି ପାଳିବ । ଦ୍ୱାବରଶୟ୍ୟା ନିଜେ ଆଜିକାଲି ଏତେ ଦୂରକୁ ଚାଲି ଆସି ପାରୁ ନାହାନ୍ତି ।

Digitized by srujanika@gmail.com

ଦ୍ୱାବରଣଯ୍ୟା ଯେ ଜଣେ ଜ୍ଞାନୀ ଓ ବିବେକୀ ଲୋକ ଏକଥା ନଷ୍ଟିଳା ଜାଣି ଥିଲା । ତାଙ୍କ ଉପରେ ବିଶ୍ୱାସ ନକରିବ ତ ଆଉ କାହା ଉପରେ ବିଶ୍ୱାସ କରିବ ? ନଷ୍ଟିଳା ଦ୍ୱାବରଣଯ୍ୟାଙ୍କ ପୁଅକୁ ପଚାରିଲା– "ପିଲାଟିକୁ ତୁମେ ଦେଖିଛ କି ?"

"ଆମେ ଭଲ କରି ଜାଣିନୁ । ତେବେ ସେ ମୋ ମା'ଙ୍କର ଦୂରସଂପର୍କୀୟ ବୋଲି ଶୁଣିଛି । ଏବେ ଗୁବ୍ବୀ ତାଲୁକାରେ ବାଳକେରେ ମାଇନର ସ୍କୁଲରେ ମାଷ୍ଟ୍ର ଅଛନ୍ତି । ଆପଣ ଯଦି ଡକାଇବେ ତେବେ ଝିଅ ଦେଖିବାକୁ ଆସିବେ ।"

ନଷ୍ଟିଳା ଯାଇ ଭେଙ୍କଟଣଯ୍ୟାଙ୍କୁ ଏକଥା କହିଲା । ସିଏ ଦ୍ୱାବରଣଯ୍ୟାଙ୍କ ପୁଅ ସାଙ୍ଗରେ ତିମଲାପୁର ଯାଇ ତାଙ୍କଠୁ ସବୁକଥା ବୁଝି ଗାଁକୁ ଫେରି ନଷ୍ଟିଳାକୁ କହିଲେ - "ନଷ୍ଟିଳା, ସେ ପିଲା ମୋର ମଧ୍ୟ ପରିଚିତ । ମୁଁ ଯେତେବେଳେ ଗୁବ୍ବୀ ତାଲୁକାରେ କଡବ ଗାଁରେ ଶିକ୍ଷକ ଥିଲି ଦରମା ନେବା ପାଇଁ ତାଲୁକା ଅଫିସକୁ ଆସିଲାବେଳେ ସେ ପିଲା ସାଙ୍ଗରେ ଭେଟ ହୋଇଥିଲା ଏବଂ କଥାବାର୍ତ୍ତା ମଧ୍ୟ ହୋଇଥିଲି । ଭାରି ଭଲ ଲୋକ । ତା' ସ୍ତ୍ରୀ ହଠାତ୍ ମରିଯାଇଛି ବୋଲି ମୁଁ ଜାଣିନଥିଲି । ଦ୍ୱିତୀୟ ପକ୍ଷ ବିଷୟ ଛାଡିଦେଲେ ଏ ଭଳି ବରପାତ୍ରଟିଏ ମିଳିବା ପ୍ରକୃତରେ କଷ୍ଟ । ନଷ୍ଟିଳା ପାର୍ବତୀକୁ ପଚାରିଲା । "ମା' ତୁମ ମନ ଯଦି ପାଉଛି ମତେ ପଚାରିବା ଦରକାର ନାହିଁ ।" ପାର୍ବତୀ କହିଲା । ନଷ୍ଟିଳା ନିଜ ସ୍ୱାମୀଙ୍କ ନାଁରେ ଗୋଟିଏ ଚିଠି ଲେଖି ଲୋକ ଦ୍ୱାରା ତିମ୍ମଲାପୁର ପଠାଇଦେଲା ।

ଚାର ପନ୍ଦର ଦିନ ପରେ ଦିନେ ଶଗଡ ଗାଡିରେ ବସି ଦ୍ୱାବରଣଯ୍ୟା, ତାଙ୍କ ସ୍ତ୍ରୀ ଏବଂ ବରପାତ୍ର ସୂର୍ଯ୍ୟନାରାୟଣକୁ ସାଙ୍ଗରେ ଧରି ଝିଅ ଦେଖିବାକୁ ଆସିଲେ । ଚେହେରାରୁ ଜଣା ପଡୁଥିଲା ଯେ ବରପାତ୍ରର ବୟସ ଛବିଶି, ସତେଇଶିରୁ ଅଧିକା ହେବନାହିଁ । ପିଲାଟା ମଧ୍ୟ ଗମ୍ଭୀର ସ୍ୱଭାବର ଏବଂ କମ୍ କଥାବାର୍ତ୍ତା କରେ । କିନ୍ତୁ ତାର ତିନିବର୍ଷର ଝିଅଟା ବାପା ପାଖ ଛାଡି ଆଉ କାହା ପାଖକୁ ଯିବାକୁ ନାରାଜ । ଭେଙ୍କଟେଯ୍ୟା ମାଷ୍ଟ୍ର ମଧ୍ୟ ଆସି ପହଞ୍ଚିଲେ । ସେ ସୂର୍ଯ୍ୟନାରାୟଣ ସାଙ୍ଗରେ କେତେକଥା ହେଲେ । ଦିପହରର ଭୋଜନ ସାରିଲା ବେଳକୁ ସୂର୍ଯ୍ୟନାରାୟଣର ଝିଅ ରତ୍ନା, ନଷ୍ଟିଳା ସାଙ୍ଗରେ ଖେଳ ଖେଳି ଆରମ୍ଭ କରିଦେଇଥିଲା । ନଷ୍ଟିଳା ତାକୁ କାଖ କରି ଅନେକ ସମୟ ବୁଲାଇଲା । ରୋଷେଇ ଘରେ ବସିଥିବା ପାର୍ବତୀ ସାଙ୍ଗରେ ଖେଳିଲା ପରେ ବିଶ୍ୱର ହାତଧରି ଖେଳିବା ପାଇଁ ବାଡ଼ିକୁ ଚାଲିଗଲା । ସୂର୍ଯ୍ୟନାରାୟଣ କହିଲା –"ସିଏ କାହା ସାଙ୍ଗରେ ଏତେ ଶୀଘ୍ର ମିଶି ପାରେ ନାହିଁ । ଏମାନଙ୍କ ଘରକୁ ଆସି ଅଧଘଣ୍ଟାଏ ଭିତରେ ଏମାନଙ୍କ ସାଙ୍ଗରେ ଖେଳାଖେଳି ଆରମ୍ଭ କଲାଣି ।"

ତାପରେ କନ୍ୟା ଦେଖାହେଲା । ସୂର୍ଯ୍ୟନାରାୟଣ ନିଜେ ନଷ୍ଟିଳାକୁ କହିଲା, "ମା' ମୁଁ ମୋର ଜାତକ ନେଇ ଆସିଛି । ଆପଣ ଯଦି ଚାହାନ୍ତି ତେବେ ଦୁହିଙ୍କର ଜାତକ କାହାକୁ ଦେଖାଇ ପାରନ୍ତି । ମୋର କିନ୍ତୁ ଏ ସବୁଥିଲେ ବିଶ୍ୱାସ ନାହିଁ । ପ୍ରଥମଥର ମୋର ଜାତକ ଦେଖି ଜ୍ୟୋତିଷ କହିଥିଲେ ଯେ ମୋର ପ୍ରଥମ ବିବାହ ଭଳି ମେଳକ ସେ ଆଉ କେଉଁଠାରେ ଦେଖି ନାହାନ୍ତି । କିନ୍ତୁ ବିବାହର ଚାରିବର୍ଷ ପରେ ଏପରି ଘଟିଲା । ମୋ କଥା ସବୁ ଦ୍ୱାବରଣଯ୍ୟା ମାମୁଁ ନିଶ୍ଚୟ ଜଣାଇଥିବେ । ଆପଣଙ୍କ ବିଷୟ ମଧ୍ୟ

Digitized by srujanika@gmail.com

କହିଛନ୍ତି । ଆପଣ ଯଦି ଚାହାନ୍ତି ଆଉ ଦୁଇ ଚାରିଜଣଙ୍କୁ ପଚରା ପଚାରି କରି ପାରନ୍ତି । ନାହିଁ ଯଦି ଆପଣଙ୍କର ଖୁସି, ତେବେ ସାଦା ଭାତ, ତରକାରୀ ରାନ୍ଧି ବର୍ତ୍ତମାନ ନିରାଡ଼ମ୍ବରରେ ବିବାହର ବିଧି ପୂରଣ କରନ୍ତୁ । ହଁ, ଆଉ ଗୋଟିଏ କଥା କହି ରଖୁଛି ଏତିକିବେଳୁ ଯେ ମୋର ଝିଅକୁ ତୁମ ଝିଅ ନିଜର ସନ୍ତାନ ଭଳି ଦେଖିବାକୁ ପଡ଼ିବ ।''

ଜାତକ ଦେଖିବା, ମାଷ୍ଟ୍ରଙ୍କୁ ବିଶେଷ ଆସୁନଥିଲା । ଦ୍ୱାବରଶୟ୍ୟା ମଧ୍ୟ ଏ ବିଷୟରେ ଏତେ ଅଭିଜ୍ଞ ନଥିଲେ । କିନ୍ତୁ ଦୁଇଜଣ ମିଶି ବରକନ୍ୟା ଜାତକ ମେଳକ ଦେଖିଲେ । ନାଗନାଡ଼ୀ, ଗଣ ମେଳକ ଇତ୍ୟାଦି ଦେଖାଗଲା । ଜାତକ ଭଲ ପଡ଼ିଲା । କିଛି ସମୟ ପରେ ମାଷ୍ଟ୍ରେ ଭେଙ୍କଟଶୟ୍ୟା ସୂର୍ଯ୍ୟନାରାୟଣଙ୍କୁ ନିଜ ଘରକୁ ଡାକି ନେଲେ । ଏପଟେ ଦ୍ୱାବରଶୟ୍ୟା ଚେନ୍ନିଗାକୁ ପଚାରିଲେ– ''ଆପଣ ସର୍ବରାକାରେ ଏ ପ୍ରସଙ୍ଗ ବିଷୟରେ କ'ଣ କହୁଛନ୍ତି ?''

''ମୁଁ କ'ଣ କହିବି ? ମତେ ପଚାରି କ'ଣ ଏ ଘରେ କିଛି କାମ ହୁଏ ?''

''ଏପରି କାହିଁକି କହୁଛନ୍ତି, ଯେତେ ହେଲେ ଆପଣ ଏ ଘରର ମୁରବୀ ।''

ଚେନ୍ନିଗା କହିଲା – ''ଏତେ ଲାଗିଛି ଯେ, ନଞ୍ଜମ୍ମାକୁ ପଚାରନ୍ତୁ, ଟଙ୍କା ପଇସା ଯୋଗାଡ଼ କରିଛି କି ?''

''ଆପଣ ନିଜେ ଆପଣଙ୍କ ସ୍ତ୍ରୀକୁ ପଚାରନ୍ତୁ ?''

ନଞ୍ଜମ୍ମା ଆଡେ ଚାହିଁ ଚେନ୍ନିଗା ପଚାରିଲା – ''କିଲୋ ପୋଡା - - - - -, ପଇସା କେଉଁଠୁ ଆଣିବୁ ?'' ଖରାପଭାଷା ତୁଣ୍ଡରେ ଧରିଥିବାରୁ ଲଜ୍ଜିତ ହୋଇ ପୁଣି ଦୋହରାଇ କହିଲା – ''ପଇସା ପତ୍ର ଯୋଗାଡ଼ କରିଛୁ ?''

''ହଁ, ଏ ବର୍ଷର ବାର୍ଷିକ ସର୍ବରାକାରୀ ପାଉଣା ଗୁଣ୍ଡଗୌଡଙ୍କ ପାଖରେ ଅଛି । ତା' ଛଡା ସେ କହୁଛନ୍ତି ଯେ ତାଙ୍କ ଗାଁରୁ ଚାନ୍ଦା କରି କିଛି ଆଦାୟ କରି ଦେବେ ।''

ଚେନ୍ନିଗାର ମନେ ପଡ଼ିଗଲା ଯେ ନଞ୍ଜମ୍ମା ଏବଂ ଗୁଣ୍ଡଗୌଡ ଏକାଠି ହୋଇ ତା'ଠାରୁ ଜବରଦସ୍ତ ରସିଦ ଲେଖାଇ ନେଇଥିଲେ । କହିଲା –''ସେ ଶଳାଟାର ଭାରି ଘରଭଙ୍ଗା ବୁଦ୍ଧି ।'' ନଞ୍ଜମ୍ମା ଆଉ କିଛି କହିଲା ନାହିଁ । କାରଣ ସେ ସ୍ୱାମୀର ସ୍ୱଭାବ ସାଙ୍ଗରେ ପରିଚିତ ଥିଲା । ଭେଙ୍କଟଶୟ୍ୟା, ମହାଦେବୟ୍ୟାଙ୍କୁ ନିଜ ଘରକୁ ଡାକି ବରପାତ୍ର ଦେଖାଇଲେ । ସେଠାରୁ ତିନିଜଣ ଯାକ ମିଶି ନଞ୍ଜମ୍ମାର ଘରକୁ ଗଲେ । ବିବାହ କରିବା ଠିକ୍ ହେଲା । ସୂର୍ଯ୍ୟନାରାୟଣ କହିଲା – ''ମାସକ ଭିତରେ ବିଭାଘର କରି ଦିଅନ୍ତୁ । ବେଶି ଖର୍ଚ୍ଚ କରନ୍ତୁ ନାହିଁ । ବୋହୂ ପିଲା ପାଇଁ ସବୁ ଜିନିଷ ମୁଁ ଆଣିବି । ବର ପାଇଁ ଏକ ହଳ ଧୋତି, ତମ୍ବାର ପଞ୍ଚପାତ୍ର ଏତିକି ଆଣିଲେ ଯଥେଷ୍ଟ ।'' ଗଲା ପୂର୍ବରୁ ସେ ନଞ୍ଜମ୍ମା ଏବଂ ଚେନ୍ନିଗରାୟଙ୍କୁ ପ୍ରଣାମ କଲା । ଦାଣ୍ଡରେ ବିଶ୍ୱ ସାଙ୍ଗରେ ଖେଳୁଥିବା ଝିଅକୁ ଆଣି ସମସ୍ତଙ୍କୁ ନମସ୍କାର କରାଇ, ଯାଇ ଶଗଡରେ ବସିଲା । ମାଷ୍ଟ୍ରେ ଏବଂ ମହାଦେବୟ୍ୟା ଗାଁ ମୁଣ୍ଡଯାଏ ଶଗଡ ସାଙ୍ଗରେ ଚାଲିଚାଲି ଗଲେ ।

Digitized by srujanika@gmail.com

ବିବାହ କରିବାତ ସ୍ଥିର ହୋଇଗଲା । ତିଥି, ବାର ଏବଂ ଲଗ୍ନ ସ୍ଥିର କରିବା ପାଇଁ ଗାଁ ପୁରୋହିତଙ୍କ ସାହାଯ୍ୟ ତ ଦରକାର । କିନ୍ତୁ ନଷ୍ଟିଜା ତ ଗାଁରୁ ବାସନ୍ଦ ହୋଇଥିଲା । ନିଜ ବାପାଙ୍କଠୁ ମଧ୍ୟ ସାହାଯ୍ୟ ମିଳିବ ନାହିଁ । ଗାଁ ପୁରୋହିତମାନଙ୍କୁ ଆଖି ନ ଦେଖାଇଲେ ପ୍ରତି ପଦରେ ବାଧା ସୃଷ୍ଟି କରିଥାନ୍ତେ । ଏବଂ ବିବାହ ପ୍ରସ୍ତାବଟା ଭାଙ୍ଗିବାକୁ ଚେଷ୍ଟା କରିଥାନ୍ତେ । ପିଲାଟା ଯଦିଓ ଭଲ,ତେବେ ବାରଆଡୁ ନାନା କଥା ଶୁଣିଲେ ତା' ମନ ଉପରେ ମଧ୍ୟ ପ୍ରଭାବ ପଡି ପାରିଥାନ୍ତା ।

ଗାଁ ପୁରୋହିତଙ୍କୁ ମନାଇବା ଟା ଅବଶ୍ୟ ବିଶେଷ କଷ୍ଟ ହେବ ନାହିଁ । ଯେଉଁଦିନ ଠାରୁ ସରକାରୀ ଧାନ, ମାଣ୍ଡିଆ କିଣିବା ନିୟମ ଲାଗୁ ହୋଇଥିଲା, ଗାଁଟା ଯାକ ଲୋକ ଜଣ ଜଣ ହୋଇ ଅନୁରୋଧ କରିଯାଇଛନ୍ତି ଯେ ତାଙ୍କର ଫସଲ ହିସାବ କମାଇ ଲେଖାଇବାକୁ । ପୁରୋହିତ ନିଜେ ଆସିନଥିଲେ, କିନ୍ତୁ ତାଙ୍କ ଭାଗୁଆଳୀକୁ ପଠାଇଥିଲେ । ଗାଁର ସମସ୍ତେ ଜାଣିଥିଲେ ଯେ ସର୍ବରାକାରୀ ହିସାବ ଲେଖିବା ଅସଲ ଲୋକ ହେଉଛି ନଷ୍ଟିଜା । ସେ ଦିନ ଦିପହର ଯାକ ବସି ଏ ବିଷୟରେ ବହୁତ ଭାବିଲା । ସନ୍ଧ୍ୟା ବେଳକୁ ଲୋକଟାଏ ପଠାଇ ଅନ୍ନାଜୋଇସ୍ ଏବଂ ଆୟାଶାସ୍ତ୍ରୀଙ୍କୁ ଡକାଇଲା । ଲୋକଟାକୁ କହିଲା – "ପୁରୋହିତଙ୍କୁ କହିବୁ ମୁଁ ଡକାଇ ପଠାଇଛି ।"

ନଷ୍ଟିଜାର ଏ ପଦକ୍ଷେପ ବଡ ଧୃଷ୍ଟତା ପୂର୍ଣ୍ଣ ଥିଲା । ଶୃଙ୍ଗେରୀ ମଠର ପ୍ରତିନିଧି ବୋଲାଉଥିବା ଗାଁ ପୁରୋହିତ ଡାକରା ଶୁଣି ଆସିବେ କି ନାହିଁ ଏ ସନ୍ଦେହ ତା'ମନରେ ହେଲା । ନିୟମ ଅନୁସାରେ ଗରିବ ଲୋକମାନେ ତାଙ୍କ ଦୁଆରକୁ ଯାଇ ସାଷ୍ଟାଙ୍ଗ ପ୍ରଣିପାତ ହେବା କଥା । ଯଦି ପୁରୋହିତେ ନ ଆସିବେ ତେବେ କ'ଣ କରାଯିବ । କିନ୍ତୁ ଦଶମିନିଟ୍ ଭିତରେ ଅନ୍ନାଜୋଇସ୍ ଏବଂ ତାଙ୍କ ପଛେ ପଛେ ଆୟାଶାସ୍ତ୍ରୀ ଆସି ପହଞ୍ଚିଗଲେ ।

ହଳିଆଟାକୁ ଦାଣ୍ଡପଟେ ବସିବାକୁ ଆଦେଶ ଦେଇ ନଷ୍ଟିଜା ଦୁଇ ପୁରୋହିତଙ୍କୁ ବସିବା ପାଇଁ ମଶିଣା ପକାଇ ଦେଲା । ଭଲମନ୍ଦ ପଚାରିସାରିବା ପରେ ପୁରୋହିତ କହିଲେ –"ଆମେ ଶୁଣିଲୁ । ତୁମ ଝିଅର ବିଭାଘର ଠିକ୍ ହୋଇଗଲା । ବହୁତ ଭଲ ହେଲା ।"

"ସେଥିପାଇଁ ଆପଣଙ୍କୁ ଡକାଇଛି । ଜାତକ ଦେଖି ବିବାହ ଠିକ୍ କରିବା ପାଇଁ । ଆପଣ ଜାଣନ୍ତି ମୋ ବାପା କାଶୀରୁ ଫେରିଛନ୍ତି । ତାଙ୍କୁ ଖବର ପଠାଇଦେଲେ ତୁରନ୍ତ ଆସି ପହଞ୍ଚିଯିବେ ଏବଂ ବିବାହ ଦିନ ପର୍ଯ୍ୟନ୍ତ ରହି ସବୁ କାମ କରିଦେଇ ଯିବେ । ମୁଁ କିନ୍ତୁ ତାଙ୍କୁ ଡାକିଲି ନାହିଁ । କାରଣ ଆମ ଗାଁର ପୁରୋହିତ ଥାଉ ଥାଉ ତାଙ୍କୁ କାହିଁକି ଡାକିବି ? ଆପଣମାନେ ଯେପରି କହିବେ ସେପରି କରାଯିବ ।"

Digitized by srujanika@gmail.com

"ହଁ ମ, ତା' ନୁହେଁ ତ ଆଉ କ'ଣ ? ଆମେ ଆଉ ଆଉ ଆଉ କାହିଁକି କାହାକୁ ଡାକିବ ? ଆମ ଗାଁରେ ବିବାହ, ବ୍ରତ ଆଦି ଶୁଭକର୍ମ କରାଇବା ଆମର କର୍ତ୍ତବ୍ୟ । ବରପାତ୍ରର ଜାତକ ଆଣ ।" ଆୟୁଷଶାସ୍ତ୍ରୀ କହିଲେ । ପୁରୋହିତଙ୍କର ଏପରି ମାନିଯିବା ପଛରେ ରହସ୍ୟ ହେଲା ଯେ ନକ୍ଷିତା ହାତରେ ଫସଲ ହିସାବ ଲେଖିବା ଅଧିକାର ଏବଂ ନକ୍ଷିତାର ବାପା କଣ୍ଠୀକୋଇସଙ୍କର ଏଗାଁରେ ଆସି ରହିବାର ଭୟ । ବୁଢ଼ା ପୁରୋହିତ ଜାଣିଥିଲେ ଯେ କଣ୍ଠୀକୋଇସ କେବଳ ଯେ ପୁରୋହିତ କାମରେ ଧୁରନ୍ଧର ତା' ନୁହେଁ, ସେ ବହୁତ ସାହାସୀ ଏବଂ ରାଗିଲେ ଆଗରେ ଯିଏ ପଡିଲା ସିଏ ମଲା ।

ଘରୁ ପାଣି ଆଣିଦେବାରେ ପୁରୋହିତେ ବରକନ୍ୟାର ଜାତକ ଦେଖି କହିଲେ, "ଜାତକ ଭଲ ଜୋଟକ ହୋଇଛି । ଆଜିଠାରୁ ଛବିଶ ଦିନ ପରେ ବିବାହ ଯୋଗ ଅଛି । ବିବାହ ପାଇଁ ମୋଟେ ଚିନ୍ତା କରିବ ନାହିଁ । ବର ପକ୍ଷରୁ ପୁରୋହିତ ନ ଆସିଲେ ଆମେ କାମ ଚଳାଇ ନେବୁ ।"

ନକ୍ଷିତା କହିଲା –"ପୁରୋହିତେ ମୁଁ ଭାବୁଛି ରମନ୍ନାର ବ୍ରତଘର ମଧ୍ୟ ଏକା ସାଙ୍ଗରେ କରିଦେବି । ଏକା ଦିନରେ ହୋଇ ପାରିବ କି ?" ପୁଣି ପାଣି ଦେଖି ପୁରୋହିତ କହିଲେ –"ବିଭାଘର ଆଗରୁ ଦିନ ଦେଖି କରିବାକୁ ହେବ ।" ନକ୍ଷିମା ସ୍ୱପ୍ନରେ ସୁଦ୍ଧା ଏକଥା ଭାବି ନଥିଲା ଯେ ଏକାମ ଏତେ ସହଜରେ ହୋଇଯିବ । ବର୍ତ୍ତମାନ କାମ ହେଲା ଟଙ୍କା ଯୋଗାଡ କରି ଜିନିଷ ପତ୍ର କିଣା କିଣି କରିବା । ତା'ପର ଦିନ ସେ ଯାଇ କୁରୁବରହେଲଳୀରେ ପହଞ୍ଚିଲା । ଗୁଣ୍ଡଗୌଡ ଗାଁ ବାଲାଙ୍କୁ ଏକାଠି ଡାକି ଚାନ୍ଦା ମାଗିଲେ । ନକ୍ଷିତା ତାଲିକା କରି ହିସାବ କଲା, ଦୁଇଶହ ସତୁରି ଟଙ୍କା ଆଉ ତିରିଶ ଟଙ୍କା ନିଜେ ଦେବାକୁ କହି ଗୁଣ୍ଡଗୌଡ କହିଲେ,"ଅଗ୍ରୀମ ରସିଦ ବାବଦକୁ ଦୁଇଶହ ଟଙ୍କା ନେଇଯାଅ । ବାକିର ତିନିଶହ ଟଙ୍କା ଏକାଠି କରି ମୁଁ ସାତ ଆଠ ଦିନ ଭିତରେ ତୁମ ଘରେ ନେଇ ଦେଇ ଆସିବି । ଗାଁର ଯାହା ବାଡିରେ ନଡିଆ ଗଛ ଅଛି ତାଙ୍କ ଠାରୁ କିଛି ନଡିଆ ମଧ୍ୟ ମାଗିକରି ନେଇଯିବି । ଶହେ ନଡିଆ ହେଲେ ଚଳିବଟି ?"

"ହଁ, ହଁ, ବହୁତ ହେବ ।"

"ସଉଦା ପତ୍ର ପାଇଁ ତିପଟୁର ଯିବା ପାଇଁ ଦିନ ଠିକ୍ କରି କହି ପଠାଇଲେ ଶଗଡଟା ପଠାଇ ଦେବି । ଘୃତ ଟିକିଏ ଅଧିକା କିଣିଥିବ ।"

ନକ୍ଷିତା ଗାଁକୁ ଫେରିଲା । ବର୍ତ୍ତମାନ ଜିନିଷ ତାଲିକା କରିବାକୁ ହେବ । ବର ପକ୍ଷରୁ ବରଯାତ୍ରୀ କେତେ ଜଣ ଆସିବେ କେଜାଣି ! ବରପିଲାର ନିଜର ନିକଟ ସମ୍ପର୍କୀୟ କେହି ନାହାନ୍ତି ବୋଲି କହୁଥିଲା । ଦ୍ୱିତୀୟ ପକ୍ଷ ବିବାହ । ଦଶ ପନ୍ଦର ଜଣରୁ ଅଧିକା ଆସିବେ ନାହିଁ । ଏବଂ ନିଜ ପଟୁ ନାଗଲାପୁର ଲୋକଙ୍କ ଛଡା ଆଉ କେହି ସମ୍ପର୍କୀୟ ନାହାନ୍ତି । ଏଇ ଗାଁରେ ସାତ ଘର ବ୍ରାହ୍ମଣ । ବିଭାଘର ଦିନ ରାତି ଭୋଜି ପାଇଁ କୁରୁବରହେଲଳୀ ଗାଁରୁ ପ୍ରତିଘରୁ ଜଣେ ଲେଖାଏଁ ଡାକିବାକୁ ପଡିବ । ଜିନିଷ ତାଲିକା କରି ସାରିଲା ପରେ ସୁନା, ରୁପା ଜିନିଷର ହିସାବ ମଧ୍ୟ କଲା । ଲେଙ୍କଟଶୟ୍ୟା ମାଷ୍ଟ୍ରଙ୍କ

Digitized by srujanika@gmail.com

ଶଗଡଟା ଧରି ରମନ୍ନା ସାଙ୍ଗରେ ଚିପ୍‌ଟୁର ଗଲା । ବରପାତ୍ର ପାଇଁ ଦରିଆର ଧୋତି, ରେଶମୀ କମିଜ, କୋଟ୍ ଏବଂ ସୁନ୍ଦର ଗାମୁଛା, ରୁପାର ବାଳ ଏବଂ ଅନ୍ୟ କେତେ ଛୋଟ ଛୋଟ ଜିନିଷ କିଣିଲା । କନ୍ୟା ପାଇଁ ଦୁଇଟି ଶାଢୀ କିଣିଲା । ଗୋଟିଏ ତିରିଶି ଟଙ୍କା ଏବଂ ଅନ୍ୟଟି ପଚିଶି ଟଙ୍କା । ରମନ୍ନା ଏବଂ ବିଶ୍ୱ ପାଇଁ ଲୁଙ୍ଗି । ବ୍ରତଘର ପାଇଁ ରୁପାର ଗୋଟିଏ ଥାଳି ମଧ୍ୟ କିଣିଲା । ସ୍ୱାମୀଙ୍କ ପାଇଁ ମଧ୍ୟ ଧୋତି କମିଜ କିଣିଲା ଏବଂ ନିଜ ପାଇଁ ଗୋଟିଏ ଶାଢୀ । ମାଷ୍ଟ୍ରେ କହିଲେ –"ନଣ୍ଡିନ୍ନା, ହାତରେ ଶହେ, ଦେଢଶହଟଙ୍କା ରଖିଥିବା ଦରକାର । ଦେଖି କରି ଖର୍ଚ୍ଚ କର ।"

ଗାଁକୁ ଫେରି, ତା'ପର ଦିନ ସକାଳୁ ଚିଠି ଲେଖି ହଳିଆ ହାତରେ ନାଗଲାପୁର ପଠାଇଲା । ଲୋକଟା ରାତିକୁ ଫେରି ଆସି କହିଲା – "ସେମାନେ କେହି ଆସିବେ ନାହିଁ ବୋଲି ମନା କଲେ ।" ନଣ୍ଡିନ୍ନା ପଚାରିଲା – "କିଏ କହିଲା ?" ହଳିଆଟା କହିଲା –"ତୁମର ବାପା କହିଲେ ।"

"ଆଉ କ'ଣ କହିଲେ ?"

"କହିଲେ ଆମେ ଝିଅଟାକୁ ବୋହୂ କରିବୁ ବୋଲି କହିବାରୁ ମନାକଲେ, ଏବେ ଆଉ ଯେଉଁଠି ବିଭା କଲେ ଆମର ସେଥିରେ ସମ୍ପର୍କ କ'ଣ ?"

ନଣ୍ଡିନ୍ନା ବାପାଙ୍କର ସ୍ୱଭାବ ଜାଣିଥିଲା । ଭାରି ଏକଜିଦିଆ ଲୋକ । ତାଙ୍କ ଆଗରେ ମା, ପୁଅ, ଦୟା, ମାୟା କିଛି ନାହିଁ । ନଣ୍ଡିନ୍ନା, ହଳିଆକୁ ପଚାରିଲା –"ଜେଜେମା କ'ଣ କହିଲେ ?" "ସେ ମଟେ କଥା କହିଲେ ନାହିଁ ।"

ନଣ୍ଡିନ୍ନା ମନରେ ବହୁତ ଦୁଃଖ ହେଲା । ବାପାଙ୍କ ସ୍ୱଭାବ କିଛି ନୂଆ ନୁହେଁ । କିନ୍ତୁ ପିଲାଟି ଦିନରୁ ଆଜି ପର୍ଯ୍ୟନ୍ତ ଯେଉଁ ଜେଜେମା, ତାକୁ ନିଜ ମା'ର ସ୍ନେହ ଦେଇ ଆସିଥିଲା, ସେ ନ ଆସିଲେ କିପରି ହେବ ? ତା'ମନ ମାନିଲା ନାହିଁ । ଭାବିଲା ଦିନେ ନିଜେ ଯାଇ ସାଙ୍ଗରେ ଧରି ଆସିବ । କିନ୍ତୁ ଶଗଡ ଗାଡି ଧରି ଯିବା ଆସିବା ପାଇଁ ଦୁଇଦିନ ଦରକାର । ଏଣେ ବିଭାଘର ପାଇଁ ବାରଦିନ ବାକି ଅଛି । କେତେ କାମ ପଡିଛି । କାଠ ଏବଂ ପନିପରିବାର ବ୍ୟବସ୍ଥା ଏ ପର୍ଯ୍ୟନ୍ତ ହୋଇ ନାହିଁ । ପିଠାପଣା ତିଆରି ପାଇଁ ଅଟା ମଧ୍ୟ କରାଯାଇନାହିଁ । ବାଜାବାଲାଙ୍କୁ କହିବାକୁ ପଡିବ । ଲଙ୍କା ଗୁଣ୍ଡ ମଧ୍ୟ କରିବା ବାକି ଅଛି ।

ସେ ଠିକ୍ କଲା, ଆଉ ଗୋଟିଏ ଚିଠି ଲେଖି ହଳିଆକୁ ପୁଣି ପଠାଇବ । ହଳିଆକୁ ତାଗିଦ କରି କହିଲା – "ଦେଖ ନାଗଲାପୁର ଲୋକେ ଆସିବାକୁ ମନା କଲେ ବୋଲି କାହା ଆଗେ କହିବୁ ନାହିଁ । ମୁଁ ତତେ ଆଉଥରେ ସେଠାକୁ ପଠାଇବି ।"

ହଳିଆ ଆଉଥରେ ଚିଠି ନେଇ ଗଲା । ତଥାପି ନାଗଲାପୁରରୁ କେହି ଆସିଲେ ନାହିଁ । ଏଥର କଣ୍ଡାକୋଇସ ହଳିଆ ଉପରେ ଖପା ହୋଇଗଲେ । ନଣ୍ଡିନ୍ନା ପୁଣିଥରେ ତାଗିଦ୍ କରିଦେଲା ଯେ ଏ

Digitized by srujanika@gmail.com

ବିଷୟ୍ଯ ଯେପରି କେହି ନ ଜାଣନ୍ତି । ମନକୁ ମନ ଭାବିଲା, ଗାଁ ପୁରୋହିତେ ଯଦି ଏକଥା ଜାଣନ୍ତି ଯେ କଣ୍ଠାଜୋଇସ ଆସୁନାହାନ୍ତି ତେବେ ନିଶ୍ଚୟ ହଇରାଣ କରିବାକୁ ଚେଷ୍ଟା କରିବେ ।

ଆଉ କେହି ସମ୍ପର୍କୀୟ ଆସିବାକୁ ନଥିଲେ । ଏ ପର୍ଯ୍ୟନ୍ତ ଶାଶୁକୁ ନନ୍ଦିନୀ ଡାକି ନଥିଲା । ସେ ନିଜେ ଆସିଲା ନାହିଁ । କିନ୍ତୁ ଚେନ୍ନିଗାକୁ ପଚାରି କ'ଣ କ'ଣ ଜିନିଷ ଯୋଗାଡ ହେଲା ସେ ବିଷୟ୍ଯ ବୁଝି ବୁଝି କରୁଥାଏ । ବିଭାଘର ଦୁଇଦିନ ଆଗରୁ ନନ୍ଦିନୀ ଶାଶୁ ପାଖକୁ ଯାଇ କହିଲା – "ମା', ତୁମେ ଏବଂ ଅପର୍ଣ୍ଣା ଘରକୁ ଆସନ୍ତୁ । ସାରା କାମ ଆପଣ ହିଁ ଚଳାଇବେ ।"

"ଆଲୋ କଳିହୁଡୀ, ସ୍ୱାର୍ଥପର । ଆଜି ପର୍ଯ୍ୟନ୍ତ ବର ଖୋଜା, ବିଭାଘର ଠିକ୍ କରିବା, ଜିନିଷ ପତ୍ର କିଣା କିଣି ସବୁତ ଏକୁଟିଆ କଲୁ । ଆଜି ମୁଁ ମନେ ପଡିଲି । ଆଉ କେହି ବର ମିଳିଲେ ନାହିଁ ଯେ ଝିଅଟାକୁ ଦ୍ୱିତୀୟ ପକ୍ଷ ବିଭା କରାଉଛୁ ?"

"ମା', ବହୁତ ବରପାତ୍ର ଅଛନ୍ତି, କିନ୍ତୁ ତାଙ୍କୁ ଠିକ୍ କରି ବିଭା କରାଇବା ମୋର ଶକ୍ତି ସାମର୍ଥ୍ୟ ବାହାରେ । ତୁମେ ଓ ଅପର୍ଣ୍ଣା ଆମ ଘରକୁ ଆସିବାକୁ ପଡିବ ।"

ଆଉ ସେଠି ରହିଲେ କାଳେ ଯୁକ୍ତିତର୍କ ବଢିବ, ସେଇ ଡରରେ ନନ୍ଦିନୀ ତରତର ହୋଇ ପଳାଇ ଆସିଲା ।

ଚେନ୍ନିଗା ମଧ୍ୟ ସ୍ତ୍ରୀ ଉପରେ ରାଗି ଥିଲା । କଳେଶ ସାଙ୍ଗରେ ଝିଅର ବିଭାଘର ମନାକରି ଶ୍ୱଶୁରଙ୍କ ସାହାଯ୍ୟ ସହାନୁଭୂତି ହରାଇ ବସିଲା । ସେ କେତେ ସାହାଯ୍ୟ ନ କରିଛନ୍ତି । କିନ୍ତୁ ଏବେ ତାଙ୍କୁ ଟିକିଏ ପଚାରିଲା ନାହିଁ ।

ସେଇ ଦିନ ଅପର୍ଣ୍ଣା ନନ୍ଦିନୀ ଘରକୁ ଆସିଲା । ଭାଉଜର କହିବା ଅନୁସାରେ ରୋଷେଇ ଘରେ ବଡ ଚୁଲୀ ଖୋଳିଲା । ଜାଳେଣୀ କାଠ ଆଣି ସଜାଇ ରଖିଲା ଏବଂ ଚାଳ ଛପର ମଧ୍ୟ ଦେଖି ମରାମତି କରିଦେଲା । ଦୁଇଥର କରି ସେ କୁରୁବରହଲ୍ଲୀ ଗାଁକୁ ଯାଇ ନଡିଆ, ଶଗଡରେ ଲଦି ଆଣିଲା । ଗଙ୍ଗାମ୍ମା ବ୍ରତଘର ଦିନ ଆସିଲା । ତା'ପାଇଁ କିଛି ଉପଯୁକ୍ତ କାମ ନଥିବାରୁ କିମ୍ବା ଗମ୍ଭୀର ହୋଇ ରହିବାରୁ ଚୁପଚାପ୍ ହୋଇ ବସି ରହିଲା ।

ବିଭାଘରଦିନ ବର ପକ୍ଷରୁ ବେଶୀ ଲୋକ ଆସି ନଥିଲେ । ତିମଲାପୁରରୁ ଦ୍ୱାବରସୟ୍ଯା, ତାଙ୍କ ସ୍ତ୍ରୀ, ପୁଅ ବୋହୂ, ତିନିଟା ନାତି, ବର ପିଲାର ଦୁଇଜଣ ସାଙ୍ଗ ଏବଂ ଜଣେ ପୁରୋହିତ, ବାସ୍ ଏତିକି । ବିଭାଘର କାର୍ଯ୍ୟ ସୁରୁଖୁରୁରେ ହୋଇ ଯାଉଥାଏ । ହାତ ଗଣ୍ଠି ପାଇଁ କନ୍ୟାର ବାପା, ମା'କୁ ବେଦୀରେ

Digitized by srujanika@gmail.com

ବସି ସଙ୍କଳ୍ପ କରିବା କଥା । ଚେନ୍ନିଗରାୟଙ୍କୁ ପୁରୋହିତ ଡକାଇ ପଠାଇଲେ । ସେ କିନ୍ତୁ ଘର ଭିତରୁ ବାହାରୁ ନଥାଏ । ପୁରୋହିତ ତରତର ହେଉଥାନ୍ତି ଯେ ଲଗ୍ନ ସମୟ ଗଡି ଯାଉଛି । ନଞ୍ଜମ୍ମା ନିଜେ ଘରକୁ ଯାଇ ଡାକିବାରୁ କହିଲା – "ତୁ ନିଜେ ଏକୁଟିଆ ବସି କାମ ଚଳା । ମୁଁ ଯିବି ନାହିଁ । ନଞ୍ଜମ୍ମା କଥା କ'ଣ ବୁଝିପାରିଲା ନାହିଁ । ପାଖରେ ଠିଆ ହୋଇଥିବା ମାଷ୍ଟ୍ର ପଚାରିଲେ – "ଚେନ୍ନିଗରାୟ ଏବେ ପୁଣି ତୁମର କ'ଣ ହେଲା ?"

"ଇଏ ତ ଘରର ମାଲିକିଆଣୀ । ଜିନିଷପତ୍ର ତାଲିକା କଲାବେଳେ କି କିଣା କିଣି କଲାବେଳେ ମତେ ଟିକିଏ ପଚାରିଲା ନାହିଁ ।" ଚେନ୍ନିଗା କହିଲା ।

"ନା, ନା, ଆପଣ ଘରର ମୁରବୀ, ଆପଣଙ୍କ ନାଁରେ ସବୁ କାମ ହେଉଛି ।" ମାଷ୍ଟ୍ରେ କହିଲେ,

"ଏଇ ଦେଖ ମୋ ପାଇଁ କି ଭଳି ଯୋଟି କିଣା ହୋଇଛି । ଅଚିକମ୍‌ରେ ଜରିଦାର ଯୋଡି ହଲେ ଆଣି ପାରିଥାନ୍ତା । ଏଇଟା ପିନ୍ଧି ମୁଁ ବିଭାବେଦୀକୁ ଯାଇପାରିବି ନାହିଁ ।" ଏହା କହି ଚେନ୍ନିଗା ଜିଦ୍‌ଧରି ବସିଲା । ଆଉ ଗୋଟିଏ ଅଭିଯୋଗ ମଧ୍ୟ ତାର ଥିଲା । ବିଭାବେଦୀ ପାଇଁ ତିଆରି ସବୁ ପିଠା ପଣା ଗୋଟିଏ କୋଠରୀରେ ରଖି ନଞ୍ଜମ୍ମା ତାଲା ପକାଇ ଦେଇଥିଲା । ସେ ଘରର ଚାବି ମାଷ୍ଟ୍ରଙ୍କର ସ୍ତ୍ରୀ ପାଖରେ ଥିଲା । ଜିନିଷ କମ୍ ତିଆରି ହୋଇଥିଲା । ବିଭାଘର ପରେ ସମୁଦିଙ୍କ ହାତରେ ମିଠାଇର ଭାର ପଠାଇବା ହେଉଛି ବିଧି । ଗାଁରେ ମଧ୍ୟ ବଣ୍ଟା ହେବ ଏବଂ ଯେଉଁମାନେ କାମ କରିଛନ୍ତି ତାଙ୍କୁ ମଧ୍ୟ କିଛି କିଛି ବଣ୍ଟାଯିବ । ମାଷ୍ଟ୍ରଙ୍କ ସ୍ତ୍ରୀ ଉପରେ ସେ ଭାର ଦିଆ ଯାଇଥିଲା । ଚେନ୍ନିଗରାୟ ପଚାରିଲା – "ଯେଉଁ କୋଠରୀରେ ମିଠେଇ ଆଦି ରଖା ଯାଇଛି ତାର ଚାବି ମତେ କାହିଁକି ଦିଆଗଲା ନାହିଁ ।" ନଞ୍ଜମ୍ମା କହିଲା –"ସେଇଟା ସ୍ତ୍ରୀ ଲୋକଙ୍କ କାମ । ଚାବି ନେଇ ତୁମେ କ'ଣ କରିବ ?"

"ମୁଁ ଘରର ମୁରବୀ ଚାବି ମୋ ପାଖରେ ରହିବା କଥା ।"

ନଞ୍ଜମ୍ମା ମନା କଲେ ମଧ୍ୟ ମାଷ୍ଟ୍ରେ ଯାଇ ନିଜ ସ୍ତ୍ରୀଠାରୁ ଚାବି ଆଣି ଚେନ୍ନିଗାକୁ ଦେଲେ । ଚେନ୍ନିଗା ସାଙ୍ଗେ ସାଙ୍ଗେ ଉଠିଯାଇ ଗୋଟିଏ ବୋଝରେ ଲଡ୍ଡୁ, କାକରା ଆଦି ଭରି ତାକୁ ନିଜ ସିନ୍ଦୁକ ଭିତରେ ରଖିଦେଲା ଏବଂ ତାଲା ପକାଇ ଦେଲା । ଆପ୍ପାଶାସ୍ତ୍ରୀ ପଚାରିଲେ,"ସେ ଜିନିଷ କାହାପାଇଁ ରଖିଲୁ ଚେନ୍ନିଗା ?" ଚେନ୍ନିଗା ଉତ୍ତର ଦେଲା – "ବିଭାଘର ସରିଗଲେ ମୁଁ କ'ଣ ଖାଇବି ?" ତା'ପରେ ପୁଣି ମୁହଁ ଫୁଲାଇ ଘର ଭିତରେ ବସିଗଲା ଯେ ତା' ପାଇଁ ଜରିଦାର ଯୋଡି ହଲେ କାହିଁକି ଅଣାଗଲା ନାହିଁ । ନଞ୍ଜମ୍ମା ବୁଝାଇଲା – "ଦେଖ ଏତେ ପଇସା ଖର୍ଚ୍ଚ ହେଲା । ମୁଁ ମଧ୍ୟ ନିଜ ପାଇଁ ଭଲ ଶାଢୀ କିଣି ନାହିଁ ।"

"ମୁଁ ଏ ଯୋଡି ପିନ୍ଧି ବେଦୀ ଉପରକୁ ଯିବି ନାହିଁ ।"

ବରପକ୍ଷର ପୁରୋହିତ ବେଦୀ ଉପରୁ କହି ପଠାଇଲେ ଯେ ଲଗ୍ନ ଗଡିଯାଉଛି ଏବଂ ଶୀଘ୍ର ଆସିଲେ ବରକୁ ଆମନ୍ତ୍ରଣ କରି ବେଦୀ ଉପରକୁ ଆଣିବାକୁ ପଡିବ । ବରଯାତ୍ରୀ ମାଷ୍ଟ୍ରଙ୍କ ଘରେ ବସା

Digitized by srujanika@gmail.com

କରିଥିଲେ । ଏଣେ କନ୍ୟା ପିତା ରୁଷିକରି ବସିଛନ୍ତି । ବେଦୀ କାମ ନ ସରିଲେ କିପରି ବରକୁ ବେଦୀ ଉପରକୁ ଅଣା ହେବ । ମାଷ୍ଟ୍ରେ ଯେତେ ବୁଝାଇଲେ କିଛି ଫଳ ହେଲା ନାହିଁ । ମହାଦେବସ୍ୱା ଆସି ବୁଝାଇଲେ ଚେନ୍ନିଗା ମାନିଲା ନାହିଁ । ଦୁଇ ପୁରୋହିତେ ମଧ୍ୟ ବୁଝାଇଲେ- ଅବଶ୍ୟ ତାଙ୍କୁ ଏ ଦୃଶ୍ୟ ଦେଖିବାକୁ ଖୁସି ଲାଗୁଥିଲା । ଦ୍ୱାବରଣସ୍ୱା ମଧ୍ୟ ଆସିଲେ ତଥାପି ଚେନ୍ନିଗା ମାନିଲା ନାହିଁ । ଦୁଆର ମୁହଁରେ ବସି ଗୁଣ୍ଡଗୌଡ ନିଜ ଠେଙ୍ଗାଟା ଧରି ଉଠି ଆସିଲା ବେଳକୁ ନଞ୍ଜମ୍ମା ତାଙ୍କୁ ଶାନ୍ତ କରାଇଲା । ଅପନ୍ନା ଏପର୍ଯ୍ୟନ୍ତ ଚୁପ୍ ଥିଲା । ଆଉ ସହି ନପାରି କହିଲା –"ଆରେ ଏ ଚେନ୍ନିଗା ଉଠୁଛୁ ନା ଦେବି ଉତ୍ତମ ମଧ୍ୟମ ତୋ ପିଠିରେ ।"

"ଆରେ, ଏ ହାରାମଜାଦା ପୁଣି ମତେ ଏପରି କହିବ ? ବଡ ଭାଇ ବାପ ସମାନ । ସେ ମୋ ପାଦ ଧରି କ୍ଷମା ମାଗିବାକୁ ପଡିବ ।" ଚେନ୍ନିଗରାୟକୁ ଆଉ ଗୋଟିଏ ଆଳ ମିଳିଗଲା ।

"ଅପନ୍ନା ତୁମେ କିଛି କହ ନାହିଁ ।" ନଞ୍ଜମ୍ମା ତାକୁ ବୁଝାଇଲା । ଗଙ୍ଗାମ୍ମା ଉପରେ ପଡି କହିଲା –"କନ୍ୟାର ବାପକୁ ଜରିଦାର ଧୋତି ନ ଦେଲେ କନ୍ୟାଦାନ କିପରି ହେବ ? ତୁମମାନଙ୍କୁ ଏତିକି ଜଣାପଡୁ ନାହିଁ । ଏବେ ଯାଇ ହଳେ ଜରିଦାର ଧୋତି ଆଣିଦିଅ ।"

ମା'ର କଥା ଶୁଣି ଚେନ୍ନିଗାର ଜିଦ୍ ଆହୁରି ବଢିଗଲା । କହିଲା – "ଏବେ କାହାକୁ ତିପଟୁର ପଠାଇ- ଧୋତି ଅଣାଅ । ସେ ପର୍ଯ୍ୟନ୍ତ ମୁଁ ଏଠାରେ ବସି ରହିବି ।"

କଥାଟା ବଢାଇଲେ କାର୍ଯ୍ୟରେ ବିଘ୍ନ ହେବ । କୌଣସି ଉପାୟ ଦିଶୁନଥାଏ । ନଞ୍ଜମ୍ମା ଭଗବାନଙ୍କ ରାଣ ପକାଇ କହିଲା –"ବିଭାଘର ସରିଲେ ତିପଟୁର ଯାଇ ଧୋତି ନିଶ୍ଚୟ ଆଣିଦେବି ।" ତଥାପି ଚେନ୍ନିଗା ମାନିଲା ନାହିଁ । ତାର ଧୋତି, ସଙ୍ଗେ ସଙ୍ଗେ ଦରକାର । ନଞ୍ଜମ୍ମାକୁ ବୁଦ୍ଧି ଦିଶିଲା ନାହିଁ । ଗୋଟିଏ କ'ଣରେ ଠିଆ ହୋଇ ଚୁପଚାପ କାନ୍ଦିବାରେ ଲାଗିଲା ।ମହାଦେବସ୍ୱା ମନ୍ଦିରକୁ ଯାଇ, ଫେରି ଆସି ଚେନ୍ନିଗା କୁ କହିଲେ,"ଏଇ କୋଡିଏ ଟଙ୍କା ରଖିଥା । ପରେ ଧୋତି କିଣିବ । "

କିନ୍ତୁ ସର୍ବରାକାର ସାହେବ କହିଲେ ତାଙ୍କର ଟଙ୍କା ଦରକାର ନାହିଁ । କେବଳ ଧୋତି ଦରକାର । ନଞ୍ଜମାକୁ ଡାକି ଦ୍ୱାବରଣସ୍ୱା କହିଲେ – "ଭଉଣୀ ଗୋଟିଏ କାମ କର । ବର ପିଲା ପାଇଁ ଯେଉଁ ଧୋତି ଆଣିଛ ଏହାକୁ ଦେଇ ଦିଅ । ମୁଁ ଆଉ ହଳେ ଧୋତି ଆଣିଛି । ତା' ବର ପିଲାକୁ ଦେଇ ଦେବ । ସେ କେବେହେଲେ ଖରାପ ଭାବିବ ନାହିଁ ।"

"କିନ୍ତୁ ଯାଙ୍କ ମୁଣ୍ଡରେ କ'ଣ ଟିକିଏ ବୁଦ୍ଧି ନାହିଁ । ଏଇଚି କଲେ ଆମର ଇଜ୍ଜତ ରହିବଟି । ଭବିଷ୍ୟତରେ ମୋ ଝିଅକୁ ତା' ଶାଶୁଘରେ ଖୁଣ୍ଟା ଦେବେ ଯେ ତୁମ ବାପଘର ବରପାତ୍ର ପାଇଁ ସାଦା ଧୋତି ହଳେ କରିଥିଲେ ।"

Digitized by srujanika@gmail.com

"ନାଇଁ ଭଉଣୀ ସୂର୍ଯ୍ୟ ସେପରି ପିଲା ନୁହେଁ । ଯଦି ଦୁର୍ଭାଗ୍ୟବଶତଃ କେବେ କହି ଦେଲା, ତେବେ କ'ଣ ଆଉ କରାଯିବ । ସହିବାକୁ ପଡ଼ିବ । ତୁମ ସ୍ୱାମୀଙ୍କ ପ୍ରକୃତି ବିଷୟରେ ମୁଁ ତାଙ୍କୁ ସବୁ ବୁଝାଇ ଦେଇଛି । ଏ ସଂସାରରେ ସବୁ ପ୍ରକାର ଲୋକ ଅଛନ୍ତି । ଆମ ପାଇଁ କେବଳ ଗୋଟିଏ ରାସ୍ତା ଅଛି । ମୁଁ ଯେପରି କହୁଛି ସେପରି କର ।"

ନନ୍ଦିକା ଘର ଭିତରକୁ ଯାଇ, ବରପାତ୍ର ପାଇଁ ଅଣା ହୋଇଥିବା ଧୋତି ହଳକ ନେଇ ଚେନିଗରାୟ୍ ଆଗରେ ରଖିଲା, "ଏଥର ଉଠି ପିନ୍ଧି ପକାଅ ।"

"ଗୋଟିଏ ନା, ହଳେ ?"

"ହଳେ ଅଛି, ଡର ନାହିଁ ।"

ଚେନ୍ନିଗରାୟ୍ ଖୁସି ହୋଇ ଉଠିଲା । ଗୋଟିଏ ଧୋତି ପିନ୍ଧି ପକାଇଲା । ଚେନ୍ନିଗା ଏହା ଦ୍ୱାରା ସ୍ତ୍ରୀ ଉପରେ ପ୍ରତିଶୋଧ ନେଲା । ତାକୁ ପିନ୍ଧିବାକୁ ଜରିଦାର ଧୋତି ମିଳିଲା, ଏବଂ ବିଭାଘର ସରିଲେ ଖାଇବାକୁ ଲଡୁ, କାକରା ଆଦି ମଧ୍ୟ ମିଳିଲା । ଏକା ଥରକେ ତିନିଟା କାମ ହୋଇଗଲା । ତେଣୁ ବିଜୟ ଦର୍ପରେ ବିବାହ ବେଦୀ ଉପରକୁ ସର୍ବରାକାର ମହାଶୟ ଆସିଲେ । କନ୍ୟାପିତା ପିନ୍ଧିଥାନ୍ତି ଦାମିକା ଜରିବାଲା ଧୋତି ଏବଂ ବରପାତ୍ର ପାଇଁ ସାଦା ଧୋତି । ତା'ପରେ ବିବାହ ସୁରୁଖୁରୁରେ ଶେଷ ହେଲା । ହାଟଗଣ୍ଡି ବେଳକୁ ଇଲାକାଦାର ସାହେବ ସାଇକେଲରେ ଆସି ପହଞ୍ଚିଲେ । ଚେନ୍ନିଗାର ଏବଂ ବରପାତ୍ରର ଧୋତି ଦେଖି ଦ୍ୱାବରଶୟ୍ୟାଙ୍କୁ ଡାକି ପଚାରିଲେ, "କଥା କଣ" ? ଦ୍ୱାବରଶୟ୍ୟା ତାଙ୍କୁ ସବୁକଥା ଜଣାଇବାକୁ ଉଚିତ୍ ମନେ ନ କରି କଥାଟା ଦବାଇ ଦେବାକୁ କହିଲେ, "ସେଇଟା ଚେନ୍ନିଗାର ପୁରୁଣା ବିଭାଘର ଧୋତି ।"

ଠିକ୍ ସେତିକିବେଳକୁ ବେଦୀ ପାଖରେ ଗୋଟିଏ ବୁଡି ଶଗଡ ଆସି ପହଞ୍ଚିଲା । ସେଥିରୁ ବୁଢୀ ଅକ୍କମ୍ମା ଓହ୍ଲାଇବା ଦେଖି ରମନ୍ନା ଦୌଡି ଯାଇ ଘର ଭିତରେ ମା'କୁ ଖବର ଦେଲା । ସେତେବେଳକୁ ଦୁଃଖରେ ମୂକ ହୋଇ ନନ୍ଦିକା ବସିଥିଲା । ଖବର ଶୁଣି ତାକୁ ବଡ ଶାନ୍ତି ଲାଗିଲା । ଭିତରକୁ ଆସି ଜେଜେମା' ଅକ୍କମ୍ମା ପାଖରେ ବସି କହିଲା – "କଣ୍ଠୀ ଏବଂ କଲେଷ କେତେ ମନା କଲେ, ତଥାପି ନ ମାନି ମୁଁ ପଳାଇ ଆସିଛି । ମୋ ନାତୁଣୀର ଝିଅ ବିଭା ହେବ ଆଉ ମୁଁ ପୁଣି ଯିବି ନାହିଁ ? ହେଇ, ନେ ଏଇଟା ପାର୍ବତୀକୁ ଦେଇ ଦେ ।" ଏହା କହି ନିଜ ଅଣ୍ଟିରୁ ଗୋଟିଏ ସୁନାର ହାର ବାହାର କରିଦେଲା । ସେଇ ହାରଟା ବୁଢୀର ବିଭାଘର ହାର । ଅକ୍କମ୍ମା ଲୁଗା ବଦଳାଇ ଘରେ ବସିଗଲା । ଗଙ୍ଗାମ୍ମା ସେଇଠି ବସିଥିଲେ ସୁଦ୍ଧା ପାଟି ଫିଟାଇ ନଥାଏ । ଅକ୍କମ୍ମା ମଧ୍ୟ କଥା କହିଲା ନାହିଁ । ତା'ପରେ ବେଦୀ ପାଖକୁ ଯାଇ ବରକୁ ଦେଖି ଆସି ନନ୍ଦିକାର୍ର କାନ ପାଖରେ କହିଲା – "ଭଲ ବରପାତ୍ରଟିଏ ବାଛିଛୁ । ରାଜକୁମାର ଭଳି ଚେହେରା । ଭଲ ଚାକିରୀଟିଏ ମଧ୍ୟ କରିଛି, ଆଗ ସ୍ତ୍ରୀର ପିଲାଟେ ଥିଲେ ମଧ୍ୟ କ'ଣ ହେଲା ।"

Digitized by srujanika@gmail.com

ବିଭାଘର ସରିଲା । ସୂର୍ଯ୍ୟନାରାୟଣର ଝିଅ ରତ୍ନା ବିଶ୍ୱ ସାଙ୍ଗରେ ଖେଳୁଥିଲା । ରତ୍ନା ବର୍ତ୍ତମାନ ବିଶ୍ୱର ନାନୀର ଝିଅ ହୋଇଗଲା । ମାଷ୍ଟ୍ରେ ଏ ଦୁଇ ଜ ାଙ୍କୁ ଦେଖି କହିଲେ – "କ'ଣ ତୁମର ବିଭାଘର କରି ଦେବା କି ?" ବିଶ୍ୱ ଲାଜରେ ଦୌଡ଼ି ପଳାଇଲା ।

ତା'ପର ଦିନ ବର ଉପଚାର ହେବା କଥା । ବିଭାଘର ଦିନ ରାତିରେ ମାଷ୍ଟ୍ରେ ଏବଂ ତାଙ୍କ ସ୍ତ୍ରୀ ନନ୍ଦିଆଙ୍କୁ ଡାକି ଏକୁଟିଆରେ କହିଲେ – "ତୁମେ ଖରାପ ଭାବିବ ନାହିଁ । ବର ପକ୍ଷକୁ ଜଣା ପଡିଗଲାଣି ଯେ ପାର୍ବତୀ ବଡ କନ୍ୟା ହୋଇଯାଇଛି ।"

ନନ୍ଦିଆର ଛାତି ଧକ୍ ଧକ୍ ହେଲା । ମାଷ୍ଟ୍ରେ କହିଲେ – "ଡର ନାହିଁ, ସୂର୍ଯ୍ୟ ବଡ ବଡ ଜାଗାରେ ଚାକିରୀ କରି ଆସିଛି । ଏବଂ ବଡକନ୍ୟା ବିଭାଘର ବିଷୟ ଦେଖିଛି, ଜାଣିଛି । ମହାଶୂର ସହରରେ ମଧ୍ୟ ବର୍ଷେ ଟ୍ରେନି ନେଇ ଆସିଛି । ସେ ଜାଗାମାନଙ୍କରେ ଷୋହଳ, ସତର, ବର୍ଷ ପରେ ଝିଅମାନଙ୍କୁ ବିବାହ କରାନ୍ତି । ବର ଉପଚାର ପରଦିନ ଝିଅକୁ ବର ସାଙ୍ଗରେ ବିଦା କରି ଦିଅନ୍ତି । ବାଙ୍ଗାଲୋର ସହରରେ, ବିଭାଘର, ବର ଉପଚାର ଏବଂ ମଧୁଶଯ୍ୟା ଏସବୁ ଏକାଦିନରେ କରି ଦେଉଛନ୍ତି ବୋଲି ମଧ୍ୟ ଲୋକେ କହୁଛନ୍ତି । ସୂର୍ଯ୍ୟନାରାୟଣ ମତେ ଏକଥା କହିଛି । କାଲି ରାତିରେ ଝିଅକୁ ବର ସାଙ୍ଗରେ ପଠାଇ ଦେଲେ ସେମାନେ ସାଙ୍ଗରେ ନେଇଯିବେ । ନହେଲେ ତୁମକୁ ଏଥିପାଇଁ ପୁଣି ଖର୍ଚ୍ଚ କରିବାକୁ ପଡିଆନ୍ତା । ଏକାଥରକେ କାମ ତୁଟିଲେ ଭଲ ହେବ । ତୁମେ କହିଲେ ମୁଁ କାଲି ଯାଇ ଚିପବୁରରୁ ଶେଯ ମଶିଣା ଦୁଇଟା କିଣି ଆଣିବି ।"

ନନ୍ଦିଆ ମନରେ ଦୁଃଖ ଆସିଲା ଯେ ଝିଅକୁ ବିଭା ବାସି ଦିନ ଛାଡିବାକୁ ପଡିବ । ତା ମନରେ ଭୟ ମଧ୍ୟ ହେଲା । ସେ କାହାକୁ କହିନଥିଲା ଯେ ପାର୍ବତୀ ବଡ କନ୍ୟା ହୋଇଛି ବୋଲି । ଏକଥାଟା କିପରି ଜଣା ପଡିଲା । ଆମ ପୁରୋହିତେ କିମ୍ବା ଗାଁର ଆଉ କିଏ ବର ପକ୍ଷକୁ କହି ଦେଇଥିବ । ଭାଗ୍ୟ ଭଲ ଯେ ବରପାତ୍ରଟି କିଛି ଗଣ୍ଡଗୋଳ ନକରି ମାନିଗଲା । ବର୍ତ୍ତମାନ ସେ ଯଦି ଝିଅକୁ ବିଦା କରିବାକୁ ରାଜି ହୋଇଯାଏ ତେବେ ଏ କଥାର ପ୍ରମାଣ ହୋଇଯିବ ଯେ ଝିଅଟା ସତରେ ବଡ କନ୍ୟା ହୋଇଯାଇଛି । ସମସ୍ତେ ଭାବିବେ ଯେ ଆଜି ପର୍ଯ୍ୟନ୍ତ କଥାଟା ଲୁଚାଇ ରଖାଯାଇଥିଲା । ଜାଣିଲେ କ'ଣ ହୋଇଯିବ ? କିନ୍ତୁ ଏ ପ୍ରଶ୍ନ ଅପେକ୍ଷା ତାର ଭୟଭୀତ ମନ ଅଧିକ ପ୍ରଭାବଶାଳୀ ହେଲା । ସେ କଥାଟାକୁ ବିଚାରି ଭାବିଲା ଏପରି ହଠାତ୍ ମାନିଯିବାଟା ଭଲ ହେବ ନାହିଁ । ବିଭାଘରର ଦୁଇତିନିମାସ ପରେ ଥରେ ମାସିକ ରକ୍ତସ୍ରାବ ପରେ, ଝିଅ ରଜସ୍ୱଳା ହୋଇଗଲା ବୋଲି କହି ଅଲଗା ବସାଇ ନିୟମ ଅନୁସାରେ ଚାରି ପାଞ୍ଚଜଣ ସଧବା ସ୍ତ୍ରୀଙ୍କୁ ଡକାଇ ପୂଜାପାଠ କରି ଚାର ଷୋହଳ ଦିନ ପରେ, ଶାଶୁ ଘରକୁ ପ୍ରଥମ ପାଳି ପାଇଁ ପଠାଇ ଦେଲେ ହେବ । ତେଣୁ ମାଷ୍ଟ୍ରଙ୍କୁ କହିଲା – "ଦେଖନ୍ତୁ, ଏହା ସତକଥା ଯେ ଝିଅ ବଡ କନ୍ୟା ହୋଇଯାଇଛି । ଅନ୍ୟା ଜାଗାରେ ଏପରି ହେଉଛି ବୋଲି ଆମେ ମଧ୍ୟ କଲେ ଏଗାଁରେ ଆମକୁ ରଖାଇ ଦେବେ ନାହିଁ । ଆପଣ ଗାଁ ପୁରୋହିତଙ୍କ ସ୍ୱଭାବ ତ ଜାଣନ୍ତି । ତା' ଛଡା ମୋ ସ୍ୱାମୀ ମଧ୍ୟ ପାଗଳାଙ୍କ ପରି ହେଉଛନ୍ତି । ତାଙ୍କୁ ମଧ୍ୟ ମୁଁ ଏକଥା କହି ନାହିଁ । ତେଣୁ

Digitized by srujanika@gmail.com

ତିନିମାସ ପରେ ଝିଅକୁ ଶାଶୁଘରକୁ ଛାଡିଦେଲେ ଭଲ ହେବ।''

''ତାହାହେଲେ ସେପରି କର। ସୂର୍ଯ୍ୟନାରାୟଣ ମଧ୍ୟ ବାଧ୍ୟ କରୁନାହିଁ। ତୁମର ଅଧିକା ଖର୍ଚ୍ଚ ନ ହେଉ ବୋଲି ସେ ଏପରି କହୁଥିଲା। ତା'ପରେ ତିନିମାସ ଏବେ ଝିଅଟାର କଥା ବୁଝି ସ୍କୁଲକୁ ଯିବା ଆସିବା କରିବାରେ ମଧ୍ୟ ତାର ଅସୁବିଧା ହେବ। ''

''ତାଙ୍କୁ କହିଦିଅ ଝିଅକୁ ମୋ ପାଖରେ ଛାଡି ଦିଅନ୍ତୁ।''

ସମସ୍ତ ବିଷୟ ବୁଝାଇବାରୁ ସୂର୍ଯ୍ୟନାରାୟଣ ରାଜି ହୋଇଗଲା। ଏ ଗାଁର ପରିସ୍ଥିତି ବିଷୟରେ ତାକୁ ଅଳ୍ପ ବହୁତ ଜଣାଥିଲା। ଝିଅକୁ ସେଠାରେ ଛାଡିକରି ଆସିବାକୁ ମଧ୍ୟ ତାର ମନ ମାନିଲା ନାହିଁ। ଭାବିଲା ଏପରି କଲେ ସୁନ୍ଦର ହେବ ନାହିଁ।

ଦୁଇଦିନ ପରେ ବରକନ୍ୟାଙ୍କୁ ଏକାଠି ବସି ବନ୍ଦାପନା କରିଲାବେଳେ ନନ୍ଦିନୀ, ଅନ୍ନପୂର୍ଣ୍ଣା ଏବଂ ରମନ୍ନା କାନ୍ଦି ପକାଇଲେ। ରମନ୍ନା ଏବଂ ପାର୍ବତୀ ଏକା ସାଙ୍ଗରେ ପିଲାଟି ଦିନରୁ ଖେଳି ବୁଲି ଆସିଥିଲେ ଏବଂ ଦୁହିଁଙ୍କ ଭିତରେ ବହୁତ ଆତ୍ମୀୟତା ଥିଲା। ସବୁ ବିଷୟ ଜାଣିଥିଲେ ମଧ୍ୟ ରମନ୍ନା ମା'କୁ ପଚାରିଲା – ''ସତରେ ନାନୀ କ'ଣ ଆମ ଘରୁ ଚାଲିଯିବ।'' ''ଝିଅ ପିଲାମାନେ ବିଭାହେଲେ ଶାଶୁ ଘରେ ରହିବା କଥା। '' ନନ୍ଦିନୀ ବୁଝାଇଲା।

କାହିଁକି କେଜାଣି ହଠାତ୍ ଅପନ୍ନା ମଧ୍ୟ କାନ୍ଦି ପକାଇଲା। ସେ ଏମାନଙ୍କ ଘରକୁ ବେଶି ଯା, ଆସ କରୁନଥିଲା। ପାର୍ବତୀ ସାଙ୍ଗରେ ମଧ୍ୟ ବିଶେଷ କଥାବାର୍ତ୍ତା କରେ ନାହିଁ। ସିଏ ଯେତେବେଳେ ପରିବା ବଗିଚାକୁ ପାଣି ପକାଇବାକୁ ଯାଏ, ଦେଖା ହୋଇଗଲେ ପଚାରି ଦିଏ – ''ମତେ ଶାଗ ଗଣ୍ଡେ ଦେବୁ କି ?'' ପାର୍ବତୀ କହେ - ''ଯେତେ ଦରକାର ନେଇଯାଅ କକା।'' ଦୁଇଜଣଙ୍କ ଭିତରେ କଥାବାର୍ତ୍ତା ମାନେ ଏତିକି। ତଥାପି ବିଭାଘର ପାଇଁ ଅପନ୍ନା ଭାଉଜ ଘରକୁ ଆସି ସବୁକାମ କରୁଥାଏ। ନନ୍ଦିନୀ ଛଡା ଯଦି ଆଉ କେହି ରାତିଦିନ କାମରେ ଲାଗିଥିଲା, ସେ ହେଲା ଅପନ୍ନା। ରୋଷେଇ ଘରୁ ହଣ୍ଡା ହାଣ୍ଡି ଉଠାଇବା ଠାରୁ ଆରମ୍ଭ କରି କାନ୍ଥ, ବାଡ ଲିପା ପୋଛା, ଖଲି ଉଠାଇବା ଏବଂ ବରଯାତ୍ରୀ ମାନଙ୍କୁ ଗାଧୋଇବା ପାଇଁ କୂଅରୁ ପାଣି କାଢି ଦେବା ଇତ୍ୟାଦି ସବୁ କାମ ହଳିଆଙ୍କ ଠାରୁ ବଳି କରୁଥିଲା। ବରକନ୍ୟା ବନ୍ଦାପନା ପରେ ପାର୍ବତୀ ଆସି ଅପନ୍ନାର ଗୋଡ ତଳେ ମୁଣ୍ଡିଆ ମାରିଲା ବେଳକୁ ଅପନ୍ନାର ଲୁହ ଗଡି ପାର୍ବତୀର ମୁଣ୍ଡରେ ପଡିଲା।''

''ତା' ପରଦିନ ବର ଓ ବରଯାତ୍ରୀଙ୍କୁ ବିଦାୟ କରାଗଲା। ଗାଁ ମୁଣ୍ଡ ଠାକୁରାଣୀ ମନ୍ଦିର ପର୍ଯ୍ୟନ୍ତ ନିୟମ ଅନୁସାରେ ବର କନ୍ୟାର ହାତ ଧରି ଗାଁ ଦାଣ୍ଡରେ ଚାଲି ଚାଲି ଗଲା। ଆଗରେ ବାଜା ବାଲା ବଜେଇ ଚାଲିଥାନ୍ତି। ପଛରେ ସମସ୍ତଙ୍କ ସାଙ୍ଗରେ ନନ୍ଦିନୀ ସୂର୍ଯ୍ୟନାରାୟଣର ଝିଅ ରତ୍ନାକୁ କାଖରେ ଧରି ଚାଲୁଥାଏ। ଗ୍ରାମ ଦେବୀଙ୍କ ପୂଜା ପରେ ଶଗଡ ଗାଡିପାଖକୁ ବରକନ୍ୟା ଅସିଲେ। ପତ୍ନୀର ହାତ ଛାଡିବା ପୂର୍ବରୁ ଧୀରେ ଦବାଇ ସୂର୍ଯ୍ୟନାରାୟଣ ପାର୍ବତୀ କାନ ପାଖରେ ଫୁସ ଫୁସ କହିଲା –

Digitized by srujanika@gmail.com

"ତିନିମାସ ପରେ ତତେ ନେବାକୁ ଆସିବି।" ତଳକୁ ମୁହଁପୋତି ପାର୍ବତୀ ଠିଆ ହୋଇଥାଏ। ସିଏ ଯେ ଏହାର ଉତ୍ତରରେ କିଛି କହିବ ଏହା ସୂର୍ଯ୍ୟନାରାୟଣ ଆଶା କରିନଥିଲା।

ତାପରେ ସେ ଶାଶୁ, ଶଶୁର, କକେଇ-ଶଶୁର, ଦୁଇ ପୁରୋହିତେ, ଭେଙ୍କଟଶାସ୍ତ୍ରୀ ମାଷ୍ଟ୍ର ଏବଂ ମହାଦେବଯ୍ୟା ଆଦିଙ୍କୁ ପ୍ରଣାମ କଲା। ପାର୍ବତୀ ମଧ୍ୟ ଉପସ୍ଥିତ ସମସ୍ତ ଗୁରୁଜନମାନଙ୍କର ପାଦ ଛୁଇଁ ମୁଣ୍ଡିଆ ମାରିଲା। ଏଇ ଦୁଇଦିନ ଭିତରେ ସୂର୍ଯ୍ୟନାରାୟଣ ମହାଦେବଯ୍ୟାଙ୍କ ସାଙ୍ଗରେ ବନ୍ଧୁତା କରିସାରିଥିଲା। ତାପରେ ବରପକ୍ଷର ସମସ୍ତେ ଶଗଡରେ ବସି ଚିମଲାପୁର ଅଭିମୁଖେ ଯାତ୍ରା ଆରମ୍ଭ କଲେ।

Digitized by srujanika@gmail.com

# ତ୍ରୟୋଦଶ ଅଧ୍ୟାୟ

## 1

ବିଲ୍ଲାଘରଟା ସୁରୁଖୁରୁରେ ହୋଇଯାଇଥିବାରୁ ନଷ୍ଟିକ୍ମା ଭାରି ଖୁସି ହେଲା । ଏ କାର୍ଯ୍ୟରେ ତାକୁ ଯେଉଁମାନେ ସାହାଯ୍ୟ କରିଥିଲେ ସେମାନଙ୍କ ପ୍ରତି ମନେ ମନେ କୃତଜ୍ଞତା ଜଣାଇଲା । ବରପକ୍ଷରୁ ବେଶି ଲୋକ ଆସି ନଥିବାରୁ ଚାଉଳ, ଡାଲି, ତେଲ ମସଲା ଇତ୍ୟାଦି ବହୁତ ଜିନିଷ ବଳିଥିଲା । ତାକୁ ଏଭଳି ସ୍ଥାନରେ ରଖିବାକୁ ହେବ ଯେପରିକି ସ୍ୱାମୀଙ୍କର ନଜର ନ ପଡେ, ନହେଲେ ସବୁଦିନ ଭାତ ଡାଲି ଏବଂ ମସଲା ଦିଆ ତରକାରୀ ଖାଇବାକୁ ଜିଦ୍ କରିବେ । ତିନିମାସ ପରେ ପୁଣି ଝିଅକୁ ଶାଶୁ ଘରକୁ ପଠାଇବାକୁ ଅଛି । ଏଭଳି ବିଚାର କରି ନଷ୍ଟିକ୍ମା ବଳିଥିବା ଜିନିଷ ଲୁଚାଇ ରଖିଦେଲା । ଝିଅକୁ ଛାଡିବା ପାଇଁ ଆଉ କୋଡିଏ ଟଙ୍କାର ଜିନିଷ କିଣିବାକୁ ପଡିବ । ଝିଅକୁ କଂସାବାସନ କିଛି ଦେବାକୁ ତ ହେବ । କେଉଁଠୁ ଆଣିବ ? ଶାଶୁ ଗଙ୍ଗାକ୍ମାର ଘରେ ତାର ନିଜ ଭାଗର ବହୁତ କଂସା ବାସନ ଅଛି । ସିଏ କଣ ଦେବ ? ଏଣେ ନୂଆ କିଣିବାକୁ ପଇସା ନାହିଁ । ଘରେ ଯାହା ଅଛି ସେଥିରୁ କିଛି ଦେବାକୁ ପଡିବ । ତାପରେ ମଝିରେ ମଝିରେ ଗୋଟିଏ ଗୋଟିଏ କିଣି ପଠାଉଥିବ । ସୂର୍ଯ୍ୟନାରାୟଣ ବାସନ କୁସନ ନେଇ ନାହିଁ ବୋଲି ସ୍ତ୍ରୀକୁ ଥଙ୍ଗା କରିବା ଲୋକ ନୁହେଁ ।

ପାର୍ବତୀ ଏବେ ଦି' ହାତରେ ଦି'ମୁଠା ଚୁଡି ପିନ୍ଧୁଛି । ତା' ଛଡା ବେକରେ ହାର କାନରେ କାନଫୁଲ ଏବଂ ନାକରେ ଗୁଣା । ପାଦରେ ପାଉଞ୍ଜି ହଳେ ମଧ୍ୟ ପିନ୍ଧିଥିଲା । ନଷ୍ଟିକ୍ମା କଳ୍ପନା ସୁଦ୍ଧା କରିନଥିଲା ଯେ ଅଳଙ୍କାର ପିନ୍ଧି ପାର୍ବତୀ ଏତେ ସୁନ୍ଦର ଦେଖାଯିବ ।

ଦିନେ ରେବଣ ସେଠୀର ସ୍ତ୍ରୀ ତାଙ୍କ ଘରକୁ ଆସିଥିଲା । ନଷ୍ଟିକ୍ମାକୁ କହିଲା,"ପାର୍ବତୀ କେତେ ସୁନ୍ଦର ଦିଶୁଛି । ନୂଆ ଭୁଆସୁଣୀଟା ତୁମେ ତାକୁ ଏକୁଟିଆ ପୋଖରୀ ଆଡକୁ ଛାଡିବ ନାହିଁ ।" ରମନ୍ନା ମଧ୍ୟ କହିଲା – "ସତରେ ଏ ସବୁ ପିନ୍ଧି ନାନୀ ବହୁତ୍ ସୁନ୍ଦର ଦିଶୁଛି । ତହସିଲଦାରଙ୍କ ସ୍ତ୍ରୀ ଭଳି ସୁନାର ଚୁଡି ପିନ୍ଧିଲେ ଆହୁରି ସୁନ୍ଦର ଦିଶିବ ନା, ମା' । " ନଷ୍ଟିକ୍ମା କହିଲା – "ତୁ ଯେତେବେଳେ ତହସିଲଦାର ହେବୁ ନାନୀ ପାଇଁ ସୁନା ଚୁଡି କରିଦେବୁ ।"

ପାର୍ବତୀ ମଧ୍ୟ ଦର୍ପଣରେ ନିଜ ଚେହେରା ଦେଖି ଏକ ଅପୂର୍ବ ଆନନ୍ଦ ଅନୁଭବ କରେ ।

Digitized by srujanika@gmail.com

ପରମୁହୂର୍ତ୍ତରେ ବାପଘର ଛାଡି ଶାଶୁଘର ଯିବ ବୋଲି ମନରେ କୋହ ଉଠେ । ଦିନେ ମା' କହିଲା – ଝିଅ ତୋ ସ୍ୱାମୀ ବହୁତ ଭଲ ପିଲା । ଆଉ କିଏ ହୋଇଥିଲେ ଏତେ ସହଯୋଗ କରି ବିଭାଘର କାମ ତୁଲାଇ ନଥାନ୍ତା । ଚତେ ତ ରକ୍ଷା କାମ ସବୁ ଭଲ ଆସୁଛି । ତୁ କୌଣସି ଭେଦଭାବ ମନରେ ନ ରଖି ସେ ଝିଅ ରହ୍ମାର ସବୁ କଥା ବୁଝିବୁ । ସେଥିରେ ତୋ ସ୍ୱାମୀ ଖୁସି ହେବେ । ନହେଲେ ମା' ଛେଉଣ୍ଡ ପିଲାର ଅଭିଶାପରେ ଆମର ଭଲ ହେବ ନାହିଁ ।'' ''ତୁମେ ଯେପରି କହିବ ମୁଁ ସେପରି କରିବି ମା''' ପାର୍ବତୀ କହିଲା । ''ଝିଅଟି ମଧ୍ୟ ଭାରି ଭଲ । ବଡ ହେଲେ ଆମ ବିଶ୍ୱ ସାଙ୍ଗରେ ବିଭା କରି ଦେଲେ ହୁଅନ୍ତା । କ'ଣ ମା' ରମନ୍ମ ପଚାରିଲା ।

''ବିଶ୍ୱଟା ଭାରି ଦୁଷ୍ଟ ହେଲାଣି । ପାଠ ଶାଠ ପଢି ହାଇସ୍କୁଲ ପାସ ନକଲେ ଯାଁ'କୁ କିଏ କନ୍ୟା ଦେବ ମ ?'' ମା' କହିଲା ।

''ନାଇ ମା' ଆମ ମାଷ୍ଟ୍ରେ କହୁଥିଲେ ଚଗଲା ପିଲାମାନେ ବୁଦ୍ଧିମାନ୍ ହୁଅନ୍ତି ।''

''ତାହାହେଲେ ତୁ ଭଲ ପିଲା ହୋଇ ମଧ୍ୟ କ୍ଲାସରେ ଫାଷ୍ଟ କିପରି ହେଉଛୁ ।'' ପାର୍ବତୀ ପଚାରିଲା ।

''କେଜାଣି ଚଗଲା ହୋଇଥିଲେ ବୋଧହୁଏ ଆହୁରି ଭଲ ପାଠ ପଢୁଥାନ୍ତି ।'' ରମନ୍ମ ଉତ୍ତର ଦେଲା ।

ଏମାନଙ୍କର ଏପରି କଥାବାର୍ତ୍ତା ଚାଲିଥିଲା ବେଳେ ତେଣେ ବିଶ୍ୱ ମନ୍ଦିର ଭିତରକୁ ଯାଇ ମହାଦେବଙ୍କ ମୋଠରାରେ ତାଙ୍କର ଗୁଡ ମାଠିଆ ଭିତରେ ହାତ ପୂରାଇ ଗୁଡ ଖାଉଥିଲା ।

ବିବାହ ମାସେ ପୂରିଗଲା, ସୂର୍ଯ୍ୟନାରାୟଣ ନିଜର କୁଶଳ ସମାଚାର ଲେଖି ଶ୍ୱଶୁରଙ୍କ ପାଖକୁ ଗୋଟିଏ ଚିଠି ଲେଖି ପଠାଇଲା । ନକ୍ଷିମାର ମଧ୍ୟ ଗୋଟିଏ କଥା ମନେ ପଡିଲା, ପାର୍ବତୀର ବିଭାଘର ଭଲରେ ଭଲରେ ହୋଇଗଲେ ଗ୍ରାମ ଦେବୀଙ୍କ ମନ୍ଦିରରେ ଖିରୀ, ଦହି ଭାତ ପୂଜା କରିବ ବୋଲି ମନାସି ଥିଲା । ଭାବିଲା,ଶୀଘ୍ର ପୂଜା କରି ନଦେଲେ ଠାକୁରାଣୀ ରୋଷ କରିବେ । ଏଥିରେ ଅଧିକ ଖର୍ଚ୍ଚ ମଧ୍ୟ ହେବାର ନଥିଲା, ଘରେ ସବୁ ଜିନିଷ ଅଛି । ଠାକୁରାଣୀଙ୍କୁ ଦେବାକୁ ନୂଆ କନା ଖଣ୍ଡେ ଦରକାର, ତାହା ମଧ୍ୟ ଘରେ ଅଛି । ପଅରି ଦିନ ଶୁକ୍ରବାର । ରମନ୍ମାକୁ ସେଦିନ ସ୍କୁଲରୁ ଛୁଟି ନେବାକୁ କହିଲା । ସ୍ୱାମୀ ମଧ୍ୟ ବିନା ଦ୍ୱିଧାରେ ମାନିଗଲେ । ବୋଧହୁଏ ଖିରୀ ଏବଂ ଦହି ଭାତ କଥା ଶୁଣି ।

ଗଙ୍ଗାମା ଏବଂ ଅପନ୍ନା ଆଠ ଦିନ ହେଲା ଗାଁ ଛାଡି ଭିକ୍ଷା ପାଇଁ ଚାଲି ଯାଇଥାନ୍ତି । ନକ୍ଷିମା ଠାକୁରାଣୀ ମନ୍ଦିରର ପୂଜାରୀ କାକାକୁ ଖବର ପଠାଇଲା ଯେ ଶୁକ୍ରବାର ଦିନ ପୂଜା ପାଇଁ ସେ ଆସିବ । ସେଦିନ ସକାଳୁ ଉଠି ଗାଧୋଇ ସାରି ସଫା ଲୁଗା ପନ୍ଧିଲା । ପାର୍ବତୀ ମଧ୍ୟ ନିଜେ ଗାଧୋଇ ସାନ ଭାଇ ବିଶ୍ୱକୁ ଗାଧୋଇ ଦେଲା । ତା'ପରେ ରମନ୍ନା ଗାଧୋଇଲା ଏବଂ ସବା ଶେଷରେ ଚେନ୍ନିଗରାୟ ଗାଧୋଇବାକୁ

Digitized by srujanika@gmail.com

ଗଲେ । ନଷ୍ଟିକା ଚିନିସେର ଚାଉଳ ରାନ୍ଧିଲା । ଘୃତ, ନଡିଆ, ଅଳେଇଚ କାଜୁ ପକାଇ ଖିରୀ ତିଆରି କଲା । ତାପରେ କୋରା ନଡିଆ ପକାଇ ଦହିଭାତ କଲା । ଏ ସବୁକୁ ଦୁଇଟା ବଡ ବଡ ଥାଳିରେ ରଖି କନା ବାନ୍ଧି ଦେଲା ଏବଂ ତା'ପରେ ହଳଦୀ କୁଙ୍କୁମ ଏବଂ ଫୁଲର ଥାଳିଟେ ସଜାଡି ରଖିଲା । ପାର୍ବତୀକୁ ବିଭାଘର ପାଇଁ ତା' ସ୍ୱାମୀ ଦେଇଥିବା ଶାଢୀ ପିନ୍ଧିବାକୁ କହିଲା । ହଳଦିଆ ଗୋରା ଦେହ । ମୁଣ୍ଡରେ ସିନ୍ଦୁର ଟୋପା ଏବଂ ଲମ୍ବା ବେଣୀ ପକାଇ ଫୁଲମାଳ ଲଗାଇଛି, କାନରେ କାନ ଫୁଲ, ହାର ଏବଂ ପାଉଁଜି ପିନ୍ଧି ବିଭାଘର ଶାଢୀଟା ପିନ୍ଧି ପାର୍ବତୀ ଯେତେବେଳେ ଫୁଲ ଚନ୍ଦନ ଥାଳିଟା ଧରି ଗାଁ ଦାଣ୍ଡରେ ଯାଉଥାଏ ସମସ୍ତଙ୍କ ଆଖି ତା' ଉପରେ ରହିଥାଏ । ତା ସାଙ୍ଗରେ ଥାଇ ନଷ୍ଟିକା ଭାବୁଥାଏ କାଳେ ମୋ ଝିଅ ଉପରେ କାହାର ଦୃଷ୍ଟି ପଡିଯିବ । ମୁଣ୍ଡରେ ଚନ୍ଦନ ଟିକିକ ଲଗାଇ ରମାନ୍ନା ଦହି ଭାତର ଥାଳି ଦୁଇଟା ଧରି ଚାଲିଥାଏ । ସବା ପଛରେ ଚେନ୍ନିଗରାୟୁ ।

ତେଣେ ପୂଜାରୀ କାକା ଅପେକ୍ଷା କରି ବସିଥିଲେ । ମନ୍ଦିରରେ ପହଞ୍ଚି ନଷ୍ଟିକା ପାର୍ବତୀକୁ ଦେବୀ ମୂର୍ତ୍ତିଙ୍କ ପାଖକୁ ନେଇଗଲେ ଏବଂ ପାର୍ବତୀ ହାତରେ ଠାକୁରାଣୀଙ୍କ ପୂଜା କରାଇଲା, ହଳଦୀ, କୁଙ୍କୁମ, ଏବଂ ଫୁଲ ଦେଇ ପୂଜା ହେଲା ଏବଂ ତା'ପରେ ଆଣିଥିବା ନୂଆ କନା ଖଣ୍ଡିକ ଦେବୀଙ୍କ ଉପରେ ଚଢାଗଲା । ତା'ପରେ ପୂଜାରୀ ଧୂପଦୀପ ଜଳାଇ ଠାକୁରାଣୀଙ୍କ ମଙ୍ଗଳ ଆରତୀ କଲେ ଏବଂ ସମସ୍ତେ ମୁଣ୍ଡିଆ ମାରିଲେ । ଆଣିଥିବା ଖିରୀ ଓ ଦହି ଭାତ ପୂଜା କରାଗଲା । ପୂଜାରୀ ପାଇଁ କଦଳୀ ପତ୍ରରେ ଭାତ, ଖିରୀ ଦେଇ ସମସ୍ତେ ମନ୍ଦିର ବାହାରକୁ ଆସିଲେ । ବାହାରେ ପ୍ରସାଦ ପାଇଁ ଠିଆ ହୋଇଥିବା ଲୋକଙ୍କୁ ମୁଠାଏ ମୁଠାଏ ଭାତ ଦେଇ ସମସ୍ତେ ମନ୍ଦିର ପଛଆଡେ ଥିବା ପୋଖରୀ କୂଳରେ ପହଞ୍ଚିଲେ, ପାଖରେ ଥିବା ପଥର ଚଟାଣ ଉପରେ ବସି କଦଳୀ ପତ୍ର ପକାଇ ସମସ୍ତେ ପେଟ ଭରି ଖାଇଲେ । ଘର ପାଇଁ ଆହୁରି କିଛି ମଧ୍ୟ ବଳି ପଡିଲା । ଚେନ୍ନିଗରାୟୁ ଖାଇସାରିବା ମାତ୍ରେ ପୋଖରୀପାଣି ଧାଇଁଲେ । ନଷ୍ଟିକା ଓ ଅନ୍ୟମାନେ ହାତ ମୁହଁ ଧୋଇ ମନ୍ଦିର ମଣ୍ଡପରେ କିଛି ସମୟ ବସିଲେ । ଏବଂ ଫେରିଲା ପୂର୍ବରୁ ଠାକୁରାଣୀଙ୍କୁ ମୁଣ୍ଡିଆ ମାରି ଆସିଲେ । ଫେରିବା ରାସ୍ତାରେ ମଧ୍ୟ ସମସ୍ତଙ୍କ ନଜର ପାର୍ବତୀ ଉପରେ । କେତେ ଜଣ ସ୍ତ୍ରୀ ଲୋକ ମଧ୍ୟ କହିଲେ –"ଭଉଣୀ ତୁମେ ନୂଆଶାଢୀ ପିନ୍ଧାଇ, ହଳଦୀ କୁଙ୍କୁମ ଲଗାଇ ଝିଅକୁ କାହିଁକି ବାହାରକୁ ଆଣିଛ ? ଖରାପ ଦୃଷ୍ଟି ପଡିପାରେ ।" ନଷ୍ଟିକା ମଧ୍ୟ ସେଥିପା ସନ୍ଦେହ କଲା ।

ସେଦିନ ଆଉ ଘରେ ରନ୍ଧାରନ୍ଧି ହେଲା ନାହିଁ । ବଳିପଡିଥିବା ଦହି ଭାତରୁ ଅଳ୍ପ ଅଳ୍ପ ସମସ୍ତେ ଦୁଇ ପ୍ରହର ବେଳକୁ ଖାଇଲେ । ଘରେ ପହଞ୍ଚି ପାର୍ବତୀ ସଙ୍ଗେ ସଙ୍ଗେ ନୂଆ ଶାଢୀ ବଦଳାଇ ସାଦା ଲୁଗା ଖଣ୍ଡେ ପିନ୍ଧି ପକାଇଲା । ହାଲିଆ ଲାଗିବାରୁ ମଶିଣା ପକାଇ ଶୋଇଗଲା । ରମାନ୍ନା ଘରେ ବସି ଙ୍ଗରାଜୀ ବହିଟା ପଢୁଥିଲା, ଏବଂ ବିଶ୍ୱ ସ୍କୁଲକୁ ଯାଇଥିଲା । ଚେନ୍ନିଗରାୟୁ ମହାଦେବଯ୍ୟାଙ୍କ ମନ୍ଦିର ବାରଣ୍ଡାରେ ଶୋଇଗଲା । ଏତିକି ବେଳକୁ ରେବଣ ସେଠୀର ସ୍ତ୍ରୀ କଥା ହେବା ପାଇଁ ଆସିଲା । ଶୋଇଥିବା ପାର୍ବତୀକୁ ଦେଖି ତାର ନିଜ ଝିଅ କଥା ମନେ ପଡିଲା । ମନ ଦୁଃଖରେ ଭାବିଲା, ସ୍ୱାମୀ ଯଦି ଖରାପ କାମ ନକରାଇଥାନ୍ତେ ମୋ ଝିଅ ବାହା ହୋଇ ପିଲା ଛୁଆଙ୍କ ମା' ହୋଇସାରନ୍ତାଣି ।

Digitized by srujanika@gmail.com

କିଛି ସମୟପରେ ପାର୍ବତୀ ଉଠିଲା । ତାର ଆଖି ଲାଲ ଦିଶୁଥାଏ । କହିଲା –"ମା' ବହୁତ ଶୀତ । ମତେ ନିଆଁରେ ସେକି ହେବାକୁ ଇଚ୍ଛା ହେଉଛି ।"

"ଏ ଖରାଦିନେ ଶୀତ କାହିଁକି ଲାଗୁଛି ?" କହି ନନ୍ଦିଆ ଝିଅର କପାଳରେ ହାତ ଦେଇ ଦେଖେ ତ ଜୋରରେ ତାତିଛି । ସେଠିଆଣୀ କହିଲା –"ନନ୍ଦିଆ ତୁମେ ଝିଅକୁ ଆଜି ବେଶ କରାଇ ମନ୍ଦିରକୁ କାହିଁକି ନେଇଥିଲ । ନିଶ୍ଚୟ କାହାର ଦୃଷ୍ଟି ପଡ଼ିଲା । ଟିକିଏ ଝଡ଼ାଇ ଫୁଙ୍କାଇ ଦିଅ । ନନ୍ଦିଆ ଛାମୁଣୀର ଗୋଟିଏ କୋରା ଝାଡ଼ୁ ସେଥିରେ ନିଆଁ ଲଗାଇ ପାର୍ବତୀର ମୁହଁ ଚାରିପଟେ ବୁଲାଇ ଗୋଟେ କୋଣକୁ ଫିଙ୍ଗିଦେଲା । ସେ ଖଣ୍ଡକ ଚିଟ୍ ଚିଟ୍ ଶବ୍ଦ କରି ଜଳି ପାଉଁଶ ହୋଇଗଲା । ସେଠିଆଣୀ କହିଲା –"ଦେଖିଲ, ନିଶ୍ଚୟ ଦୃଷ୍ଟି ପଡ଼ିଛି । ନହେଲେ ଏପରି ଚିଟ୍ ଚିଟ୍ ଶବ୍ଦ କାହିଁକି ହୁଅନ୍ତା ?"

ସେଦିନ ସନ୍ଧ୍ୟାବେଳକୁ ପାର୍ବତୀର ଜ୍ୱର ଆହୁରି ବଢ଼ିଗଲା ଏବଂ ସେ କମ୍ବଳଟା ଘୋଡ଼ାଇ ହୋଇ ଶୋଇ ରହିଲା । ରମନ୍ନା ତା'ପାଖରେ ବସି ମୁଣ୍ଡ ଆଉଁସି ଦେଉଥାଏ । ରାତିକୁ ପାର୍ବତୀର କମ୍ପ ଆସି ପୁଣି ଜ୍ୱର ବଢ଼ିଲା । ନନ୍ଦିଆ ତୁଳସୀ ପତ୍ର ଲବଙ୍ଗ, ଜିରା, ପକାଇ କଷା ପାଚନ ପାଣି ପାର୍ବତୀକୁ ପିଆଇଲା । ମନେ ମନେ ଭାବିଲା ମୁଁ କାହିଁକି ସେ ବିଭାଘର ନୂଆ ଶାଢ଼ୀଟା ତାକୁ ପିନ୍ଧିବାକୁ କହିଲି । ମୁଁ ବଡ ଭୁଲ କଲି ।

ରାତିଯାକ ପାର୍ବତୀ ଦେହରେ ଜ୍ୱର ରହିଲା । ଦେହମୁଣ୍ଡ ଘୋଳା ବିନ୍ଧା ହେଉଛି ବୋଲି ମଧ୍ୟ କହୁଥିଲା । ନନ୍ଦିଆ ଆଉଥରେ କଷା ପାଚନ ପିଆଇଲା । ସକାଳ ହେଲା ବେଳକୁ ପାର୍ବତୀକୁ ଟିକିଏ ନିଦ ଆସିଲା । ନନ୍ଦିଆ ମଧ୍ୟ ଟିକିଏ ଶୋଇଗଲା । ସକାଳେ ଉଠିଲା ବେଳକୁ ଖରା ଆସି ଯାଇଥିଲା । ପାର୍ବତୀର ଜ୍ୱର ଟିକିଏ କମ୍ ହେଲା ପରି ଜଣା ପଡୁଥାଏ । "ଦେହ ଘୋଳା ହେଉଛି" ବୋଲି କହି ପାର୍ବତୀ କତ ଲେଉଟାଉ ଥାଏ ।

"ଜ୍ୱର ଛାଡି ସେପରି ଲାଗୁଛି ଝିଅ । ଜ୍ୱରଟା ଓହ୍ଲାଉଛି । ତୁ ଚୁପଚାପ୍ ଶୋଇ ରହ । ମୁଁ ପାଣି ଗରମ କରି ଦେଉଛି । ଉଠି କରି ହାତ ମୁହଁ ଧୋଇବୁ । ରମନ୍ନା ଆହୁରି ଉଠି ନଥାଏ । ସବୁଦିନ ପାହାନ୍ତିଆରୁ ଉଠି ଦୀପ ଜଳାଇ ପଢ଼ି ବସିବା ପିଲା, ଆଜି ଏ ପର୍ଯ୍ୟନ୍ତ କାହିଁକି ଉଠିନାହିଁ ବୋଲି ଡାକିବାରୁ ରମନ୍ନା ଭିତରୁ ଉତ୍ତର ଦେଲା, "ମା' ମତେ ମଧ୍ୟ ଜର ଜର ଲାଗୁଛି ।" ନନ୍ଦିଆ ରମନ୍ନା ଦେହରେ ହାତ ମାରି ଦେଖେ ତ ତାର ମଧ୍ୟ ପାର୍ବତୀ ଭଳି ଅବସ୍ଥା । ଆଖି ଦୁଇଟା ଲାଲ । ଦୁଇଜଣ ଯାକକୁ ଏକା ଦିନେ କାହିଁକି ଜ୍ୱର ହେଲା, ଏପରି ଭାବି ଚୁଲି ଜଳାଇ ଗରମ ପାଣି କରି ଦୁଇ ଜଣ ଯାକର ହାତ ମୁହଁ ଧୋଇଲା । ପାଖାପାଖି ପେଜ ଦୁଇଟା ପକାଇ ଦୁଇଜଣଙ୍କୁ ଖୁଆଇଲା । ତା'ପରେ ଅଦା ଗୋଲ ମରିଚ ପକାଇ କଷା ପାଚନ ତିଆରି କଲା । ଖୁଦ ଜାଉ ତିଆରି କରି ବାଧ୍ୟ କରି ଦୁଇଜଣ ଯାକଙ୍କୁ ଖୁଆଇଲା ଏବଂ ପାଚନ ମଧ୍ୟ ପିଆଇଲା । ଥଣ୍ଡା ଜ୍ୱରଟେ ହୋଇଥିବ । କିନ୍ତୁ ରମନ୍ନାର ଜ୍ୱରଟା ପାଖ ହେଲାଣି । ପାର୍ବତୀକୁ ସିନା ନୂଆଶାଢ଼ୀ ପିନ୍ଧି ଯିବାରୁ ଦୃଷ୍ଟି ପଡ଼ିଗଲା । କିନ୍ତୁ ରମନ୍ନାକୁ କାହିଁକି

Digitized by srujanika@gmail.com

ଜ୍ୱର ହେଲା ? ସେ ତ କିଛି ଲୁଗା ପିନ୍ଧି ନଥିଲା । ହଁ, ବିଲଘର ପାଇଁ ବହୁତ ଧାଁ , ଦଉଡ଼ ପରିଶ୍ରମ କରିଥିଲା । ତା'ଛଡ଼ା ଏତେ ଖରାରେ କମ୍ବଳକେରେ ପର୍ଯ୍ୟନ୍ତ ଚାଲି ଚାଲି ସ୍କୁଲକୁ ସବୁଦିନ ଯାଉଛି । ଆଉମାସେ ଗଲେ ପରୀକ୍ଷା ପରେ ଖରାଛୁଟି ହୋଇଗଲେ ଆଉ ଖରାରେ ଧାଇଁବାକୁ ପଡ଼ିବ ନାହିଁ ।

ସେ ଦିନ ସନ୍ଧ୍ୟା ବେଳକୁ ପାର୍ବତୀର ଜ୍ୱର ଆହୁରି ବଢ଼ିଗଲା । ଆଖିମଧ୍ୟ ଲାଲ ହୋଇ ରହିଥାଏ । ମୁହଁ ଫୁଲି ଏପରି ଦିଶୁଥାଏ ସତେ ଯେପରି ଗାଁ ଠାକୁରାଣୀଙ୍କ ମୁହଁ । ନଶିଆ ପାର୍ବତୀର ନାକ ଓ କାନରୁ ଅଳଙ୍କାର, କାଢ଼ି ରଖିଦେଲା । ରାତିକୁ ପାର୍ବତୀ କହିଲା - "ମା' ମୋର ଡାହାଣ ଜଙ୍ଘ ମୂଳରେ ଗୋଟେ ବଥ ଭଳିଆ ବାହାରିଲାଣି ।"

ପାର୍ବତୀ ବିଲଘର ପରେ ବେଶି କାମ ଧାମ କରିନଥିଲା । ନଶିଆ ଭାବିଲା କାଲି ମନ୍ଦିର ପର୍ଯ୍ୟନ୍ତ ଚାଲି ଯିବାରୁ ବୋଧହୁଏ ଜଙ୍ଘରେ ଗୋଟା ପଡ଼ିଛି । କିନ୍ତୁ ମନ୍ଦିର ତ ବେଶୀ ଦୂର ନୁହେଁ । ପିଲାଟା ପାଞ୍ଚ କୋଶ ଲେଖାଏଁ ଚାଲିଗଲେ ଥକେ ନାହିଁ । କିନ୍ତୁ ଗୋଟା ପଡ଼ିଲା କାହିଁକି ? ଏପରି ଭାବି ନଶିଆ ଲୁଣ ପୁଡ଼ା କରି ପାର୍ବତୀର ଜଙ୍ଘ ମୂଳ ସେକି ଦେଲା । ପୁଣି ଥରେ ପାଚନ ପାଣି କରି ପିଆଇଲା । ରମାନ୍ନାର ମଧ୍ୟ ଜ୍ୱର ସେହିପରି ରହିଥାଏ । ସେ ଚୁପଚାପ୍ ଶେଯରେ ପଡ଼ିଥାଏ । ରାତି ଆଠଟା ବେଳକୁ ଚେନ୍ନିଗରାୟ୍ ଘରକୁ ଆସିଲା । ବିଶ୍ୱ କେତେବେଳୁ ଘରକୁ ଆସିଲାଣି । ନଶିଆ ତାଙ୍କ ଦୁହିଁଙ୍କୁ ଖାଇବାକୁ ଦେଲା । ନିଜେ କିଛି ଖାଇ ନଥାଏ । କାଲି ରାତି ଅନିଦ୍ରା ହୋଇଥିବାରୁ ଭାରି ହାଲିଆ ଲାଗୁଥାଏ । ଜରୁଆ ପିଲା ଦୁଇଟାଙ୍କୁ ଭଲ କରି କମ୍ବଳ ଘୋଡ଼ାଇ ଦେଇ ତାଙ୍କ ମୁଣ୍ଡ ଉପରକୁ ଶୋଇ ପଡ଼ିଲା ।

ନଶିଆ ସ୍ୱପ୍ନ ଦେଖିଲା ଯେ ଗାଁ ଠାକୁରାଣୀଙ୍କ ମୁହଁ, ଜ୍ୱରରେ ପାର୍ବତୀ ମୁହଁ ଭଳି ଫୁଲି ଲାଲ ଦିଶୁଛି । ଦୁଇ କାନର କାନଫୁଲ ଦାଉ ଦାଉ ହୋଇ ଉଜ୍ଜ୍ୱଳ ଦିଶୁଛି । ଆଖି ମଧ୍ୟ ନିଆଁ ରଙ୍ଗପରି ଲାଲ । ଚକା ପକାଇ ବସିଛନ୍ତି, ଠାକୁରାଣୀଙ୍କର ଦୁଇ ଜଙ୍ଘ ଉପରେ ପାର୍ବତୀ ଏବଂ ରମାନ୍ନା ନବଜାତ ଶିଶୁ ପରି ଶୋଇଛନ୍ତି । ନଶିଆ ନିଜେ ତାଙ୍କ ପାଖକୁ ଯାଇ ପିଲା ଦୁଇଟାଙ୍କୁ କମ୍ବଳ ଘୋଡ଼ାଇବାକୁ ଚେଷ୍ଟା କରୁଛି, କିନ୍ତୁ ଠାକୁରାଣୀଙ୍କ ପାଖକୁ ଯାଇ ପାରୁନାହିଁ । ଦ୍ୱାର ବନ୍ଦ ନାହିଁ କିନ୍ତୁ ସେ ଆଗକୁ ଯାଇ ପାରୁନାହିଁ । ସେ କିନ୍ତୁ ବହୁତ ଚେଷ୍ଟା କରୁଛି । ହଠାତ୍ କ'ଣ ଶବ୍ଦ ଶୁଣି ତାର ଦିନ ଭାଙ୍ଗିଗଲା । ରମାନ୍ନା କୁନ୍ଥାଉ ଥିଲା । ଦୀପଟା ମିଞ୍ଜି ମିଞ୍ଜି ହୋଇ ଜଳୁଥାଏ । ତାକୁ ଭଲ କରି ଜାଳି ପୁଅର କପାଳ ଆଉଁସି ପଚାରିଲା - "କ'ଣ ରେ ପୁଅ ?"

"ମୋର ଦୁଇ ଜଙ୍ଘ ମୂଳରେ ବଥ ପରି ବାହାରିଛି ମା' ବହୁତ ବିନ୍ଧୁଛି ।" ନଶିଆର ଛାତି ଧଡ଼କିଲା ହେଲା । ତାହାହେଲେ କ'ଣ ପାର୍ବତୀ ଜଙ୍ଘରେ ବାହାରିଥିବା ବଥ ସାଧାରଣ ନୁହେଁ ? ଏହା କ'ଣ ପ୍ଲେଗ ରୋଗର ଲକ୍ଷଣ ? କିନ୍ତୁ ପାଖ ପଡ଼ୋଶୀରେ ଏପରି କୌଣସି ଖବର ଶୁଣାଯାଇ ନାହିଁ । ଗାଁରେ ମୂଷାମରି ପଡ଼ିଥିବାର ଦେଖାଯାଇ ନାହିଁ । ଚାଦର ଉଠାଇ ସେ ରମାନ୍ନା ଜଙ୍ଘ ମୂଳରେ ହାତ ମାରି ଦେଖିଲା । ସଙ୍କୋଚ ଅନୁଭବ କଲେ ସୁଦ୍ଧା ରମାନ୍ନା ଜ୍ୱର ତାତିରେ ଚୁପଚାପ ପଡ଼ି ରହିଲା । ଦୁଇ

Digitized by srujanika@gmail.com

ଜଙ୍ଘ ମୂଳରେ ପଣସ ମଞ୍ଜି ଆକାରର ଗୋଟା ପଡିଥାଏ । ମା'ର ହାତ ବାଜିବାରୁ ରମନ୍ନା କଷ୍ଟରେ ପାଟି କଲା, ପାଞ୍ଚମିନିଟ୍ ପର୍ଯ୍ୟନ୍ତ ନଞ୍ଜିମ୍ମା ସ୍ତବ୍ଧ ହୋଇ ବସି ରହିଲା । ତା'ପରେ ସ୍ୱାମୀ ପାଖକୁ ଆସି କହିଲା –"ହଇ ହୋ ପାର୍ବତୀ ଏବଂ ରମନ୍ନାର ଜଙ୍ଘରେ ଗୋଟା ପଡିଛି । ପ୍ଲେଗ୍ ହେଲା ପରି ଲାଗୁଛି । ଟିକିଏ ଉଠିକରି ଦେଖ ।" ତିନି ଚାରିଥର ହଲାଇଲେ ସୁଦ୍ଧା "ସକାଳେ ଦେଖିବା, ମତେ ଭାରି ନିଦ ଲାଗୁଛି," କହି ଚେନ୍ନିଗା ମୁହଁ ଉପରକୁ ଚାଦର ଭିଡି ନେଲା । ନଞ୍ଜିମ୍ମା ଭାବିଲା ମହାଦେବୟ୍ୟାଙ୍କୁ ଡାକିବ । କିନ୍ତୁ ଅନ୍ଧାରରେ ଏକୁଟିଆ ଯିବାକୁ ପ୍ରଥମେ ତାଙ୍କୁ ଡର ଲାଗିଲା । ଭାବିଲା, ଆଜି ଏମିତି ଡର କାହିଁକି ଲାଗୁଛି । ଶାନଭୂଅ ବିଶ୍ୱକୁ ଉଠାଇ କହିଲା –"ବାପ ଉଠିଲୁ, ମହାଦେବୟ୍ୟାଙ୍କୁ ଡାକିବାକୁ ଯିବା ।" ଆଖିରେ ହାତ ମଳିମଳି ଚଟ୍ କରି ଠିଆ ହେଲା । "ମୁଁ ଡାକି ଆଣୁଛି " କହି ଧାଣ୍ଡ- ପଟ ଦୁଆର ଖୋଲିଦେଲା । "ବହୁତ ଅନ୍ଧାର ହୋଇଛି, ରହ ମୁଁ ସାଙ୍ଗରେ ଯିବି ।" ଏହା କହିବା ପୂର୍ବରୁ ବିଶ୍ୱ କବାଟ ଖୋଲି ଧାଇଁଗଲା । ରାତି ଅଧ ହୋଇଥାଏ । ଗାଁଟା ସାରା ନିସ୍ତବ୍ଧ । କିଛି ସମୟପରେ ମହାଦେବୟ୍ୟା ବିଶ୍ୱକୁ ସାଙ୍ଗରେ ଧରି ପହଞ୍ଚିଲେ । ପିଲାଙ୍କ ଜ୍ୱର କଥା କହି ନଞ୍ଜିମ୍ମା କହିଲା –"ଏହା ପ୍ଲେଗ୍ ରୋଗ ନୁହେଁ ତ । ମତେ ଡର ଲାଗୁଛି । ଆପଣ ଟିକିଏ ଦେଖନ୍ତୁ ତ ।" ମହାଦେବୟ୍ୟା ଦୁହିଁଙ୍କ ହାତ ଛୁଇଁ ଜ୍ୱର ଦେଖିଲେ ଏବଂ ରମନ୍ନା ଜଙ୍ଘର ଗୋଟା ଦେଖି ସାରିଲା ପରେ ପଚାରିଲେ - "ସନ୍ଧ୍ୟାବେଳେ ଚେନିଗାରାୟ ପିଲାଙ୍କ ଦେହ ଖରାପ ବିଷୟ ତ କହି ନଥିଲେ ।"

"ତାଙ୍କ କଥା ଛାଡନ୍ତୁ । ଏମାନଙ୍କର କ'ଣ ହୋଇଛି ଟିକିଏ କୁହନ୍ତୁ ।"

"କାଲି ସନ୍ଧ୍ୟାରେ ଗାଁ ମୁଣ୍ଡରେ ଲୋକେ କଥା ହେବାର ମୁଁ ଶୁଣିଛି ଯେ କେଉଁ କେଉଁ ଘରେ ଦୁଇ ଦିନ ହେଲା ମୂଷା ମରିପଡିଥିବାର ଦେଖାଯାଇଛି ।"

ନଞ୍ଜିମ୍ମା ମୁଣ୍ଡରେ ବଜ୍ର ପଡିଲା ଭଳି ଲାଗିଲା । ଭୟରେ ଏବଂ ବିସ୍ମୟରେ କିଛି ସମୟ ମୂକ ପରି ରହିଗଲା, ଏବଂ ତାପରେ ହଠାତ୍ ଭୋ ଭୋ ହୋଇ କାନ୍ଦିବା ଆରମ୍ଭ କଲା । "ଭଉଣୀ ଦମ୍ଭ ଧର । ତୁମେ ଅଧୈର୍ଯ୍ୟ ହେଲେ ଏମାନଙ୍କ କଥା କିଏ ବୁଝିବ ?" ମହାଦେବୟ୍ୟା ଯେତେ ବୁଝାଇଲେ ସୁଦ୍ଧା ନଞ୍ଜିମ୍ମାର କାନ୍ଦ ବନ୍ଦ ହେଲା ନାହିଁ । ସେ ବଡ ପାଟିରେ ପ୍ରଳାପ କଲା ଭଳି କହୁଥାଏ, "ପୁଣି ସେହି ଦୁଷ୍ଟ ପ୍ଲେଗ୍ ବେମାରି ଆସିଛି । ସମସ୍ତଙ୍କୁ ଖାଇ ଶେଷ କରିବ ।" ଏହା ଶୁଣି ରମନ୍ନା କହିଲା –"ମା' ଔଷଧ ଖାଇଲେ ଭଲ ହୋଇପାରେ ତୁ କାହିଁକି କାନ୍ଦୁଛୁ ?" ନଞ୍ଜିମ୍ମାର ଟିକିଏ ଧୈର୍ଯ୍ୟ ଆସିଲା । ପାର୍ବତୀର କିନ୍ତୁ କଥା କହିବା ପାଇଁ ମଧ୍ୟ ଶକ୍ତି ନଥାଏ । ମହାଦେବୟ୍ୟା କହିଲେ –"ପ୍ଲେଗ୍ ହୋଇ ମଧ୍ୟ ଅନେକ ଲୋକ ବଞ୍ଚିଯାଇଛନ୍ତି । ଯିଏ ଥରେ ଏଥିରୁ ବଞ୍ଚିଛି ଦ୍ୱିତୀୟ ଥର ତାଙ୍କୁ ହୁଏ ନାହିଁ ।" ଏଥର ଟିକିଏ ନଞ୍ଜିମ୍ମାକୁ ସାନ୍ତ୍ୱନା ମିଳିଲା । ସତ କଥା, ତା' ଭାଇ କଲ୍ଲେଶକୁ ପୂର୍ବତ ପ୍ଲେଗ ହୋଇଥିଲା । ସେତ ପୁଣି ବଞ୍ଚିଗଲା । ଏହା ମନେ ପଡିବାରୁ ଦୁଶ୍ଚିନ୍ତା ମଧ୍ୟ ଟିକିଏ କମ୍ ହେଲା । ଶୁନ୍‌ଶାନ୍ ବାତାବରଣ ମଧ୍ୟରେ ଚେନ୍ନିଗରାୟର ଘୁଙ୍ଗୁଡି ଶବ୍ଦ ଛଡା ଚାରିଆଡେ ନିଃଶବ୍ଦ । ବିଶ୍ୱ ଚୁପ ହୋଇ ନିଜ ଶେଯ ଉପରେ ବସିଥାଏ । "ତୁ ଶୋଇ ଯା" କହି ମହାଦେବୟ୍ୟା ତାଙ୍କୁ ଶୁଆଇ ଦେଲେ । କିଛି ସମୟ ପରେ ରମନ୍ନାକୁ ମଧ୍ୟ ନିଦ ଆସିଗଲା । ଏଭଳି ଅବସ୍ଥାରେ ମହାଦେବୟ୍ୟା

Digitized by srujanika@gmail.com

ଏମାନଙ୍କୁ ଛାଡିଯିବେ ବା' କିପରି ? ଏଠି ବସିବା ଛଡା ଆଉ କ'ଣ ବା' କରି ପାରିବେ ? କିନ୍ତୁ ଏଠି ବସିଲେ ନଣ୍ଡିମ୍ମାକୁ ସାହାସ ଓ ସାନ୍ତ୍ୱନା ମିଳିବ । କିଛି ସମୟ ପରେ ନଣ୍ଡିମ୍ମା କହିଲା – "ଆଜି ରାତିରେ ମୁଁ ଗୋଟିଏ ଦୁଃସ୍ୱପ୍ନ ଦେଖିଛି । ସେଥିରେ ଠାକୁରାଣୀଙ୍କ ମନ୍ଦିର ଭିତରରେ ଦେବୀଙ୍କ କୋଳରେ ପାର୍ବତୀ ଏବଂ ରମନ୍ନା ଦୁହେଁ କଅଁଳା ଛୁଆ ଭଳି ଲଙ୍ଗଳା ହୋଇ ଶୋଇଛନ୍ତି ଏବଂ ମୁଁ ତାଙ୍କ ଉପରେ ଚାଦର ଘୋଡାଇବା ପାଇଁ ମନ୍ଦିର ଭିତରକୁ ଯିବାକୁ ଯେତେ ଚେଷ୍ଟା କଲେ ମଧ୍ୟ ଯାଇ ପାରୁନି । ଆଗରେ କିଛି ପ୍ରତିବନ୍ଧକ ନାହିଁ । କିନ୍ତୁ ମତେ ପଛରୁ କେହି ଟାଣି ଧରିଲା ପରି ଲାଗୁଥାଏ । ଏହାର ଅର୍ଥ କ'ଣ ହୋଇପାରେ ?"

"ଯଦି ପିଲା ଦୁଇଟା ଠାକୁରାଣୀଙ୍କ କୋଳରେ ଶୋଇଛନ୍ତି ତେବେ ତାର ଅର୍ଥ ହେବ ଯେ ଠାକୁରାଣୀ ତାଙ୍କୁ ରକ୍ଷା କରିଛନ୍ତି । ସେଇ ଠାକୁରାଣୀ, ରୋଗ, ବେମାରି ପଠାଉଛନ୍ତି ଏବଂ ସେଇ ନିଜେ ରକ୍ଷା ମଧ୍ୟ କରୁଛନ୍ତି ।"

ନଣ୍ଡିମ୍ମା ଟିକିଏ ଆଶ୍ୱସ୍ତ ହେଲା, କିନ୍ତୁ କହିଲା –"ମତେ କାହିଁକି ଠାକୁରାଣୀ ପାଖକୁ ଯିବାକୁ ଦେଲେ ନାହିଁ ।" ମହାଦେବମ୍ମା କ'ଣ ଉତ୍ତର ଦେବେ ବୁଝିପାରିଲେ ନାହିଁ । ଭାବିଲେ କହିଦେବି ଯେ ଯାହାକୁ ଭଗବାନ ରକ୍ଷା କରିବେ ମଣିଷ ବା ତାଙ୍କ ପାଖକୁ ଯିବ କାହିଁକି ? କିନ୍ତୁ କିଛି କହିଲେ ନାହିଁ । ନଣ୍ଡିମ୍ମା ମଧ୍ୟ ଏ ବିଷୟ ଭାବୁଥାଏ । କୌଣସି ଅଶୁଭ ସଂକେତ ଦେଖିଲେ ତାକୁ ଅନ୍ୟ ପ୍ରକାରେ ଅର୍ଥ କରି ମନକୁ ବୁଝାଏ । ସତରେ କ'ଣ ସ୍ୱପ୍ନର ଅର୍ଥ ଏଇୟା ଯେ ଠାକୁରାଣୀ କହୁଛନ୍ତି ମୋ ପାଖରେ ପିଲା ଦୁଇଟା ଥିଲା ପର୍ଯ୍ୟନ୍ତ କୌଣସି ଡର ନାହିଁ । କିଛି ସମୟପରେ କହିଲା, "କେଉଁଠୁ ଟିକିଏ ଔଷଧ ଆଣି ପିଆଇ ଦେଲେ ଭଲ ହୁଅନ୍ତା ।"

"ହଁ, ନିଶ୍ଚୟ ।"

"କିନ୍ତୁ, ମୋ କୋଳରେ ଶୋଇଥିବା ପିଲାଙ୍କୁ ତୁ ଔଷଧ ପିଆଇବାକୁ କିଏ ବୋଲି ଠାକୁରାଣୀ କୋପ ଯଦି କରନ୍ତି?"

ଇଏ ମଧ୍ୟ ଏକ ସମସ୍ୟା । ଔଷଧ ଖୁଆଇବା କଥା କି ନାହିଁ ଏ ବିଷୟ ଦି ଜଣ ଅନେକ ସମୟ ଚିନ୍ତା କଲେ । ଶେଷରେ ମହାଦେବମ୍ମା କହିଲେ, "ବ୍ରଣ ବେମାରି ବ୍ୟାପିଲା ବେଳେ ନାଗପୂଜା କରାଇବାରେ କ'ଣ ରୋଗ ଭଲ ହୋଇଥିଲା ? ତୁମେ ଯାଇ ଇଞ୍ଜେକ୍‌ସନ୍ ନେଇଥିଲ ନା ? ଏବେ ମଧ୍ୟ ସେୟା କରାଯାଉ । କାଲି ଡାକ୍ତରଙ୍କୁ ଡାକି ଆଣିବା କିମ୍ବା ପିଲା ଦୁଇଟାଙ୍କୁ କମ୍ବନକେରେ ନେଇଯିବା ।"

ନଣ୍ଡିମ୍ମା ମଧ୍ୟ ସେୟା କରିବ ବୋଲି ଠିକ୍ କଲା । ମୁଲିଆ ଡକାଇ ଶଗଡ ଗାଡି ଠିକ୍ କରିବା କଥା ପଚାରିବାରୁ ମହାଦେବାମ୍ମା କହିଲେ, ଏତେ ଜ୍ୱରରେ ପିଲା ଦୁଇଟାଙ୍କୁ ଶଗଡରେ ନେବା ମଧ୍ୟ ଠିକ୍

Digitized by srujanika@gmail.com

ନୁହେଁ । ଡାକ୍ତରଙ୍କୁ ଏଠାକୁ ଆଣିବାକୁ ପଡିବ । ଶଗଡଟେ ପଠାଇ ଦେବା । ତୁମେ ଯଦି କହିବ, ମୁଁ ନିଜେ କମ୍ପନକେରେ ଯିବି ।"ପାହାନ୍ତିଆ ବେଳକୁ ମହାଦେବଯ୍ଯା ମୁଲିଆଟେ ଡାକି ଆଣିଲେ । ସେ ଯାଇ ଦେଢ ଟଙ୍କାକୁ ଶଗଡଟାଏ ଭଡା କରି ଆଣିଲା । ସୂର୍ଯ୍ୟ ଉଦୟ ପୂର୍ବରୁ ଶଗଡରେ ବସି ମହାଦେବଯ୍ଯା କମ୍ପନକେରେ ପହଞ୍ଚିଗଲେ ।

ସେଦିନ ସକାଳୁ ଦୁଇଜଣଙ୍କର ଅବସ୍ଥା ଆହୁରି ଖରାପ ହୋଇଗଲା । ପାର୍ବତୀର ଦୁଇ କାଖ ମୂଳରେ ମଧ୍ୟ ଗୋଟା ପଡିଗଲା । ଦେହଟା ସାରା ଫୁଲି ଯାଇ, ଭୟଙ୍କର ଦେଖାଯାଉ ଥାଏ । ସେ ଅର୍ଦ୍ଧ ଚେତନ ଅବସ୍ଥାରେ ରହି ବାଉଳି ଚାଉଳି ହୋଉଥାଏ । ମା' ଆସି ଗରମ କାଉ ଟିକିଏ ଖୋଇବା ପାଇଁ ଡାକିବାରୁ ଚେତା ଆସି ପାର୍ବତୀ କହିଲା –"ମା' ମୋ ହାତ ଗୋଡ ଭାରି ଦୁର୍ବଳ ଲାଗୁଛି ।"

"ଜ୍ୱର ଲାଗି ଏପରି ଲାଗୁଛି ଝିଅ, ତୁ ଏ କାଉ ଟିକିଏ ଖାଇଦେ ଭଲ ଲାଗିବ ।"

"ଇଚ୍ଛା ହେଉନି ।"

"ନଖାଇଲେ ବଳ କେଉଁଠୁ ଆସିବ । ଆଖିବୁଜି ଖାଇଦେ ।"

ଆଉ ପ୍ରତିବାଦ ନ କରି ଜଲଦି ଗିଳି ଦେଇ ପୁଣି ଆଖିବୁଜି ପଡି ରହିଲା । ରମନ୍ନାକୁ ଉଠାଇବାରୁ ସେ କହିଲା - "ମା' ଡାକ୍ତର ବାବୁ କେତେବେଳେ ଆସିବେ ?"

"ଦିନ ନଅଟା ବେଳକୁ ଆସିବେ ପରା ।"

"ଆସିବେ କି ନାହିଁ କେଜାଣି, ପ୍ଲେଗ ଲାଗିଥିବା ଗାଁକୁ ସେମାନେ ଆସନ୍ତି ନାହିଁ । ସେ ପୁରୁଣା ଡାକ୍ତରଙ୍କ ବଦଳି ହୋଇଗଲାଣି ।"

"ଦେଖିବା ଆସୁଛନ୍ତି ନା ନାହିଁ ।"

ରମନ୍ନା କାଉଟକ ଖାଇ ଦେଇ ଶୋଇପଡିଲା । ତାର ଜଙ୍ଘରେ ପଡିଥିବା ଗୋଟା ଆହୁରି ବିନ୍ଧା, ଛିଟିକା ହେଲା । ପିଲାଟା ସହି ନ ପାରି ମଝିରେ ମଝିରେ ଆଃ, ଉଃ ହେଉଥାଏ । ସକାଳୁ ଉଠି ପୋଖରୀପାଣି ଯାଇଥିବା ଚେନ୍ନିଗରାୟ ଆହୁରି ଫେରିନଥାନ୍ତି । ବିଶ୍ୱ କ'ଣ କରିବ ବୁଝି ନପାରି ମା' ପଛରେ ରୋଷେଇ ଘରକୁ ଶୋଇବା ଘରଯାଏ ଦଉଡୁ ଥାଏ । ଏତିକିବେଳକୁ ଢୋଲ ପିଟିପିଟି ଡେଙ୍ଗୁରା ବାଲା ଆସିଲା । ନଞ୍ଜୁଣ୍ଡା ବାହାର ବାରଣ୍ଡାରେ ଆସି ଠିଆ ହେଲା । ଡେଙ୍ଗୁରା ବାଲା ଢୋଲ ପିଟିବା ବନ୍ଦକରି କହିଲା,"ଶୁଣ ହେ, ଗାଁ ଲୋକେ, ଗାଁରେ ପ୍ଲେଗ ବେମାରି ଲାଗିଛି । ପଞ୍ଚାୟତ ନିଷ୍ପତ୍ତି କରିଛି ଯେ ସମସ୍ତେ ଗାଁ ଘରମାନ ଛାଡି ବିଲ ମଝିରେ କୁଡିଆ କରି ରହନ୍ତୁ । ଆସନ୍ତା ଶୁକ୍ରବାର ପର୍ଯ୍ୟନ୍ତ ସମସ୍ତେ ଗାଁ ଘର ଛାଡି ଚାଲିଯାଅ ହେ ।" ଡମ୍ ଡମ୍ ଡମ୍ ଢୋଲ ବଜାଇ ଆଗକୁ ଚାଲିଗଲା ।

ଗାଁରେ ପ୍ଲେଗ ଲାଗିବା କଥା ନଞ୍ଜୁଣ୍ଡାକୁ କାଲି ରାତି ଅଧ ପର୍ଯ୍ୟନ୍ତ ଜଣାନଥିଲା । ବୋଧହୁଏ ତାଙ୍କରି

Digitized by srujanika@gmail.com

ଘରେ ପ୍ରଥମେ ଆରମ୍ଭ ହୋଇଛି । "ଠାକୁରାଣୀଙ୍କୁ ମାନସିକ କରିଥିଲି ବୋଲି ନୂଆଖାଦୀ ପିନ୍ଧାଇ ପାର୍ବତୀକୁ ତାଙ୍କ ପାଖକୁ ନେଇଗଲି । ଠାକୁରାଣୀଙ୍କର ନଜର ସେଥିପାଇଁ ପାର୍ବତୀ ଉପରେ ପ୍ରଥମେ ପଡ଼ିଛି । କିନ୍ତୁ ପାର୍ବତୀକୁ ପ୍ରଥମେ କାହିଁକି ଏ ରୋଗ ହେଲା ଏବଂ ତା' ପଛେ ପଛେ ରମାନ୍ନୁକୁ ଧରିଲା ? ଏ ବେମାର ପ୍ରତି ତିନିବର୍ଷରେ କାହିଁକି ଆସୁଛି ? ଏଥିପାଇଁ କ'ଣ କିଛି ପ୍ରତିକାର ନାହିଁ ? ଔଷଧ ନିଶ୍ଚୟ ଥିବ । ଡାକ୍ତର ଆସିଲେ ପିଲା ଦୁଇଟା ଭଲ ହୋଇଯିବେ ।" ଏହା ଭାବି ଘର ଛାଡ଼ି ବିଲରେ କୁଡ଼ିଆ କରି ରହିବା ପାଇଁ ଠିକ୍ କଲା ।

ପ୍ରାୟ ଦିନ ଏଗାରଟା ବେଳେ ମହାଦେବଯ୍ୟା ଶଗଡ଼ରେ ବସି ଫେରିଲେ । ଡାକ୍ତର ସାଙ୍ଗରେ ଆସିଲେ ନାହିଁ । "କମ୍ଭନକେରେରେ ମଧ୍ୟ ପ୍ଲେଗ ଲାଗିଛି । ଏବଂ ଡାକ୍ତରମାନେ ପ୍ରତିଷେଧକ ଟୀକା ଦେବାରେ ବ୍ୟସ୍ତ ଅଛନ୍ତି । ରୋଗୀକୁ ସାଙ୍ଗରେ ନେଇ ଆସିବାକୁ କହିଛନ୍ତି ।"ମହାଦେବଯ୍ୟା କହିଲେ ।

"ଏତେ ଜ୍ୱରରେ କିପରି ନେଇକରି ଯିବା ?"

"ଶଗଡ଼ ଉପରେ ଚାଟି ଘୋଡ଼ା ହୋଇଛି । କଅଁଳିଆ ଘାସ ବିଛାଇ, ତା' ଉପରେ ଶୁଆଇ ଧୀରେ ଧୀରେ ନେଇଯିବା ?"

ଆଉ ଡେରି ନକରି ଶଗଡ଼ରେ ଘାସ ବିଛାଇ ଦିଆଗଲା । ନଞ୍ଜମ୍ମା ତା' ଉପରେ ଶେଯ ପକାଇ ଦେଲା । ମହାଦେବଯ୍ୟା ଏବଂ ଶଗଡ଼ିଆ ମିଶି ଦୁହିଁଙ୍କୁ ଟେକି ଶଗଡ଼ରେ ନେଇ ଶୁଆଇଦେଲେ ଏବଂ ଗୋଟିଏ ଲେଖାଏଁ କମ୍ବଳ ଘୋଡ଼ାଇ ଦେଲେ । ସାଙ୍ଗରେ ଯିବେ କି ନାହିଁ, ଦୋ ଦୋ ପାଞ୍ଚ ହୋଇ ଶେଷରେ ଚେନ୍ନିଗରାୟ ସାଙ୍ଗରେ ଯିବାକୁ ବାହାରିଲେ । ନଞ୍ଜମ୍ମା ବିଶ୍ୱକୁ ମାଷ୍ଟ୍ରଙ୍କ ଘରକୁ ପଠାଇ ପିଲା ଦୁଇଟାଙ୍କର ମୁଣ୍ଡ ପାଖରେ ଯାଇ ବସିଲା । ମହାଦେବଯ୍ୟା, ଚେନ୍ନିଗା, ଶଗଡ଼ ପଛରେ ଚାଲିଚାଲି ଆସିଲେ ।

ଧୀରେ ଧୀରେ ଆବଡ଼ା ଖାବଡ଼ା ଗହୀର ରାସ୍ତା ଦେଇ ଶଗଡ଼ କମ୍ଭନକେରେ ପହଞ୍ଚିଲା ବେଳକୁ ଦିପହର । ଗୋଟାଏ ବାଜି ସାରିଥିଲା । ଡାକ୍ତରମାନେ ଘରକୁ ଯାଇସାରିଥିଲେ । ଗାଡ଼ିଟା ଡାକ୍ତରଖାନା ଆଗରେ ରଖି ଚେନ୍ନିଗରାୟଙ୍କୁ ଜଗାଇ ମହାଦେବଯ୍ୟା ଏବଂ ନଞ୍ଜମ୍ମା ଡାକ୍ତରଙ୍କ ଘରକୁ ଗଲେ । ଡାକ୍ତର ଖାଇସାରି ବିଶ୍ରାମ ନେଉଥିଲେ । ପ୍ରଥମେ ଟିକିଏ ନାରାଜ ହେଉଥିଲେ, କିନ୍ତୁ ପରେ ଚାବି ଧରି ଡାକ୍ତରଖାନାକୁ ଆସିଲେ । ଶଗଡ଼ ଭିତରେ ରୋଗୀଙ୍କୁ ଦେଖିଲେ, "ରୋଗ ଏତେ ବଢ଼ିଲାଯାଏଁ କାହିଁକି ଚୁପ୍ ରହିଥିଲ ।" ଡାକ୍ତର ବ୍ୟସ୍ତ ହୋଇ କହିଲେ ।

"ଆମକୁ ଜଣା ପଡ଼ିନଥିଲା ସାର୍ । କାଲି ରାତିରେ ଜଙ୍ଘରେ ଗୋଟା ପଡ଼ିବାରୁ ଜାଣିଲୁ । ଆମେ ଭାବିଲୁ ଥଣ୍ଡା ଜ୍ୱର ହୋଇଥିବ ।"

"ଏବେ ଟୀକା ଦେଇ କିଛି ଲାଭ ନାହିଁ । ଔଷଧ ଦେଉଛି ନେଇ ଯାଅ । ବୋତଲ ଆଣିଛ ?"

Digitized by srujanika@gmail.com

"ନାହିଁ ଆଜ୍ଞା ଆମେ ଜାଣିନଥିଲୁ ?"

ଡାକ୍ତର ତାଙ୍କ ପାଖରେ ଥିବା ଖାଲି ବୋତଲଟିଏ ସଫାକରି ସେଥିରେ ଔଷଧ ଦେଲେ ଏବଂ କହିଲେ, "ଦୁଇଜଣ ଯାକଙ୍କୁ ଦିନକୁ ତିନିଥର କରି ପିଆଇବ । ଦୁଇଦିନ ପାଇଁ ଦେଉଛି । ପଅର ଦିନ ପୁଣି ଆସ ।" ଆଉ କିଛି ନ ପଚାରି, ଶଗଡରେ ବସି, ଗାଁକୁ ଫେରିଲେ । ଗାଁରେ ପହଞ୍ଚିଲା ବେଳକୁ ବିଶ୍ୱ ମସିଣାରେ ମୁଣ୍ଡ ମାଡି ଶୋଇଛି । ତାର ଦେହ ମଧ୍ୟ ତାତି ଖାଇ ଫୁଟୁଛି । ନକ୍ଷତ୍ରା ସ୍ୱନପୁଅର ଏ ଅବସ୍ଥା ଦେଖି ତାକୁ କୁଣାଇ କାନ୍ଦିବାରେ ଲାଗିଲା । "ଆହେ ମହାଦେବସ୍ୱାମୀ ଦେଖନ୍ତୁ, ମୋ କପାଳ କି ପୋଡା । ଏ ବେମାର ମୋର ସବୁପିଲାଙ୍କୁ ନାଶ କରିଦେବ ।"

ମହାଦେବସ୍ୱାମୀ ପ୍ରଥମେ ଶଗଡ ଭିତରୁ ପାର୍ବତୀ ଏବଂ ରମାନାଥଙ୍କୁ ଆଣି ଘର ଭିତରେ ଶୁଆଇଲେ । ତା'ପରେ କହିଲେ –"ଭଉଣୀ ତୁମେ ଏ ଦୁଇ ଜଣଙ୍କୁ ସମ୍ଭାଳ । ମୁଁ ବିଶ୍ୱଙ୍କୁ ନେଇ କମ୍ପାନକେରେ ଯାଉଛି । ଏଥର ଜଙ୍ଗରେ ଏ ପର୍ଯ୍ୟନ୍ତ ଗଣି ବାହାରି ନାହିଁ । ତୁରନ୍ତ ନେଇ ଔଷଧ ଖୁଆଇବାକୁ ପଡିବ ।"

ନକ୍ଷତ୍ରା ହତବାକ ହୋଇଯାଇଥାଏ । ମହାଦେବସ୍ୱାମୀ ମନ୍ଦିର ଭିତରକୁ ଯାଇ ନିଜ ସିନ୍ଦୁକରେ ଯେତେ ଟଙ୍କା ଥିଲା, ବାହାର କଲେ । ସେଥୁଆସି ନକ୍ଷତ୍ରା ହାତରେ ଦଶଟଙ୍କା ଧରାଇ ବାକି କୋଡିଏ ଟଙ୍କା ନିଜେ ଧରି ଆଉ ଗୋଟିଏ ଶଗଡ ଭଡା କରି ବିଶ୍ୱଙ୍କୁ ନେଇ କମ୍ପାନକେରେ ଗଲେ ।

ସେଠାରେ ପହଞ୍ଚୁ ପହଞ୍ଚୁ ରାତି ହୋଇଗଲାଣି । ଡାକ୍ତରଖାନାକୁ ନଯାଇ ଡାକ୍ତରଙ୍କ ଘର ପାଖରେ ଶଗଡ ରଖିଲେ । ଡାକ୍ତରଙ୍କୁ ଡାକିବାରୁ ବିରକ୍ତ ହୋଇ କହିଲେ, "ତୁମେ ପ୍ଲେଗ୍ ରୋଗୀଟାକୁ ସିଧା ଘରକୁ କିପରି ନେଇ ଆସିଲ ?"

"ଆପଣ ଡାକ୍ତରଖାନାରେ ନଥିଲେ ବୋଲି ଏଠାକୁ ଆସିଲି ।"

"ମୁଁ କ'ଣ ଚବିଶି ଘଣ୍ଟା ବସିଥିବି । ଆରେ, କରିଆ, ଗଲୁ ଡାକ୍ତରଖାନା ଯାଇ ଟେବୁଲରେ ଯେଉଁ ବୋତଲ ରଖାହୋଇଛି ସେଥିରୁ ଡାହାଣପଟ ଦ୍ୱିତୀୟ ବୋତଲରୁ ତିନି ଆଉନସ୍ ଔଷଧ ଏମାନଙ୍କୁ ଦେଇଦେବୁ ।" ଏହା କହି ଡାକ୍ତର ଘର ଭିତରକୁ ଚାଲି ଗଲେ ।

ଚାକର କରିଆର, ମହାଦେବସ୍ୱାମୀଙ୍କର ଭବ୍ୟ ଚେହେରା, ଗେରୁଆ ବସ୍ତ୍ର ଦେଖି ଭକ୍ତିଭାବ ଆସିଗଲା । ସେ କହିଲା – "ମହାଶୟ, ଏ ଔଷଧରେ କିଛି ଲାଭ ହେବ ନାହିଁ । ତିପଟୁର ସହରରେ ହେମାଦି ସିରପ ମିଳୁଛି ଗୋଟିଏ ଶିଶିକୁ ତିନିଟଙ୍କା । ତାହା କେବଳ ଭେଙ୍କଟାଚଳ ସେଠୀ ଦୋକାନରେ ମିଳେ । ଏ ପିଲାକୁ ସେ ଔଷଧ ପିଆଇଲେ ରୋଗ ଭଲ ହୋଇଯିବ ।"

"ଡାକ୍ତର ମଧ୍ୟ କ'ଣ ସେୟା କହୁଥିଲେ ।"

Digitized by srujanika@gmail.com

"ଡାକ୍ତରଙ୍କ କହିବା ନକହିବାରେ କ'ଣ ଅଛି ? ମୋ କଥା ମାନ । ଯଦି କହିବ ଡାକ୍ତରଖାନାର ପାଣି ଔଷଧ ଦେବି । କିନ୍ତୁ ଏଥିରେ କୌଣସି ଲାଭ ନାହିଁ ।

ମହାଦେବସ୍ୱାମୀ ଶୀଘ୍ର ତିପଟୁର ଯିବାକୁ ଠିକ୍ କଲେ । ଶଗଡିଆ ଟିକିଏ କୁନ୍ଥୁ କୁନ୍ଥୁ ହେଉଥିଲା । "ଆରେ ଗୋଟେ ମଣିଷର ଜୀବନ ମରଣ କଥା ବେଳକୁ ଏମିତି କ'ଣ ହେଉଛୁ ? ତୋ ଘରେ କ'ଣ ପିଲାଛୁଆ ନାହାନ୍ତି ।" ମହାଦେବସ୍ୱାମୀ ଏପରି କହିବାରୁ ଶଗଡିଆ ଭୟରେ ମାନିଗଲା । କମ୍ବନକେରେ ଠାରୁ ତିପଟୁର୍ ଦଶ ଏଗାର ମାଇଲ ରାସ୍ତା । ବାଟରେ କାଳେ ପିଲାଟାକୁ ଭୋକ ଲାଗିବ, ସେଥିପାଇଁ ମହାଦେବସ୍ୱାମୀ ଗୋଟିଏ ବିସ୍କୁଟ ପ୍ୟାକେଟ୍ କିଣି ଆଣିଲେ ।

ରାତି ଅଧ ପରେ ଶଗଡ ଯାଇ ତିପଟୁର୍‌ରେ ପହଞ୍ଚିଲା । ମହାଦେବସ୍ୱାମୀ ଭେଙ୍କଟାଚଳ ସେଠାର ଦୋକାନ ଦେଖିଥିଲେ । ଦୋକାନ ବନ୍ଦ ଥିଲା, କିନ୍ତୁ ଦୋକାନ ପଛପଟେ ସେଠାର ଘର । ମହାଦେବସ୍ୱାମୀ ଯାଇ କବାଟ ବାଡେଇଲେ । ସେଠୀ କବାଟ ଫିଟେଇ ବାହାରକୁ ଆସିଲା ଏବଂ ସବୁକଥା ଶୁଣି କହିଲା– "ହେମାଦି ସିରପ ଆୟୁର୍ବେଦର ବିଶ୍ୱାସନୀୟ ଔଷଧ । ଆମେ ମାଡ୍ରାସରୁ ସିଧା ମଗାଉଛୁ । ଜଙ୍ଘ ମୂଳରେ ଗୋଟା ପଡିବା ପୂର୍ବରୁ ଏ ଔଷଧ ପିଆଇଲେ ପ୍ଲେଗ ରୋଗ ଭଲ ହୋଇଯାଏ । ଗୋଟା ପଡିସାରିଲା ପରେ ଔଷଧ କାଟୁ କରିପାରେ ନ କରିପାରେ । ଆପଣ କେତୋଟି ଶିଶି ନେବେ ।"

"ଦିନକୁ କେତେ ଥର ଏବଂ କେତେ ଲେଖାଏଁ ଦେବାକୁ ହେବ ।"

"ଥରକୁ ଚାରି ଚାମଚ୍ ଲେଖାଏଁ ଦିନକୁ ଚାରିଥର ପିଆଇବାକୁ ହେବ । ଗୋଟିଏ ଶିଶି ଜଣେ ଲୋକର ତିନିଦିନ ଯିବ । ଗୋଟିଏ ଶିଶିର ଦାମ ତିନିଟଙ୍କା ।"

ମହାଦେବସ୍ୱାମୀଙ୍କ ପାଖରେ କୋଡିଏ ଟଙ୍କା ଥିଲା । ଅଠର ଟଙ୍କା ଦେଇ ଛଅଟି ଶିଶି କିଣିଲେ । ଦୋକାନୀ କହିଲା –"ଏଇ ପିଲାକୁ ବର୍ତ୍ତମାନ ଚାରି ଚାମଚ୍ ପିଆଇ ଦିଅନ୍ତୁ । ଏ ଔଷଧଟା ଭାରି ମିଠା । ଯାହାକୁ ପ୍ଲେଗ ଲାଗିଥିବା ଗାଁକୁ ନିଅନ୍ତୁ ନାହିଁ, ପିଲାଟିକୁ ଗାଁ ଠାରୁ ଦୂରରେ ରଖିଲେ ଭଲ ।"

ଏହା କହି ଦୋକାନୀ କବାଟ ବନ୍ଦ କଲା । ଶଗଡ ନେଇ ଗାଁକୁ ଫେରିବା ପାଇଁ ବଳଦ ଯୋଡାକ ହାଲିଆ ହୋଇ ଯାଇଥିଲେ । ଶଗଡିଆ ଏବଂ ମହାଦେବସ୍ୱାମୀ ମଧ୍ୟ କ୍ଳାନ୍ତ ଅନୁଭବ କରୁଥିଲେ । ଏତେ ରାତିରେ କେବଳ ରେଳଷ୍ଟେସନ ଛଡା ଅନ୍ୟ କେଉଁଠି କିଛି ଖାଇବାକୁ ମିଳିବ ନାହିଁ । ଶଗଡ ଧରି ସେଠି ପହଞ୍ଚିଲେ । ପ୍ରଥମେ ପାଣି ଜାଳେ ଆଣି ବିଶ୍ୱକୁ ଔଷଧ ଖୁଆଇ ପାଣି ପିଆଇଲେ । ହୋଟେଲରେ ପକୋଡି ଛଡା ଆଉ କିଛି ନଥିଲା । ଆଠଅଣାର କିଣି ଦୁଇଜଣ ଯାକ ଖାଇଲେ । ଶଗଡିଆ କହିଲା –"ଆଜ୍ଞା ଗାଁ ଘର ଛାଡି ବିଲରେ କୁଡିଆ ତିଆରି କରିବାକୁ ହେବ, ତେଣୁ ଗାଁକୁ ରାତି ରାତି ନ ଫେରିଲେ କୌଣସି ଉପାୟ ନାହିଁ । ଧୀରେ ଧୀରେ ଚାଲିବା ।"

"ହଁ ସେୟା କର ।"

Digitized by srujanika@gmail.com

ଶଗଡ ଗାଁ ରାସ୍ତା ଧରିଲା । ବିଶ୍ୱ ଦେହରେ ଜ୍ୱର ଥିଲା କିନ୍ତୁ ପିଲାଟା ଚଞ୍ଚଳ ଥାଏ । ମହାଦେବଯ୍ୟା ତାର ଜଙ୍ଘମୂଳ, କାଖତଳ ଚିପି ପଚାରିଲେ – "ପୂଅ କାଟୁଛି କି ?" ସେ ନାହିଁ କଲା । ମହାଦେବଯ୍ୟା ଶାନ୍ତିରେ ନିଶ୍ୱାସ ଛାଡ଼ିଲେ । ରୋଗ ବଢ଼ିବା ପୂର୍ବରୁ ଔଷଧ ଖୁଆଇ ଦେଇଥିବାରୁ ନିଶ୍ଚିନ୍ତ ମନରେ ଶଗଡବାଡକୁ ଆଉଜି ଘୁମେଇବାରେ ଲାଗିଲେ । ବଳଦ ଦୁଇଟା ହାଲିଆ ହୋଇଯାଇଥିବାରୁ ଆସ୍ତେ ଆସ୍ତେ ପାହୁଣ୍ଡ ପକାଉଥାନ୍ତି । କମ୍ବନକେରେ ପର୍ଯ୍ୟନ୍ତ ସଡକ ରାସ୍ତା ହୋଇଥିବାରୁ ଗାଡିଆଳ ମଧ୍ୟ ମଝିରେ ମଝିରେ ଘୁମାଇ ପଡୁଥାଏ ।

ସକାଳ ହେଲା ବେଳକୁ ଅଧ ରାସ୍ତା ପାର କରିସାରିଥାନ୍ତି । ବାଟରେ ଶଗଡ ରଖି ମହାଦେବଯ୍ୟା ବିଶ୍ୱର ମୁହଁ ଧୋଇ ଦେଲେ । ତା'ପରେ ଔଷଧ ଖୁଆଇ ଦେଲେ । ଦେହରେ ଜ୍ୱର ଥିଲା, କିନ୍ତୁ କାଖରେ କିମ୍ବା ଜଙ୍ଘରେ ଗୋଟା ପଡି ନଥିଲା । ତାଙ୍କମନରେ ଦମ୍ଭ ଆସିଲା । ପୁଡାରୁ ବିସ୍କୁଟ୍ ବାହାର କରି ବିଶ୍ୱକୁ ଖୁଆଇଲେ । ଗାଡିଆଳ ଏବଂ ମହାଦେବଯ୍ୟା ସେଠାରେ ନିତ୍ୟକର୍ମ ସାରି ପୁଣି ଶଗଡରେ ବସି ଚାଲିଲେ । ରାସ୍ତାରେ ମହାଦେବଯ୍ୟାଙ୍କ ମନରେ ଗୋଟିଏ ଭାବନା ଆସିଲା । ଗାଁ ଲୋକ ସମସ୍ତେ ଘର ଛାଡି ବିଲ ବାଡିରେ କୁଡିଆ କରୁଥିବେ । ବିଶ୍ୱକୁ ସେ ଗାଁ ଭିତରକୁ ନେବା ଠିକ୍ ହେବ ନାହିଁ। ଗାଁ ଠାରୁ ଦୂରରେ ଥିବା ମନ୍ଦିରରେ ଶୁଆଇ ଗାଁ ଭିତରକୁ ଯାଇ ତା' ପାଇଁ ମଶିଣା, ଶେଯ ଆଦି ନେଇ ଆସିବେ ।

ମନ୍ଦିର ପାଖରେ ପହଞ୍ଚି ସେଯ୍ୟା କଲେ । ସେଠି ପହଞ୍ଚିଲା ବେଳକୁ ଦିନ ଏଗାରଟା ବାଜିସାରିଥାଏ । ବିଶ୍ୱକୁ ସେଠି ଓହ୍ଲାଇ ଔଷଧ ପିଆଇଲେ । ଶଗଡିଆକୁ ବିଶ୍ୱ ପାଖରେ ରହିବାକୁ କହି ନିଜେ ଗାଁ ଭିତରକୁ ଗଲେ ।

## 2

ଗାଁର ସମସ୍ତେ କାଠ, ବାଉଁଶ, ତାଟି ଆଦି ଧରି ବିଲରେ କୁଡିଆ ତିଆରି କରିବାରେ ବ୍ୟସ୍ତଥାନ୍ତି । ଲୋକେ ମଧ୍ୟ ମୁଣ୍ଡରେ ବସ୍ତା ବୋଝ ମୁଣ୍ଡାଇ ନେଇଯାଉଥାନ୍ତି । ନଞ୍ଜାର ଘରେ ମହାଦେବଯ୍ୟା ପହଞ୍ଚିଲା ବେଳକୁ ରମନ୍ନା ଓ ପାର୍ବତୀ ବେହୋଶ ହୋଇ ପଡିଥାନ୍ତି । ପାର୍ବତୀ ମଝିରେ ମଝିରେ ଜଙ୍ଘମୂଳ ଗୋଟା ବିନ୍ଧୁଥିବାରୁ କ୍ଷୀଣସ୍ୱରରେ ଚିତ୍କାର କରୁଥାଏ । ମହାଦେବଯ୍ୟାଙ୍କୁ ଏକୁଟିଆ ଫେରିବା ଦେଖି ନଞ୍ଜମ୍ମା ଡରିଗଲା । ମହାଦେବଯ୍ୟା ତାହା ବୁଝିପାରି କହିଲେ –"ଭଉଣୀ ଡର ନାହିଁ । ତିପଟୁର ଯିବାକୁ ପଡିଲା । ବିଶ୍ୱର ଜ୍ୱର ଅଛି, କିନ୍ତୁ ତାର କାଖରେ କିମ୍ବା ଜଙ୍ଘରେ ଗୋଟା ପଡିନାହିଁ । ତିପଟୁରରୁ ଭଲ ଔଷଧ ଆଣିଛି । ଗାଁ ମନ୍ଦିରରେ ବିଶ୍ୱକୁ ଶୁଆଇ ଶଗଡିଆକୁ ଜଗାଇ ଦେଇ ଆସିଛି । ତିପଟୁରରେ ଶୁଣିଲି ଯେ ପ୍ଲେଗ ଲାଗିଥିବା ଗାଁକୁ ବିଶ୍ୱକୁ ନେବା କଥା ନୁହେଁ । ତୁମେ ଏ ଔଷଧ ନେଇ ଏ ଦୁଇ ଜଣଙ୍କୁ ଦିନକୁ ଚାରିଥର ଲେଖାଏଁ ପିଆଅ ।"

Digitized by srujanika@gmail.com

ନକ୍ଷତ୍ରା ମହାଦେବଯ୍ୟାଙ୍କ ହାତରୁ ଔଷଧ ଶିଶି ନେଇ ଚାମଚ୍‌ରେ ରମାନ୍ନା ଏବଂ ପାର୍ବତୀଙ୍କ ମୁହଁରେ ପିଆଇ ଦେଲା, ମହାଦେବୟ୍ୟା କହିଲେ, "ଏରୋଗ ପାଇଁ କେବଳ ଏଇ ଗୋଟିଏ ଔଷଧ ଭଲ । ଭଗବାନଙ୍କ ଦୟା ହେଲେ ଏମାନଙ୍କ ଜୀବନ ବଞ୍ଚିଯିବ । ତୁମେ ଶୀଘ୍ର ଏ ଗାଁ ଛାଡି ବିଲରେ କୁଡିଆ କରିବା ଦରକାର । ଏ ପର୍ଯ୍ୟନ୍ତ କ'ଣ କିଛି ବ୍ୟବସ୍ଥା କରିନାହଁ ?"

"ମୁଁ ତ ପିଲା ଦୁଇଟାଙ୍କ ପାଖରେ ବସିଛି । ଏ ମି ଭୌତରେ ଆମକୁ ସାହାଯ୍ୟ କିଏ ବା' କରିବାକୁ ଆସିବ ?"

"ଚେନ୍ନିଗା କୁଆଡେ ଗଲା ?"

"ମୁଁ ଜାଣିନାହିଁ । ସକାଳ ଆଠଟାରୁ ଗଲେଣି ଯେ ଫେରି ନାହାନ୍ତି ।"

"ମୁଁ ମନ୍ଦିରରୁ କମ୍ବଳ ଆଦି ନେଇ ଗାଁ ବାହାର ମନ୍ଦିରକୁ ଯାଉଛି । ତୁମେ ବିଶ୍ୱପାଇଁ ମୋଟେ ଚିନ୍ତା କରନାହିଁ । ଗୋଟେ ମୂଲିଆକୁ ଡାକି ତୁମ ପାଇଁ କୁଡିଆଟିଏ କରି ଦେବାକୁ କହି ଦେଉଛି ।" ଏହା କହି ମହାଦେବୟ୍ୟା ବିଶ୍ୱ ପାଇଁ ଜାଉ ଟିକିଏ ତିଆରି କରିବାକୁ କିଛି ଗଉଳ ନେଇ ଚାଲିଗଲେ ।

ରମାନ୍ନା ଏବଂ ପାର୍ବତୀ ଆଉ ବଞ୍ଚିବେ ବୋଲି ନକ୍ଷତ୍ରାର ଆଶା ନଥିଲା । ବଞ୍ଚିଗଲେ ଭଗବାନଙ୍କ ଦୟା ବୋଲି ଭାବିବାକୁ ହେବ । ଦୁଇଜଣଙ୍କ କାଖ ଏବଂ ଜଙ୍ଘରେ ବଡ ବଡ ଗୋଟା ପଡିଥାଏ । ଜ୍ୱର ମଧ୍ୟ ବଢୁଥାଏ । ପାର୍ବତୀ ମଝିରେ ମଝିରେ ଆଖି ଖୋଲୁଥାଏ କିନ୍ତୁ ସେ କିଛି ଦେଖି ପାରୁ ଥାଏ କି ନାହିଁ ତାହା କେବଳ ସେଇ ଜାଣେ । ତାର ଦେହ ହାତ ଫୁଲି ଭୟଙ୍କର ଦିଶୁଥାଏ । ରମାନ୍ନା ପାଟିତୁଣ୍ଡ ନକରି ଚୁପ୍ ହୋଇ ପଡିଥାଏ । ଆଜି ସକାଳୁ ରମାନ୍ନା ବା ପାର୍ବତୀ କାହାରି ତୁଣ୍ଡରୁ କଥା ବାହାରୁ ନଥାଏ ।

"ମହାଦେବୟ୍ୟା ଚିପଟୁରରୁ ଆଣିଥିବା ଔଷଧ ନିଶ୍ଚୟ ଭଲ ହୋଇଥିବ । କମ୍ବନକେରେର ଡାକ୍ତର କ'ଣ କହିଥା କେଜାଣି । ମହାଦେବୟ୍ୟା କହିଲେ ଯେ ତୁମେ ବିଶ୍ୱ ପାଇଁ କିଛି ଚିନ୍ତା କର ନାହିଁ । କିନ୍ତୁ ପିଲାଟାକୁ ଥରେ ହେଲେ ତ ଦେଖି ଆସିବା କଥା । କିନ୍ତୁ ମୁଁ ଗଲେ ଏଠି ଏମାନଙ୍କ ପାଖରେ କିଏ ରହିବ ?" ଏପରି ଭାବନା ନକ୍ଷତ୍ରା ମନରେ ଆସୁଥାଏ ।

ସେତିକିବେଳକୁ ମାଷ୍ଟ୍ରଙ୍କ ସ୍ତ୍ରୀ ଆସିଲେ । ତାଙ୍କ ହାତରେ ଗୋଟିଏ ଥାଳି ଧରିଥାନ୍ତି । କହିଲେ, "ଦେଖ ନିୟମ ଅନୁସାରେ ଘରେ ରନ୍ଧା ହୋଇଥିବା ସବୁ ଜିନିଷ ଅନ୍ୟ ଘରକୁ ନେବା କଥା ନୁହେଁ । ତେଣୁ ଖାଲି ଭାତ ଡାଲି ନେଇ ଆସିଛି । ଏଇଠି ରଖି ଦେଇ ଯାଉଛି । ସିଆଡେ ମାଷ୍ଟ୍ରେ କୁଡିଆ ବାନ୍ଧିବାରେ ବ୍ୟସ୍ତ । ତୁମ ପିଲାଙ୍କର ଦେହ କିପରି ଅଛି ?"

"ଆଉ କ'ଣ ଭଲ ହେବ ? ଆଜି ସକାଳୁ ପାଟି ନ ଫିଟାଇ ପଡିଛନ୍ତି ।"

"ତୁମେ ତୁମ ହଳିଆକୁ କିମ୍ବା ଆଉ ଦୁଇଜଣ ଲୋକଙ୍କୁ ପଠାଇ ଦେଲେ ମାଷ୍ଟ୍ରେ ତୁମ ପାଇଁ

Digitized by srujanika@gmail.com

ଗୋଟିଏ କୁଡ଼ିଆ ତିଆରି କରିଦେବେ । ତୁମେ ପିଲାଙ୍କୁ ଧରି ସେଠାକୁ ଚାଲିଯିବ । ଆମେ ଜିନିଷ ପଠେଇ ଦେବୁ । ତୁମ ସ୍ୱାମୀ କୁଆଡେ ଗଲେ ?''

ମାଷ୍ଟ୍ରାଣୀ ଚରଚରରେ ଚାଲିଗଲେ । କୁଡ଼ିଆ ପାଇଁ ବାଉଁଶ, ନଡ଼ିଆ ପତ୍ର ଉପରେ ରଖିଥିଲା । ଖାଲି ନଡ଼ିଆ ବାହୁଙ୍ଗା ହେଲେ ହେଲା । କିନ୍ତୁ ଗାଁଟା ଯାକ ସମସ୍ତେ କୁଡ଼ିଆ ତିଆରି କରୁଥିବାରୁ ନଡ଼ିଆ ବାହୁଙ୍ଗାର ଅଭାବ ପଡ଼ିଲା । ଭାବିଲା ଯେ ଶଗଡ଼ଟେ ପଠେଇ କୁବୁଦରେ ହୁଳହୁଳୀରୁ ଅଣେଇବ । କିନ୍ତୁ ସାହାଯ୍ୟ କରିବାକୁ ମଧ୍ୟ କେହି ନାହିଁ । ନଷ୍ଟିକା ଉଠି ଆଉଥରେ ହେମାଦାସିରପ ପିଲାଦୁଇଟାଙ୍କୁ ପିଆଇଲା । ''କ'ଣ ଖାଇବ କି ?'' ପଚାରିବାରୁ କିଛି ଉତ୍ତର ମିଳିଲା ନାହିଁ । ଭାବିଲା ଔଷଧ ଏଇନେ ପେଟରେ ପଡ଼ିଛି, ଆଉ ଟିକିଏ ସମୟ ଯାଉ । ଏତିକିବେଳକୁ ଚେନ୍ନିଗରାୟ ଘରକୁ ଆସିଲେ । ଦେହରେ ଓଦା ଲୁଗା, ଏବଂ ମୁଣ୍ଡରେ ଚନ୍ଦନ । ଏହା ଦେଖି ଜଣାଗଲା ଯେ ସର୍ବରାକାର ପୋଖରୀରୁ କିମ୍ବା ବାଡ଼ିପଟ କୂଅ ମୂଳେ ଗାଧେଇ ସାରି ଆସିଛନ୍ତି । ମୁଣ୍ଡଚନ୍ଦନ ଟୋପାରୁ ଜଣାପଡୁଥାଏ ଯେ ସେ ପୂଜାପାଠ, ସନ୍ଧ୍ୟା, ତର୍ପଣ ମଧ୍ୟ କରି ଆସିଛନ୍ତି । ପୂଜାରେ ବସିଲେ ଓଁ ତତ୍ ସତ୍, ଇତ୍ୟାଦି କ'ଣ ସବୁ ଗଡ ଗଡ କରି ମନ୍ତ୍ର ବୋଲି ଯାଆନ୍ତି ଏବଂ ଶହେ ଥର ଗାୟତ୍ରୀ ମନ୍ତ୍ର ଜପ କରନ୍ତି । ଆଜି ଏତେ ଡେରି ହେବାର କାରଣ ବୋଧହୁଏ ତାଙ୍କର ହଜାରେ ଥର ମନ୍ତ୍ର ଜପ କରିବା ପାଇଁ ।

''ଘରେ ପିଲା ଦୁଇଟା ମଲାପରି ପଡ଼ିଛନ୍ତି । ଗାଁ ଯାକ ଲୋକ କୁଡ଼ିଆ କରି ଘର ଛାଡ଼ି ଚାଲିଯାଉଛନ୍ତି । ତୁମେ କିନ୍ତୁ ଗାଧୋଇ ପାଧୋଇ ମନ୍ତ୍ର ଜପରେ ବସି ଯାଉଥିଲ । ଟା ଛଡା ଆଜି ଲୁଗା ସଫା କରିନଥିଲେ କ'ଣ ଚଳିନଥାନ୍ତା ।''

''ମଇଳା ଲୁଗାଟା ଆଉ କେତେ ଦିନ ପିନ୍ଧିଥାନ୍ତି, ତୁ ମଧ୍ୟ ମଇଳା ଶାଢୀଟା ପିନ୍ଧି ବସିଛୁ । ତୁ କ'ଣ ବ୍ରାହ୍ମଣ କୁଳରେ ଜନ୍ମ ହୋଇ ନାହୁଁ କି ?''

ନଞ୍ଜିକା ଏହା ଭାବି ଚୁପ ରହିଲା ଯେ ଯୁକ୍ତି ତର୍କ କରି ଲାଭ ବା' କ'ଣ ? ଚେନ୍ନିଗା ରୋଷେଇ ଘରେ ମାଷ୍ଟ୍ରାଣୀ ଦେଇ ଯାଇଥିବା ଭାତ ଡାଲି ଦେଖି ପକାଇଲା । ଘୋଡଣୀ କାଢ଼ି, ଆଚମନିୟମ ଥାଳିଟିଏ ଆଣି ସେଥିରେ ଭାତ, ଡାଲି ବାଢ଼ି ପାଣି ଢାଳଟିଏ ପାଖରେ ରଖି ବ୍ରାହ୍ମଣମାନଙ୍କର ଚଳୁମନ୍ତ୍ର ପାଠକରି ଭୋଜନ କଲେ । ଚେନ୍ନିଗରାୟଙ୍କୁ କେତେ ଖାଦ୍ୟ ଦରକାର ମାଷ୍ଟ୍ରାଣୀ ବା' କାହିଁକି ଜାଣିବେ ? ତାହୁଁ ତାହୁଁ ଭାତ, ଡାଲି ଶେଷ କିନ୍ତୁ ପେଟ ଅପୁରା । ଖାଇ ସାରି ହାତ ମୁହଁ ଧୋଇ ଠିଆ ହେଲା ବେଳକୁ ମହାଦେବୟ୍ୟା ପହଞ୍ଚିଗଲେ । ପାର୍ବତୀ ଜୋରରେ ନିଶ୍ୱାସ ମାରୁଥାଏ ଏବଂ ନଞ୍ଜିକା କ'ଣ କରିବ ଜାଣି ନପାରି ଝିଅର ହାତଟା ଧରି ପାଖରେ ବସିଥାଏ । ମହାଦେବୟ୍ୟା କହିଲେ, ''ଚେନ୍ନିଗା, ତୁମେ ଯାଇ ଗାଁ ବାହାରେ ଥିବା ମନ୍ଦିରରେ ବସ, ସେଠି ବିଶ୍ୱକୁ ଶୁଆଇ ଦେଇ ଆସିଛି । ତୁମେ କେବଳ ସେଠି ଯାଇ ବସିଥାଅ । ଆଉ କିଛି କାମ ନାହିଁ ।''

''ଏକୁଟିଆ ବସି ବସି ବିରକ୍ତ ହୋଇ ଯିବି ନାହିଁ ?''

Digitized by srujanika@gmail.com

ମହାଦେବଯ୍ୱା ରାଗିଯାଇ କହିଲେ –"ତୁମେ ମଣିଷ ନା, ପଶୁ ? ତୁମକୁ ଯାହା କୁହାଯାଉଛି ତାହା କର ।" ମହାଦେବଯ୍ୱା କେବେହେଲେ କାହା ଉପରେ ରାଗିବାଟା କେହି ଦେଖିନାହାନ୍ତି । ତେଣ୍ଣିଗା ତାଙ୍କର କ୍ରୋଧ ଦେଖି ଡରିଗଲା । କହିଲା,"ହଉ ଯାଉଛି, କିନ୍ତୁ ଗୁଣ୍ଡି ଚୂନ ଟିକିଏ ଦିଅ । ଖାଇ ସାରିଲା ପରେ ଗୁଣ୍ଡିଚୂନ ଟିକିଏ ନହେଲେ ପାଟିଟା ଭଲ ଲାଗିବ ନାହିଁ ।"

"ତା' ହେଲେ ତୁମେ ଭୋଜନ ମଧ୍ୟ କରି ସାରିଲଣି । କିଏ ରାନ୍ଧିଲା ଯେ ଖାଇଲ ?"

"ଇଏ ରାନ୍ଧିଥିବ ।"

"ମାଷ୍ଟ୍ରଙ୍କ ସ୍ତ୍ରୀ ଆଣି ଦେଇଥିଲେ ।" ନଞ୍ଜମ୍ମା କହିଲା ।

"ହଉ ତୁମେ ଗଲ । ମୋ ଜିନିଷ ତକ ମଧ୍ୟ ସେଇ ମନ୍ଦିରରେ ରଖିଦେଇ ଆସିଛି । ସେଇଠି ଗୁଣ୍ଡିଚୂନ ମଧ୍ୟ ଅଛି । ଯେତେ ଇଛା ନେଇଯିବ ।"

ସର୍ବରାକାର ମହାଶୟ ନିଜର ଓଦା ଲୁଗାଟି ପୁଣି ମୁଣ୍ଡରେ ପକାଇ ଘରୁ ବାହାରିଗଲେ । ମହାଦେବଯ୍ୱା ପଚାରିଲେ,"ଆଛା ଭଉଣୀ, ତୁମର କୁଡିଆ କରିବା କଥା କ'ଣ ହେଲା ?"

"କେଉଁ କୁଡିଆ ଆଉ ସ୍ୱର୍ଗକୁ ନେବ । ପାର୍ବତୀର ବୋଧେ କ'ଣ ହୋଇଯାଉଛି ଟିକିଏ ଆସି ଦେଖିଲେ ।"

ମହାଦେବଯ୍ୱା ପାର୍ବତୀ ପାଖକୁ ଯାଇ ଦେଖିଲେ ଯେ ନିଶ୍ୱାସ ଠିକ୍ ଭାବେ ଯାଉ ନାହିଁ । ପଚାରିଲେ "ଯ୍ୱାକୁ କ'ଣ ଖାଇବାକୁ ଦେଇଥିଲ ?"

"କ'ଣ ଖାଇଲେ ସିନା ଦେବି ।"

"ପେଟ ଖାଲି ରହିବାରୁ ବୋଧହୁଏ ଏପରି ହେଉଛି । ଏବେ ଟିକିଏ ଜାଉ କରି ଖୁଆଇ ଦିଅ । ମୁଁ ନଡିଆ ତାଳ ପାଇଁ କୁରୁବରହଲ୍ଲୀକୁ ଖବର ପଠାଉଛି ।"

ମାଷ୍ଟ୍ରଙ୍କର ଗୋଟିଏ ପୁଅ ଥିଲା ଯେ ବିଶ୍ୱଠାରୁ ଦୁଇବର୍ଷ ବଡ । ମହାଦେବଯ୍ୱା ତା' ପାଖକୁ ଯାଇ ପଚାରିଲେ,"ହଇରେ ପୁଅ କୁରୁବରହଲ୍ଲୀ ଗାଁକୁ ଯାଇ ଖବର ଦେଇ ଆସି ପାରିବୁ ?" ସେ କହିଲା– "ହଁ ଦଉଡି ଦଉଡ଼ି ଯିବି ଏବଂ ଦଉଡି ଦଉଡି ଆସିବି ।"

"ତେବେ ସେ ଗାଁକୁ ଯାଇ ଗୁଣ୍ଡ ଗୌଡଙ୍କୁ କହିବୁ ଯେ ସର୍ବରାକାରଙ୍କ ତିନିପିଲାଙ୍କୁ ପ୍ଲେଗ୍ ଧରିଛି । କୁଡିଆ ତିଆରି କରି ରହିବା ପାଇଁ ନଡିଆ ତାଳ ମିଳୁନାହିଁ । ବାକି ସବୁ ଜିନିଷ ଅଛି । ଗୋଟିଏ ଶଗଡ ନଡିଆ ତାଳ ଶୀଘ୍ର ପଠାଇ ଦିଅ । ସାଙ୍ଗରେ ଦୁଇଜଣ ହଳିଆ ମଧ୍ୟ ପଠାଇ ଦିଅ । ଆଉ କହିବୁ ଯେ ନଞ୍ଜମ୍ମା ବସି କାନ୍ଦୁଛି । ଏତକ ମନେ ରଖି କହିପାରିବୁ ତ ?"

Digitized by srujanika@gmail.com

"ହଁ ନିଶ୍ଚୟ ।"

ମାଷ୍ଟ୍ରେ ପୁଅକୁ ସାଙ୍ଗେ ସାଙ୍ଗେ ପଠାଇ ଦେଲେ । ମହାଦେବଯ୍ୟା ନଞ୍ଜିମାର ଘରକୁ ଫେରିଲେ । ନଞ୍ଜିମା ଚୁଲି ଲଗାଇ ଚାଉଳ ପକାଇ ଥାଏ । ମହାଦେବଯ୍ୟାଙ୍କ ବିଶ୍ୱାସ ଥିଲା ଯେ ଗୁଣ୍ଡ ଗୌଡ ଶୀଘ୍ର ନଡିଆ ତାଳ ଓ ହଳିଆ ପଠାଇ ଦେବେ । ବାଉଁଶ ତକ ଆଟୁ ଉପରୁ ବାହାର କରି ଦେବାକୁ ହେବ । ଆଜି ସନ୍ଧ୍ୟା ସୁଦ୍ଧା କୁଡିଆ କରିଦେଲେ କାଲି ସକାଳୁ ପିଲାଙ୍କୁ ଧରି ଚାଲି ଯିବାକୁ ହେବ । ଗାଁ ନ ଛାଡିଲେ ପିଲାଙ୍କର ବେମାର ଭଲ ହେବ ନାହିଁ । ଏହା ଭାବି ନିଜେ ଆଟୁ ଉପରେ ଚଢିଲେ । ଗୋଟିଏ କୋଣରେ ବାଉଁଶ ରଖା ହୋଇଥାଏ । ଜାଉ ଧରି ନଞ୍ଜିମା ଆସିବାରୁ ଆଟୁ ଉପରୁ ମହାଦେବଯ୍ୟା କହିଲେ,"ଭଉଣୀ ପିଲାଙ୍କୁ ଚାଦର ଘୋଡାଇ ଦିଅ । ନହେଲେ ମାଟି ପଡିବ ଉପରୁ । ମୁଁ ଧୀରେ ଧୀରେ ଏ ବାଉଁଶ ତକ ତଳକୁ ପକାଇ ଦେଉଛି ।"

ବାଉଁଶତକ ତଳକୁ ପକାଇ ଆଟୁ ଉପରୁ ଓହ୍ଲାଇଲେ ଏବଂ ତରତରରେ ବାଉଁଶ ତକ ଦାଣ୍ଡ ଆଡକୁ ନେଇଗଲେ । ଜାଉ ଥଣ୍ଡା କରି ପାଣି ଏବଂ ଚାମଚ ଧରି ନଞ୍ଜିମା ପିଲାଙ୍କ ପାଖକୁ ଆସିଲା । ପାର୍ବତୀ ମୁହଁରୁ ଚାଦର କାଢି ଦେଖିଲା,ନିଶ୍ୱାସ ଧୀରେ ଧୀରେ ଯାଉଛି । ଚାମଚରେ ଜାଉ ନେଇ ତା ମୁହଁ ଭିତରେ ରଖିଲା । ତଥାପି ସେ ପିଇ ପାରୁନଥାଏ । ନଞ୍ଜିମା ପାଟିକଲା,"ଆଜ୍ଞା ବାଉଁଶ ସେଠି ଛାଡି ଶୀଘ୍ର ଏଠାକୁ ଆସନ୍ତୁ ।" ମହାଦେବଯ୍ୟା ଏକଥା ଶୁଣି ଦୌଡି ଆସିଲେ । ପାର୍ବତୀର ମୁହଁକୁ ଦେଖି ତାଙ୍କର ସନ୍ଦେହ ହେଲା । "ତୁମେ ଦେଖ ଗଣ୍ଡିର ଅବସ୍ଥା କ'ଣ । ମୁଁ ହାତ ଧୋଇ ଆସୁଛି ।" ଏହା କହି ସେ ହାତ ଧୋଇବା ପାଇଁ ଚାଲିଗଲେ । ନଞ୍ଜିମା ପାର୍ବତୀର ଜଙ୍ଘରେ ହାତ ବୁଲାଇ ଦେଖିଲା ଯେ ଗୋଟାଟା ଫାଟି ଯାଇ ପୁଜ ବାହାରି ଯାଇଛି । ନଞ୍ଜିମା କହିଲା,"ଡାହାଣ ପଟ ଗୋଟାଟା ଫାଟି ଯାଇଛି । ଆସନ୍ତୁ ଦେଖନ୍ତୁ ।" ମହାଦେବଯ୍ୟା ମଧ୍ୟ ଦେଖିଲେ । ଆର ପଟର ଗୋଟାଟା ମଧ୍ୟ ଦେଖିଲେ ଯେ ସେଟା ଫାଟିବା ଉପରେ । ସେ ବୁଝିଗଲେ । ପାର୍ବତୀର ଶାଢୀଟାକୁ ଠିକ୍ କରି ଘୋଡାଇ ଦେଲେ । ନଞ୍ଜିମା ଡରି ଯାଇ ପଚାରିଲା,"ଏମିତି କାହିଁକି ହେଲା ?"

"ଭଗବାନଙ୍କର ଯାହା ଇଚ୍ଛା ଭଉଣୀ ।"

ନଞ୍ଜିମା ମଧ୍ୟ ଘଟଣାଟା ବୁଝିଗଲା । ପାର୍ବତୀର ନିଶ୍ୱାସ ଜୋରରେ ଯିବାକୁ ଲାଗିଲା । ନଞ୍ଜିମା ଏହା ପୂର୍ବରୁ କେବେ ନିଜ ଆଖିରେ କାହାର ମରଣ ଦେଖି ନଥିଲା । ପାର୍ବତୀର ନିଶ୍ୱାସ ଆହୁରି ଜୋରରେ ଯାଉଥାଏ । ସେ କିଛି ବୁଝିପାରୁ ନଥାଏ କ'ଣ କରିବ ? ପାର୍ବତୀ ଆଖିର ତେଜ ଯେ ଧୀରେ ଧୀରେ କମି ଯାଉଛି ଏକଥା ନଞ୍ଜିମା ଲକ୍ଷ୍ୟ କରି ପାରିନଥାଏ । ମହାଦେବଯ୍ୟା ସବୁ ଜାଣୁଥାନ୍ତି । କିନ୍ତୁ, କ'ଣ କହିବେ ? ଏବଂ କିପରି ବୁଝାଇବେ ବୁଝି ପାରୁ ନଥାନ୍ତି । ତେଣୁ ଚୁପ ହୋଇ ବସିଥାନ୍ତି । ଶେଷକୁ କହିଲେ,"ତୁମ ବାପା କାଶୀର ଗଙ୍ଗାଜଳ ତୁମକୁ ଦେଇଛନ୍ତି ପରା ।"

"ହଁ, କାହିଁକି !" ନଞ୍ଜିମା ବୁଝିପାରିଲା ।"

"ଏବେ ସାହସ ହରାଇବା କଥା ନୁହେଁ । ଗଙ୍ଗାମାତାଙ୍କର ଦୟାହେଲେ ବଞ୍ଚିଯାଇ ପାରେ, ଶୀଘ୍ର ଗଙ୍ଗାଜଳ ନେଇ ଆସ ।"

Digitized by srujanika@gmail.com

ନଷ୍ଟିଲ୍ମା ଧାଇଁଯାଇ ଗଙ୍ଗାଜଳ ବାହାର କରି ଆଣିଲା । ବୋତଲର ଠିପି ଖୋଲି ମହାଦେବସ୍ୱା କହିଲେ,"ଭଉଣୀ ଝିଅର ମୁଣ୍ଡଟା ତୁମ କୋଳରେ ରଖି ବସ । ତୁମେ ଠିକ୍ ହୋଇ ବସ ମୁଁ ରଖି ଦେଉଛି ।" ସେ ପାର୍ବତୀର ମୁଣ୍ଡକୁ ଉଠାଇ ନଷ୍ଟିଲ୍ମାର କୋଳରେ ରଖିଦେଲେ । ଚାମଚ୍‌ରେ ଗଙ୍ଗାଜଳ ନେଇ ନଷ୍ଟିଲ୍ମାକୁ ଧରାଇ କହିଲେ,"ଧୀରେ ଧୀରେ ଝିଅର ମୁହଁରେ ଢାଳି ଦିଅ । ରହ, ମୁଁ ମୁହଁଟା ଖୋଲି ଦେଉଛି ।" ନଷ୍ଟିଲ୍ମାର ହାତ ଥରୁଥାଏ । ହାତରେ ଧରିଥିବା ଚାମଚ୍‌ରୁ ଗଙ୍ଗାଜଳ ପଡି ଯାଉଥାଏ । ମହାଦେବସ୍ୱା ନଷ୍ଟିଲ୍ମାର ହାତ ଧରି ଚାମଚ୍‌ର ଗଙ୍ଗାଜଳ ପାର୍ବତୀର ମୁହଁ ଖୋଲି ଢାଳି ଦେଲେ । ପାର୍ବତୀକୁ ମଧ୍ୟ ଜଣା ନଥିବ ଯେ ତା'ର ମୁଣ୍ଡ ମା'ର କୋଳରେ ଅଛି । ନିଶ୍ୱାସ ଆହୁରି କ୍ଷୀଣ ହୋଇ ଶେଷ ନିଶ୍ୱାସଟା ବାହାରି ଗଲା । ତାପରେ ନିଶ୍ୱାସ ବନ୍ଦ । ପାଟିଟା ଦର ମେଲା ହୋଇ ରହିଗଲା ।

ନଷ୍ଟିଲ୍ମା ବଡ ପାଟିରେ ଚିତ୍କାର କରି ଉଠିଲା । ତାପରେ ଝିଅର ଛାତିରେ ମୁଣ୍ଡ ରଖି ପଡିଗଲା । ମହାଦେବସ୍ୱା ଜାଣିଥିଲେ ଯେ ଏପରି ସମୟରେ ସାନ୍ତ୍ୱନା ଦେବା ବୃଥା । ଆଗକୁ କ'ଣ କ'ଣ କରିବାକୁ ହେବ ଭାବି ମହାଦେବସ୍ୱା ଶୀଘ୍ର ଉଠି ମାଷ୍ଟ୍ରଙ୍କ ଘରକୁ ଧାଇଁଗଲେ । ମାଷ୍ଟ୍ରେ ଘର ଜିନିଷ ଶଗଡରେ ଲଦୁଥିଲେ । ପାର୍ବତୀର ମୃତ୍ୟୁ ଖବର ଶୁଣି ତାଙ୍କୁ ଦୁଃଖ ଲାଗିଲା ।

"ଏବେ ସମୟ ନଷ୍ଟ କରିବା କଥା ନୁହେଁ,ସନ୍ଧ୍ୟା ହୋଇ ଆସିଲାଣି । କାଠ ଜମା କରିବା କଥା । ଚାଲ, ଚାଲ । ତାଙ୍କର କୁଟୁମ୍ବର ଲୋକଙ୍କୁ ଜଣାଇଦିଅ ।"

ମାଷ୍ଟ୍ରେ ଏବଂ ତାଙ୍କ ସ୍ତ୍ରୀ ମଧ୍ୟ ଦଉଡି ଆସିଲେ । ନଷ୍ଟିଲ୍ମା ଝିଅର ଛାତି ଉପରେ ମୁଣ୍ଡ ରଖି କାନ୍ଦୁଥାଏ । ମହାଦେବସ୍ୱା ଆସି କହିଲେ –"ଭଉଣୀ ଏଥର ଉଠ ମୁର୍ଦ୍ଦାର ଉପରେ ବସି କାନ୍ଦିଲେ ଲାଭ କ'ଣ ? ଯାକୁ ଛାଡି ତେଣେ ରମନ୍ନାକୁ ଦେଖ । ତାକୁ ସକାଳୁ କିଛି ଖୁଆଇ ନାହିଁ । ଗଲା, ତା'କୁ କ'ଣ ଦେବ ।"

"ମୋ ପାର୍ବତୀ . . . . . . ।"

"ପାର୍ବତୀ ଭଗବାନଙ୍କ ଘରକୁ ଗଲା । ଏବେ ରମନ୍ନା କଥା ବୁଝ ।" ଏହା କହି ପାର୍ବତୀର ମୁଣ୍ଡ ନଷ୍ଟିଲ୍ମା କୋଳରୁ ଉଠାଇ ତଳେ ରଖିଲେ । ମାଷ୍ଟ୍ରେ ବିଚାର କଲେ ଯେ ଆଉ ଡେରି କରିବା କଥା ନୁହେଁ । ତେଣୁ ସଙ୍ଗେ ସଙ୍ଗେ ଶବର ହାତ ଗୋଡ ମୋଡି ସିଧା କରି ଦେଲେ । ନଷ୍ଟିଲ୍ମା ଚିତ୍କାର କରି ଉଠିଲା । ତା' ମୁହଁରୁ କଥା ବାହାରୁନଥାଏ । ତା'ପରେ ଉଠି ରୋଷେଇ ଘରକୁ ଗଲା ଏବଂ ଜାଉ ଟିକିଏ ଗରମ କରି ଥାଳିଆରେ ଆଣିଲା । ରମନ୍ନାର ମୁଣ୍ଡ ଟେକି ନିଜ କୋଳରେ ରଖିଲା । ପୁଅର ଅବସ୍ଥା କ'ଣ ଏହା ବୁଝିବା ଅବସ୍ଥାରେ ନଷ୍ଟିଲ୍ମା ନଥିଲା, କିନ୍ତୁ ଜାଉ ପାଣି ଟିକକ ପାଟି ଭିତରକୁ ଯିବାରୁ ତାର ଟିକିଏ ଦମ୍ ଆସିଲା । ତା'ପରେ ହେମାଦି ସିରପ ପିଆଇ ଚାଦର ଘୋଡାଇ ଶୁଆଇ ଦେଲା । କାଖ, ଜଙ୍ଘମୂଳେ ହାତ ମାରି ଦେଖିଲା ଯେ ଗୋଟା ଗୁଡାକ ଫାଟି ନାହିଁ । ସେ ଗୁଡାକ ଫାଟିଗଲେ କ'ଣ ହେବ ? କ'ଣ ପିଲାଟା ମରିଯିବ ? ନ ଫାଟିଲା ଯାଏଁ କ'ଣ ରୋଗୀ ବଞ୍ଚିଥିବ ? ଏସବୁ କଥା ନଷ୍ଟିଲ୍ମା

Digitized by srujanika@gmail.com

ବୁଝିପାରୁନଥିଲା । ଏ ବିଷୟରେ ଗାଁରେ କାହାକୁ ଜଣା ନଥିଲା । କିନ୍ତୁ ପାର୍ବତୀର ଗୋଟାତକ ଘାଟିଯିବା ପରେ ତା'ର ପ୍ରାଣ ଗଲା । ରମନ୍ନାର ଏପର୍ଯ୍ୟନ୍ତ ସେଗୁଡ଼ାକ ଘାଟିନାହିଁ । ତାର ନିଶ୍ୱାସ ପ୍ରଶ୍ୱାସ ମଧ୍ୟ ଠିକ୍ ଚାଲିଛି । ଏହା ଦେଖି ନଷ୍ଟିନ୍ନାର ମନରେ ଟିକିଏ ସାହସ ଆସିଲା । ବର୍ତ୍ତମାନ ପ୍ରାଣବାୟୁ ଉଡିଯାଇଥିବା ଝିଅର ମୃତ ଶରୀରକୁ ଛାଡି, ରୋଗୀ ପୁଅର ମୁଣ୍ଡଟା ନିଜ କୋଳରେ ରଖି ମୂକ ଭଳି ବସି ରହିଲା ।

ମହାଦେବୟ୍ୟା ଆଗୁ ଉପରୁ ଯେଉଁ କାଠ, ବାଉଁଶ କୁଡ଼ିଆ ତିଆରି କରିବା ପାଇଁ ବାହାର କରିଥିଲେ ସେଥିରେ ଶବ ସତ୍କାର କରାଯାଇ ପାରେ । ମାଷ୍ଟ୍ରେ ଯାଇ ଦୁଇ ପୁରୋହିତଙ୍କୁ ଖବର ଦେଲେ । ଗାଁର ଅନ୍ୟ ତିନିଜଣ ବ୍ରାହ୍ମଣଙ୍କୁ ମଧ୍ୟ ଖବର ମିଳିଗଲା । ସମସ୍ତେ ଜିନିଷ ପତ୍ର ଧରି କୁଡ଼ିଆକୁ ଯିବାରେ ବ୍ୟସ୍ତ । କିନ୍ତୁ ଶବ ସତ୍କାର ନ କରିଦେଲେ ରାତି ହୋଇଯିବ ଏବଂ ପୁଣି ସକାଳ ପର୍ଯ୍ୟନ୍ତ ଅପେକ୍ଷା କରିବାକୁ ପଡ଼ିବ । ସ୍ୱଜାତି, କୁଟୁମ୍ବ ଲୋକେ ମଧ୍ୟ ଆସିଲେ । ଖାଲି ଚେନ୍ନିଗରାୟୁକୁ ଅପେକ୍ଷା । ବିଶ୍ୱକୁ ଏକୁଟିଆ ମନ୍ଦିରରେ ଛାଡି ଦେଇ କ'ଣ ଆସି ହେବ ? ତାକୁ କାହା ଜିମା ଦେବେ ? ମହାଦେବୟ୍ୟା ଭାବିଲେ ସେ ନିଜେ ନଷ୍ଟିନ୍ନା ପାଖରେ ରହିବା କଥା । ଆଉ ଯିଏ ମିଳିଲା ତାକୁ ଅନୁରୋଧ କରିବେ ପିଲାଟିକୁ ଜଗିବାକୁ । ମହାଦେବୟ୍ୟା ମନ୍ଦିର ଆଡେ ଗଲେ କିନ୍ତୁ କେହି ଜଣେ ହେଲେ ଲୋକର ଦେଖା ନାହିଁ । ଗାଁ ବାହାରେ ନିଜ ଦୋକାନ ଦୁଆରେ ନରସୀ ବସିଥିଲା । ସେ ମହାଦେବୟୁଙ୍କୁ ପଚାରିଲା– "ସତରେ କ'ଣ ପାର୍ବତୀ ମରିଗଲା ?"

ମହାଦେବୟ୍ୟା ତାକୁ ସାହାଯ୍ୟ ମାଗିଲେ । ସବୁକଥା କହିସାରି କହିଲେ– "ତୁ ତ ଏ ଘର ଛାଡି ଯାଉନାହୁଁ । ଦୋକାନ ବନ୍ଦ କରି ମୋ ସାଙ୍ଗରେ ଆସ । ବିଶ୍ୱକୁ ତୋ ପାଖରେ ଛାଡି ଦେବି । ମୁଁ ଫେରିଲା ପର୍ଯ୍ୟନ୍ତ ପିଲାଟିକୁ ଟିକିଏ ରଖିଥିବୁ ।"

ନରସୀ ତାଲା ବନ୍ଦ କରି ମହାଦେବୟ୍ୟାଙ୍କ ସାଙ୍ଗରେ ଗଲା । ଚେନ୍ନିଗରାୟୁ ସେତେବେଳକୁ ଷଷ୍ଠ ଥର ପାଇଁ ମହାଦେବୟ୍ୟାଙ୍କ ବଟୁଆରୁ ଗୁଣ୍ଡିଚୂନ ବାହାର କରି ପାଟିରେ ପକାଇଥାଏ । ମହାଦେବୟ୍ୟା ମନ୍ଦିର ଭିତରୁ ଦୀପଟିଏ ଆଣି ନରସୀକୁ ଦେଇ କହିଲେ,"ଅନ୍ଧାର ହୋଇଗଲେ ଏଇଟା ଜଳାଇ ଦେବୁ । ଏଇ ଔଷଧ ଶିଶିରୁ ତିନିଘଣ୍ଟାରେ ଥରେ ଲେଖାଏଁ ଏତିକି ଲେଖାଏଁ ଔଷଧ ବିଶ୍ୱକୁ ପିଆଇ ଦେବୁ । ତାକୁ ଭୋକ ଲାଗିଲେ ଖୁଦ ଚାଉଳ ଅଛି, ଜାଉ କରି ଖୁଆଇ ଦେବୁ ।"

"ହଉ, ମୁଁ ସବୁ କରିଦେବି ଆପଣ ଯାଆନ୍ତୁ ।"

ବିଶ୍ୱ ନିଶ୍ଚିନ୍ତ ହୋଇ ଶୋଇଥାଏ । ମହାଦେବୟ୍ୟା ଚେନ୍ନିଗାକୁ କହିଲେ – "ପାର୍ବତୀର କାଳ ହୋଇଗଲା । ତୁମେ ଚାଲ ତାର ଶବ ସତ୍କାର କରାହେବ ।"

"କାହିଁକି କାଳ ହୋଇଗଲା ?"

Digitized by srujanika@gmail.com

"ହେଉ ତାଇ ସେଠି ପଚାରିବ ।" କହି ମହାଦେବଯ୍ୟା ତାର ହାତ ଧରି ଟାଣି ନେଇଗଲେ । ସେମାନେ ଘରକୁ ପହଞ୍ଚିଲା ବେଳକୁ କୋକେଇ ବନ୍ଧା ସରିଥିଲା । ଅନ୍ନାକୋଇସ୍ ସବୁ ବିଧି ଅନୁସାରେ କରାଉଥାନ୍ତି । ଆଯ୍ୟାଶାସ୍ତ୍ରୀଙ୍କୁ ମୁର୍ଦ୍ଧାର ଦେଖିଲେ ଭାରି ଡରମାଡେ । ସେ ଦାଣ୍ଡ ପଟେ ଠିଆ ହୋଇଥାନ୍ତି । ନଞ୍ଜମ୍ମା ପୁଅର ମୁଣ୍ଡଟା କୋଳରେ ଧରି ତାକୁ ଏପରି ତରାଟି ଚାହିଁ ରହିଥାଏ, ଯତେ ଯେପରି ତାର ଝିଅ ମରିଯିବା ଏବଂ ତାର ଶବ ସଂସ୍କାର ପାଇଁ ହେଉଥିବା ପ୍ରସ୍ତୁତି ସଙ୍ଗରେ କିଛି ସଂପର୍କ ନାହିଁ । ଅନ୍ନାକୋଇସ୍ କହିଲେ –"ପ୍ରକୃତରେ ପତି ହିଁ ପତ୍ନୀର ଉତ୍ତରାଧିକାରୀ । ତାକୁ ଖବର ନଦେଇ ଏ ଶବ ସଂସ୍କାର କରିବା ଠିକ୍ ହେବ ?"

"କିନ୍ତୁ ଖବର ପଠାଇବା କିପରି ? ତାଛଡା ଏ ମୁର୍ଦ୍ଧାର ପ୍ଲେଗ୍ ରୋଗୀର । ଶବକୁ ପକାଇ ରଖିଲେ ଖରାପ ହେବ । ମୁଁ ସେ କଥା ବୁଝିବି । ମୁଁ ତ ଏ ବିଭାଘର ମଧ୍ୟସ୍ଥ ହୋଇଥିଲି । ମୁଁ ତାର ସ୍ୱାମୀ ପାଖକୁ ଚିଠି ଲେଖିଦେବି । ଆଉ ଡେରି କରନାହିଁ । ମାଷ୍ଟ୍ରେ ବୁଝାଇଲେ ।"

ମାଷ୍ଟରଙ୍କର ସ୍ତ୍ରୀ ପାର୍ବତୀର କପାଳରେ ହଳଦୀ କୁଙ୍କୁମ ଲଗାଇ ଦେଲେ । ମହାଦେବଯ୍ୟା ଯେଉଁଟଙ୍କା ଦେଇଥିଲେ ସେଥିରୁ ବଳିଥିବା ପାଞ୍ଚଟଙ୍କା ନଞ୍ଜମ୍ମା ମାଷ୍ଟରଙ୍କୁ ଦେଇଦେଲା । କୋକେଇ ଉଠାଇ ନେଲାବେଳେ ମାଷ୍ଟରଙ୍କ ସ୍ତ୍ରୀ କାନ୍ଦିପକାଇଲେ, କିନ୍ତୁ ନଞ୍ଜମ୍ମା କାନ୍ଦୁନଥାଏ । "ଝିଅଟା କାହିଁକି ମରିଗଲା?" କହି ଚେନ୍ନିଗରାୟ୍ ମଧ୍ୟ ଆଖିରୁ ଲୁହ ପୋଛୁଥାଏ ।

ଶବଧରି ମଶାଣି ପାଖରେ ପହଞ୍ଚିଲା ବେଳକୁ ଲୋକେ ଶୁଖିଲା କାଠ ଯୋଗାଡ଼ କରି ରଖିଥିଲେ । ପାର୍ବତୀ ସଧବା ହୋଇଥିବାରୁ ନୀତି ନିୟମ ଅନୁସାରେ ଶବ ସଂସ୍କାର ହେବା କଥା । ଅନ୍ନାକୋଇସ୍‌ଙ୍କର ଅବଶ୍ୟ ଏସବୁ ଶାସ୍ତ୍ରଜ୍ଞାନ ବହୁତ ଥିଲା । ଆଯ୍ୟାଶାସ୍ତ୍ରୀ ମଶାଣି ପର୍ଯ୍ୟନ୍ତ ନଆସି ପଛରେ ରହିଗଲେ । ଶବଦାହ ପରେ ମଧ୍ୟ ମଶାଣି ଆଡେ ଆସିବାକୁ ତାଙ୍କୁ ଭାରି ଭୟ । ଶବ ବାହକମାନେ ଶ୍ମଶାନ ପାଖ ପୋଖରୀରେ ଗାଧୋଇ ସାରି ଫେରିଲା ପର୍ଯ୍ୟନ୍ତ ଆଯ୍ୟାଶାସ୍ତ୍ରୀ ଅଧବାଟରେ ଅପେକ୍ଷା କରିଥାନ୍ତି । ତା'ପରେ ସମସ୍ତେ ଗାଁକୁ ଫେରିଲା ବାଟରେ ଆଯ୍ୟାଶାସ୍ତ୍ରୀ ପଚାରିଲେ –

"ମୁର୍ଦ୍ଧାର କପାଳଟା ଶୀଘ୍ର ପୋଡିଲା ନା ନାହିଁ ?"

"ହଁ ।"

"ଚେନ୍ନିଗା ଶବ ବାହକମାନଙ୍କୁ କେତେ ଲେଖାଏଁ ଦକ୍ଷିଣା ଦେଲା ?"

"ଆଠଅଣା ଲେଖାଏଁ ।"

"ଦେଖ, ମୁଁ ମଧ୍ୟ ତୁମମାନଙ୍କ ସାଙ୍ଗରେ ଯାଇଥାନ୍ତି ଯେ, କିନ୍ତୁ ସେଠାକୁ ଯାଇଥିଲେ ଥଣ୍ଡା ପାଣିରେ ଗାଧୋଇବାକୁ ପଡିଥାନ୍ତା । ମୋ ଦେହରେ ଥଣ୍ଡାପାଣି ମୋଟେ ସାଏ ନାହିଁ । ତେଣୁ ଅଧବାଟରେ ରହିଗଲି । ମୋ ଭାଗ ଦକ୍ଷିଣାଟା ଦେଇ ଦିଅ ।"

Digitized by srujanika@gmail.com

ଏହାଶୁଣି ମାଷ୍ଟ୍ରେ ରାଗରେ ଜର୍ମିଗଲେ । ଅନ୍ନାଜୋଇସ ତୁରନ୍ତ କହିଲେ –"ହଁ ହଁ ତାକୁ ଦେଇଦିଅ ।" ଚେନ୍ନିଗରାୟ୍ର ନିଜ ଅଣ୍ଟାରେ ଖୋସା ହୋଇଥିବା ପଇସାରୁ ଆଠଅଣା କାଢ଼ି ବୃଦ୍ଧ ପୁରୋହିତଙ୍କୁ ଦେବାରୁ ସେ ଭାରି ଖୁସି ହେଲେ । ସେ ପଚାରିଲେ – "ଶୁଦ୍ଧି କ୍ରିୟା ତ ଏଇ ଗାଁରେ ହେବ ?"

"କ୍ରିୟା କର୍ମତ ସ୍ୱାମୀ କରିବା କଥା । ଏଠି କିପରି ହେବ ?" ମାଷ୍ଟ୍ରେ ଉତ୍ତର ଦେବାରୁ ପୁରୋହିତେ କହିଲେ –"ହଁ, ହଁ, ମୁଁ ଭୁଲିଯାଇଥିଲି ।"

3

ପାର୍ବତୀର ଶବ ନେଇଯିବା ପରେ ଘରେ ନଞ୍ଜିମ୍ମା ପାଖରେ ମହାଦେବୟ୍ୟା ରହିଲେ । ମାଷ୍ଟ୍ରଙ୍କ ସ୍ତ୍ରୀ ତାଙ୍କ ଘରକୁ ଚାଲି ଯାଇଥିଲେ । ତା'ପରେ ମାଷ୍ଟ୍ରଙ୍କ ପୁଅ କୁରୁବରହଲ୍ଲୀରୁ ଆସି କହିଲା,"ସେମାନେ କହିଲେ କାଲି ସକାଳ ପାହିଲା ବେଳକୁ ଦୁଇ ଶଗଡ ନଡିଆ ବାହୁଙ୍ଗା ପଠାଇ ଦେବେ । ଠାକୁରାଣୀଙ୍କ ମନ୍ଦିର ପାଖରେ ସେମାନେ ଥିବେ । ତାଙ୍କୁ ଯାଇ କହିବାକୁ ହେବ କେଉଁଠି ଗାତ ଖୋଳି କୁଡିଆ କରିବାକୁ ହେବ ।" ଏହା କହି ସାରି ସେ ମଧ୍ୟ ଚାଲିଗଲା ।

ରମନ୍ନାର ମଧ୍ୟ ନିଶ୍ୱାସ ବହୁତ କ୍ଷୀଣ ହୋଇ ଆସୁଥାଏ । ଜ୍ୱର ଓହ୍ଲାଉଥାଏ । ପ୍ଲେଗ ରୋଗରେ ଜ୍ୱର କମିବା ବଢ଼ିବା ଆଶ୍ଚର୍ଯ୍ୟ କଥା ନୁହେଁ । କିନ୍ତୁ ତା' ଦେହଟା ପୁରା ଥଣ୍ଡା ଲାଗୁଥାଏ । ଜ୍ୱର ପୁରା ଛାଡିଯିବାଟା ରୋଗ ଭଲ ହୋଇଯିବାର ମଧ୍ୟ ଲକ୍ଷଣ ହୋଇପାରେ । ମହାଦେବୟ୍ୟା ପଚାରିଲେ, "ଭଉଣୀ ଆଉ ଔଷଧ ଖୁଆଇଥିଲ କି ?" ନଞ୍ଜିମ୍ମା ଚାମଚରେ ଧରି ପିଆଇବାକୁ ଚେଷ୍ଟା କରିବାରୁ ପାଣି ଗଲା ନାହିଁ । କହିଲା –"ବୋଧହୁଏ ଔଷଧ ପିଇବାକୁ ମନାକରୁଛି । ଆପଣ ଟିକିଏ ଦେଖିଲେ, ଜ୍ୱରଟା ଛାଡିଗଲା ପରି ଲାଗୁଛି ।"

ମହାଦେବୟ୍ୟା ରମନ୍ନାର କପାଳରେ ହାତମାରି ଦେଖିଲେ ଏବଂ କହିଲେ – "ଭଉଣୀ ଘରେ ଦୁଇଟା ଛୁଆ ବେମାର ପଡିଲେ । ଜଣଙ୍କର ପ୍ରାଣଗଲା ତେଣୁ ମୁଁ ଭାବୁଛି ରମନ୍ନା ବଞ୍ଚିଯିବ । ଜ୍ୱର ତ ଛାଡିଗଲାଣି ।" ଏକଥା ଶୁଣି ନଞ୍ଜିମ୍ମାକୁ ଏତେ ସନ୍ତୋଷ ଲାଗିଲା ସତେ ଯେପରି ପାର୍ବତୀ ବଞ୍ଚିଉଠି ଘରକୁ ଆସିଛି । ସେ କହିଲା – "ଯଦି ମୋ ପୁଅ ବଞ୍ଚିଯାଏ ତେବେ କାଳୀ ଠାକୁରାଣୀଙ୍କୁ ନୂଆ ଶାଢ଼ୀ ଦେଇ ଯାତ୍ରା କରାଇବି ।"

Digitized by srujanika@gmail.com

ରୋଗୀର ଶରୀର ଆହୁରି ଅଧିକ ଥଣ୍ଡା ହୋଇ ଯାଉଥାଏ । ପାଞ୍ଚମିନିଟ ପର୍ଯ୍ୟନ୍ତ ମହାଦେବୟା ଭାବିଲେ ଏହା ଭଲ ଲକ୍ଷଣ । କିନ୍ତୁ ପରେ ସନ୍ଦେହ କରି ପାଦରେ ହାତମାରି ଦେଖନ୍ତି ତ ବିଲକୁଲ ଥଣ୍ଡା । ସେ ପଚାରିଲେ –"ଟିକିଏ ନିଆଁ କରି ଆଣିବକି ?"

"ହଁ ରୋଷେଇ ଘରେ ଚୁଲିରେ ନିଆଁ ଅଛି ।"

ମହଦେବୟା ଧାଇଁ ଯାଇ ଚୁଲାରେ ଗରମ ପାଉଁଶ ଆଣି ରାମନ୍ନାର ଦୁଇ ଚଳିପାରେ ଘସିଲେ । କିନ୍ତୁ ପାଦ ସେମିତି ଥଣ୍ଡା ରହିଥାଏ । କାଖମୂଳ ଦେଖିଲେ ଗୋଟାଟା ସେମିତି ଫୁଲି ରହିଛି । ଜଙ୍ଘରେ ମଧ୍ୟ ସେପରି ଫୁଲା ରହିଥାଏ । ପୁଣି ଡାହାଣ ହାତର ନାଡି ଟା' ଦେଖିଲେ ଯେ ଅତି କ୍ଷୀଣ ହୋଇ ଚାଲୁଛି । ଯାକୁ ମଧ୍ୟ ଶୀଘ୍ର ଗଙ୍ଗାଜଳ ପିଆଇବା କଥା । କିନ୍ତୁ ତା' ମା'କୁ ଏକଥା କହିବାକୁ ସାହସ ହେଉନଥାଏ । ଗଙ୍ଗାଜଳ ପିଇଲେ ବା ନ ପିଇଲେ କ'ଣ ହୋଇଯିବ । ଏସବୁ ଆମର ମନର ଭ୍ରମ । କିନ୍ତୁ ପୁଣି ଭାବିଲେ ପିଲାଟା ମରିଗଲା ପରେ ଯଦି ନଞ୍ଜମ୍ମା ମନକୁ ଘାରେ ଯେ ମୋ ପୁଅଟା ତୁଣ୍ଡରେ ଗଙ୍ଗାଜଳ ଟୋପାଏ ଦେଇ ପାରିଲି ନାହିଁ । ତେବେ କଣ କରିବ ? ପାଖରେ ଥୁଆ ହୋଇଥିବା ଗଙ୍ଗାଜଳ ଶିଶିଟା ଉଠାଇ ଚାମଚ୍‌ରେ ଟିକିଏ ନେଇ ଧରାଇ କହିଲେ ,"ଭଉଣୀ,ପିଲାର ମୁହଁରେ ଢାଳି ଦିଅ ।" ନଞ୍ଜମ୍ମା ବୁଝିଗଲା ।

"ମୋ ରମନ୍ନା ମଧ୍ୟ କ'ଣ ମତେ ଛାଡି ଚାଲିଯିବ ?" ମହାଦେବୟା କହିଲେ,"ଭଉଣୀ ଏବେ କାନ୍ଦିଲେ କ'ଣ ହେବ ? ମୁଁ ଯାହା କହୁଛି ସେପରି କର ।" ନିଜେ ନଞ୍ଜମ୍ମା ହାତରୁ ଚାମଚ୍ ନେଇ ରମନ୍ନାର ମୁହଁରେ ଢାଳି ଦେଲେ । ବାଁ ହାତ ନାକ ପାଖରେ ଏବଂ ଡାହାଣ ହାତରେ ନାଡି ଧରି ମହାଦେବୟା ବସିଗଲେ । ନଞ୍ଜମ୍ମା ମୂକ ପାଷାଣ ପରି ପୁଅର ମୁହଁକୁ ଚାହିଁ ରହିଥାଏ । ତଥାପି ତାର ପ୍ରାଣ କେତେବେଳେ ଚାଲିଗଲା ଜାଣିପାରିଲା ନାହିଁ । ମହାଦେବୟାଙ୍କ ଆଙ୍ଗୁଳି ସ୍ପର୍ଶରୁ ଖସିଯାଇ ରମନ୍ନା ହାତର ନାଡିର ଗତି କେଉଁ ଗଭୀର ପାତାଳ ମଧ୍ୟରେ ଲୁପ୍ତ ହୋଇଗଲା ।

ମହାଦେବୟା ବର୍ତ୍ତମାନ ନଞ୍ଜମ୍ମାକୁ କହିଦେବା କଥା ଏବଂ ଶବର ହାତ, ଗୋଡ ସିଧା କରି ରଖି ଦେବା କଥା । ବେଶୀ ଡେରି ହେଲେ ସିଧା କରି ହେବ ନାହିଁ । କିନ୍ତୁ କହିବେ କିପରି ? ସେ ଯେ ବୁଝିପାରୁ ନଥିଲା,ତାହା ନୁହେଁ ? ପାର୍ବତୀ ମଲାବେଳେ ସେ ଯେପରି କାନ୍ଦୁଥିଲା ଏବେ ମଧ୍ୟ ସେପରି କାନ୍ଦୁଛି । କିନ୍ତୁ ରମନ୍ନାର ଛାତିରେ ମୁଣ୍ଡ ଲଗାଇ ନଥିଲା କିମ୍ବା ତାର ହାତଟା ଧରିନଥିଲା । ଖାଲି ପୁଅର ମୁଣ୍ଡଟା ନିଜ କୋଳରେ ରଖିଥାଏ ।

ତେଣେ ପାର୍ବତୀର ଶବ ସତ୍କାର କରି ସମସ୍ତେ ଫେରିଲେଣି । ତାଙ୍କୁ ସଙ୍ଗେ ସଙ୍ଗେ ଖବର ଦେଇ ଦେବା କଥା । ତା'ପରେ କାଠ ସଂଗ୍ରହ କରି ପଠାଇବାକୁ ପଡିବ । ରାତି ହୋଇ ସାରିଲାଣି । ଏବେ ଶବ ସତ୍କାର କରିବାକୁ ରାଜି ହେବେ କି ନାହିଁ କେଜାଣି । ସେ ଯାହାହେଉ,ଶବର ହାତ, ଗୋଡ ସିଧା କରିଦେବାକୁ ପଡିବ । ସେ କହିଲେ,"ଭଉଣୀ ଆତ୍ମା ଶରୀର ତ୍ୟାଗ କଲାପରେ ଏଇ ମାଟି ପିଣ୍ଡ

Digitized by srujanika@gmail.com

ଖୋଳର କିଛି ମୂଲ୍ୟ ନାହିଁ । ମୁଁ ହାତ ଗୋଡ ସିଧା କରି ଦେଉଛି ।''

''ଆଉ କ'ଣ ବା' ହେବ? ଆପଣ ଯାହା କରିବା କଥା କରି ଯାଆନ୍ତୁ ।''ଏହା କହି ନଞ୍ଜମ୍ମା ପୁଅ ମୁଣ୍ଡ ନିଜ କୋଳରୁ ଉଠାଇ ତଳେ ରଖି ଆଡେଇ ହୋଇଗଲା । ମହାଦେବୟ୍ୟା ହାତଗୋଡ ସଳଖ କରି ଦେଇ ଚାଦର ଘୋଡାଇ ଦେଲେ । ଏତିକିବେଳକୁ ମାଷ୍ଟ୍ରେ ଏବଂ ଚେନ୍ନିଗରାୟ୍ ଘରକୁ ଆସିଲେ । ମହାଦେବୟ୍ୟା କହିଲେ,''ମାଷ୍ଟ୍ରେ ଆଜ୍ଞା, ରମନ୍ନା ମଧ୍ୟ ଚାଲିଗଲା ।''

''ହେ ଭଗବାନ ।''

''ଭଗବାନ ଆଉ କ'ଣ କରି ପାରିବେ ? ପୁରୋହିତଙ୍କୁ ଡାକି ଖବର ଦିଅନ୍ତୁ ।''

ମାଷ୍ଟ୍ରେ ଅନ୍ନାଜୋଇସଙ୍କ ଆଡେ ଧାଇଁଲେ । ଚେନ୍ନିଗରାୟ୍‌କୁ କିଛି ବୁଝିବାଟ ଦିଶୁନଥାଏ । ତା' ଆଖିରେ ଆଖିଏ ଲୁହ । ରମନ୍ନାର ଶବ ପାଖରେ ବସି ଚୁପଚାପ୍ କାନ୍ଦିବାରେ ଲାଗିଥାଏ ।

ମାଷ୍ଟ୍ରେ ଅନ୍ନାଜୋଇସଙ୍କୁ ସାଙ୍ଗରେ ଧରି ଫେରିଲେ । ମହାଦେବୟ୍ୟା ତାଙ୍କୁ ପଚାରିଲେ,''ଆଜ୍ଞା ରାତି ରାତି ଦାହ କରି ଦେବା ନା ସକାଳକୁ ରଖିବା ?''

''ରାତିରେ କିପରି ହେବ ?''

ମାଷ୍ଟ୍ରେ କହିଲେ,''ମହାମାରୀ ପଡିଲା ବେଳେ ଆଉଶାସ୍ତ୍ର ଦେଖିଲେ ହେବ ? ଏଇ ରାତିରେ ହିଁ ଶବ ସଂସ୍କାର କରିଦେବା ।'' ପୁରୋହିତ ମାନିଗଲେ ଏବଂ ଶବ ବାହକମାନଙ୍କୁ ଡାକିବାକୁ ଗଲେ । ଘର ଆଗରେ ବାଉଁଶ କାଠ ଗଦା ହୋଇଥାଏ । ମାଷ୍ଟ୍ରେ କୋକେଇ ବାନ୍ଧିବାରେ ଲାଗିଗଲେ । ମହାଦେବୟ୍ୟା କାଠ ବ୍ୟବସ୍ଥା କରିବାକୁ ଚାଲିଗଲେ । କିନ୍ତୁ ଚେନ୍ନିଗରାୟ୍ ସେମିତି ବସି ରହିଥାଏ ।

ରମନ୍ନାର ବ୍ରତଘର ହୋଇ ସାରିଥିଲା । ତେଣୁ ଶାସ୍ତ୍ର ଅନୁସାରେ ଦାହ କ୍ରିୟା ହେବ । ଶବ ବାହକ ଆସିଗଲେ । ମହାଦେବୟ୍ୟା ଫେରିଆସି କହିଲେ,''ସୁରଗୌଡର କୁଡିଆରେ ନଡିଆ ବାହୁଙ୍ଗା ବହୁତ ଅଛି । ସେ କହିଲା,ଯେତେ ଦରକାର ନେଇ ଯାଆନ୍ତୁ । ସେ ଏବଂ ତା' ପୁଅ ଶଗଡରେ ନଡିଆ ବାହୁଙ୍ଗା ଲଦୁଛନ୍ତି । ତେଣୁ ଆପଣମାନେ ଆଉ ଡେରି କରନ୍ତୁ ନାହିଁ ।''

ଶବକୁ ଦାଣ୍ଡକୁ ଆଣି କୋକେଇରେ ବନ୍ଧାଗଲା । ଶବମୁଣ୍ଡରେ ଚାଉଳ ଦାନା ପକାଗଲା । ଖାଲି ଉଠେଇ ନେଇ ଚାଲିବା କଥା ରହିଲା, ମହାଦେବୟ୍ୟା ଦେଖିଲେ ନଞ୍ଜମ୍ମା କୁଆଡେ ଦିଶୁନଥାଏ । ପଚାରିଲେ,''ନଞ୍ଜମ୍ମା କାହିଁ ?'' କେହି କହିପାରିଲେ ନାହିଁ । ଏ ସବୁରେ ବ୍ୟସ୍ତ ରହି କେହି ତା'ପ୍ରତି ନଜର ଦେଇ ନଥିଲେ ।

ପୁରୋହିତେ କହିଲେ,''ଆରେ ଶୀଘ୍ର ଯାଇ କୂଅ ପୋଖରୀ ଦେଖ କାଳେ ଡେଇଁ ପଡିଥିବ ।''ମାଷ୍ଟ୍ରେ ମଧ୍ୟ ସେୟା ଅନୁମାନ କଲେ । ମହାଦେବୟ୍ୟା କହିଲେ,''ଆପଣ ଏପଟେ ଦେଖନ୍ତୁ ମୁଁ ଗାଁ ବାହାର

Digitized by srujanika@gmail.com

ମନ୍ଦିର୍ ଦେଖି ଆସୁଛି । ସେଠି ସାନ ପୁଅ ବିଶ୍ୱ ଅଛି ବୋଲି ଯାଇଥିବ ।'' ଏହା କହି ଧାଇଁ ଧାଇଁ ମନ୍ଦିରରେ ପହଞ୍ଚିଲେ । ଦୁଆର ଖୋଲି ଦେଖନ୍ତି ତ ତାଙ୍କ ଅନୁମାନ ଠିକ୍ । ବିଶ୍ୱ ଶୋଇଥିଲା । ତା'ମୁଣ୍ଡ ନରସୀ କୋଳରେ । ନଈଁଜା ଚାରିହାତ ଦୂରରେ ବସି ପୁଅର ମୁହଁକୁ ବଲବଲ କରି ଚାହିଁଥାଏ । ତାର ଆଖିରୁ ଲୁହ ବୋହୁଥାଏ ।

•

ନରସୀ କହିଲା –''ନଈଁଜା ଏକୁଟିଆ ଅନ୍ଧାରରେ ଆସିଛି । ମୁଁ ପିଲାକୁ ଖୁଦ ଜାଉ ପିଆଉଥିଲି । ସେ ଆସି ପିଲାଟାର ମୁଣ୍ଡ ନିଜ କୋଳରେ ରଖି ବସିଲା । ମତେ ଡାକି କହିଲା –'ନରସୀ ଇଏ ମୋ ପୁଅ ନୁହେଁ । ମୋ ପୁଅ ବୋଲି କହିଲେ ନିଷ୍ଠୁର ଭଗବାନ ନେଇଯିବେ । ମୁଁ ଯାକୁ ତତେ ଦେଇ ଦେଉଛି । ତୋର ତ ପୁଅ ଝିଅ ନାହିଁ । ତୁ ତାକୁ ପାଖରେ ରଖ । ଏଠି ପାଖରେ ଆସି ବସ । ନେ ଯାକୁ କୋଳରେ ଶୁଆଇ ଦେ । ତା' ସାଙ୍ଗରେ ମୋର ଆଉ କିଛି ସମ୍ପର୍କ ନାହିଁ । ମୁଁ କହୁଛି ମୁଁ ତାର ମା' ନୁହେଁ କି ସେ ମୋର ପୁଅ ନୁହେଁ ।' ଏହା କହି ମୋ କୋଳରେ ପିଲାଟାକୁ ଦେଇ ନିଜେ ଯାଇ ଦୂରରେ ବସିଛି ।''

''ତୁ ସେଯା କର ନରସୀ । ରାମନାଥ ମଧ୍ୟ ମରିଗଲା । ଆମେ ତାର ଶେଷ କୃତ୍ୟ କରିବାକୁ ଯାଉଛୁ । ତୁ ଏ ଦୁହିଁଙ୍କ ଉପରେ ନଜର ରଖିଥା । ଆଉ କାହାକୁ ପଠାଇ ଦେବି କି ?''

''ନାଇଁ ମୁଁ ତ ଅଛି ଆଉ ଡର କ'ଣ ? ଆଉ କାହାକୁ ପଠାଇବା ଦରକାର ନାହିଁ ।''

ବିଶ୍ୱର କପାଳରେ ହାତମାରି ଦେଖିଲେ । ଏବଂ କହିଲେ, ''ଜଙ୍ଘମୂଳ ପାଚା ହେଉଛି ବୋଲି କହୁଥିଲା କି ?''

''ଜ୍ୱର ତ ଅଛି, କିନ୍ତୁ ମୁଁ ଟିକିଏ ଆଗରୁ ଜଙ୍ଘମୂଳରେ ହାତ ମାରି ପଚାରିଥିଲି ଯେ ପାଚା ନାହିଁ ବୋଲି କହୁଥିଲା ।''

''ହଉ, ତୁ ତିନିଘଣ୍ଟାରେ ଥରେ ଲେଖାଏଁ ଔଷଧ ଖୁଆଉଥିବୁ । ନଈଁଜା ତୁମେ ଡର ନାହିଁ ଜଙ୍ଘରେ ଗୋଟା ପଡିନାହିଁ । ଔଷଧ କାମ କରୁଛି ।'' ଏଭଳି ସାନ୍ତ୍ୱନା ଦେଇ ମହାଦେବୟା ବାହାରି ପଡିଲେ ।

ଏଣେ ମାଷ୍ଟ୍ରେ ଚାରିଆଡେ ଖୋଜି ଖୋଜି ଘରେ ପହଞ୍ଚିଲେ । ପୁରୋହିତେ ବସି ଘରର ଦଶା ସମ୍ବନ୍ଧରେ ଆଲୋଚନା କରୁଥାନ୍ତି । ମହାଦେବୟା ସେଠାରେ ପହଞ୍ଚି କହିଲେ, ''ନଈଁଜା ଗାଁ ବାହାର ମନ୍ଦିରରେ ପୁଅ ବିଶ୍ୱ ପାଖରେ ଅଛି । ଆପଣ ଶୀଘ୍ର କାମ ବଢାନ୍ତୁ ।'' ଚାରିଜଣ କୋକେଇ ଉଠାଇ ଚାଲିଲେ । ସାଙ୍ଗରେ ଚେନ୍ନିଗରାୟୁ ମଧ୍ୟ ଗଲେ । ମହାଦେବୟା ବାକି ବଳିଥିବା ହୋମାଓ୍ୱିସିରପ ଔଷଧ ବୋତଲ ଗୋଟିଏ ଖୋଯ ଏବଂ କମ୍ବଳ ଧରି ଘର କବାଟରେ ତାଲା ଲଗାଇ ଗାଁ ବାହାର ମନ୍ଦିର ଆଡେ ଚାଲିଲେ । ସେ ପର୍ଯ୍ୟନ୍ତ ମଶାଣିରେ ଶବ ପହଞ୍ଚି ସାରିବଣି । ପାର୍ବତୀର ଶବ ଦାହର ନିଆଁ ଏବେ ମଧ୍ୟ ଦୂରରୁ ଦେଖା ଯାଉଛି । ଅଧବାଟରେ ବୁଢା ପୁରୋହିତେ ଅଯ୍ୟାଶାସ୍ତ୍ରୀ ଠିଆ ହୋଇଥିବାର ଦେଖିଲେ ।

Digitized by srujanika@gmail.com

ପଚାରିଲେ, "କ'ଣ ଅଣା ଏଠି ଏକୁଟିଆ ଠିଆ ହୋଇଛନ୍ତି ଅନ୍ଧାରଟାରେ ।"

"ଆଜ୍ଞେ ସେମାନେ ଶବଦାହ ପାଇଁ ଯାଇଛନ୍ତି ଯେ ମୁଁ ଏଠି ଅପେକ୍ଷା କରିଛି ।"

ମହାଦେବସ୍ୱାଁ ବୁଝିପାରିଲେ ନାହିଁ ଯେ ତାଙ୍କୁ ଏ ମହାଶୟ କାହିଁକି ଅପେକ୍ଷା କରି ଠିଆ ହୋଇଛନ୍ତି । ପଚାରିବାକୁ ଇଚ୍ଛା ହେଲା ନାହିଁ । ସେ ଶୀଘ୍ର ଶୀଘ୍ର ମନ୍ଦିର ଆଡେ ଚାଲିଗଲେ ।

4

ତା'ପର ଦିନ ବଡି ସକାଳୁ କୁରୁବରହଳ୍ଳୀରୁ ଦୁଇଟା ଶଗଡରେ ନଡିଆ ବାହୁଙ୍ଗୀ ଲଦି ଦୁଇଜଣ ହଳିଆ ଆସି ପହଞ୍ଚିଲେ । ହଳିଆ ଦୁଇଜଣ ଗାଁ ଭିତରକୁ ନ ଆସିବାରୁ ଗାଁ ଚଉକିଆ ଚେନ୍ନିଗରାୟୁଙ୍କ ଦୁଆରେ ଗଦା ହୋଇଥିବା ବାଉଁଶ ତକ ଶଗଡରେ ଲଦି ଠାକୁରାଣୀ ମନ୍ଦିରର ପଛଆଡେ ଗୋଟିଏ ଗଛମୂଳେ ପହଞ୍ଚାଇ ଦେଲା । ଦୁଇ ପ୍ରହର ବେଳକୁ ସେଠି ଗୋଟିଏ କୁଡିଆ ତିଆରି ହୋଇଗଲା । ମାଷ୍ଟ୍ରେ ଗାଁ ବାହାର ମନ୍ଦିରକୁ ଯାଇ ନଞ୍ଜମ୍ମା ଘରର ଚାବି ମହାଦେବସ୍ୱାଙ୍କ ଠାରୁ ନେଇ ଆସିଲେ ଏବଂ ଗାଁ ଘର ଖୋଲି କଂସା ବାସନ, ମାଣ୍ଡିଆ, ଚାଉଳ, ଲୁଗାପଟା ଯାହା ମିଳିଲା ଶଗଡରେ ଲଦି କୁଡିଆରେ ନେଇ ରଖିଦେଲେ । ସେଦିନ ସନ୍ଧ୍ୟା ପର୍ଯ୍ୟନ୍ତ ଗାଁ ସାରା ସବୁଘର ଖାଲି ହୋଇଗଲା ।

ଏଣେ ବିଶ୍ୱର ଜ୍ୱର କମିନଥାଏ । କିନ୍ତୁ ସେପର୍ଯ୍ୟନ୍ତ କାଖରେ କିମ୍ବା ଜଙ୍ଘରେ ଗୋଟା ପଡିନଥାଏ । ପାର୍ବତୀ ଏବଂ ରାମନ୍ନାର ଜ୍ୱର ହେବାର ଦିନକ ଭିତରେ ଗୋଟା ପଡି ଯାଇଥିଲା । ବିଶ୍ୱକୁ ଜ୍ୱର ହେବାର ଆଜିକୁ ଦୁଇଦିନ ହୋଇ ସାରିଲାଣି । ବୋଧହୁଏ ହେମାଦ୍ରିସିରପ୍ କାମ୍ଭ କଲା । ଆଉ ଡରିବାର କାରଣ ନଥିଲା । କିନ୍ତୁ ଏ ଘରୁ ଦୁଇଟା ମୁଣ୍ଡ ଖାଇ ସାରିବା ପରେ ମହାମାରୀ ଯେ ପିଛା ଛାଡିବ ଏକଥା କିଏ ବା' କହିବ ? ମହାଦେବସ୍ୱା ନଞ୍ଜମ୍ମାକୁ ବୁଝାଉଥିଲେ, "ଏଇଟା ଭଗବାନଙ୍କ ମନ୍ଦିର । ଏଠାକୁ ମହାମାରୀ ଆସିବ କିପରି ? ସେଥିଲାଗି ଗୋଟା ପଡିନାହିଁ ।"

ନଞ୍ଜମ୍ମା କିଛି କହୁନଥାଏ । ପଥର ମୂର୍ତ୍ତିଭଳି ବସି ସାରା ରାତି ବିଶ୍ୱର ମୁହଁକୁ ଚାହିଁ ରହିଥାଏ । ସକାଳ ହେଲାବେଳକୁ ମହାଦେବସ୍ୱା ହାଲିଆ ହୋଇ ବସିଥାନ୍ତି । ଗତ ଦୁଇଦିନ ଧରି କିଛି ଖାଇ ନଥିଲେ କିମ୍ବା ଶୋଇବା ପାଇଁ ସମୟ ମିଳି ନଥିଲା । ତାଙ୍କ ପ୍ରକୃତ ବୟସ ଜାଣାନଥିଲେ ମଧ୍ୟ ତାଙ୍କୁ ଯେ ପଞ୍ଚସ୍ତରୀ ବର୍ଷ ପାର ହୋଇଯିବଣି ଏଥିରେ ସନ୍ଦେହ ନଥିଲା । ଦୁଇଦିନ ଧରି ଧାଁ ଦଉଡରେ ଏତେ ହାଲିଆ ହୋଇଯାଇ ଥିଲେ ଯେ ଖମ୍ବକୁ ଆଉଜି ବସି ଥିବା ଜାଗାରୁ ନିଦରେ ଟଳି ପଡିଲେ, ତଥାପି ନିଦ ଭାଙ୍ଗିଲା ନାହିଁ । ନରସୀ କହିଲା –"ଭଉଣୀ ମୋର ତ ପିଲାଛୁଆ ନାହିଁ । ସେଥିପାଇଁ ମୋର ମନ କେତେ ଦୁଃଖ । ତୁମର ପିଲାଛୁଆ ଥାଇ ମଧ୍ୟ ତୁମେ କଷ୍ଟ ପାଉଛ ।"

Digitized by srujanika@gmail.com

ନଷ୍ଟିଳା ଚୁପଚାପ ବସିଥାଏ । ତା'ପରେ ମାଷ୍ଟ୍ରେ ଆସି ନଷ୍ଟିଳାର ଗାଁ ଘରର ଚାବି ନେଇଗଲେ । ନଷ୍ଟିଳା ବହୁତ ସମୟ ଧରି ସେମିତି ବସି ରହିଥାଏ । ନରସୀ ତା' ସାଙ୍ଗରେ କ'ଣ କଥାବାର୍ତ୍ତା ହେବ ବୁଝି ପାରୁନଥାଏ । କିନ୍ତୁ ନିୟମ ଅନୁସାରେ ବିଶ୍ୱକୁ ଔଷଧ ଖୁଆଇ ଚାଲିଥାଏ । ବିଶ୍ୱର ମୁଣ୍ଡ ନରସୀର ଜଙ୍ଘ ଉପରେ ଥାଏ । କିଛି ସମୟ ପରେ ମାଷ୍ଟ୍ରାଣୀ ଆସିଲେ । ଦୁଃଖରେ ତାଙ୍କ ଆଖିରୁ ଲୁହ ବୋହୁଥାଏ । କିନ୍ତୁ ନଷ୍ଟିଳା ପଥର ପ୍ରତିମା ପରି ସ୍ଥିର । "ଚାଲ ଉଠ ଆମ କୁଡ଼ିଆକୁ ଯିବା । ସେଠି ଲୁଗା ବଦଳାଇ ପକାଇବ । କାଲିଠାରୁ କିଛି ଖାଇ ନାହଁ । ଉପମା ଟିକିଏ ଖାଇ ଦେବ ।"

ନଷ୍ଟିଳା ମୁଣ୍ଡ ହଲାଇ ନାହିଁ କଲା । ମାଷ୍ଟ୍ରଙ୍କ ସ୍ତ୍ରୀ ଫେରିଯାଇ ଗୋଟିଏ ଥାଳିରେ କିଛି ଉପମା ନେଇ ଆସିଲେ । ନଷ୍ଟିଳା ମୁହଁ ହାତ ଧୋଇବାକୁ ମଧ୍ୟ ଉଠିଲା ନାହିଁ । ନରସୀ ପଚାରିଲା ,"ସର୍ବରାକାରେ କୁଆଡେ ଗଲେ ?"

"କାଲି ରାତିଠାରୁ ଆମ କୁଡ଼ିଆ ବାହାରେ ମଶିଣା ପକାଇ ଶୋଇ ଯାଇଥିଲେ । ମୁଁ ତାଙ୍କୁ ଉପମା ଦେଇ ଆସିଛି ।"

"ବିଶ୍ୱ ଏଠି ଅଛି ସେ କ'ଣ ଜାଣି ନାହାନ୍ତି ?"

"ହଁ ଜାଣିଛନ୍ତି ବର୍ତ୍ତମାନ ଆସିବେ ।"

"ଭଉଣୀ ମୁଁ କହୁଛି ବୋଲି ଖରାପ ଭାବିବ ନାହିଁ । କିନ୍ତୁ ଭାଏ ଚେନ୍ନିଗରାୟ ମଧ୍ୟ କେମିତିକା ଲୋକ । ଏଣେ ଆଉ ଗୋଟିଏ ପିଲା ବେମାର ପଡ଼ିଛି, ତାକୁ ଦେଖିବାକୁ ନ ଆସି ପ୍ରଥମେ ଉପମା ଖାଇଗଲେ ।"

ନଷ୍ଟିଳା ହାତ ହଲାଇ ନରସୀକୁ ଆଉ କିଛି ନକହିବାକୁ ଇସାରା ଦେଲା । ମାଷ୍ଟ୍ରଙ୍କ ସ୍ତ୍ରୀ ନଷ୍ଟିଳାକୁ କହିଲେ,"ତୁମ ଗାଁ ଠାକୁରାଣୀ ସବୁ ରକ୍ଷା କରିବା ଦେବୀ ନୁହଁନ୍ତି । କେବଳ ସର୍ବନାଶ କରିବେ । କିନ୍ତୁ ଶୃଙ୍ଗେରୀ ଶାରଦା ଠାକୁରାଣୀ ସବୁ ବିପତ୍ତିରୁ ରକ୍ଷା କରନ୍ତି । ତୁମେ ମାନସିକ କର ଯେ ବିଶ୍ୱ ଭଲ ହୋଇଗଲେ ଏଥର ନବରାତ୍ରୀ ପର୍ବରେ ତାଙ୍କ ମନ୍ଦିରରେ କୁଙ୍କୁମା ଅର୍ଚ୍ଚନ କରାଇବ । ସେ ନିଶ୍ଚୟ ତାକ ଶୁଣିବେ । ତୁମେ ବର୍ତ୍ତମାନ ଶୁଦ୍ଧ ହୋଇ ନାହଁ, ତେଣୁ ତୁମ ନାଁରେ ମୁଁ ଭଲ ଲୁଗା ପିନ୍ଧି ଚାରଣାର ଚାଉଳ କାନିରେ ଗଣ୍ଠି କରି ମାନସିକ କରି ଦେବି ।" ନଷ୍ଟିଳା ନିଜର ଅସ୍ୱୀକାର ଜଣାଇ ମୁଣ୍ଡ ହଲାଇଲା ।

"ତୁମେ ଏପରି କ'ଣ କହୁଛ ?"

"ଭଗବାନଙ୍କର କିଛି ଶକ୍ତି ନାହିଁ । ଭଗବାନଙ୍କର କଳ୍ପନା ମିଥ୍ୟା । ପିଲାର ଆୟୁଷ ଥିଲେ ସେ ବଞ୍ଚିଯିବ ।"

ନରସୀ କହିଲା –"ନଷ୍ଟିଳା ଏପରି କଥା ତୁଣ୍ଡରେ ଧରନ୍ତି ନାହିଁ । ତୁମେ ଦୋଷ ମାଗି ଠାକୁରାଣୀଙ୍କ ନାଁରେ ମାନସିକ କର ।"

Digitized by srujanika@gmail.com

"କିଛି ଦୋଷ ନାହିଁ । ମୁଁ କୌଣସି ଦେବତା ପାଖରେ ମାନସିକ କରିବି ନାହିଁ ।"ରୋକ୍‌ଠୋକ୍ ଉତ୍ତର ଦେଲା ନନ୍ଦିନୀ । କିନ୍ତୁ ସେମାନେ ବାରମ୍ବାର କହିବାରୁ ଶେଷରେ କହିଲା –"ତୁମର ଯାହା ଇଚ୍ଛା ହେଉଛି କର ।" ମାଷ୍ଟ୍ରଙ୍କ ସ୍ତ୍ରୀ ନିଜ କୁଡିଆକୁ ଚାଲିଗଲେ । ତାପରେ ସେଠାକୁ ଗାଁର ଅନେକ ଲୋକ ନନ୍ଦିନୀକୁ ସାନ୍ତ୍ୱନା ଦେବାକୁ ଆସିଲେ । ସମସ୍ତଙ୍କ ମନରେ ଗଭୀର ଦୁଃଖ । ପାର୍ବତୀର ରୂପ, ଗୁଣ ଏବଂ ରମାନ୍ନାର ବୁଦ୍ଧିକୁ ସମସ୍ତେ ପ୍ରଶଂସା କରୁଥାନ୍ତି । ସେମାନେ କହୁଥାନ୍ତି ରମାନ୍ନା ନିଶ୍ଚୟ ଦିନେ ନା ଦିନେ ଇଲାକାଦାର ହୋଇ ପାରିଥାନ୍ତା । କିନ୍ତୁ ଇଏ ତ ସଂସାରର ନିୟମ, ଯେ ବେଶୀ ଗୁଣୀ ତାଙ୍କୁ ଭଗବାନ ନିଜ ପାଖକୁ ଶୀଘ୍ର ଡାକି ନିଅନ୍ତି, ପାର୍ବତୀକୁ ନୂଆଶାଢ଼ୀ ପିନ୍ଧାଇ ଠାକୁରାଣୀ ମନ୍ଦିରକୁ ନେବାଟା ମଧ୍ୟ ଉଚିତ ହେଲା ନାହିଁ । ଦେବୀଙ୍କ ନଜର ପ୍ରଥମେ ତା'ରି ଉପରେ ପଡିଲା । ଏହିପରି କେତେ ଲୋକ କେତେ କଥା କହିଲେ । ଗାଁରୁ ଏଥର ପ୍ଲେଗ୍‌ରେ ଆଉ ଛଅମୁଣ୍ଡ ଗଲେଣି । ସମସ୍ତେ ଚାଲିଗଲେ, କେବଳ ରେବଣସେଠୀର ସ୍ତ୍ରୀ ବସି ରହିଥାଏ । ସେଠିଆଣୀ ଓ ନନ୍ଦିନୀ ପରସ୍ପର ସୁଖ ଦୁଃଖର ସାଥୀ । ତାର ମଧ୍ୟ ଲୁଆସୁଣୀ ଝିଅଟେ ମରିଯାଇଛି । ନିଜ ଝିଅର ମୃତ୍ୟୁ କଥାମନେ ପଡିବାରୁ ସେଠିଆଣୀକୁ ନରସୀର କାର୍ଯ୍ୟକଳାପ ମଧ୍ୟ ମନେପଡିଲା । ସେଇ ନରସୀ ନନ୍ଦିନୀର ପୁଅକୁ କୋଳରେ ଧରି ଏଠି ବସିଛି । ନନ୍ଦିନୀ ଆତେଇ ହୋଇ ଏପରି ବସିଛି ସତେ ଯେପରି ବିଶ୍ୱ ତାର ପୁଅ ନୁହେଁ । ନରସୀର ନାଁ ଶୁଣିଲେ ସେଠିଆଣୀର ଦେହ ଜଳିଯାଏ । ଆଉ କେଉଁ ସମୟ ହୋଇଥିଲେ ଝାଡୁରେ ତାର ପୂଜା କରିଥାନ୍ତା । କିନ୍ତୁ ମନକୁ ଦବାଇ ବସି ରହିଲା । ନନ୍ଦିନୀକୁ ଏକୁଟିଆ ଛାଡିଯିବାକୁ ଇଚ୍ଛା ହେଉନଥାଏ । କିନ୍ତୁ କ'ଣ କହି ବୁଝେଇବ ଜାଣି ପାରୁନଥାଏ ।

ଏତିକିବେଳକୁ ବିଶ୍ୱ ଜୋର ଜୋରରେ ନିଶ୍ୱାସ ନେଲା । ବୋଧହୁଏ ଜ୍ୱର ବଢ଼ିଲା । ନରସୀ କହିଲା, "ନନ୍ଦିନୀ ପିଲାଟାର ଜ୍ୱର ଏତେ ଯେ ମୋ ଦେହ ମଧ୍ୟ ସମ୍ଭାଳି ହେଉନି । ମତେ ବହୁତ ଡର ଲାଗୁଛି । ତୁମେ ଟିକିଏ ଦେଖ ।" ନନ୍ଦିନୀ କହିଲା, "ନା, ନା, ମୁଁ ଛୁଇଁବିନି । ସେଠିଆଣୀ, ତୁମେ ଟିକିଏ ଦେଖ ।"

ସେଠିଆଣୀ ଚାଦର ଉଠାଇ ପିଲା ଦେହରେ ହାତମାରି ଦେଖେତ ଝାଳରେ ବୁଡିଯାଇଛି । ହାତ ମଧ୍ୟ ଓଦା ହୋଇଗଲା । ଏହାର ଅର୍ଥ କ'ଣ_କେହି ବୁଝିପାରୁ ନଥାନ୍ତି । ନରସୀ ମହାଦେବସ୍ୱାମୀଙ୍କୁ ଡାକ ପକାଇଲା । ତାଙ୍କୁ ଭାରି ଜୋରରେ ନିଦ ଲାଗିଯାଇଥାଏ । ସେଠିଆଣୀ ତାଙ୍କ ହାତ ଧରି ହଲାଇବାରୁ ସେ ଉଠି ବସିଲେ ଏବଂ କିଛି ସମୟ ଆଖି ମଳି ସାରିବା ପରେ କଥାଟା ବୁଝିଲେ । ବିଶ୍ୱର ଛାତିରେ ହାତ ମାରି କହିଲେ –"ଝାଳ ଦେଉଛି । ଜ୍ୱର ଓହ୍ଲାଇବା ପୂର୍ବରୁ ଝାଳ ଦିଏ । ଯ୍ୱର ତ ହାତରେ କି ଜଙ୍ଘରେ ଗୋଟା ପଡିନାହିଁ । ଯାହାହେଉ ପିଲାଟା ବଞ୍ଚିଗଲା ।"

ନନ୍ଦିନୀ ସେହିପରି ମୂକ ଭଳି ପୁଅକୁ ଚାହିଁ ରହିଥାଏ । ସେଠିଆଣୀ କହିଲା –"ଶେଷକୁ ଭଗବାନଙ୍କ ଦୟା ହେଲା ।" ପିଲାଟା ଦେହରୁ ବହୁତ ଝାଳ ବାହାରୁ ଥାଏ । କିଛି ସମୟପରେ ଜ୍ୱର କମିଗଲା । ତା'ପରେ ରେବଣ ସେଠୀ ସେଠାକୁ ଆସିଲା । ଆଜି ପର୍ଯ୍ୟନ୍ତ ନନ୍ଦିନୀ ସାଙ୍ଗରେ କେବେ ସେ

Digitized by srujanika@gmail.com

ପ୍ରତ୍ୟକ୍ଷ କଥାବାର୍ତ୍ତା କରି ନଥିଲା । ବିଶ୍ୱର ଜ୍ୱର କମିଯିବା ଶୁଣି କହିଲା,"ଯାହାହେଉ ପିଲାଟାର ପ୍ରାଣ ରହିଗଲା । ନଷ୍ଟିଆ ତୁମେ ତ ଆମ ଗାଁ ସାରା ଲୋକଙ୍କୁ ବୁଝାଇବା ଲୋକ, ତୁମକୁ ବୁଝାଇବା ପାଇଁ ଆମର ବା' ଶକ୍ତି କାହିଁ ?'' ଏହା କହି ଅନେକ ସାନ୍ତ୍ୱନା ଦେଲା । ନିଜ ସ୍ତ୍ରୀକୁ ଚାହିଁ କହିଲା,"ଏମାନେ ବୋଧହୁଏ ଦୁଇଦିନ ହେଲା କିଛି ଖାଇ ନାହାନ୍ତି । ତୁ ଯାଇ ମାଣ୍ଡିଆ ଚକୁଳି କରି ଆଣିଦେ ।'' ଏହା କହି ସ୍ତ୍ରୀକୁ ଧରି ଫେରିଗଲା । ତା'ପରେ ମହାଦେବସ୍ୱା ଲାଗି ଲାଗି ବିଶ୍ୱକୁ ଉଠାଇଲେ, ଏବଂ ମୁହଁଟା ପୋଛି ଦେଲେ, ମାଷ୍ଟ୍ରଙ୍କ ସ୍ତ୍ରୀ ଆଣି ଦେଇଥିବା ଉପମା ସେ ପର୍ଯ୍ୟନ୍ତ ଥୁଆ ହୋଇଥାଏ ।

"ତୁମେ ଖାଇ ଦିଅ ଭଉଣୀ । ତୁମ ଦେହରେ ଶକ୍ତି ନହେଲେ ଏ ପିଲାଟାର କଥା ଆଗକୁ କିଏ ବୁଝିବ ?'' ମହାଦେବସ୍ୱା ଯେତେ କହିଲେ ମଧ୍ୟ ନଷ୍ଟିଆ ଶୁଣିଲା ନାହିଁ । ଶେଷକୁ ମହାଦେବସ୍ୱା ଧମକା ଧମକି କରିବାରୁ ଏବଂ ନରସୀ ବାଧ୍ୟ କରିବାରୁ ନଷ୍ଟିଆ ଚାମଚେ ଉପମା ପାଟିରେ ପକାଇଲା । କିନ୍ତୁ, ଗିଳି ନପାରି ମୁହଁରୁ କାଢି ଦେଲା । ଏବଂ ଉପମାଥାଳିଟା 'କୁ ଦୂରକୁ ଘୁଞ୍ଚାଇ ଦେଲା । ମହାଦେବସ୍ୱା ନିଜ ଝୁଲାମୁଣିରୁ ଗୋଟିଏ ସାନ ଡବା ବାହାର କରି ସେ ଭିତରୁ ଟିକିଏ କଳା ଗୁଣ୍ଡ ନେଇ ନଷ୍ଟିଆକୁ ଖାଇବାକୁ ଦେଲେ । ସେ କହିଲା —"ଏହା କ'ଣ ?''

"ଠାକୁରଙ୍କ ପ୍ରସାଦ । କାଶୀରୁ ଆଣିଥିଲି । ତୁମେ ଖାଇଦିଅ । ତୁମର ସବୁ କଷ୍ଟ ଦୂର ହୋଇଯିବ । ପୁଅର ବି ଅବସ୍ଥା ସୁଧୁରି ଆସିଲାଣି । ଜର ତ କମିଯାଉଛି ।'' ନଷ୍ଟିଆ ପ୍ରତିବାଦ ନ କରାଇ ସେତକ ଖାଇ ଦେଲା । ତାହା ପାଟିକୁ ମିଠା, ପିତା ଲାଗିଲା । ତା'ପରେ ଆଗ ଭଳି ଖମ୍ବକୁ ଆଉଜି ବସି ପୁଅକୁ ଚାହିଁ ରହିଲା । ଚେନ୍ନିଗରାୟ ମଧ୍ୟ ଆସି ପହଞ୍ଚିଲେ । "ଏ ପର୍ଯ୍ୟନ୍ତ କେଉଁଠି ଥିଲେ ଆପଣ ?'' ନରସୀ ପଚାରିଲା ।

"ଆସିବି ବୋଲି ବାହାରିଲିଣି ଯେ ଲୋକେ ଆସି ପାଖରେ ବସି ବସି ଡେରି କରାଇଦେଲେ ।''

"ନହେଲେ, ତୁମ ଭଳି ବାପକୁ କିଏ ନଜାଣେ ?'' ନରସୀ ଏଭଳି କହିବାରୁ ଚେନ୍ନିଗା ତା'ଆଡକୁ ରାଗରେ ଚାହିଁଲା । ମହାଦେବସ୍ୱା କହିଲେ,"ନରସୀ ତୁ କିଛି କହନା ।''

ପ୍ରାୟ ଦଶ ମିନିଟ୍ ପରେ ନଷ୍ଟିଆର ଆଖିପତା ବନ୍ଦ ହୋଇ ଆସିଲା । ପ୍ରଥମେ ଖମ୍ବକୁ ଆଉଜି ବସିଥିଲା । ତାପରେ ଆଣ୍ଠୁ ଉପରେ ମୁଣ୍ଡ ରଖି ଶୋଇଗଲା । ପାଖରେ ଚାଦର ଖଣ୍ଡିଏ ପକାଇ ମହାଦେବସ୍ୱା ତାକୁ ଶୁଆଇ ଦେଲେ ଏବଂ ଦେହରେ ଆଉ ଖଣ୍ଡେ ଚାଦର ଘୋଡାଇ ଦେଲେ । ସାଙ୍ଗେ ସାଙ୍ଗେ ଗଭୀର ନିଦ୍ରାରେ ସେ ଶୋଇଗଲା । ନରସୀ ପଚାରିଲା —"ଆପଣ ତାକୁ କ'ଣ ଖାଇବାକୁ ଦେଲେ କି ?''

"ନିଦ ଔଷଧ । କାଶୀରୁ ଆସିଲାବେଳେ ଆଣିଥିଲି ।''

ଏହାଶୁଣି ଚେନ୍ନିଗରାୟ ଆଗ୍ରହରେ କହିଲେ,"ମତେ ମଧ୍ୟ ଟିକିଏ ଦିଅନ୍ତୁ ।'' "ମରଦ ଲୋକଙ୍କ

Digitized by srujanika@gmail.com

ପାଇଁ ସେ ଔଷଧ ନୁହେଁ । କାଲି ସକାଳ ପର୍ଯ୍ୟନ୍ତ ତା'ର ନିଦ ଭାଙ୍ଗିବ ନାହିଁ । ତୁମେ ତାଙ୍କ ପାଖରେ ବସି ରହ । ମାଷ୍ଟ୍ରଙ୍କ ସ୍ତ୍ରୀକୁ ମୁଁ ଯାଇ କହିଦେଉଛି ସେ ତୁମ ପାଇଁ ଖାଇବା ଜିନିଷ ପଠାଇ ଦେବେ ।'' ମହାଦେବୟ୍ୟା ନରସୀକୁ କହିଲେ,''ତୁ ଆଉ ଡର ନାହିଁ । ବିଶ୍ୱକୁ ତଳେ ଶୁଆଇ ଦେ । ଘରକୁ ଯାଇ ଖାଇ ଶୋଇପଡ । ରାତିଯାକ ଶୋଇ ନାହୁଁ ।''

''ପିଲାଟା ଭଲ ହେଲେ ଯାଇ କେଉଁକଥା । ଆଉ ଦୁଇ ତିନିଦିନ କହିଲେ ମଧ୍ୟ ମୁଁ ବସି ରହିବି ।''

''ନାଁ, ନାଁ, ତୁ ଯାଇ ବିଶ୍ରାମ ନେ ।''

ନରସୀ ବିଶ୍ୱକୁ କମ୍ବଳ ଉପରେ ଶୁଆଇ ନିଜ ଘରକୁ ଗଲା । ନଞ୍ଜିମ୍ମା ଗଭୀର ନିଦରେ ଶୋଇଥାଏ । ଦିପ୍ରହର ବେଳକୁ କୁରୁବରହଲ୍ଲୀର ଗୁଣ୍ଡ ଗୌଡ, ଆଉ ଦଶ, ବାର ଜଣ ଲୋକ ଆସିଲେ, ମହାଦେବୟ୍ୟାଙ୍କ ଇସାରା ଦେଖି ସେଠାରେ କଥାବାର୍ତ୍ତା ନକରି ସେମାନେ ଚେନ୍ନିଗରାୟୁକୁ ବାହାରକୁ ଡାକି ସେଠାରେ ସାନ୍ତ୍ୱନା ଦେଲେ । ''ଆମେ ବହୁତ ଚେଷ୍ଟା କଲୁ କିନ୍ତୁ ସେ ଅଭାଗା ଝିଅଟାକୁ ବଞ୍ଚାଇ ପାରିଲୁ ନାହିଁ ।'' ଏହା କହୁ କହୁ ଚେନ୍ନିଗରାୟୁ କାନ୍ଦି ପକାଇଲା ।

ଏଇ ଘଟଣା ସବୁ ଲେଖି ମାଷ୍ଟ୍ରେ ସୂର୍ଯ୍ୟନାରାୟଣ ପାଖକୁ ଗୋଟିଏ ଚିଠି ପଠାଇଦେଲେ ।

## 5

'ପାର୍ବତୀ ଓ ରମନ୍ନା ମରିବାର ଛଅଦିନ ହେଲାଣି । ନଞ୍ଜିମ୍ମା ନିଜ କୁଡିଆକୁ ଗଲା । କୁଡିଆରେ କେବଳ ସେ ଓ ଚେନ୍ନିଗରାୟୁ ଥାଆନ୍ତି । ଏଣେ ବିଶ୍ୱର ଜ୍ୱର ପୁରା ଛାଡି ଯାଇଥାଏ । କିନ୍ତୁ ମହାଦେବୟ୍ୟା ତାକୁ ନିଜ ପାଖରେ ରଖିଥାନ୍ତି । ନଞ୍ଜିମ୍ମାକୁ ମଧ୍ୟ ବିଶ୍ୱକୁ ପାଖରେ ରଖିବାକୁ ଡର ଲାଗୁଥାଏ । ଦି' ଓଳି ମନ୍ଦିରକୁ ଯାଇ ପୁଅକୁ ଦେଖି ଆସେ । ନିଜେ ଅଣଶୁଦ୍ଧିଆ ହୋଇଥିବାରୁ ମନ୍ଦିର ଭିତରକୁ ଯାଏ ନାହିଁ । ବିଶ୍ୱକୁ ବେଶୀ ଚଲାବୁଲା କରିବାକୁ ମହାଦେବୟ୍ୟା ଦେଉନଥିଲେ । ମନ୍ଦିର ବାହାରୁ ପୁଅକୁ ଦେଖି ମହାଦେବୟ୍ୟାଙ୍କ ସାଙ୍ଗରେ ମଧ୍ୟ କଥାବାର୍ତ୍ତା ନହୋଇ ନଞ୍ଜିମ୍ମା ଫେରିଆସେ । ଜ୍ୱର ଭଲ ହୋଇ ସାରିଥିଲେ ସୁଦ୍ଧା ମହାଦେବୟ୍ୟା ବିଶ୍ୱକୁ ହେମାଦିସିରପ ନିୟମିତ ପିଆଉଥାଆନ୍ତି ।

ନଞ୍ଜିମ୍ମା ମନରେ ବାରମ୍ବାର ପ୍ରଶ୍ନ ଉଠେ, ଜନ୍ମକଲା ମା' ସାମନାରେ କାହିଁକି ଭଗବାନ ପିଲାମାନଙ୍କୁ ମାରି ଦିଅନ୍ତି । କିଛି ଉତ୍ତର ନପାଇ ମହାଦେବୟ୍ୟାଙ୍କୁ ପଚାରିଲା । ସେ କହିଲେ –''ଇଏ ସବୁ ଭଗବାନଙ୍କର ଲୀଳା । କୃଷ୍ଣ ଯେତେବେଳେ ଛୋଟଥିଲେ,କେତେ ପ୍ରକାରେ ମା' ଯଶୋଦାକୁ ପରୀକ୍ଷା କରୁଥିଲେ । ସେ ଭୋକରେ ରହିଲେ ମା' ମଧ୍ୟ ଉପବାସ ରହନ୍ତି । ପୁଅ ଘରକୁ ଫେରି ନ ଖାଇଲା

Digitized by srujanika@gmail.com

ପର୍ଯ୍ୟନ୍ତ ମା' ଖାଆନ୍ତି ନାହିଁ । ଦିନେ ମାତୃ ସ୍ନେହର ପରୀକ୍ଷା ନେବାକୁ ପଚାରିଲେ, "ମା ମୁଁ ମରିଗଲେ ତୁମେ କ'ଣ କରିବ ?" ସେ କହିଲେ, 'ତତେ ଛାଡି ମୁଁ କଣ ବଞ୍ଚି ପାରିବି ? ତୋ ସାଙ୍ଗରେ ମୁଁ ମଧ୍ୟ ମରିଯିବି ।' କୃଷ୍ଣ କହିଲେ, 'ସତ କହୁଛ ତ ?' ଯଶୋଦା କହିଲେ, 'ଭଗବାନଙ୍କ ରାଣ ପକାଇ କହୁଛି ଏହା ସମ୍ପୂର୍ଣ୍ଣ ସତ ।' ଦିନେ ଜାଣି ଜାଣି ଗୋଡ ଖସାଇ ଦେଇ ନଈ ଭିତରେ ଖସି ପଡିଲେ । ପାଣି ଭିତରେ ବୁଡିଯାଇ ପୁଣି ଉଠି ପାଟିକଲେ, 'ମା' ବୁଡିଗଲି ମତେ ରକ୍ଷା କର ।' ତା'ପରେ ପାଟି ଭିତରେ ପାଣି ପଶିଗଲା । ମା' ନଦୀ କୂଳରେ ଠିଆ ହୋଇ ଚିତ୍କାର କରୁଥାନ୍ତି, "ମୋ ପୁଅ ବୁଡିଗଲା କିଏ ଆସି ରକ୍ଷା କର ।" କିନ୍ତୁ କେହି ଆସିଲେ ନାହିଁ । ମା' ନିଜର ଶାଢୀ ଖୋଲି ଗୋଟେ ପଟ ନିଜେ ଧରି ଆରପଟଟି ନଦୀ ଭିତରକୁ ପକାଇଲେ । କୃଷ୍ଣ ସେତେବେଳକୁ ନଦୀ ଭିତରେ ବୁଡି ଯାଇଥିଲେ ଏବଂ ତାଙ୍କ ପ୍ରାଣ ଚାଲିଯାଇଥିଲା । ମା' ନଦୀ କୂଳରେ ବସି ବହୁତ କାନ୍ଦିଲେ । ନିଜେ ନଦୀକୁ ଡେଇଁ ଆତ୍ମହତ୍ୟା କରିବେ ବୋଲି ଭାବିଲେ । କିନ୍ତୁ, ବୋଧହୁଏ ଡର ଲାଗିବାରୁ ଡେଇଁଲେ ନାହିଁ । କେବଳ ଜୋରରେ ପାଟି କରି କାନ୍ଦି ପୁଅର ଜୀବନ ନେଇ ଯାଇଥିବାରୁ ନଦୀକୁ ଗାଳି ଦେଉଥିଲେ । ଦିନେ ଗଲା, ଦି ଦିନ ଗଲା, ଯଶୋଦା ପ୍ରତିଦିନ କୂଳକୁ ଆସନ୍ତି, ବସି ବସି କାନ୍ଦନ୍ତି । କିନ୍ତୁ କେବେ ହେଲେ ନଦୀକୁ ଡେଇଁଲେ ନାହିଁ । ତୃତୀୟଦିନ କୃଷ୍ଣ ପାଣି ଭିତରୁ ବାହାରି କହିଲେ, 'ମା' ତୁମେ ରାଣ ପକାଇଥିଲ ପରା । ଏଇଆ କ'ଣ ତୁମର ସ୍ନେହ ? ମୋ ସାଙ୍ଗରେ ମରିଯିବ ବୋଲି କହୁଥିଲ ପରା । ଏହା କହି ଅଭିଶାପ ଦେଲେ ଯେ ଆଜିଠାରୁ ମା'ମାନେ ବଞ୍ଚି ଥାଉଥାଉ ତାଙ୍କ ଆଗରେ ପୁଅ ଝିଅମାନେ ମରି ଯିବେ ।' ସେଥିପାଇଁ ଏଭଳି ହେଉଛି ।"

ଏହା ଶୁଣି ନଳିନୀ ଯଶୋଦାଙ୍କ ଉପରେ ବହୁତ ଚିଡିଲା । ଯଦି ସେ ଦୃଢ ବିଶ୍ୱାସରେ ନଦୀକୁ ଡେଇଁ ପଡିଥାନ୍ତେ ତେବେ ଆଜି ମା' ମାନଙ୍କ ଆଗରେ ପୁଅ, ଝିଅମାନେ ମରୁନଥାନ୍ତେ । କିନ୍ତୁ ଯଶୋଦା ଥିଲେ ମଣିଷ, ଏବଂ କୃଷ୍ଣ ସ୍ୱୟଂ ଭଗବାନ । ମଣିଷ ରୂପୀ ମା'ର ସ୍ନେହ ପରୀକ୍ଷା ପାଇଁ ଭଗବାନ ଏପରି ମାୟା କରିଥିଲେ । ଦେବୀ ମା' ହୋଇଥିଲେ ନଦୀକୁ ଡେଇଁ ପଡିଥାନ୍ତେ କିନ୍ତୁ ଦେବତାଙ୍କ ମୃତ୍ୟୁ ହେଉ ନଥିବାରୁ ତାଙ୍କର ସନ୍ତାନ ମାନେ ମଧ୍ୟ ମରନ୍ତି ନାହିଁ ।

କୁଡିଆକୁ ଫେରିଲା ପରେ ମଧ୍ୟ ନଳିନୀ ମନରେ ଏଇ ପ୍ରଶ୍ନ ବାରମ୍ବାର ଉଠିଲା । ଏସବୁ ତୁଚ୍ଛା କଳ୍ପନା ନା ସତ ? ମନଗଢା ମଧ୍ୟ ହୋଇପାରେ । ପାର୍ବତୀ ଓ ରମନ୍ନା ମରିଗଲା ପରେ ମୁଁ କାହିଁକି ମରିଗଲି ନାହିଁ ? ଏ ପ୍ରଶ୍ନ ମନରେ ଉଠିବାରୁ ସେ ଆଶ୍ଚର୍ଯ୍ୟ, ହେଲେ ମନରେ ଦୃଢ ବିଶ୍ୱାସ ହେଲା ଯେ ସେ ମଧ୍ୟ ମରିବା କଥା । ରାତି ସେତେବେଳକୁ 'ଆଠଟା' ହେବ । ଚେନ୍ନିଗା ପାଟିରେ ଗୁଣ୍ଡିପତ୍ର ପକାଇ କୁଡିଆ ଆଗରେ ପଡିଥିବା ପଥର ଉପରେ ବସିଥାଏ । ନଳିନୀ ମଶିଣା ପାରି କୁଡିଆ ଭିତରେ ଶୋଇଗଲା । ନିଦ ଆସୁନଥାଏ । "ମୁଁ ଆଜି ମରିଗଲେ ଭଲ ହେବ ।" ସେ ଭାବିଲା ଯେ ପାର୍ବତୀ ଏବଂ ରମନ୍ନାଙ୍କ ପଛରେ ଚାଲିଯିବା ହିଁ ଉଚିତ ହେବ । ତା'ମନରେ ଆଶାର ସଞ୍ଚାର ହେଲା ଯେ ସେ ଯଦି ଦୃଢ ବିଶ୍ୱାସରେ ମରଣକୁ ବରଣ କରିବ ଭଗବାନ ତାକୁ ଏବଂ ତା'ର ପିଲା ଦୁଇଟାକୁ ମଧ୍ୟ ବଞ୍ଚାଇ ଦେବେ । ପୁରାଣ, ନାଟକ ଏବଂ କାହାଣୀରେ ଏପରି ସେ ଦେଖିଛି ଏବଂ ଶୁଣିଛି । ତା'

Digitized by srujanika@gmail.com

ଜୀବନରେ ବା' ଏପରି କାହିଁକି ନ ହେବ ? କିନ୍ତୁ ଏକା ଦିନରେ ତାର ଦୁଇଟା ସନ୍ତାନ ମରିଯିବା ଦିନ ଠାରୁ ତାର ଭଗବାନ, ପୁରାଣ, ଏସବୁରୁ ବିଶ୍ୱାସ ମଧ୍ୟ କମିଯାଇଥିଲା । କୃଷ୍ଣ ଭଳିଆ ପୁଅ ପାଇଁ ନିଜ ଜୀବନ ଦେବାକୁ ଯଶୋଦା କୁଣ୍ଠା ବୋଧ କଲେ କି ନାହିଁ ଏକଥାରେ ମୋର କ'ଣ ଦରକାର ? ମୋର ଦୁଇଟା ଝୁଅ ମରିଗଲେ । ଏଇ ଛଅଟା ଦିନରେ ଜୀବନଟା' ନରକ ଭଳିଆ ଲାଗିଲାଣି । ଏ ନର୍କରୁ ମୁକ୍ତି ପାଇବା ଉଚିତ । ତେଣୁ ମୋର ମଧ୍ୟ ମରିବା ଦରକାର ।

ଏହାପରେ ଚେନ୍ନିଗରାୟ୍ ମଧ୍ୟ ଆସି କୁଡିଆ ଭିତରେ ଶୋଇଗଲା । ସେ ଶୋଇ ଘୁଙ୍ଗୁଡି ମାରିଲା ପରେ, ନଞ୍ଜମ୍ମା ଉଠିଲା । ରାତି ଏଗାରଟା ହେଲାଣି । କୁଡିଆ କବାଟ ଖୋଲି ବାହାରକୁ ଆସିଲା । କୁଆଡେ ଯିବ ? କିପରି ମରିବ ? ଏପରି ଭାବନାରେ ଆନ୍ଦୋଳିତ ହୋଇ ସେ ଅଜାଣତରେ କେତେବେଳେ ଯାଇ ମଶାଣିରେ ପହଞ୍ଚିଗଲା । ଯେଉଁଠି ତାର ଦୁଇ ପିଲା ପୋତି ଜଳି ପାଉଁଶ ହୋଇ ଯାଇଛନ୍ତି । ଶବଦାହ ବେଳେ ସେ ଦେଖିନଥିଲା । କାରଣ ସ୍ତ୍ରୀ ଲୋକମାନେ ମଶାଣିକୁ ଯିବା କଥା ନୁହେଁ । ବର୍ତ୍ତମାନ ତା' ମନରେ କିନ୍ତୁ ଭୟ ସଙ୍କୋଚ କିଛି ନଥାଏ । ଭୂତପ୍ରେତଙ୍କର ଦୁଶ୍ଚିନ୍ତା ମଧ୍ୟ ମନରେ ନଥାଏ । ଅନ୍ଧାରରେ ଶବଜଳା ସ୍ଥାନ ଦୁଇଟା ଦିଶୁଥାଏ । ଏ ଭିତରେ ଆଉ କେହି ବ୍ରାହ୍ମଣ ଲୋକ ମରିନଥିଲେ । ତେଣୁ ଆଉ କାହାର ଶବ ଜଳା ହୋଇଥିବାର ସ୍ଥାନ ନଥାଏ । ନଞ୍ଜମ୍ମା କିନ୍ତୁ ଜାଣିପାରିଲା ନାହିଁ ପାର୍ବତୀର ଶବ କେଉଁଠି ଜଳା ହୋଇଛି ଓ ରମନ୍ନାର କେଉଁଠି ? ପୁଣି ଭାବିଲା ଜାଣିଲେ ବା' ଲାଭ କ'ଣ ? ସେ ଦୁଇ ଜାଗାରୁ ମୁଠାଏ ଲେଖାଏଁ ପାଉଁଶ ଗୋଟାଇ ନିଜ ଲୁଗା କାନିରେ ବାନ୍ଧିଲା । ମଶାଣି ପାଖରେ ଗୋଟିଏ ପୋଖରୀ ଥିଲା । ସେଠି ଶବ ସତ୍କାର ପରେ ଶବ ବାହକମାନେ ଗାଧୁଆ ପାଧୁଆ କରନ୍ତି । ସେଠିକି ଆଉ କେହି ଯାଆନ୍ତି ନାହିଁ । ପୋଖରୀ ପାଣି ବହୁତ ଅପରିଷ୍କାର । ଭାବିଲା, ଏଇ ପୋଖରୀରେ ଡେଇଁ ମରିବ । ଗୋଟିଏ କଡ ପଟରେ ଥିବା ପଥର ଉପରୁ ଡେଇଁବା ପାଇଁ ଠିକ୍ କଲା । ଆଖି ବନ୍ଦ କରି ଦେଲା । ତାର ଦେହ ସାରା କମ୍ପି ଉଠୁଥାଏ । ଜଣା ପଡୁଥାଏ ସତେ ଯେପରି ପୋଖରୀ ପାଣିରେ ସମୁଦ୍ର ଲହରୀ ଉଠୁଥାଏ । କିଛି ସମୟପରେ ତାର ଶରୀର ଉତ୍ତେଜନା ପ୍ରଶମିତ ହେଲା । ଦେହ ଥରିବା ମଧ୍ୟ ବନ୍ଦ ହେଲା । ନଞ୍ଜମ୍ମାର ମନ ବିକାର ଶୂନ୍ୟ, ନିର୍ଗୁଣ ସ୍ଥିର ଭାବରେ ରହିଥାଏ । ଶରୀର ମୃତବତ୍ ନିର୍ଜୀବ, ନିସ୍ତେଜ ଲାଗୁଥାଏ । ଏହା କ'ଣ ମୃତ୍ୟୁ ? ପାର୍ବତୀ, ରମନ୍ନା, ମୁଁ, ସବୁ ମିଥ୍ୟା, ମାୟା, କାହାରି ସ୍ଥିତି ନାହିଁ । ଆଉ ଗୋଟିଏ ପାଦ ଆଗେଇଲେ ମୃତ୍ୟୁ । ସେ ପାଦଟି ମଧ୍ୟ ଅନାୟାସରେ ଆଗକୁ ବଢିବା ପାଇଁ ପ୍ରସ୍ତୁତ ହୋଇ ରହିଛି ।

ଜୀବନର ଶେଷ ପାଦ ଆଗକୁ ଉଠାଇବା ଆଗରୁ ଅନ୍ୟମାନଙ୍କ କଥା ମନେ ପଡିଲା । ନିଜର ବୋଲି ଆଉ ଦୁଇ ଜଣ । ସ୍ୱାମୀ, ସେତ କାହାର ନୁହେଁ । ଆଉ ବିଶ୍ୱ କଥା ମନେ ପଡିବାରୁ ମନଟା ବିଚଳିତ ହୋଇ ଉଠିଲା । ବିଚରା ପ୍ଲେଗର ଦାଉରୁ ବଞ୍ଚିଗଲା । ତା' କଥା କିଏ ବୁଝିବ ? ମହାଦେବୟା ହିଁ ତାର ଏକମାତ୍ର ଆଶ୍ରୟ । ସେ ଆତ୍ମହତ୍ୟା କରିଦେଲେ ମଧ୍ୟ ମହାଦେବୟା ପିଲାଟିକୁ ହାତଛଡା କରିବେ ନାହିଁ । କିନ୍ତୁ ମୋ ବିନା ପିଲାଟା ଅନାଥ ହୋଇଯିବ । ଯେତେ ସ୍ନେହ ଦେଲେ ମଧ୍ୟ ମା'ର ଅଭାବ କେହି ପୂରଣ କରି ପାରିବେ ନାହିଁ । ପାର୍ବତୀ, ରମନ୍ନାଙ୍କ ସାଙ୍ଗରେ ମତେ କାହିଁକି ପ୍ଲେଗ

Digitized by srujanika@gmail.com

ଧରିଲା ନାହିଁ ? ବିଶ୍ୱର କଥା ବୁଝିବା ପାଇଁ ଭଗବାନ ବୋଧହୁଏ ମୋତେ ଛାଡି ଦେଲେ ଏବଂ ମୋ ପାଇଁ ବିଶ୍ୱକୁ ମଧ୍ୟ ବଞ୍ଚାଇ ଦେଇଛନ୍ତି । ବିଶ୍ୱର କୋମଳ ମୁର୍ତ୍ତିଟା ମନେ ପଡିଲା । ପିଲାଟା ଦେହରେ ପାର୍ବତୀ ଭଳିଆ ସୁନ୍ଦର ଚଉଡା ଚେହେରା ଏବଂ ରମନ୍ନା ଭଳି ବୁଦ୍ଧି ଅଛି । ମୁଁ ମରିଗଲେ ସେ ପିଲାଟାର ଅବସ୍ଥା କ'ଣ ହେବ ?

ଏସବୁ ବିଚାର ମନକୁ ଆସିବା ପରେ ନଷ୍ଟିଆ ପଥର ଉପରେ ବସି ପଡିଲା । ନିଜ ବିବାହ ଦିନଠୁ ଆଜି ପର୍ଯ୍ୟନ୍ତ ସବୁ ଦୃଶ୍ୟ ତା' ଆଖି ଆଗରେ ନାଚି ଗଲା । ସୁଖ ଦୁଃଖର ଏକ ସମ୍ମିଳିତ ଦୃଶ୍ୟ । ବର୍ଷା ଅଭାବରୁ ମରୁଡିର କଷ୍ଟ । ପାର୍ବତୀ, ରମନ୍ନା, କେତେ କଷ୍ଟ ନ ସହିଛନ୍ତି ସେ ବର୍ଷ ! ତାଙ୍କର ଭଲ ପ୍ରକୃତି ଲାଗି ଭଗବାନ ତାଙ୍କୁ ନିଜ ପାଖକୁ ଡାକି ନେଲେ । ବିଶ୍ୱଟା ଶୋକ ସହି ନପାରି ମତେ ମାରି ପକାଏ । ପିଲାଟା କିନ୍ତୁ ଭାରି ଶାନ୍ତ ସ୍ୱଭାବର । ବାପ ଭଳିଆ ନିଜ ପେଟ ଭରିଦେଇ, ଆଉ କାହା କଥା ନ ଭାବିବା ତାର ସ୍ୱଭାବ ନୁହେଁ । କେଉଁଠି କ'ଣ ଗୋଟିଏ ଖାଇବା ଜିନିଷ ମିଳିଗଲେ ବାପ, ମା' ଭାଇ, ଭଉଣୀଙ୍କୁ ନଦେଲେ ନିଜେ ଖାଇ ଦେବନାହିଁ । ଏଭଳି ଗଣ୍ଡିଧନକୁ ମୁଁ ଅନାଥ କରି ମରିଗଲେ, ମୁଁ କେଉଁ ସ୍ୱର୍ଗକୁ ବା' ଚାଲିଯିବି ? ମରିଯାଇ ପରଲୋକରେ ପାର୍ବତୀ, ରମନ୍ନା ଯଦି ପଚାରିବେ, "ମା' ତୁ ବିଶ୍ୱକୁ ଏକୁଟିଆ କରି ଚାଲିଆସିଲୁ ?" ତାହା ହେଲେ କ'ଣ ଉତ୍ତର ଦେବି ?

ଅଜାଣତରେ କେତେବେଳେ ଉଠି ପଥର ଉପରୁ ଓହ୍ଲାଇ ପଛକୁ ଘୁଞ୍ଚି ଆସିଲା । ସେଠାରୁ ପୁଣି ମଶାଣି ପାଖକୁ ଗଲା । ରମନ୍ନା, ପାର୍ବତୀଙ୍କ ଚିତାଗ୍ନି ଜାଗା ପାଖରେ କିଛି ସମୟ ଠିଆ ହୋଇ ଦେଖିଲା । ତାପରେ ଫେରିବା ରାସ୍ତା ଧରିଲା । ଅଧବାଟରୁ ନିଜ କୁଡିଆ ରାସ୍ତା ଛାଡି ବିଶ୍ୱଥିବା ମନ୍ଦିର ଆଡକୁ ଅଜାଣତରେ ଚାଲିଲା । ଉଠାଣି ତା' ଉଠି ମନ୍ଦିର ଭିତରକୁ ଗଲା । ପୁଲାଙ୍ଗ ତେଲର ଦୀପଟିଏ ମନ୍ଦିର ମଝିରେ ଜଳୁଥାଏ । ବିଶ୍ୱ ଶୋଇଥିଲା । ତା' ପାଖରେ ଜାନୁକୁ ଆଉଜି ମହାଦେବସ୍ୱାମୀ ଏକତାରା ବଜାଇ ଭଜନ ଗାଉଥିଲେ ।

ମନ୍ଦିର ଦୁଆରେ କିଏ ଠିଆ ହୋଇଛି ବୋଲି ସନ୍ଦେହ କରି ମହାଦେବସ୍ୱାମୀ ଦେଖିଲେ ଏବଂ ଚିହ୍ନିପାରି କହିଲେ –"ସନ୍ଧ୍ୟାବେଳେ ପରା ଆସି ଦେଖି ଯାଇଥିଲ । ପୁଣି କାହିଁକି ଆସିଲ ? ଚିନ୍ତା କରିବା ଦରକାର ନାହିଁ । ବିଶ୍ୱଟା ତୁମର ଶାଳଗ୍ରାମ ପଥର ଭଳି ଶକ୍ତ । ଆଜିଠାରୁ ତା' ନାଁ ଦିଅ 'ଗୁଣ୍ଡନ୍ନା' । ଶକ୍ତ ପଥର ଭଳି ମଣିଷଟାଏ ହେବ ।"

ମହାଦେବସ୍ୱାମୀଙ୍କ ତୁଣ୍ଡରେ ଘିଅ, ଚନ୍ଦନ ପଡୁ । ତାଙ୍କ କଥା ସତ ହେଉ । ଆଜିଠୁ ପିଲାଟା'ର ନାଁ 'ଗୁଣ୍ଡନ୍ନା' ରଖିଲେ ଭଲ ହେବ । ତାପରେ କହିଲା –"ମୁଁ ଯାଉଛି ।"

"ଏବେ କାହିଁକି ଆସିଥିଲ ?"

"ଏମିତି ଚାଲିଆସିଲି ।"

Digitized by srujanika@gmail.com

"ଯଦି ଇଚ୍ଛା ହେଉଛି ଏଇଠି ରହ । କିନ୍ତୁ ତୁମେ ଏଠି ନରହି କୁଡିଆକୁ ଚାଲି ଗଲେ ବେଶି ଭଲ ହେବ । କାଲେ କିଏ କ'ଣ କହିବ ?"

"ହଁ ମୁଁ ଯାଉଛି ।" କହି ନନ୍ଦିନୀ ଫେରିଲା । ମହାଦେବଯ୍ୟା ଛାଡିଦେବେ ବୋଲି କହିଲାରୁ ମନାକରି ଚରଚରରେ ନିଜ କୁଡିଆ ଆଡେ ପାଦ ପକାଇଲା । ଅଧବାଟରେ କାନିରେ ବନ୍ଧାହୋଇଥିବା ମଣାଣି ପାଉଁଶ କଥା ମନେ ପଡିବାରୁ ଅଳ୍ପ ଦୂରରେ ଥିବା ପୋଖରୀକୁ ଯାଇ ପାଣିକୁ ଫିଙ୍ଗି ଦେଲା । କହିଲା –"ହେ ଗଙ୍ଗାମାତା, ତୁମେ ଏମାନଙ୍କୁ ଉଦ୍ଧାର କର ।" ତା'ପରେ କୁଡିଆକୁ ଫେରି ଶୋଇଗଲା ।

6

ତା'ପର ଦିନ ସକାଳୁ ଉଠି, ମନ୍ଦିରକୁ ଯାଇ ପୁଣି ବିଶ୍ୱକୁ ଦେଖି, କୁଡିଆକୁ ଫେରି ନନ୍ଦିନୀ ବସିଥାଏ । ଆଜି ରମନ୍ନା ମରିବାର ସାତ ଦିନ । ନିଯ୍ମ ଅନୁସାରେ ଆଜିଠାରୁ ଶୁଦ୍ଧ କର୍ମ ଆରମ୍ଭ କରିବା କଥା । କିନ୍ତୁ କେଉଁ ନିଯ୍ମ, ଏବଂ କେଉଁ ଶାସ୍ତ୍ର, କିଏ ପଚାରୁଛି ? ସେ କଥା ନନ୍ଦିନୀ ଭାବି ନଥାଏ । କେହି ମଧ୍ୟ ମନେ ପକାଇନଥିଲେ । ପାର୍ବତୀର କ୍ରିଯ୍ା କର୍ମ ତ ତା ସ୍ୱାମୀ ଘରେ ହେବା କଥା ।

ଦ୍ୱିପହରେ ବେଳେ, ନନ୍ଦିନୀ ଆଣ୍ଠୁଉପରେ ମୁଣ୍ଡରଖି କୁଡିଆରେ ବସି ରହିଥାଏ । ଚେନ୍ନିଗରାଯ୍ କୁଆଡେ ଯାଇଥାଏ । ନନ୍ଦିନୀକୁ ଲାଗିଲା କିଏ ଜଣେ ସଫା ଲୁଗା ପିନ୍ଧି କୁଡିଆ ଭିତରକୁ ଆସିଲା । ମୁଣ୍ଡ ଉଠାଇ ଦେଖେତ ସୂର୍ଯ୍ୟନାରାଯ୍ଣ । ପାର୍ବତୀର ସ୍ୱାମୀ, ବାଁ ହାତରେ ଝିଅ ରତ୍ନାର ହାତ ଧରିଥାଏ, ଏବଂ ଡାହାଣ ହାତରେ ଗୋଟିଏ ବଡ ଗଣ୍ଠିଲୀ ଧରିଥାଏ । ନନ୍ଦିନୀ ତାକୁ ବସିବାକୁ କହିଲା ନାହିଁ କି ନିଜେ ଭିତରକୁ ଗଲା ନାହିଁ । ସୂର୍ଯ୍ୟନାରାଯ୍ଣ ରତ୍ନାକୁ କହିଲା –"ଝିଅ ଯା, ଆଈ ପାଖକୁ ।"

ରତ୍ନା ଆଈକୁ ମନେ ରଖିଥିଲା । ସିଧା ନନ୍ଦିନୀ ପାଖକୁ ଯାଇ ତାର ହାତ ଧରିଲା । ନନ୍ଦିନୀ ରତ୍ନାକୁ କୋଳକୁ ନେଲା । ସୂର୍ଯ୍ୟନାରାଯ୍ଣ ଗଣ୍ଠିଲୀଟା ଥୋଇ କହିଲା –"ଏଜିନିଷ ନେଇ ରଖିଦିଅନ୍ତୁ ।" ଗୋଟାଏ ପରେ ଗୋଟାଏ ଜିନିଷ ଗଣ୍ଠିଲୀ ଖୋଲି ବାହାର କଲା । ଫୁଲହାର, ପାନ, ଗୁଆ, ନଡିଆ, କମଳା, କଦଳୀ କେତେ ଜିନିଷ ଆଣିଥାଏ । ଏସବୁ ଦେଖି ନନ୍ଦିନୀର କୋହ ଉଠି ତାର ସହନଶୀଳତାର ବନ୍ଧ ପାର ହୋଇଗଲା । ରତ୍ନାକୁ ଛାତିରେ ଭିଡି ଧରି କାନ୍ଦିଲା । ସୂର୍ଯ୍ୟନାରାଯ୍ଣ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲା । ନନ୍ଦିନୀ ରତ୍ନାକୁ ସେଠି ଛାଡି ରୋଷେଇ ଘର ଭିତରକୁ ଚାଲିଗଲା । ଭିତରୁ କାନ୍ଦିବାର ଶବ୍ଦ ଶୁଣାଯାଉଥାଏ । ସୂର୍ଯ୍ୟନାରାଯ୍ଣ କିଛି ବୁଝିପାରୁନଥାଏ ।

Digitized by srujanika@gmail.com

"ମା', ଆପଣ କାହିଁକି କାନ୍ଦୁଛନ୍ତି ?" ସୂର୍ଯ୍ୟ ପଚାରିଲା, କିନ୍ତୁ କିଛି ଉତ୍ତର ମିଳିଲା ନାହିଁ । ନିଜେ ରୋଷେଇ ଘର ଭିତରକୁ ଯାଇ ପଚାରିବାକୁ ସଙ୍କୋଚ ବୋଧ କଲା । କିଛି ବୁଝିନପାରି ଚୁପ ହୋଇ ବସି ରହିଲା । କିନ୍ତୁ ତା' ମନରେ ମଧ୍ୟ ଏକ ଅବ୍ୟକ୍ତ ଭୟ ଜାଗ୍ରତ ହେଲା । ଅଧ ଘଣ୍ଟାଏ ପରେ ପୁଣି ପଚାରିଲା –"ମା', ଆପଣ ମତେ କିଛି ସ୍ପଷ୍ଟ କରି କହୁନାହାନ୍ତି କାହିଁକି ?" ତଥାପି ନଶିଆଁ ଚୁପ ଥାଏ । ତାପରେ କୁଡିଆ ବାହାରକୁ ଯାଇ ନିକଟରେ ଖେଳୁଥିବା ଗୋଟିଏ ପିଲାକୁ ଡାକି କହିଲା– "ପୁଅ ଯିବୁଟି ମାଷ୍ଟ୍ରଙ୍କୁ ଡାକି ଆଣିବୁ । କହିବୁ ମୁଁ ଡ଼ାକାଇଛି ।" ପିଲାଟି ଧାଇଁଗଲା । ପାଞ୍ଚ ମିନିଟ ପରେ ମାଷ୍ଟ୍ରେ ଆସି ପହଞ୍ଚିଗଲେ । କାହିଁକି ଡ଼ାକାଇଲ ବୋଲି ପଚାରିବାରୁ ନଶିଆଁ କହିଲା –"ଆମ କୁଡିଆ ଭିତରକୁ ଯାଇ ଦେଖନ୍ତୁ ।" ଏବଂ ନିଜେ ଉଠାଣି ଉଠି ମନ୍ଦିର ପାଖରେ ଯାଇ ପହଞ୍ଚିଲା ।

ମାଷ୍ଟ୍ରେ ଭିତରକୁ ଯାଇ ଦେଖନ୍ତି ତ ସୂର୍ଯ୍ୟନାରାୟଣ ବ୍ୟସ୍ତ ହୋଇ ବସିଛି, ଏବଂ ତା ସାମନାରେ ପାନପତ୍ର, ଫୁଲ, ନଡିଆ, କଦଳୀ ଇତ୍ୟାଦି ରଖାହୋଇଛି । ଝିଅ ରତ୍ନା, ପାଖରେ ଠିଆ ହୋଇଛି ।

"କେତେବେଳେ ପହଞ୍ଚିଲେ ? ମୋର ଚିଠି ପାଇଲେ ତ ?"

"କି ଚିଠି ? ମୁଁ ତ ପାଇନି ।"

"ପାଞ୍ଚଦିନ ହେଲା ମୁଁ ଦେଲିଣି ।"

"ଆମର ସେଠାରେ ସପ୍ତାହରେ ଥରେ ଚିଠିପତ୍ର ବଣ୍ଟା ହୁଏ ।"

ମାଷ୍ଟ୍ରେ ଆଉ କିଛି କହିଲେ ନାହିଁ । ସୂର୍ଯ୍ୟ ପଚାରିଲା –"ମୁଁ ଘଟଣା ଟା କଣ କିଛି ବୁଝିପାରୁ ନାହିଁ ଆଜ୍ଞା ।"

"କେଉଁ ମୁହଁରେ କହିବି ?"

ତରିତରି ସୂର୍ଯ୍ୟ କହିଲା,"କୁହନ୍ତୁ ନା ।"

"ପାର୍ବତୀ ଓ ରମନ୍ନା ମରିବାର ଆଜିକୁ ସାତଦିନ ।"

"ଏଁ ।" କହି ସୂର୍ଯ୍ୟ କିଛି ସମୟ ଅବାକ୍ ହୋଇ ରହିଗଲା ।

"ପ୍ଲେଗ ଏ ଗାଁରେ ପ୍ରଥମେ ଏମାନଙ୍କ ଘରେ ହେଲା । ଭାଇ, ଭଉଣୀ ଏକାଦିନେକେ ଚାଲିଗଲେ । ବିଶ୍ୱକୁ ମଧ୍ୟ ଧରିଥିଲା । କିନ୍ତୁ ସେ ଟିକିଏ ଭଲ ହୋଇଗଲାଣି ।"

ସୂର୍ଯ୍ୟନାରାୟଣ ଏପରି ଅପ୍ରତ୍ୟାଶିତ ଖବର ଶୁଣି ମୂକ ପାଲଟି ଗଲା । ସବୁ କହିସାରିବା ପରେ ମାଷ୍ଟ୍ରେ କହିଲେ –"କପାଳ ଲିଖନ କେ କରିବ ଆନ । ସବୁ ଭାଗ୍ୟର କରାମତି ।" ସୂର୍ଯ୍ୟ ଆଉ ସମ୍ଭାଳି ନପାରି କାନ୍ଦି ପକାଇଲା । ବାପା କାନ୍ଦୁଥିବାର ଦେଖି ମଧ୍ୟ ରତ୍ନା କାନ୍ଦିଲା । କ'ଣ ବୁଝିଲା କେଜାଣି ପିଲାଟା ? "ଆଜ୍ଞା ମୁଁ ହତଭାଗା ।" ଏହା କହି ସୂର୍ଯ୍ୟ ଝିଅକୁ ଛାତିରେ ଧରି କାନ୍ଦୁଥାଏ । ମାଷ୍ଟ୍ରେ ଆଉ କିଛି କହି ପାରିଲେ ନାହିଁ । ଦଶମିନିଟ ପରେ କହିଲେ,"ଚାଲ ଆମ ଘରକୁ ଯିବା ।"

Digitized by srujanika@gmail.com

"ନାଁ, ନାଁ ଆଉ କୁଆଡେ ଯିବି ନାହିଁ । ଘରକୁ ଫେରିଯିବି ।"

"ନାଁ, ନାଁ ତାଇ ପିଲାଟାକୁ କ'ଣ ମୁଠେ ଖାଇବାକୁ ଦେବାକୁ ହେବ ।" ଏହା କହି ବାଧ୍ୟ କରି ତାଙ୍କୁ ଉଠାଇଲେ । କୁଡିଆ କବାଟରେ ତାଲା ବନ୍ଦ କରି ବାହାରି ପଡିଲେ ।

ମାଷ୍ଟ୍ରଙ୍କ ସ୍ତ୍ରୀ ରତ୍ନା ପାଇଁ ଖଲିରେ ଖାଇବାକୁ ବାଢି ଦେଲେ । ସୂର୍ଯ୍ୟ କିଛି ଖାଇଲା ନାହିଁ । ରତ୍ନା ଖାଇ ସାରିବା ପରେ ସୂର୍ଯ୍ୟ ଅଇଁଠା ଖଲିଟା ବାହାରେ ପକାଇ ଅଇଁଠା ଜାଗାଟା ଗୋବରରେ ସଫା କରିଦେଲା । ଏପରି କରିବାକୁ ପଡିଲା, କାରଣ ପାର୍ବତୀ ମରିଯିବାରୁ ସୂର୍ଯ୍ୟ ଏବଂ ରତ୍ନା ଦୁହେଁ ଅଣଶୁଦ୍ଧିଆ ।

ତା'ପରେ ଝିଅକୁ ଧରି ବାହାରି ସୂର୍ଯ୍ୟ କହିଲା –"ଆଜ୍ଞା ଚାଲନ୍ତୁ ମନ୍ଦିରକୁ ଯାଇ ସେମାନଙ୍କୁ ଦେଖା କରିବି ।" ମାଷ୍ଟ୍ରେ ମଧ୍ୟ ତାଙ୍କ ସାଙ୍ଗରେ ମନ୍ଦିର ଯାଏଁ ଗଲେ । ସେମାନେ ମନ୍ଦିରରେ ପହଞ୍ଚିଲା ବେଳକୁ ନଷ୍ଟିଆ ନିଜ କୁଡିଆକୁ ଫେରି ସାରିଥିଲା । ପିଲାଟାଏ ପଠାଇ ମାଷ୍ଟ୍ରଙ୍କ ଘରୁ ଚାବିଟା ଅଣାଇଲା । ଆଜି ପର୍ଯ୍ୟନ୍ତ ଚେନ୍ନିଗା ମାଷ୍ଟ୍ରଙ୍କ ଘରେ ଖିଆପିଆ କରୁଥାଏ । ନଷ୍ଟିଆ ପାଇଁ ମାଷ୍ଟ୍ରଙ୍କ ସ୍ତ୍ରୀ ଖାଇବାକୁ ପଠାଇ ଦିଅନ୍ତି । ସେ କିନ୍ତୁ ଇଚ୍ଛା ହେଲେ କ'ଣ ମୁଠାଏ ଖାଏ ଏବଂ ବାକିତକ ବାହାରକୁ ଫିଙ୍ଗି ଦିଏ । ତାଲା ଖୋଲି କୁଡିଆ ଭିତରକୁ ଯାଇ ଦେଖେତ ସୂର୍ଯ୍ୟନାରାୟଣ ଆଣିଥିବା ଫଳ ଏବଂ ମିଠାଇ ରଖା ହୋଇଛି । ସେଗୁଡାକ ଦେଖି ସହି ନପାରିବାରୁ ମୁହଁ ବୁଲାଇ ଭିତର ପଟକୁ ଚାଲିଗଲା । ସର୍ବରାକାରୀ ହିସାବପତ୍ର ଖାତା ଯେଉଁ ବଡ ସିନ୍ଦୁକରେ ରଖାଯାଇଥାଏ, ସେଥିରେ ପାର୍ବତୀର ବିଭାଘର ପାଇଁ କରାଯାଇଥିବା ଶାଢୀ ଏବଂ ଗହଣା ରଖାଯାଇଥାଏ, ସେ ସବୁ ବାହାର କରି ଦେଲା ।

ଦିପହରେ ଗଡିଲା ବେଳକୁ ସମସ୍ତେ ମନ୍ଦିରରୁ ଫେରିଲେ । ସୂର୍ଯ୍ୟନାରାୟଣ ଆସି ଚୁପ ହୋଇ ଠିଆ ହୋଇଥିଲା । ମାଷ୍ଟ୍ରେ କହିଲେ –"ସୂର୍ଯ୍ୟନାରାୟଣ ଏବେ ଫେରି ଯିବେ ବୋଲି କହୁଛନ୍ତି । ଘରକୁ ଫେରିଲେ ସବୁ ଯୋଗାଡ କରି ନଅ ଦିନଠାରୁ ଶୁଦ୍ଧକର୍ମ ଆରମ୍ଭ କରିଦେବେ । ନଷ୍ଟିଆ କୌଣସି ଉତ୍ତର ଦେଲା ନାହିଁ । ଗହଣା ପତ୍ର ଟିକେ ବାନ୍ଧି ଆଣି କହିଲା –"ଏ ସବୁ ଶାଢୀ ଗହଣା ପାର୍ବତୀର । ଆପଣ ନେଇ ଯାଆନ୍ତୁ ।"

ସୂର୍ଯ୍ୟନାରାୟଣ କାନ୍ଦ କାନ୍ଦ ହୋଇ କହିଲା –"ମା' ଅସଲ ଲୋକ ତ ଚାଲିଗଲା, ମୁଁ ଏଗୁଡାକ ନେଇ କ'ଣ କରିବି ?"

"ବିଭାଘର ପରେ ଏ ସବୁ ଜିନିଷ ଉପରେ ତୁମର ହିଁ ଅଧିକାର । ମୋ ପାଖରେ ରହିଲେ ମତେ ତା'କଥା ମନେ ପଡି ବଡ କଷ୍ଟ ହେଉଛି ।"

ମାଷ୍ଟ୍ରେ ବୁଝାଇବାରୁ ସୂର୍ଯ୍ୟ ଜିନିଷତକ ବ୍ୟାଗ ଭିତରେ ରଖିଲା । ନଷ୍ଟିଆକୁ ମୁଣ୍ଡିଆ ମାରିଲା, ଏବଂ

Digitized by srujanika@gmail.com

ଝିଅକୁ ମଧ୍ୟ କହି ମୁଣ୍ଡିଆ ମରାଇନା । ତା'ପରେ ଧୀରେ ଧୀରେ ପାଦ ପକାଇ ଚାଲିଗଲା । ବସ୍ ରହିବା ସ୍ଥାନ ପର୍ଯ୍ୟନ୍ତ ମାଷ୍ଟ୍ରେ ତା'ସାଙ୍ଗରେ ଚାଲି ଚାଲି ଗଲେ । ଦଶ ମିନିଟ ପରେ, ତାଙ୍କୁ ବସ୍‌ରେ ବସାଇ ମାଷ୍ଟ୍ରେ ଫେରିଲେ । ନକ୍ଷିତ୍ରାର କୁଡିଆକୁ ଯାଇ କହିଲେ– "ପାର୍ବତୀର ଶୁଦ୍ଧିକ୍ରିୟା ପଅର ଦିନଠାକୁ ହେବ । ରମନ୍ନାର ମଧ୍ୟ କର୍ମ କରି ଦେବା କଥା । ଏ ଗାଁ ପୁରୋହିତଙ୍କ ପାଲରେ ପଡିଲେ ସର୍ବନାଶ କରିଦେବେ । ଲୋକର ସୁଖ ଦୁଃଖ କିଛି ଦେଖିବେ ନାହିଁ । ତୁମେ ଏ ଦାୟିତ୍ୱ ମୋ ଉପରେ ଛାଡି ଦିଅ । ପଚିଶି ଟଙ୍କା ଭିତରେ ସବୁ ହୋଇଯିବ । ଆମେ ଯେତେ ଟଙ୍କା ଖର୍ଚ୍ଚ କଲେ ମଧ୍ୟ ମୃତ ଆତ୍ମାର କିଛି ଲାଭ ହେବ ନାହିଁ । ଆମେ ଖାଲି ଧର୍ମରକ୍ଷା ପାଇଁ ଏସବୁ କରୁଥାଇଁ ।"

"ଏବେ ଟଙ୍କା ପଇସା କେଉଁଠୁ ଆଣିବି । ଆପଣ କୁରୁବରହଳଙ୍କୀ ଯାଆନ୍ତୁ । ଏ ଭଳି ସମୟରେ ଗୁଣ୍ଡ ଗୌଡ କେବେ ମନା କରିବେ ନାହିଁ । ଆସନ୍ତା ବର୍ଷର ଖଳଣା ବାବଦକୁ କଟାଇ ଦେବା ।"

ମାଷ୍ଟ୍ରେ ସାଙ୍ଗେ ସାଙ୍ଗେ କୁରୁବରହଳଙ୍କୀ ଯିବାକୁ ବାହାରି ପଡିଲେ ।

## 7

ସେଦିନ ସନ୍ଧ୍ୟାବେଳକୁ ଶଗଡରେ ବସି ଅକ୍କମ୍ମା ଏବଂ କଲେଶ ଆସିଲେ । ଅକ୍କମ୍ମା ରାସ୍ତାଯାକ କାନ୍ଦି କାନ୍ଦି ଆସୁଥିଲା । ଓହ୍ଲାଇଲା ବେଳକୁ ତାର ଆଖି ଫୁଲି ଯାଇଥାଏ । ନକ୍ଷିତ୍ରାର କୁଡିଆ ଭିତରକୁ ଯାଇ କହିଲା –"ନକ୍ଷୁ ଆମେ କ'ଣ ମରିଗଲୁ ବୋଲି ତୁ ଭାବିଲୁ । ପିଲା ଦୁଇଟା ମରିଯିବାର ଆଜିକୁ ସାତଦିନ ହେଲାଣି । ଆମକୁ ଖବର ଟିକିଏ ମଧ୍ୟ ପଠାଇଲୁ ନାହିଁ ।"

ନକ୍ଷିତ୍ରା ମଧ୍ୟ ଜୋରରେ କାନ୍ଦୁଥାଏ । କିଛି ସମୟ ପରେ କହିଲା –"କେଉଁ ଖୁସିରେ ଖବର ଯେ ତମକୁ କହିଥାନ୍ତି ।" କଲେଶ କହିଲା –"ତୋ ସୁଖ ଦୁଃଖରେ ଭାଗୀ ହେବାକୁ କ'ଣ ଆମେ କେହି ନୁହଁ ? ଆମେ କ'ଣ ପର ହୋଇଗଲୁ । ଚାଲ ତୁ ଆମ ସାଙ୍ଗରେ ଚାଲ । ଆମ ଗାଁରେ ମାସେ ଦୁଇମାସ ରହି ଆସିଲେ ମନ ପରିବର୍ତ୍ତନ ହୋଇ ଯିବ ।"

ନକ୍ଷିତ୍ରା ବର୍ତ୍ତମାନ ବାପଘରକୁ ଯିବା ଅବସ୍ଥାରେ ନଥିଲା । ସାନପୁଅର ଦେହ ଏବେ ପୁରା ଭଲ ହୋଇ ନାହିଁ । ପୁଣି ପଅରଦିନ ଠାରୁ ରମନ୍ନାର ଶୁଦ୍ଧିକ୍ରିୟାଟା ମଧ୍ୟ କରିବାକୁ ହେବ । ଏହା ଛଡା ବାପଘରକୁ ଯିବା ପାଇଁ ତାର ଆଗ୍ରହ ଆସୁନଥିଲା । ସେଠାକୁ ଯିବାର କେତେ ବର୍ଷ ହୋଇ ଗଲାଣି । କିନ୍ତୁ କଲେଶ ବହୁତ ବାଧ୍ୟ କଲା । ସେ ଓ ଅକ୍କମ୍ମା ଦୁହେଁ ମନ୍ଦିରକୁ ଯାଇ ବିଶ୍ୱକୁ ଦେଖି ଆସିଲେ । ଅକ୍କମ୍ମା

Digitized by srujanika@gmail.com

ଅଣନାଟିକୁ ଛାତିରେ ଲଗାଇ କେତେ କାନ୍ଦିଲା ।

ଶୁଦ୍ଧିକ୍ରିୟାର ଏଗାର ଦିନ ପର୍ଯ୍ୟନ୍ତ ସେମାନେ ଘରେ ରହିଲେ । ଅକ୍କ ମା ନିଜେ ରନ୍ଧାବଢ଼ା କାମ କଲା । କଳେଶ ରେବଣସେଠୀର କୁଡ଼ିଆ ଖୋଜିବା ପାଇଁ ବାହାରି ପଡ଼ିଲା ।

ଅକ୍କ ମା ନଞ୍ଜମାକୁ କହିଲା –"ଏବେ ମଧ୍ୟ କଣ୍ଠୀ ଗାଁରେ ନାହିଁ । ସେ କାଶୀ ଯାଇଥିବା ଭିତରେ ତାର ଘୋଡ଼ାଟି ମରିଯାଇଥିବାରୁ ଏବେ ଆଉ ଗୋଟିଏ କିଣିଛି । କାଶୀରୁ କି ମନ୍ତ୍ର ଯନ୍ତ୍ର ଶିଖି ଆସିଛି କେଜାଣି କେତେ କୁଆଡ଼ୁ ଦୂରରୁ ଲୋକ ଆସି ତାକୁ ଡାକି ନେଉଛନ୍ତି । ଏଥର ମଧ୍ୟ କୁଆଡ଼େ ଯାଇଛି ଯେ କୋଡ଼ିଏ ଦିନ ହେଲାଣି । କୁରୁବରହଳ୍ଳୀର ନିଙ୍ଗେ ଗୌଡ଼ର ଝିଅ ଆମ ଗାଁରେ ବିଭା ହୋଇଛି । କାଲି ନିଙ୍ଗେ ଗୌଡ଼ ଆମ ଗାଁକୁ ଆସିଥିଲା । ଆଜି ସକାଳୁ ତା ଜ୍ୱାଇଁର ବଡ଼ ଭାଇ ଆସି କହିଲା – 'ଆମେ ଶୁଣିଲୁ ତୁମ ନାତୁଣୀର ଦୁଇଟା ବୁଆ ମରିଗଲେ । ତୁମେ ଶଙ୍କୁଳି ଯିବ ନାହିଁ କି ?' ମୁଁ ତା' କଥାରେ ପ୍ରଥମେ ବିଶ୍ୱାସ କରି ପାରିଲି ନାହିଁ । କଳେଶ ଏକଥା ଶୁଣି ସଙ୍ଗେ ସଙ୍ଗେ ଶଗଡ଼ ତିଆରି କରି ମତେ ଧରି ବାହାରି ପଡ଼ିଲା ।"

"ଭାଇ ପାଇଁ ଆଉ କେଉଁଠି କନ୍ୟା ଯୋଗାଡ଼ ହେଲା କି ?"

"କଣ୍ଠୀ ଗୋଟିଏ ଜାଗାରେ ଠିକ୍ କରିଥିଲା । କିନ୍ତୁ କମଳୁକୁ ବୋଧହୁଏ ଜଣା ପଡ଼ିଗଲା । ସେ ତା' ବାପା ପାଖକୁ ଚିଠି ଲେଖି ଜଣାଇ ଦେଇଥିବ । ତା ବାପା ଆସି କଳେଶର ହାତ ଗୋଡ଼ ଧରି କାନ୍ଦି କାନ୍ଦି କହିଲା– 'ତତେ କ'ଣ ଦିନ ରାତି ସେବା କରିଥିଲି ଏଇଥିପାଇଁ । ତୁ ଆଉ ଥରେ ବିବାହ କରନା ।' କଳେଶ ତା' କଥା ଶୁଣି ଆଉ ବିବାହ କରିବାକୁ ମାନିଲା ନାହିଁ । ମୁଁ ଏବଂ କଣ୍ଠୀ ଯେତେ ବୁଝାଇଲୁରୁ ବୁଝିଲାନି ।"

ମାଷ୍ଟ୍ରଙ୍କ ସାହାଯ୍ୟରେ ରମନ୍ନାର ଶୁଦ୍ଧିକ୍ରିୟା ପଚିଶି ଟଙ୍କା ଭିତରେ ହୋଇଗଲା । ଶୁଦ୍ଧଘର ସରିବା ପରେ ନଞ୍ଜମା ବିଶ୍ୱକୁ ଘରକୁ ନେଇ ଆସିଲା । ସେ ଏବେ ଧୀରେ ଧୀରେ ଚଲାବୁଲା ଆରମ୍ଭ କରୁଥାଏ । ଗୋଲ୍ ଗାଲ୍ ହୋଇ ସୁନ୍ଦର ପିଲାଟା ଏକବାରେ ଝଡ଼ିଯାଇଥିଲା । କଳେଶ ପଚାରିଲା– "ନଞ୍ଜମା ଶଗଡ଼ ଗାଡ଼ିଟିଏ ଭଡ଼ା କରି ଦେଉଛି ତୁ ବିଶ୍ୱକୁ ଧରି ଆମ ଗାଁକୁ ଚାଲ୍ ।" ଯଦିବା ସେ ଯିବାକୁ ଚାହୁଁ ନଥିଲା, କଳେଶ ମନରେ କଷ୍ଟ ହେବ ବୋଲି ନାହିଁ ମଧ୍ୟ କରିପାରୁ ନଥିଲା । ଭାଉଜ ଦୁଷ୍ଟ ହୋଇପାରେ କିନ୍ତୁ ଭାଇ ତ କିଛି କ୍ଷତି କରିନି । କେବଳ ଝିଅ ବିବାହ କରିବାକୁ ପ୍ରସ୍ତାବ ଦେଇଥିଲେ ଏବଂ ମୁଁ ମନା କରି ଦେଇଥିବାରୁ ରାଗିଯାଇ ପାର୍ବତୀର ବିଭାଘରକୁ ଆସି ନଥିଲେ । ଏବେ ଆସି ନିଜେ ଡାକୁଛନ୍ତି ତେଣୁ ମନା କାହିଁକି କରିବି ? କିନ୍ତୁ ଖଜଣା ଆଦାୟ ସମୟ । ଆଜି ପର୍ଯ୍ୟନ୍ତ ସେଥିପ୍ରତି ଧ୍ୟାନ ଦିଆ ହୋଇନାହିଁ । ମୁଁ ବାପ ଘରକୁ ଚାଲିଗଲେ ସ୍ୱାମୀ ଏଠି ଏକା ବସି ହିସାବ ପତ୍ର ଲେଖିବା ଲୋକ ନୁହଁ । ଏସବୁ ଭାବି କହିଲା –"ଅକ୍କ ମା ଏଠିରହୁ । ଖଜଣା ଆଦାୟ ଶେଷ ହେଲେ ମୁଁ ତା' ସାଙ୍ଗରେ ଚାଲିଯିବି । ଏବଂ ଦଶ ପନ୍ଦର ଦିନ ରହି ଆସିବି ।"

କଳେଶ ଏକୁଟିଆ ଗାଁକୁ ଫେରିଗଲା ।

Digitized by srujanika@gmail.com

# ଚତୁର୍ଦ୍ଦଶ ଅଧ୍ୟାୟ

**1**

ଏଥର ଗଙ୍ଗାଜ୍ଜା ଏବଂ ଅପନ୍ନା ଦେଢ଼ମାସ କାଳ ବାହାରେ ଭିକ୍ଷା ମାଗି ଗାଁକୁ ଫେରିଲେ । ଗାଁ ପାଖ ହେଲାବେଳକୁ ତାଙ୍କୁ ଖବର ମିଳିଗଲା ଯେ ଗାଁରେ ପ୍ଲେଗ୍ ଲାଗିଛି । ସେମାନଙ୍କୁ ମଧ୍ୟ ଗାଁ ବାହାରେ କୁଡ଼ିଆ କରି ରହିବାକୁ ପଡ଼ିବ । ତା' ଛଡ଼ା କଂସା ବାସନ, ଲୁଗାପଟା ସବୁ ମନ୍ଦିର ଭିତରେ । ଗାଁ ଭିତରକୁ ଗଲେ ସିନା ସେ ସବୁ ଆଣିବେ । ଏତେ ଅସୁବିଧାରେ କିଏ ରହୁଛି ଭାବି ପୁଣି ଦକ୍ଷିଣ ଦିଗରେ ଭିକ୍ଷା ଯାତ୍ରା ଆରମ୍ଭ କରିଦେଲେ । ଅନେକ ଜିଲ୍ଲା ଏବଂ ପ୍ରଦେଶ ବୁଲି ସାରିବା ପରେ ତିନିମାସ ପରେ ଗାଁକୁ ଫେରିଲେ । ସେତେବେଳକୁ ଦି ଚାରି ଅସରା ବର୍ଷା ପଡ଼ି ଯାଇଥିବାରୁ ଗାଁ ଲୋକ ସବୁ ଘରକୁ ଫେରି ଆସିଥାନ୍ତି ।

ନାତି, ନାତୁଣୀଙ୍କର ମରିବା ଖବର ଶୁଣି ଗଙ୍ଗାଜ୍ଜା ବୋହୂ ଉପରେ ଖୁବ୍ ରାଗିଗଲା । କିନ୍ତୁ ତା' ଆଗରେ ଠିଆ ହୋଇ ଗାଳି ଦେବା ପାଇଁ ଡର ମଧ୍ୟ ଲାଗୁଥାଏ । ନଞ୍ଜିଜ୍ଜା ଘରକୁ ଗଲାପରେ କିନ୍ତୁ ସେ ଅଜାଣତରେ କାନ୍ଦିପକାଇଲା । ଗଙ୍ଗାଜ୍ଜା କହିଲା –"ଦ୍ୱିତୀୟ ପକ୍ଷରେ ଝିଅ ଦେଲୁ ବୋଲି ସିନା ସେ ମରିଗଲା । ତା' ପୂର୍ବରୁ ମତେ ଟିକିଏ ପଚାରି ନଥାନ୍ତୁ ।" ନାତି ନାତୁଣୀ ଯେତେବେଳେ ବଞ୍ଚିଥିଲେ ସେତେବେଳେ ତ ତାଙ୍କୁ ପଚାରୁନଥିଲା କି ଘରକୁ ମଧ୍ୟ ଆସୁନଥିଲା । ଗଙ୍ଗାଜ୍ଜା ଗାଁରେ ମଧ୍ୟ ବିଶେଷ ସମୟ ରହୁନଥାଏ । କେତେବେଳେ କେମିତି ପାର୍ବତୀ ସାଙ୍ଗରେ ଦେଖା ହୋଇଗଲେ ପଚାରେ –"ତୋ, ମା କୁରୁବରହଳ୍ଳୀ ଖଜଣା ଆଦାୟ ପାଇଁ ଯାଇଛି ପରା, କେତେ ଟଙ୍କା ମିଳିବ ?" ପାର୍ବତୀ କହେ – "ମୁଁ ସେ କଥା କିପରି ଜାଣିବି ?" ଲେଙ୍କେମା ଏବଂ ନାତୁଣୀଙ୍କ ସେତିକି ସମ୍ପର୍କ । ରମନ୍ନା ସାଙ୍ଗରେ ଦେଖା ହେଲେ ବୁଢ଼ୀ କହେ –"ହାଇରେ ତୁ ପରା ଇଂରାଜୀ ପାଠ ପଢ଼ି ତହସିଲଦାର ହେବୁ । ମୋ ପାଇଁ ଗୋଟିଏ ନାଲି ସିଲ୍କ ଶାଢ଼ୀ ଆଣି ଦେବୁ ?" ସେ କହେ "ହଁ ଲେଙ୍କେମା", କିନ୍ତୁ ଆଜି ଗଙ୍ଗାଜ୍ଜା ନାତିନାତୁଣୀଙ୍କୁ ଖୁବ୍ ମନେ ପକାଇଲା । ନଞ୍ଜିଜ୍ଜାକୁ ଗାଳି ଦେଇ ମନ୍ଦିରକୁ ଆସୁଥିବା ଲୋକମାନଙ୍କ ଆଗରେ ନିଜର ଦୁଃଖ ପ୍ରକାଶ କଲା ।

ଅପନ୍ନା କୁ କିନ୍ତୁ ତା'ଠାରୁ ଅଧିକ ଦୁଃଖ ଲାଗିଲା । ପାର୍ବତୀ ବିଭାଘରକୁ ସେ କେତେ ପରିଶ୍ରମ କରି ନଥିଲା ! ସେ ଦିନଠୁ ପାର୍ବତୀ ପ୍ରତି ତାର ଆତ୍ମୀୟତା ଓ ସ୍ନେହ ଆସି ଯାଇଥିଲା । ରମନ୍ନା ଭଲ ପାଠ ପଢ଼େ ବୋଲି ମଧ୍ୟ ତା'ମନରେ ଗର୍ବ ହୁଏ । ସର୍ବରାକାରର ହିସାବ ପତ୍ରରେ ରମନ୍ନା ସାହାଯ୍ୟ

Digitized by srujanika@gmail.com

କରେ ଏବଂ ନିଜେ ବଡ ହେଲେ ଇଲାକାଦାର ହେବ ଏକଥା ମଧ୍ୟ ସେ ଜାଣିଥିଲା । ରମାନ୍ କ ସଙ୍ଗରେ ବିଶେଷ କଥାବାର୍ତ୍ତା ନହେଲେ ମଧ୍ୟ ମନେମନେ ତାଙ୍କୁ ବହୁତ ସ୍ନେହ କରୁଥିଲା । ଅପନ୍ନା ତାଙ୍କ ପାଖରେ ଯାଇ ବସି ତାଙ୍କ କଥା ମନେ ପକାଇ ବହୁତ କାନ୍ଦିଲା ।

ସେ ବର୍ଷ ବର୍ଷା ଖୁବ୍ ହେଲା । ବାର୍ଷିକ ଫସଲ ଆଦାୟର ଅଗ୍ରାମ ହିସାବ ଲେଖା ମଧ୍ୟ ସରିଗଲା । ଦିନେ ମାଷ୍ଟ୍ରଙ୍କ ସ୍ତ୍ରୀ ଆସି କହିଲେ, "ଦେଖ ମୁଁ ବିଶ୍ୱର ନାଁରେ ଶୃଙ୍ଗେରୀ ଶାରଦା ଠାକୁରାଣୀଙ୍କ ପାଖରେ ଯେଉଁ ମାନସିକ କରିଥିଲି ତାହା ପୂରଣ କରିବା ଦରକାର । ସେଥିପାଇଁ ମୁଁ ପଇସା ମଧ୍ୟ ରଖିଛି । ଆଉ ଆଠଦିନ ଗଲେ ନବରାତ୍ରୀ ପର୍ବ ପଡିବ । ତୁମେ ବିଶ୍ୱକୁ ନେଇ ସେଠାକୁ ଯାଇ ପୂଜା କରି ଆସ ।"

ନଞ୍ଜମ୍ମା ମଧ୍ୟ ଶୃଙ୍ଗେରୀ ଯିବାକୁ ଠିକ୍ କଲା । କିଏ ଜାଣେ କେଉଁ ଦେବତାଙ୍କର କେତେ ଶକ୍ତି ! ବିଶ୍ୱ ଏବେ ମୋର ଏକମାତ୍ର ସନ୍ତାନ, ତେଣୁ ଯିବାକୁ ପଡିବ । ମାଷ୍ଟ୍ରେ ଶୃଙ୍ଗେରୀ ଯିବାପାଇଁ କେଉଁ ଗାଡିରେ ଯିବାକୁ ହେବ, କେଉଁଠି ଓହ୍ଲାଇବାକୁ ହେବ, ସବୁ ବତାଇ ଦେଲେ । କିଛି ବାଟ ରେଳଗାଡିରେ ଯିବାକୁ ହେବ । ତା'ପରେ ବସ୍‌ରେ । ଶୃଙ୍ଗେରୀ ରେ ରହିବା ପାଇଁ ଧର୍ମଶାଳା ଅଛି ଏବଂ ମଠରେ ଦିଓଳି ଭୋଜନ ମଧ୍ୟ ମିଳିବ ।

ବିଶ୍ୱ ସାଥିରେ ମୁଁ ତ ଯିବି, କିନ୍ତୁ ରେଳ ଗାଡିରେ ଦୂର ଦେଶରେ ସାଙ୍ଗରେ ଜଣେ ପୁରୁଷ ଲୋକ ରହିବା ଦରକାର । ଏତେ ଟଙ୍କା ମଧ୍ୟ କେଉଁଠୁ ଆସିବ ? ଏସବୁ ଭାବିଲା ବେଳକୁ ଦିନେ ଅପନ୍ନା ଆସି କହିଲା –"ତୁମେ କାହାକୁ କହିବ ନାହିଁ । ମୋ ପାଖରେ କୋଡିଏ ଟଙ୍କା ଅଛି । ତୁମକୁ ଦେଇ ଦେଉଛି ପରେ ସୁବିଧା ହେଲେ ଫେରାଇ ଦେବ । ତୁମେ ଯଦି କହିବ ମୁଁ ସାଙ୍ଗରେ ମଧ୍ୟ ଯିବି ।" ଚାଉଳ, ମାଣ୍ଡିଆ ଭିକ୍ଷାରେ ଯାହା ମିଳେ ସେ ସବୁ ବିକି ଗଙ୍ଗାମ୍ମା ଏବଂ ଅପନ୍ନା ପଇସା ରଖନ୍ତି । ସେଥିରୁ କେତେବେଳେ କେମିତି ମା'କୁ ଲୁଚାଇ ଅପନ୍ନା ନିଜର ପାନ, ବିଡି ଖର୍ଚ୍ଚ କରି ଦେଉଥିଲା ।

କୋଡିଏ ଟଙ୍କାରେ କିନ୍ତୁ ଶୃଙ୍ଗେରୀ ଖର୍ଚ୍ଚ ଉଠିବ ନାହିଁ । ଝିଅ ବିଭାଘର ପରେ ସବୁ ପଇସା ହାତରୁ ସରିଯାଇଥିଲା । କୁରୁବରହଲ୍ଲୀରୁ ମଧ୍ୟ କେତେ ଆଉ ଟଙ୍କା ମାଗିବ । ଅପନ୍ନା କହିଲା- "ଆମେ ଏଠୁ ତିପଟୁର ପର୍ଯ୍ୟନ୍ତ ବସ୍‌ରେ ନଯାଇ ଚାଲି ଚାଲି ଯିବା । ସେଠାରୁ ନିରସିଂହ-ରାଜ ପର୍ଯ୍ୟନ୍ତ ରେଳଗାଡିରେ ଯାଇ ସେଠାରୁ ଶୃଙ୍ଗେରୀ ପର୍ଯ୍ୟନ୍ତ ଚାଲିଚାଲି ଯିବା । ଏମିତି କଲେ କୋଡିଏ ଟଙ୍କାରେ ହୋଇଯିବ ।"

ତା'କଥାରେ ରାଜିହୋଇ ନଞ୍ଜମ୍ମା ଯିବାର ଠିକ୍ କଲା । ଚେନ୍ନିଗରାୟ୍ ଏକଥା ଶୁଣି ଯିବ ବୋଲି ବାହାରିଲା । ତାହା ହେଲେ ଆହୁରି ଟଙ୍କା ଦରକାର । ସେ କହିଲା –"ମୁଁ ଯେଉଁଠୁ ହେଲେ ଟଙ୍କା ଆଣିବି ସେ କଥା ଚିନ୍ତା କରନା ।" ନଞ୍ଜମ୍ମା କହିଲା –"କାହାର ଖଜଣା ବାବଦକୁ ଟଙ୍କା ଆଣି ପାରିବ

Digitized by srujanika@gmail.com

ନାହିଁ ।'' ଚେନ୍ନିଗରାୟ୍ ରାଜି ହେଲା । କେଉଁଠୁ ଟଙ୍କା ଆଣିଲା କେଜାଣି, ନିଜର ଖର୍ଚ୍ଚ ପାଇଁ ବ୍ୟବସ୍ଥା କରି ଦେଲା । ଏ ତିନିଜଣଙ୍କର ଖର୍ଚ୍ଚ କିନ୍ତୁ ଅଲଗା, ନଞ୍ଜମ୍ମା ପାଞ୍ଚସେର ଛତୁଆ ଗୁଣ୍ଡ ସାଙ୍ଗରେ ନେବା ପାଇଁ ଯୋଗାଡ କଲା । ଗଙ୍ଗାମ୍ମାର ମଧ୍ୟ ଯିବାକୁ ଇଚ୍ଛା ହେଉଥାଏ କିନ୍ତୁ ବୋହୂ ସାଙ୍ଗରେ କେମିତି ବା' ଯିବ । ତେଣୁ ଅପନ୍ନାକୁ ମଧ୍ୟ ଯିବା ପାଇଁ ମନାକଲା । ସେ କିନ୍ତୁ ମାନିଲା ନାହିଁ । କହିଲା – ''ସବୁ ଖର୍ଚ୍ଚ ତ ଭାଉଜ କରିବ, ମୁଁ କାହିଁକି ଯିବି ନାହିଁ ।''

ପ୍ଲେଗ୍ ପରେ ଗତ ଛଅମାସ ଧରି ନଞ୍ଜମ୍ମା ବିଶ୍ୱର ଖୁବ୍ ଯତ୍ନ ନେଇଥିଲା । ପ୍ରଥମରୁ ତା' ଶରୀର ହୃଷ୍ଟପୁଷ୍ଟ ଥିଲା । ଛଅମାସ ଘିଅ ଦୁଧ ଖାଇ ପୁଣି ପୂର୍ବ ଚେହେରା ଫେରି ଆସିଲା । ଦିନ ଠିକ୍ କରି ଦିନେ ବଡି ଭୋରରୁ ବିଶ୍ୱ ଏବଂ ଅପନ୍ନାକୁ ସାଙ୍ଗରେ ଧରି ରାସ୍ତାରେ ଖାଇବା ପାଇଁ ଜଳଖିଆ ବାନ୍ଧି ନଞ୍ଜମ୍ମା ଶୃଙ୍ଗେରୀ ଯିବା ପାଇଁ ବାହାରି ପଡିଲା । ଚେନ୍ନିଗା କହିଲା, ବସ୍‌ରେ ବସି ଚିପଟୁର୍ ଯାଏଁ ଯାଇ ସେଠାରେ ସେମାନଙ୍କ ସାଙ୍ଗରେ ଦେଖା କରିବ । ନଞ୍ଜମ୍ମା ସାଙ୍ଗରେ ଛତୁଆ, ଦିନକ ପାଇଁ ରୁଟି, ଦିଖଣ୍ଡ ବାସନ ଏବଂ ଖଣ୍ଡେ ଦିଖଣ୍ଡ ଚାଦର ଏବଂ ଲୁଗା ଗୋଟିଏ ଗଣ୍ଠିଲୀରେ ବାନ୍ଧି ଦେଇଥାଏ । ଅପନ୍ନା ଗଣ୍ଠିଲୀ ମୁଣ୍ଡାଇ ଆଗରେ ଚାଲିଲା । ବିଶ୍ୱର ଲୁଗାପଟା ଏବଂ ନିଜର ଶାଢୀ ଦିଖଣ୍ଡ ଆଉ ଗୋଟିଏ ଛୋଟ ବୁଜୁଳା କରି ନିଜେ ଧରି ନଞ୍ଜମ୍ମା ବିଶ୍ୱ ସାଙ୍ଗରେ ପଛେ ପଛେ ଚାଲିଥାଏ । ସକାଳ ହେଲାବେଳକୁ ସେମାନେ ଦିକୋଶ ବାଟ ପାର ହୋଇ ସାରିଥାନ୍ତି । ବିଶ୍ୱ ଦୌଡି ଦୌଡି ଅପନ୍ନାର ଆଗରେ ଚାଲିଥାଏ । ମା'କୁ ପାଟିକରି କହୁଥାଏ – ''ଦେଖ ମା' ମୁଁ ତୁମଠାରୁ କେତେ ଆଗରେ ଚାଲିଛି । ତିନିକୋଶ ଗଲାପରେ ବାଟରେ ଗୋଟିଏ କୂଅମୂଳରେ ବସି ସେମାନେ ରୁଟି ଏବଂ ଚଟଣୀ ଜଳଖିଆ ଖାଇଲେ । ଆଉ ଦୁଇ ତିନିମାଇଲ ଗଲା ପରେ ବିଶ୍ୱ ହାଲିଆ ହୋଇଗଲା । ଏବଂ ମା'ର ହାତ ଧରି ଚାଲିଲା । ଗୋଡ ବିନ୍ଧୁଥାଏ କିନ୍ତୁ ମା'କୁ କହୁନଥାଏ । ଏତିକିବେଳକୁ ବସ୍‌ଟା ସେଇ ବାଟ ଦେଇ ଚାଲିଗଲା । ଅପନ୍ନା କହିଲା –''ଦେଖିଲ, ଚେନ୍ନିଗା ପଛପଟେ ବସିଛି ।'' ନଞ୍ଜମ୍ମା ଦେଖିପାରି ନଥିଲା । ବିଶ୍ୱ ପଚାରିଲା –''ମା' ବସ୍‌ବାଲା କାହିଁକି ବାପାକୁ ଏକୁଟିଆ ବସାଉଛି । ଆମକୁ କାହିଁକି ବସାଉ ନାହିଁ ।''

''ଆରେ ବସ୍‌ବାଲା କ'ଣ ମାଗଣିଆ ବସାଇ ଦେବ ।'' ଆଉ କ'ଣ ଗାଳି ଦେଇଥାନ୍ତା କିନ୍ତୁ ନଞ୍ଜମ୍ମା ଇସାରା ଦେଇ ବନ୍ଦ କରାଇଲା । ଅପନ୍ନା ପୁଣି କହିଲା –''ଭାଉଜ ତୁମେ ଯାହା କହ ଆମ ଚେନ୍ନିଗା ସତରେ ବହୁତ ସ୍ୱାର୍ଥପର । ପିଲାଦିନୁ ସେ ଏଇମିତି । ତାକୁ କେବଳ ନିଜ ଚିନ୍ତା । ଏଭଳିଆ ଲୋକକୁ କେବଳ ଜୋତାରେ ମାରିବା କଥା ।'' ଅଶ୍ରାବ୍ୟ ଗାଳି ସ୍ୱଭାବତଃ ତା' ପାଟିରୁ ବାହାରି ଆସୁଥିଲା । କିନ୍ତୁ ନଞ୍ଜମ୍ମା କହିଲା– ''ଅପନ୍ନା ଆମେ ତୀର୍ଥଯାତ୍ରା ପାଇଁ ବାହାରିଛେ । ଏଭଳି ଖରାପ କଥା ମୁହଁରେ ଧରିବା କଥା ନୁହେଁ । ଆରେ ବିଶ୍ୱ, ମୁଁ ତତେ ସେ 'ଭଜ ଗୋବିନ୍ଦମ୍' ଭଜନ ଶିଖାଇଥିଲି ନା, ସେଇଟା ଗାଇଲୁ । ଆମେ ଯେଉଁ ଶୃଙ୍ଗେରୀ ମଠକୁ ଯାଉଛେ ସେଠାର ଶଙ୍କରାଚାର୍ଯ୍ୟ ଏ ଭଜନଟି ଲେଖିଛନ୍ତି ।''

ବିଶ୍ୱ ଭଜନଟା ବୋଲିଲା । ଯେଉଁଠି ଭୁଲ କରୁଥାଏ ନଞ୍ଜମ୍ମା ବତାଇ ଦେଉଥାଏ । ଅପନ୍ନା ଗଣ୍ଠିଲୀରୁ ପାନ କାଢି ମୁହଁରେ ପକାଇଲା । ରାସ୍ତାଯାକ ପାନପିକ ପକାଇ ଚାଲିଥାଏ ।

Digitized by srujanika@gmail.com

ଦ୍ୱିପହରର ଗୋଟାଏ ବେଳେ ତିପଟୂରରେ ରେଳଗାଡ଼ି ଧରିବା କଥା । ଏମାନେ ଧୀରେ ଧୀରେ ଚାଲି ବିଶ୍ରାମ ନେଇ ନେଇ ଯିବାରୁ ବାରଟା ବେଳେ ତିପଟୁର ରେଳ ଷ୍ଟେସନରେ ପହଞ୍ଚିଗଲେ । ସେଠାରେ ପୁଣି ରୁଟି ଏବଂ ଚଟଣୀ ଖାଇଲେ । ସେତିକିବେଳକୁ ଚେନ୍ନିଗରାୟ୍ ସେଠାରେ ପହଞ୍ଚିଲା । ଚେନ୍ନିଗରାୟ୍ ନିଜ ଟିକଟ କିଣିଲା । ଅପନ୍ନା ଦୁଇଟା ଟିକଟ ଗୋଟାଏ ଅଧା ଟିକଟ କିଣିଲା । ଗାଡ଼ିରେ ଯାଇ ସେମାନେ ତରୀକେରେ ଷ୍ଟେସନରେ ଓହ୍ଲାଇଲେ । ଚେନ୍ନିଗରାୟ୍ ଗାଁ ଭିତରକୁ ବୁଲିବା ପାଇଁ ଚାଲିଗଲା । ଏ ତିନିଜଣ ଷ୍ଟେସନର ପାଣି ପାଇପ ପାଖରେ ବସି ରୁଟି ଏବଂ ଚଟଣୀ ଖାଇ ପାଣି ପିଇଲେ । ସେଇଠି ଷ୍ଟେସନ ପ୍ଲାଟ୍‌ଫର୍ମର ଗୋଟିଏ କଡ଼କୁ ନଞ୍ଜମ୍ମା ଏବଂ ବିଶ୍ୱ ଚଦରଟା ପକାଇ ଶୋଇଗଲେ । ତାଙ୍କ ମୁଣ୍ଡ ଉପରକୁ ଗଣ୍ଠିଲାଟା ମୁଣ୍ଡ ତଳେ ଦେଇ ଅପନ୍ନା ମଧ୍ୟ ଶୋଇଗଲା । ପାଖ ହୋଟେଲରେ ଭୋଜନ କରି ଚେନ୍ନିଗରାୟ୍ ମଧ୍ୟ ଭାଇ ପାଖରେ ଆସି ଶୋଇଗଲା ।

ତା'ପର ଦିନ ସକାଳୁ ସେମାନଙ୍କ ପାଖରେ ଆଉ ଦି ଖଣ୍ଡ ରୁଟି ବଳିଥାଏ । ରୁଟି ଶୁଖି ଯାଇଥାଏ । ଚଟଣୀ ଚକ ପଟା ହୋଇଯାଇଥାଏ । ଅପନ୍ନା କହିଲା, "ହୋଟେଲରୁ ସମ୍ବର ଡାଲି ଆଣି ରୁଟି ବୁଡ଼ାଇ ଖାଇବା ?" ଚେନ୍ନିଗରାୟ୍ କାହାକୁ ନ ପଚାରି ନିଜେ ହୋଟେଲରେ ଖାଇବାକୁ ବସିଗଲା । ବିଶ୍ୱ କାନ୍ଦିବାରୁ ନଞ୍ଜମ୍ମା ଅପନ୍ନାକୁ କହିଲା –"ବିଶ୍ୱପାଇଁ ଦୁଇଟା ଇଡ୍‌ଲୀ ଦୋସା ଏବଂ ସମ୍ବର ନେଇ ଆସ । ତିନିଅଣା ଲାଗିବ ।"

ନରସିହ୍ମରାଜପୁର ପର୍ଯ୍ୟନ୍ତ ଛୋଟ ଲାଇନ୍ ରେଳରେ ବସି ବିଶ୍ୱ ଭାରି ଖୁସି । ଝରକାବାଟେ କେତେ ଗଛ ପତ୍ର ଦିଶୁଥାଏ । ଗଛମାନଙ୍କରେ ଲତା ମାଡ଼ି ରହିଥାଏ । ବର୍ଷାରତୁ ପରର ଜଙ୍ଗଲ ସବୁଜ ପତ୍ରରେ ଶୋଭା ପାଉଥାଏ । ଜଙ୍ଗଲରେ ଗୋଟିଏ ହାତୀ ଦେଖି ବିଶ୍ୱ ଜାଣିପାରିଲା ଯେ ଛବି ବହିରେ ଥିବା ହାତୀର ଚିତ୍ରଟି ଏହି ଜନ୍ତୁର । ସେ ପଚାରିଲା, "ମା' ଏଇଟାକୁ କ'ଣ ଜଙ୍ଗଲ କହନ୍ତି ।" ନଞ୍ଜମ୍ମା ମଧ୍ୟ ଏତେ ଘନ ଜଙ୍ଗଲ କେବେ ଦେଖିନଥିଲା ।

ଅପନ୍ନା କହିଲା –"ଏପଟେ ସବୁ ଏଭଳି ଜଙ୍ଗଲ । ଶିମୋଗା ପଟରେ ତ ଯା'ଠାରୁ ମଧ୍ୟ ଆହୁରି ଘଞ୍ଚ ଜଙ୍ଗଲ ।

"ତୁମେ ଶିମୋଗା କେବେ ଯାଇଥିଲ କି ?"

ଅପନ୍ନାର କ'ଣ ମନେ ପଡ଼ିଯିବାରୁ ଚୁପ୍ ରହିଲା । ନଞ୍ଜମ୍ମାର ମଧ୍ୟ ସେ ଘଟଣାଟି ମନେ ପଡ଼ି ଗଲା । ସେ ଭାବିଲା ଏକଥା ପଚାରିବା ଟା' ଠିକ୍ ହେଲା ନାହିଁ । ଅପନ୍ନାର ମନେ ପଡ଼ିଗଲା ଯେ ଏଇ ଭାଉଜକୁ ଲାତ ମାରି ପୁଲିସ ବାନ୍ଧି ପକାଇବ ବୋଲି ଲୁଚି କରି ସେ ବହୁତ ଜାଗା ବୁଲିଥିଲା । ମନେ ପଡ଼ିଯିବାରୁ ଝରକା ବାହାରକୁ ଚାହିଁ ଚୁପ ରହିଲା । ଚେନ୍ନିଗା ଗୁଣ୍ଡିପତ୍ର ପାଟିରେ ପକାଇ ବସିଥାଏ ।

ସେଦିନ ଦ୍ୱିପହର ବାରଟା ବେଳକୁ ରେଳଗାଡ଼ି ନରସିହ୍ମରାଜପୁରଠାରେ ପହଞ୍ଚିଲା ।

Digitized by srujanika@gmail.com

ବସ୍‌ବାଲାମାନେ ଷ୍ଟେସନରୁ ଓହ୍ଲାଉଥିବା ଯାତ୍ରୀମାନଙ୍କୁ ଘେରିଯାଇ "ଶୃଙ୍ଗେରୀ" "ଶୃଙ୍ଗେରୀ" ବୋଲି ପାଟି କରିବାରେ ଲାଗିଲେ । ଚେନ୍ନିଗରାୟ୍ ପଚାରିଲା, "ତୁମେ ସବୁ ବସ୍‌ରେ ଯିବ ନା ଚାଲି ଚାଲି ଯିବ ?"

"ପଇସା କାହିଁ ଯେ ବସ୍‌ରେ ଯିବୁ ?" ଅପନ୍ନା ଉତ୍ତର ଦେଲା ।

"ମୋ ଗୋଡଟା ମୋଡି ହୋଇଯାଇଛି । ମୁଁ ବସ୍‌ରେ ବସି ଆଗରେ ଯାଉଛି । ସେଠି ଧର୍ମଶାଳାରେ ରହିବା ବ୍ୟବସ୍ଥା କରିବି ।" ଏହା କହି ଚେନ୍ନିଗା ବସ୍‌ରେ ଚଢ଼ିଲା । ଅପନ୍ନା କହିଲା –"ଭାଇତୁ ଭାଉଜ ଓ ବିଶ୍ୱକୁ ସାଙ୍ଗରେ ନେଇଯା । ତିନି ଟଙ୍କା ଲାଗିବ । ପିଲାଟାକୁ କୋଳରେ ବସାଇ ଦେଲେ ତାର ଟିକଟ ପଇସା ନେଇ ନ ପାରେ । ମୁଁ ଚାଲି ଚାଲି ଯିବି ।"

"ମୋ ପାଖରେ ପଇସା ନାହିଁ । ତା' ପାଖରେ ଥିଲେ ସେ ଆସୁ ।" ଚେନ୍ନିଗା କହିଲା ଏବଂ ବସ୍‌ରେ ଚଢ଼ିଗଲା । ଯାତ୍ରୀଙ୍କର ଭାରି ଗହଳି ହୋଇଥାଏ । ବସ୍ ଛାଡିଦେଲା ।

ଶୁଖିଲା ରୁଟି ପାଣିରେ ବୁଡାଇ ତିନିଜଣ ଯାକ ଖାଇଲେ । ପେଟ ପୂରିଲା ନାହିଁ । ନଞ୍ଜକ୍କା ଛତୁଆ ତିଆରି କଲା ଏବଂ ଖାଇଲେ । ବିଶ୍ୱ ହାତରେ ଗୁଡ ଟେଳାଏ ଧରାଇ ଦେଲା । ଅପନ୍ନା ନଞ୍ଜକ୍କା ହାତରୁ ସାନ ବୁଜୁଲାଟି ମଧ୍ୟ ନେଇ ନିଜ ଗଣ୍ଠିଲାଟି ସାଙ୍ଗରେ ବାନ୍ଧି ମୁଣ୍ଡାଇ ଚାଲିଲା । ନଞ୍ଜକ୍କା ବିଶ୍ୱର ହାତ ଧରି ଚାଲିଲା ।

## 2

ନଞ୍ଜକ୍କା ମଧ୍ୟ ଏତେ ଘନ ଜଙ୍ଗଲ ଆଗରୁ କେବେ ଦେଖିନଥିଲା । ଗଛପତ୍ର ପ୍ରତି ତା'ମନରେ ସବୁବେଳେ ଏକ ଆକର୍ଷଣ ଥାଏ । ସେ ଯେତେବେଳେ ଖଲି ସିଲେଇବା ପାଇଁ ସକାଳୁ ଉଠି ପଳାଶପତ୍ର ତୋଳିବାକୁ ଯାଉଥିଲା, ପ୍ରାତଃ କାଳରେ ଗାଁ ଚାରି ପାଖରେ ଥିବା ସବୁଜ କ୍ଷେତର ଫସଲକୁ ଦେଖି ଖୁବ୍ ଆନନ୍ଦିତ ହେଉଥିଲା । ଏଠି କିନ୍ତୁ ନିବିଡ ଜଙ୍ଗଲ ବିଶାଳ ବୃକ୍ଷମାନଙ୍କ ସାଙ୍ଗରେ ଲଟା, ଛୋଟ ବୁଦା ଲାଗି ରହି ଏକ ଅଭେଦ୍ୟ ଦୁର୍ଗ ଭଳି ଠିଆ ହୋଇ ରହିଛି । ଏକ ଦିବ୍ୟ ସ୍ୱର୍ଗୀୟ ଭାବ ତା'ମନରେ ଜାତ ହେଉଥିଲା । କିନ୍ତୁ ଏତେ ସୁନ୍ଦର ପ୍ରାକୃତିକ ପରିବେଶ ମଧ୍ୟରେ ନଞ୍ଜକ୍କାକୁ ରମନ୍ନା ଏବଂ ପାର୍ବତୀର କଥା ମନେ ପଡୁଥାଏ । ଏ ଶାଗୁଆନ୍ ଗଛର ପତ୍ର ଗୁଡାକ କେତେ ଚଉଡା । ଗୋଟିଏ ପତ୍ରରେ ଜଣେ ଆରାମରେ ଭାତ ପରଷି ଖାଇ ପାରିବ । ପଳାଶ ପତ୍ର ଯଦି ଏତେ ବଡ ହେଉଥାନ୍ତା ତେବେ ଖଲି ସିଲେଇବାକୁ ପଡୁନଥାନ୍ତା । ପଳାଶ ପତ୍ର ତୋଳି ଘରକୁ ଆଣିଲା ବେଳେ ରମନ୍ନା ବଡ ପତ୍ରଟିଏ ଦେଖିଲେ

Digitized by srujanika@gmail.com

କେତେ ଖୁସି ହେଉ ନଥିଲା ? କିନ୍ତୁ ପଳାଶ ପତ୍ର ବଡ ହେଲେ ଖଲି ସିଲେଇବାକୁ ଅସୁବିଧା । ଖଲିଗୁଡାକ ବଡ ବଡ ହୋଇଯାଏ । ପଳାଶ ପତ୍ର ତୋଳିଲା ବେଳେ ରସ ଲାଗି ରମନ୍ନାର ଗୋଟିଏ କୁର୍ତ୍ତା ପୁରା ଚିହ୍ନ ହୋଇଯାଇଥିଲା । ସେଇ ପୁରୁଣା କୁର୍ତ୍ତାଟି ସେ ସବୁବେଳେ ପିନ୍ଧି ପତ୍ର ତୋଳିବାକୁ ମା' ସାଙ୍ଗରେ ଯାଏ ।

ପାର୍ବତୀ ପତ୍ର ତୋଳିବାକୁ ଗଲେ, ସବୁବେଳେ କ'ଣ ଗୋଟିଏ ଗୀତ ଗୁଣୁଗୁଣୁ ହୋଇ ଗାଉଥାଏ । ଗୀତ ଗାଇବାରେ ତାର ବହୁତ ସଉକ । ନକ୍ଷିକା ଠାରୁ ସେ ସବୁଗୀତ ଶିଖି ସାରିଥିଲା । ତାକୁ ବାରବର୍ଷ ହେଲା ଦିନଠାରୁ ମା'କୁ ଘୋରଣାରେ ମାଣ୍ଡିଆ ଚୁନା କରିବାକୁ ଦିଏ ନାହିଁ । ସକାଳୁ ଉଠି ଘୋରଣା ପାଖରେ ବସି କେତେ ସୁନ୍ଦର ଗୀତ ଗାଏ । ମାଷ୍ଟ୍ରେ ମଧ୍ୟ କହୁଥିଲେ ଯେ, ସୂର୍ଯ୍ୟନାରାୟଣ ହାରମୋନିୟମ୍ ବଜାଇ ମହାଭାରତ ଏତେ ସୁନ୍ଦର ଗାଆନ୍ତି ଯେ ଶୁଣିଲା ଲୋକ ଆଖିରୁ ଲୁହ ବୋହି ପଡେ । ତା' ଛଡା ଅନେକ ଶ୍ଳୋକ ଭଜନ ମଧ୍ୟ ତାଙ୍କୁ ଆସୁଥିଲା । ସେ ବଡ ଶାନ୍ତ ସ୍ୱଭାବର ଲୋକ । ରତ୍ନାର କେତେ ଯତ୍ନ ନେଉଥାନ୍ତି । ପୁରୁଷ ସିନା ଏଭଳି ହେଲେ ଭଲ । ସେପରି ପୁରୁଷ ସାଙ୍ଗରେ ସଂସାର କରିବା ପାର୍ବତୀ ଭାଗ୍ୟରେ ନଥିଲା । ନକ୍ଷିକା ମନେ ମନେ ସୂର୍ଯ୍ୟନାରାୟଣ ଓ ଚେନ୍ନିଗରାୟ ମଧ୍ୟରେ ତୁଳନା ମଧ୍ୟ କଲା । ନିଜ ସ୍ୱାମୀ ପ୍ରତି ଘୃଣା ଆସିବାରୁ ଭାବନାର ଧାରା ବଦଳାଇଲା ।

ଜଙ୍ଗଲ ଦେଖି ବିଶ୍ୱ ଖୁବ୍ ଖୁସି । "ମା' ଦେଖ ସେଇଠି କେତେ ବଡ ଆମ୍ବ ଗଛ । ତା' ପାଖ ଗଛଟା କେତେ ଉଚ୍ଚ । ଆକାଶକୁ ଲାଗିଛି ।" ଆଉ ଟିକିଏ ବାଟ ଯାଇ କହିଲା –"ମା' ମା' ଦେଖ, କେତେ ମାଙ୍କଡ । ମା' ଏ ମାଙ୍କଡ ଗୁଡାକ ସୁନ୍ଦର ନୁହଁ । ଆମ ଗାଁ ମାଙ୍କଡ ସୁନ୍ଦର ।" ନକ୍ଷିକା କହିଲା– "ଏ ଗୁଡାକ ପରା ଜଙ୍ଗଲୀ ମାଙ୍କଡ ।"

"ଆଉ ଆମ ଗାଁରେ ଯେଉଁ ମାଙ୍କଡ ଅଛନ୍ତି ସେ ଗୁଡାକ ?"

"ସେ ଗୁଡାକ ଗାଁ ମାଙ୍କଡ ।"

"ସେମାନେ ତ ଗାଁରେ ରହନ୍ତି ନାହିଁ । ସବୁବେଳେ ବଗିଚାରେ ଗଛ ଉପରେ ବସିଥାନ୍ତି ।"

ରାସ୍ତାରେ ଗୋଟିଏ ଦୁଇଟା ସାପ ମଧ୍ୟ ଦେଖାଗଲେ । ବିଶ୍ୱ ଆଗରୁ ସାପ ଦେଖିଥିଲା । ତାଙ୍କ ଗାଁରେ ମଧ୍ୟ ସାପ ଅଛନ୍ତି । ନକ୍ଷିକା କହିଲା –"ବଡ ସାବଧାନରେ ଯିବାକୁ ହେବ । ଜଙ୍ଗଲରେ ଅଜଗର ସାପ ମଧ୍ୟ ଥାଆନ୍ତି । ମଣିଷକୁ ପୁରା ଗିଳି ଯିବେ । କାଠଗଡା ପରି ରାସ୍ତାରେ ପଡିଥିବେ ।"

ଏହାପରେ କିଛିସମୟ ଡରିଯାଇ ବିଶ୍ୱ ମା' ହାତ ଧରି ଚାଲିଲା । କିନ୍ତୁ କିଛି ସମୟ ପରେ ପୁଣି ସେଇ ଆଡକୁ ଦୌଡି ଯାଇ ପାଟିକରିବା ଆରମ୍ଭ କରି ଦେଲା । ନକ୍ଷିକା ମଧ୍ୟ ବିଚାରରେ ମଗ୍ନ ହୋଇ ଚାଲିଥାଏ । ଅପନ୍ନାୟା ପ୍ରାୟ କୋଡିଏ ପାହୁଣ୍ଡ ଆଗରେ ଚାଲିଥାଏ । ହଠାତ୍ ମୁହଁ ବୁଲାଇ ନକ୍ଷିକା ଦେଖେତ ବିଶ୍ୱର ଦେଖା ନାହିଁ, ତାର ଛାତି ଧଡ଼କିନା ହେଲା । ମନରେ ଚିନ୍ତା ହେଲା ଯେ ଜଙ୍ଗଲରେ ବାଘ ଭାଲୁ ମଧ୍ୟ ଅଛନ୍ତି । ସାପ, ବିଛାଙ୍କର ସଂଖ୍ୟା ମଧ୍ୟ କମ୍ ନୁହେଁ । ପିଲାଟା ଗଲା କୁଆଡେ । ଅପନ୍ନା

Digitized by srujanika@gmail.com

କୁ ଡାକି କହିଲା –"ଶୁଣ,ବିଶ୍ୱ କୁଆଡେ ଗଲା ଦିଶୁନାହିଁ ?" ଦୁଇଜଣ ପଛକୁ ଏକ ଫର୍ଲଙ୍ଗ ଫେରି ଦେଖନ୍ତି ତ ବିଶ୍ୱ ଗୋଟିଏ ଛୋଟ ସପୁଆନ୍ ଗଛରେ ଚଢି ଗଛ ପାଖରେ ବସିଥିବା ମାଙ୍କଡମାନଙ୍କୁ ଖତେଇ ହେଉଛି । ନଣ୍ଡିମା ତାକୁ ଗଛରୁ ଓହ୍ଲାଇ ପଚାରିଲା –"କାହାକୁ ନ କହି ପଛରେ କାହିଁକି ରହିଗଲୁ ?"

"ମତେ ସେ ମାଙ୍କଡଟା କାହିଁକି ଖ୍ୱାଙ୍କାରି ହେଲା ? ମୁଁ ମଧ୍ୟ ତାକୁ ଖ୍ୱାଙ୍କାରି ହେଲି ।" ତା' ପରଠାରୁ ବିଶ୍ୱକୁ ପଛରେ ନ ରଖି ଆଗରେ ରଖାହେଲା ।

ଅପର୍ଣ୍ଣାକୁ କିନ୍ତୁ ଜଙ୍ଗଲଟା ବିଶେଷ ଭଲ ଲାଗୁ ନଥାଏ । ଏ ନିର୍ଜନ ଜଙ୍ଗଲ ଠାରୁ ଗାଁର କ୍ଷେତ, ବିଲ ସବୁଭଲ । ଏଠି ଧାନ, ମାଣ୍ଡିଆ କିଛି ନାହିଁ । ମାଣ୍ଡିଆ ଚକୁଳି ନ ଖାଇଲେ, ଦେହରେ ବଳ କେଉଁଠୁ ଆସିବ ? ସେ ଶୁଣିଥିଲା ଯେ ପାହାଡି ଲୋକେ ସମତଳ ଅଞ୍ଚଳର ଲୋକଙ୍କ ଭଳି ପରିଶ୍ରମୀ ଏବଂ ବଳୁଆ ନୁହଁନ୍ତି । ଏହିପରି ଭାବୁ ଭାବୁ ସେ ମଧ୍ୟ ନିଜର ଅତୀତ ଜୀବନ କଥା ଗୋଟି ଗୋଟି କରି ମନେ ପକାଇଲା । ତା' ଝିଅ ଜୟଲକ୍ଷ୍ମୀ ଏବଂ ପାର୍ବତୀ ଏକା  ବୟସର । ପୁଅ ରାମକୃଷ୍ଣ ବହୁତ ସାନ । ତା'ଟଳ ବୁଆଟା କ'ଣ ହେଲା କେଜାଣି ? ରାମକୃଷ୍ଣ ପ୍ରକୃତରେ ମୋରି ପୁଅ । ମା' କିନ୍ତୁ କେଜାଣି କାହିଁକି ମନା କଲା । ମୁଁ ତ ତାଙ୍କ ଗାଁକୁ ଯାଇ ରହିଥିଲି । ଏକଥା କ'ଣ ମୁଁ ଜାଣିନି ? ରାମକୃଷ୍ଣ ସ୍କୁଲକୁ ଯାଉଛି କି ନାହିଁ, କିଏ ଜାଣିଛି ? ପୁରୋହିତ ବ୍ୟବସାୟ କରିବ ବୋଲି ମନ୍ତ୍ର, ଶ୍ଳୋକ ଶିଖୁଛି ବୋଲି ଶୁଣୁଥିଲି । ଏକୁଟିଆ ଗାଁ ଗଣ୍ଡାବୁଲି ଦାନ, ଦକ୍ଷିଣା ଆଣୁଥିବ । ତାର ସ୍ତ୍ରୀ କଥା ମଧ୍ୟ ମନେ ପଡିଲା । ମତେ ମନେ ପକାଉଥିବ କି ନାହିଁ କେଜାଣି ? ମୋର  ତା' ବେକରୁ ମଙ୍ଗଳ ସୂତ୍ର ଚିଣ୍ଡାଇବାଟା ଉଚିତ ହେଲା ନାହିଁ । ସେ ମଧ୍ୟ ଯଦି ଖଲି ପତ୍ର ସିଇଁ ଦୁଃଖ ସୁଖରେ ମୋ ପାଖରେ ରହିଥାନ୍ତା ତେବେ କ'ଣ ହୋଇନଥାନ୍ତା ? ସେମାନଙ୍କୁ ସକାଳୁ ଉଠିଲେ କଫି ଦରକାର । ସବୁଦିନ ଆମ ଗରିବ ଲୋକଙ୍କ ଘରେ ଭାତ, ଡାଲି, ତରକାରୀ, ଚାହା କଫି କେଉଁଠୁ ଆସିବ ? ତା' ବାପା କ'ଣ ଟଙ୍କା ବୁଝୁଥାଏ ମୋ ଘରକୁ ପଠାଇଥିଲା କି ? ତଥାପି ସେ ନ ଯାଇଥିଲେ ଭଲ ହୋଇଥାନ୍ତା । ଏପରି ଭାବି ଭାବି ଅପର୍ଣ୍ଣାକୁ ବଡ ଏକୁଟିଆ ଲାଗିଲା । ତାକୁ ଏ ଜୀବନଟା ବଡ ନୀରସ ଜଣାପଡିଲା । ଲାଉଳକୁ କହିଲା ,"ଝିଅଟାର ବୋଧହୁଏ ବିଭାଘର କରାଇ ଦେବଣି ।"

"କେଉଁ ଝିଅ କଥା କହୁଛ ?"

ସଫା ସଫା କହିବାକୁ ସଙ୍କୋଚ ଲାଗୁଥାଏ । ନଣ୍ଡିମା ଆଉଥରେ ପଚାରିବାରୁ କଥାଟା ଲୁଚାଇ ଦେବା ପାଇଁ କହିଲା –"ନାଇଁ ମ, ମୁଁ ରେବଣ ସେଠୀର ଝିଅ ରୁଦ୍ରାଣୀ କଥା ଭାବୁଥିଲି ।"

"ସିଏ ତ ମରିବାର କେତେ ବର୍ଷ ହେଲାଣି । ଏବେ କାହିଁକି ପଚାରୁଛ ?"

ଏ ପ୍ରଶ୍ନର ଉତ୍ତର ନ ଦେଇ ଅପର୍ଣ୍ଣା ଚୁପ୍ ରହିଲା । ନିଜ ବିଚାରରେ ବୁଡି ରହିଥିବାରୁ ଅପର୍ଣ୍ଣାର ଏ ପ୍ରକାର ପ୍ରଶ୍ନର ପୃଷ୍ଠଭୂମି ନଣ୍ଡିମା ଜାଣି ପାରିଲା ନାହିଁ । ଦୁଇଜଣ ଚୁପ୍ ହୋଇ ଚାଲିଥାନ୍ତି । ବିଶ୍ୱ ନିଜକୁ

Digitized by srujanika@gmail.com

ନିଜେ କ'ଣ ସବୁ କହି କହି ଚାଲିଥାଏ । ଘଞ୍ଚ ଜଙ୍ଗଲ ପଡ଼ିଲେ ଡରିଯାଇ ମା'ର ହାତ ଧରି ଚାଲେ ।

ମଝିରେ କିଛି ସମୟ ବିଶ୍ରାମ ନେଇ ସେମାନେ ସନ୍ଧ୍ୟା ସାତଟା ବେଳକୁ ସାତକୋଶ ବାଟ ପାର ହୋଇ କୋପପାଠାରେ ପହଞ୍ଚିଲେ । ନଷ୍ଟିକ୍ସା ଭାବିଛି ଛତୁଆ ଗୁଣ୍ଡ ଖାଇବେ ନା, ଚାଉଳ ଗଣ୍ଡାଏ ଫୁଟାଇ ହୋଟେଲରୁ ତରକାରୀ କିଛି କିଣି ଖାଇ ନେବେ । ଅପନ୍ନା କହିଲା –"ଏଠାକାର ଧନୀ ଲୋକମାନେ ବହୁତ ଅତିଥି ଅଭ୍ୟାଗତ ଚର୍ଚ୍ଚା କରନ୍ତି । ଚାଲ ସେଠାକୁ ଯିବା । "

"ନାଇଁ ନାଇଁ, କାହା ଘରକୁ ଆମେ ଖାଇବା ପାଇଁ ଯିବା ନାହିଁ ।"

"ତେବେ ମୁଁ ଓ ବିଶ୍ୱ ଯାଉଛୁ । ତୁମେ ଭାତ ଗଣ୍ଡେ ଫୁଟାଇ ଖାଇ ପକାଅ । ତୁମ ପାଇଁ ହୋଟେଲରୁ ତରକାରୀ ଆଣି ଦେଉଛି ।"

"ନାଁ, ତୁମେ ମଧ୍ୟ ଯିବା ଦରକାର ନାହିଁ । ଆମେ ଯାହା ଆଣିଛେ ସେୟା ଖାଇ ରହିବା"

ଶେଷକୁ ସେଇୟା ହିଁ ହେଲା । ଇଟା ପକାଇ ଚୁଲି ଜଳା ହେଲା । ଅପନ୍ନା ଶୁଖିଲା କାଠ ପତ୍ର ଆଣିଦେଲା । ନଷ୍ଟିକ୍ସା ଭାତ ରାନ୍ଧି ଦେଲା । ହୋଟେଲରୁ ଦୁଇ ଅଣାର ତରକାରୀ ମଗାଇ ପେଟପୂରେ ଭୋଜନ କଲେ । ଗୋଟିଏ ଦୋକାନର ବାରଣ୍ଡାରେ ଶୋଇଗଲେ । ସକାଳୁ ଉଠି ହାତ, ମୁହଁ ଧୋଇ ନଷ୍ଟିକ୍ସା ଛତୁଗୁଣ୍ଡ ବତୁରାଇଲା । ଅପନ୍ନା ଗୋଟିଏ ନଡ଼ିଆ ମିଶାଇ ତିନିଜଣ ପେଟେ ଲେଖାଏଁ ଖାଇଲେ । କିଛି ବଳି ପଡ଼ିବାରୁ ବିଶ୍ୱ ପାଇଁ ପୁଡ଼ାରେ ବାନ୍ଧି ରଖିଲା । ତା'ପରେ ଆଗକୁ ଚାଲିଲେ । ଦୁଇଦିନ ଧରି ଚାଲୁଥିବାରୁ ବିଶ୍ୱର ଗୋଡ ଦରଜ ହୋଇଯାଇଥାଏ । ନଷ୍ଟିକ୍ସାକୁ ମଧ୍ୟ କଷ୍ଟ ହେଉଥାଏ, କିନ୍ତୁ ଆଉ ଉପାୟ କ'ଣ ? "ଗୋଡ କାଟୁଛି କି ପୁଅ ?" ବୋଲି ପଚାରିବାରୁ "ନାହିଁ ମା' " କହି ବିଶ୍ୱ ଆଗକୁ ଦୌଡ଼ି ଚାଲିଲା । ଆଉ ବାରମାଇଲ ଚାଲିବାକୁ ହେବ । ଶୀଘ୍ର ଶୀଘ୍ର ଚାଲି ଦ୍ୱିପ୍ରହର ବେଳକୁ ହରିପୁର ଠାରେ ପହଞ୍ଚିଲେ । ସେଠାରେ ନଦୀରେ ସ୍ନାନ କରି ମନ୍ଦିରରେ ଭଗବାନଙ୍କ ଦର୍ଶନ କଲେ । ସେଠାରେ ଥିବା ଗୋଟିଏ ମଠରେ ଭୋଜନ ମିଳିଗଲା । ଆହୁରି ଅନେକ ସ୍ତ୍ରୀ ଲୋକ ମଧ୍ୟ ଖାଇବାକୁ ବସିଥିବାରୁ ନଷ୍ଟିକ୍ସାକୁ ସଂକୋଚ ଲାଗିଲା ନାହିଁ । ଖାଇସାରି ବିଶ୍ୱ ଢୁଳାଇଲା । ଶୃଙ୍ଗେରୀ ଆହୁରି ଛଅ ମାଇଲ ବାଟ । ନଷ୍ଟିକ୍ସାର ଗୋଡ ବହୁତ ଦରଜ ହୋଇଯାଇଥାଏ । ସେମାନେ ସେ ରାତିଟା ସେଠି ରହି ତା'ପର ଦିନ ସକାଳୁ ଯିବାକୁ ସ୍ଥିର କଲେ । ବିଶ୍ୱ ଏବଂ ଅପନ୍ନା ଶୋଇଗଲେ । ନଷ୍ଟିକ୍ସା ନଦୀ କୂଳରେ ଯାଇ ବାଲିରେ ବସିଲା । ଗୋଡ ଦୁଇଟା ପାଣିରେ ବୁଡ଼ାଇ ରଖିଥାଏ । ଭାରି ଆରାମ ଲାଗୁଥାଏ । ପୁଣି ରମନ୍ନା ଏବଂ ପାର୍ବତୀଙ୍କ କଥା ମନେ ପଡ଼ିଲା । ପିଲା ଦୁଇଟା ବଞ୍ଚିଥିଲେ ଏଠାକୁ ଆସି କେତେ ଖୁସି ହୋଇଥାନ୍ତେ । ସମସ୍ତେ କଥାବାର୍ତ୍ତା ହୋଇ ଚାଲିଥାନ୍ତୁ । ମୁଁ କେତେ ଅଭାଗିନୀ । ଏପରି ଭାବି ଆଖିରୁ ଲୁହ ବୋହିଗଲା । ସଞ୍ଜବେଳ ପର୍ଯ୍ୟନ୍ତ ସେଇଠି ସେମିତି ବସି ରହିଲା । ଅପନ୍ନା, ବିଶ୍ୱ ଆସି ଡାକିବାରୁ ଉଠିଲା ।

Digitized by srujanika@gmail.com

3

ଏମାନେ ଶୃଙ୍ଗେରୀରେ ପହଞ୍ଚିଲା ବେଳକୁ ଚେନ୍ନିଗରାୟ୍ ପାଇଁ ସେ ଜାଗା ପୁରୁଣା ହୋଇଗଲାଣି । ମଠ, ଗୋଦାମ, ରୋଷେଇ ଘର, କେଉଁଠି କେତେ ବଖରା ଘର, ପ୍ରତ୍ୟେକ ବଖରାରେ କେତେ ଜଣ ଲୋକଏଁ ବସି ଖାଇ ପାରିବେ, କେଉଁ ବଖରାରେ ବସିଲେ ଶୀଘ୍ର ଖାଇବାକୁ ମିଳିବ, ଏସବୁ ବୁଝି ସାରିଥିଲା । ତା'ଛଡା ନଦୀ ପାର ହୋଇ ଆର ପଟେ ଥିବା ଦର୍ଶନୀୟ ସ୍ଥାନ ମଧ୍ୟ ଦେଖି ସାରିଥିଲା । ଚେନ୍ନିଗା ରହିବା ପାଇଁ ବଖରାଏ ଘର ପାଇଁ ଚେଷ୍ଟା କଲା । କିନ୍ତୁ ନବରାତ୍ରୀ ପର୍ବ ପାଇଁ ଯାତ୍ରୀମାନଙ୍କର ପ୍ରବଳ ଭିଡ ଯୋଗୁଁ ଜାଗା ମିଳିଲା ନାହିଁ । ଧର୍ମଶାଳାର ଗୁମାସ୍ତା ଆଗରେ ମୁଣ୍ଡିଆ ମାରିବାରୁ ଉପର ମହଲାର ସିଡି ତଳେ ରହିବା ପାଇଁ ଅନୁମତି ମିଳିଲା । ଉପର ମହଲାକୁ ଯିବା ଲୋକ ଖଟ୍ ଖଟ୍ ହେଉ ମଧ୍ୟ ରହିବା ପାଇଁ ଅନ୍ୟ ଜାଗା ନଥିଲା । ଧର୍ମଶାଳାର ଚଉକିଦାର ମଧ୍ୟ ସେଠାରେ ରହୁଥିବାରୁ ଗଣ୍ଠିଳାପତ୍ର ସେ ଘରେ ଛାଡି ଯିବାରେ କିଛି ଅସୁବିଧା ରହିଲା ନାହିଁ ।

ଶୃଙ୍ଗେରୀରେ ପହଞ୍ଚିଲା ସଙ୍ଗେ ସଙ୍ଗେ ନଞ୍ଜିକାକୁ ନିଜ ସ୍ୱାମୀ ଚେନ୍ନିଗାର ଦର୍ଶନ ମିଳିଗଲା । ଧର୍ମଶାଳାରେ ତାଙ୍କ ଜାଗାରେ ନିଜର ଲୁଗାପଟା ରଖିଲେ । ନଦୀକୁ ଯାଇ ଗାଧୁଆ ପାଧୁଆ ମଧ୍ୟ କଲେ । ସେତେବେଳକୁ କୁଙ୍କୁମାର୍ଚ୍ଚନ ପାଇଁ ସମୟ ଗଡି ଯାଇଥିଲା । ତେଣୁ ଠିକ୍ କଲେ ଯେ କାଲି ସକାଳୁ ଆସି ଶୀଘ୍ର କରାଇବେ । ମନ୍ଦିରରେ ମୁଣ୍ଡିଆ ମାରି ସାରି ମଠରେ ଭୋଜନ କଲେ । ଭୋଜନ ପରେ ନଦୀ ଆରପଟେ ଥିବା ନରସିହ୍ନ ବଗିଚା ଏବଂ ଅନ୍ୟାନ୍ୟ ସ୍ଥାନ ଦେଖିବାକୁ ବାହାରିଲା ବେଳକୁ ଚେନ୍ନିଗା ମଧ୍ୟ ସାଙ୍ଗରେ ବାହାରିଲା । ବିଶ୍ୱ ଥଟ୍ଟା କଲା –"ତୁମେ ଆମକୁ ଛାଡି ବସ୍‌ରେ ଚାଲି ଆସିଥିଲ । ଏବେ କାହିଁକି ଆମ ସାଙ୍ଗରେ ଆସୁଛ ?" ଅପର୍ଣ୍ଣା ମଧ୍ୟ ବିଶ୍ୱକୁ ସମର୍ଥନ ଜଣାଇଲା । ନଞ୍ଜିକା ସେମାନଙ୍କୁ ବୁଝାଇ ଚୁପ୍ କରାଇଲା ।

ନରସିହ୍ନ ବଗିଚା ଖାଲି ଗୋଲାପ ଗଛରେ ଭରପୁର । ନଞ୍ଜିକା ଏକାଠି ଏତେ ଗୋଲାପ ଗଛ କେବେ ଦେଖିନଥିଲା । ଏ ବଗିଚାରୁ ଯେତେ ଇଚ୍ଛା ଫୁଲ ତୋଳି ଶାରଦା ଠାକୁରାଣୀଙ୍କୁ ଚଢାଯାଏ । ଭକ୍ତ ଲୋକମାନେ ଫୁଲ ତୋଳି ନେଉଆନ୍ତି । ବିଶ୍ୱ ଧାଇଁ ଧାଇଁ ଅନେକ ଫୁଲ ତୋଳିଲା । ହାତରେ କଣ୍ଟା ଗଳି ଗଲେ ମଧ୍ୟ ସେଥିକୁ ଖାତିର ନଥାଏ । ମା' ହାତରେ ଫୁଲ ଧରାଇ କହିଲା –"ମା' ନିଅ ତୁମେ ଲଗାଇବ ।" ନଞ୍ଜିକା କହିଲା –"ନାଁ, ନାଁ ଏ ଫୁଲ କେବଳ ଠାକୁରାଣୀଙ୍କ ପାଇଁ," କହି ଫୁଲ ତା' ହାତରୁ ନେଇଗଲା । ତା'ର ପାର୍ବତୀ କଥା ପୁଣି ମନେ ପଡିଗଲା । ପାର୍ବତୀର ମୁଣ୍ଡବାଳ କେତେ ଲମ୍ବା । ବେଣୀ ପକାଇଲେ କେତେ ସୁନ୍ଦର ଦିଶେ । ରମନ୍ନା ମୁହଁ ଅନ୍ଧାରରୁ ଉଠି କେତେ ଫୁଲ ତୋଳି ଆଣିଦିଏ । ପାର୍ବତୀ ମନ ଲଗାଇ କେତେ ସୁନ୍ଦର ଫୁଲମାଳ ଗୁନ୍ଥୁଥିଲା । ଦିନେ ଫୁଲମାଳ ପିନ୍ଧି କେତେ ସୁନ୍ଦର ଦିଶୁଥିଲା । ଥରେ ରମନ୍ନା ମଧ୍ୟ ସ୍କୁଲ ବଗିଚାରୁ ଦୁଇଟା ଗୋଲାପ ଫୁଲ ଆଣି ପାର୍ବତୀକୁ ଦେଇଥିଲା । ଭାଇ ଭଉଣୀଙ୍କ ଭିତରେ ସତେ କେତେ ସ୍ନେହ, କେତେ ଅନ୍ତରଙ୍ଗତା ନଥିଲା !

Digitized by srujanika@gmail.com

ମନରେ ପିଲା ଦୁଇଟାଙ୍କର ସ୍ମୃତି ଆସି ଟିକିଏ ଦୁଃଖିତ ହେଲେ ମଧ୍ୟ ନନ୍ଦିଙ୍କା ସବୁ ଜାଗା ବୁଲି ଦେଖୁଥାଏ । ଚେନ୍ନିଗରାୟ୍ ଆଗରୁ ସେ ସବୁ ଦେଖିଥିବାରୁ ସମସ୍ତଙ୍କୁ ବୁଝାଉଥାଏ । ଫେରିଲା ବେଳକୁ ଓଦା ଗାମୁଛାରେ ଗୁଡ଼ାଇ ଆଣିଥିବା ଗୋଲାପ ଫୁଲ ଠାକୁରାଣୀଙ୍କ ମନ୍ଦିରରେ ଚଢ଼ାଇଲେ ।

ତା'ପର ଦିନ କୁକୁମାଳିନ ପାଇଁ ଶୀଘ୍ର ବାହାରି ପଡ଼ିଲେ । ପୂଜା ସରିଲା ପର୍ଯ୍ୟନ୍ତ ବିଶ୍ୱକୁ ମଧ୍ୟ ରହିବାକୁ ପଡ଼ିବ । ସକାଳ ସାଢ଼େ ସାତଟା ବାଜି ସାରିଥାଏ । ଚେନ୍ନିଗରାୟ୍ କୁଆଡ଼େ ବାହାରକୁ ଯାଇଥିଲା ଗୁଡ଼ାଏ କଇଁଚା ଧରି ଫେରିଲା । ଆସି ନନ୍ଦିଙ୍କାକୁ ଆଦେଶ ଦେଲା –"ଭଲ ଜିନିଷ ମିଳିଲା ବୋଲି ନେଇ ଆସିଲି । ଯାକୁ ଭଲ କରି ଭାଜି ଦିଅ ।"

"କ'ଣ ଥଟ୍ଟା କରିବାକୁ ଆଉ ସମୟ ପାଇଲନି ? ଏବେ ପରା ପୂଜା ପାଇଁ ମନ୍ଦିରକୁ ବାହାରିବୁ ।"

"ମନ୍ଦିରରୁ ଫେରି ଭାଜି ଦେବ । ମଠକୁ ଖାଇବାକୁ ଗଲାବେଳେ ସାଙ୍ଗରେ ନେଇ ଯିବି । ତାଙ୍କ ତରକାରୀ ଗୁଡ଼ାକରେ ଲୁଣ ଲଙ୍କା ଠିକ୍ ନଥାଏ ।"

"ହଜାର ହଜାର ଲୋକ ଖାଉଛନ୍ତି । ତୁମେ ଏଠୁ ଖାଇବାକୁ ନେଇଗଲେ ଲୋକେ ହସିବେ ନାହିଁ ?"

"କିଏ ହସିବ ? ସେ ଶଳାଙ୍କ - - - - - - - ।"

ଅପନ୍ନା କହିଲା –"ଏଠି ଚୁଲି କାହିଁ, ମସଲା କାହିଁ ? ମସଲା ବାଟିବ କେଉଁଠି ? ତୋର କଇଁଚା ଖାଇବାକୁ ଏବେ କାହିଁକି ଇଚ୍ଛା ହେଲା ?"

"ଧର୍ମଶାଳାରେ ଶିଳ ଅଛି । ମସଲା ବାଟି ହେବ । ଏଇଠି ତିନିଟା ଇଟା ରଖି ଦେଲେ ଚୁଲି ହୋଇଗଲା । ଚଉକିଦାରକୁ କହିଲେ କାଠ ଦିଖଣ୍ଡ ଆଣି ଦେବ ।"

"ମା' କୁ କେବେ କର ନାହିଁ ।" ବିଶ୍ୱ କହିଲା ।

"ଆବେ, ତୁ କ'ଣ ଏପରି କହୁଛୁ ?" ଚେନ୍ନିଗା ରାଗିଲା । ଚଉକିଦାର ଏପରି ଗାଳି ଗୁଲଜ ଶୁଣି ଆସି କହିଲା – "ଆହେ, ଏପରି ଖରାପ ଭାଷାରେ କଥାବାର୍ତ୍ତା ହେଲେ ଧର୍ମଶାଳାର ବ୍ୟବସ୍ଥାପକ ଏଠାରୁ ତୁମମାନଙ୍କୁ ତଡ଼ି ଦେବେ । ଏଇଠି ଇଟା ପକାଇ ଚୁଲି ଜଳାଇବା ମନା । ଘର ମଇଳା ହୋଇଯିବ ।"

ଚେନ୍ନିଗରାୟ୍‌କୁ କଇଁଚ ଭଜା ଖାଇବା ଆଶା ଛାଡ଼ିବାକୁ ପଡ଼ିଲା । ଗାଁରେ ଏତେ ଭଲ କଇଁଚା ମିଳୁ ନାହିଁ । ଏଠିକି ଆସି କିଛି ଲାଭ ନାହିଁ । ମନେ ମନେ ଧର୍ମଶାଳା ମ୍ୟାନେଜରକୁ ଗାଳି ଦେଇ ରାଗଶାନ୍ତି କଲା ।

Digitized by srujanika@gmail.com

ମନ୍ଦିରରେ କୁଙ୍କୁମାର୍ଚ୍ଚନ କରାଇଲାବେଳେ ନଷ୍ଟିଆର ମନରେ ଅଦ୍ଭୁତ ଶାନ୍ତି ଆସିଲା । ଶାରଦା ଠାକୁରାଣୀଙ୍କର ମୂର୍ତ୍ତି ଦେଖି ତାର ମନରେ ବହୁତ ଭକ୍ତିଭାବ ଆସିଲା । ଅନେକ ଭକ୍ତଜନ ଏକତ୍ରିତ ହୋଇ କୁଙ୍କୁମାର୍ଚ୍ଚନ କରାଉଥାନ୍ତି । ଦେବୀଙ୍କର ରୂପ କେତେ ସୁନ୍ଦର ଦିଶୁଥାଏ । ତଥାପି କେତେ ଗାମ୍ଭୀର୍ଯ୍ୟ ପୂର୍ଣ୍ଣ ତାଙ୍କର ଆଖି ଦୁଇଟା । ଗାଁର କାଳୀ ମୂର୍ତ୍ତିଙ୍କର ମୁହଁ ଦେଖିଲେ ବହୁତ ଡର ଲାଗେ । ଏଠାରେ କିନ୍ତୁ ଦେବୀଙ୍କର ଦର୍ଶନ ପରେ ଡର ଭୟ ସବୁ ଦୂର ହୋଇ ଯାଉଛି । ଦେବୀଙ୍କର କୃପାରୁ ହିଁ ବିଶ୍ୱ ବଞ୍ଚିଗଲା । ଆଜିଠାରୁ ସୁଖଦୁଃଖରେ ଶାରଦା ମା'ଙ୍କୁ ସଦା ମନରେ ରଖିବା ଉଚିତ । ଏପରି ଭାବି ସେ ବିଶ୍ୱକୁ ତିନିଥର ସାଷ୍ଟାଙ୍ଗ ପ୍ରଣିପାତ କରାଇଲା । ସମସ୍ତେ ମନ୍ଦିର ବେଢା ପ୍ରଦକ୍ଷିଣ କରି ମୁଣ୍ଡିଆ ମାରିଲେ । ମାନସିକ କରିଥିବା ଚାରିଅଣା ପଇସା ମନ୍ଦିର ଡବାରେ ପକାଇ କୁଙ୍କୁମ ପ୍ରସାଦ ଆଣିଲେ । ଅପନ୍ନା ମଧ୍ୟ ବଡ ଭକ୍ତି ଭାବରେ ଠାକୁରାଣୀଙ୍କୁ ମୁଣ୍ଡିଆ ମାରିଲା ।

ତା'ପର ଦିନ ସକାଳୁ ନିତ୍ୟକର୍ମ ସାରିଲା ବେଳକୁ ସକାଳ ସାଢେ ସାତଟା ବାଜିଥାଏ । ସ୍ନାନ ପାଇଁ ନଦୀକୁ ଯିବାକୁ ପଡିବ । ବିଶ୍ୱ ଧର୍ମଶାଳା ବାହାରେ ଖେଳୁଥିବ ବୋଲି ସମସ୍ତଙ୍କ ଧାରଣା । କିନ୍ତୁ ଖୋଜିଲା ବେଳକୁ ସେ ସେଠାରେ ନାହିଁ । ଚେନ୍ନିଗରାୟୁ ଏକୁଟିଆ ନଦୀ କୂଳକୁ ଚାଲିଯାଇଥାନ୍ତି । ନଷ୍ଟିଆ ଏବଂ ଅପନ୍ନା ଯାତ୍ରୀଙ୍କ ଭିଡ ମଧ୍ୟରେ ବିଶ୍ୱକୁ କିପରି ଖୋଜିବେ ଚିନ୍ତା କରୁ କରୁ ସେ କୁଆଡୁ କାନ୍ଦି କାନ୍ଦି ଆସି ପହଞ୍ଚିଲା । ମା'ର ଲୁଗା କାନି ଭିଡି ଭିଡି କହିଲା – "ମା' ମୁଁ ଦୋସା ଖାଇବି । ମୋ ପାଇଁ ଆଣିଦିଅ । ବାପା ହୋଟେଲରେ ବସି ଦୋସା ଖାଉଛନ୍ତି । ମୋର ମଧ୍ୟ ଇଚ୍ଛା ହେଉଛି ।" ଏହା କହି ଜିଦ୍ ଧରି କାନ୍ଦିଲା । ଅପନ୍ନା ପଚାରିଲା – "ତୁ କୁଆଡେ ଯାଇଥିଲୁ କି ?"

"ବାପା ହୋଟେଲ କୁ ଯାଉଥିଲେ, ମୁଁ ତାଙ୍କ ପଛେ ପଛେ ଗଲି । ସେ ଦୁଇଟା ଦୋସା ପାଇଁ ବରାଦ ଦେଲେ । ମତେ ଦେଖି 'ତୁ କାହିଁକି ଆସିଛୁ ?' ବୋଲି ଗାଳି ଦେଲେ । ମୁଁ ଦୋସା ମାଗିବାରୁ କହିଲେ 'ମୋ ପାଖରେ ପଇସା ନାହିଁ । ତୁ ଯା' ମା'କୁ କହି ଛତୁଆ ଗୁଣ୍ଡ ଖାଇବୁ ।' ତା'ପରେ ମୁଁ ହୋଟେଲବାଲାକୁ ଦୋସା ମାଗିଲି । ବାପା ତାଙ୍କୁ କହିଲେ – 'ଏ ପିଲାକୁ ଦୋସା ଦେଲେ ମତେ ପଇସା ମାଗିବ ନାହିଁ ।' ତାପରେ ହୋଟେଲବାଲା ମତେ ଗାଳି ଦେଇ ବାହାର କରିଦେଲା ।"

ଅପନ୍ନା କହିଲା –"ଏଠି ଛତୁଆ ଗୁଣ୍ଡ ମଧ୍ୟ ଖାଉଛି ଏବଂ ଲୁଚି ଲୁଚି ହୋଟେଲରେ ମଧ୍ୟ ଖାଉଛି । ପକ୍କା ଚୋରଟାଏ ।"

"ସେ ଯାହା ଖାଇଲେ ଖାଆନ୍ତୁ । ତୁମେ କିଛି କହ ନାହିଁ । ତୁମେ ବିଶ୍ୱକୁ ନେଇ ଦୋସା କିଣାଇ ଦିଅ ।"

ବିଶ୍ୱ ପାଇଁ ଗୋଟିଏ ଦୋସା ଅଣାଇ ଦିଆଗଲା । ତାପରେ ତିନିହେଁ ନଦୀକୁ ଗାଧୋଇବାକୁ ଗଲେ । ନଦୀର ବଡ ବଡ ମାଛ ଦେଖି ବିଶ୍ୱ ବହୁତ ଖୁସି । ଅପନ୍ନା କହିଲା ଯେ ଏଭଳି ବଡ ବଡ ମାଛ ସେ

Digitized by srujanika@gmail.com

ରାମନାଥ ପୁରରେ ମଧ୍ୟ ଦେଖିଛି । କ'ଣ ଟିକିଏ ପାଣିରେ ପକାଇ ଦେଲେ କେତେ ମାଛ ମାତି ଆସନ୍ତି । ବିଶ୍ୱ ପକେଟରୁ ଚଣା ବାହାର କରି ମାଛଙ୍କ ଉପରକୁ ପକାଇଲା । ତା' ଇଚ୍ଛା ସେ ସାରା ଦିନ ସେଇଠି ବସି ମାଛଙ୍କ ଖେଳ ଦେଖୁଥାନ୍ତା ।

ନନ୍ଦିନୀ ସ୍ନାନ ଘାଟଠାରୁ ଟିକିଏ ଦୂରକୁ ଯାଇ ଗାଧୋଇ, ଗଛ ଉହାଡରେ ଲୁଗା ବଦଳାଇ ଆସିଲା । ତା'ପରେ ଅପନ୍ନା ଏବଂ ବିଶ୍ୱ ଗାଧୋଇବାକୁ ଗଲେ । କିନ୍ତୁ କେତେବେଳେ ବିଶ୍ୱ ଏମାନଙ୍କ ହାତରୁ ଖସିଯାଇ ନଦୀ ସୁଅରେ ଭାସି ଭାସି ଯାଉଥାଏ । କିନ୍ତୁ ପହଁରା ଜାଣିଥିବାରୁ ପାଣିରେ ବୁଡି ଯାଉନଥାଏ । ନନ୍ଦିନୀ ଚିତ୍କାର କଲା –"ମୋ ପୁଅକୁ ବଞ୍ଚାଅ ।" ଅପନ୍ନା ସଙ୍ଗେ ସଙ୍ଗେ ନଦୀ ଭିତରକୁ କୁଦି ପଡିଲା । ସେତେବେଳକୁ ବିଶ୍ୱ ଅନେକ ଦୂରକୁ ଭାସି ଯାଇଥାଏ । ଅପନ୍ନା ଶୀଘ୍ର ଶୀଘ୍ର ପହଁରି ଯାଇ ବିଶ୍ୱର ହାତକୁ ଧରିଲା ଏବଂ କୂଳକୁ ଟାଣି ଆଣିଲା । ନନ୍ଦିନୀ ଦେହରେ ସତେ ଯେପରି ପ୍ରାଣ ପଶିଲା । ଧାଇଁ ଯାଇ ବିଶ୍ୱକୁ କୋଳ କରି ପକାଇଲା । ପାଟିତୁଣ୍ଡ ଶୁଣି ବହୁତ ଲୋକ ଜମା ହୋଇ ଯାଇଥିଲେ ।

ବିଶ୍ୱ କହିଲା –"ମା' ପୋଖରୀରେ ପହଁରିବା ସହଜ । ନଦୀରେ ପହଁରିଲେ ଭସାଇ ନେଇ ଯାଉଛି ।" ନନ୍ଦିନୀ ରାଗିଯାଇ ଚାପୁଡାଏ ମାରିଲା । କିନ୍ତୁ ବିଶ୍ୱ କହିଲା – "ମୋର ପହଁରିବାକୁ ଇଚ୍ଛା ହେଲା ।" ପାଖରେ ଠିଆ ହୋଇଥିବା ଜଣେ ଲୋକ କହିଲା ,"ଆଉ ଟିକିଏ ଆଗକୁ ଭାସି ଯାଇଥିଲେ ଭଉଁରୀରେ ପଡିଥାନ୍ତୁ ।"

ଶୃଙ୍ଗେରୀରେ ସେମାନେ ଚାରିଦିନ ରହିଲେ, ସବୁଦିନ ସକାଳୁ ଶାରଦା ଠାକୁରାଣୀଙ୍କର ପୂଜା ଆଳତୀ ଏବଂ ଶଙ୍କରାଚାର୍ଯ୍ୟ ପୀଠର ପୂଜା ଆରାଧନା ମଧ୍ୟ ଦେଖନ୍ତି । ଅପନ୍ନା ଦିନେ ପଚାରିଲା– "ଭାଉଜ ତୁମ ପାଖରେ ଆଉ କେତେ ପଇସା ବଳିଛି ହିସାବ କର । ତିପ୍‌ଟୁର୍ ପର୍ଯ୍ୟନ୍ତ ରେଳ ଟିକଟ ପାଇଁ ପଇସା ହେଲେ ଯଥେଷ୍ଟ । ଯଦି ଅଧିକା ବଳିଛି ତେବେ ପଅରଦିନ ତୁମେ ଚେନ୍ନିଗା ସାଙ୍ଗରେ ଏଠାରୁ ବସ୍‌ରେ ନରସିଂହରାଜପୁର ପର୍ଯ୍ୟନ୍ତ ଚାଲିଯିବ । ମୁଁ ଆଜି ବାହାରି ପଡୁଛି ପାଦରେ ଚାଲି ଚାଲି ଯିବି । ପଅରଦିନ ସେଠାରେ ଦେଖା ହେବ ।" ଏପରି କରିଥିଲେ ହୋଇଥାନ୍ତା କିନ୍ତୁ ବସଭଡା ଛାଡି ଆଉ କିଛି ପଇସା ବଳିବ ନାହିଁ । ବିଶ୍ୱ କିଛି ଖାଇବାକୁ ମାଗିଲେ ମଧ୍ୟ ଦେଇ ହେବ ନାହିଁ । ନନ୍ଦିନୀ ପୁଣି ଭାବିଲା ଯେ ଜଙ୍ଗଲ ରାସ୍ତାରେ ଗଲାବେଳେ କି ଆନନ୍ଦ ଏବଂ କି ଶାନ୍ତି । ପୁଣି କେବେ ଏଭଳି ଶାନ୍ତି ମିଳିବ କି ନାହିଁ କିଏ ଜାଣେ ? କେଜାଣି କାହିଁକି ଜଙ୍ଗଲର ଶୋଭା ପ୍ରତି ତାର ମନ ଭିତରେ ଏକ ଆକର୍ଷଣ ଜନ୍ମ ନେଇଥିଲା । ବିଶ୍ୱ ଗୋଡ ଦରଜ ହେଲେ ସୁଦ୍ଧା ଜଙ୍ଗଲ ରାସ୍ତାରେ ଯିବାକୁ ଅମଙ୍ଗ ହେବ ନାହିଁ । ତେଣୁ ଦୁହେଁ ଚାଲି ଚାଲି ଫେରିବାକୁ ବାହାରି ପଡିଲେ । ଅପନ୍ନା ଗଣ୍ଠିଟା ମୁଣ୍ଡାଇଲା । ଶାରଦା ଠାକୁରାଣୀଙ୍କର ତିନିଟା ଫଟୋ ନନ୍ଦିନୀ କିଣି ଆଣିଥିଲା । ସେ ଗୁଡିକ ନିଜେ ଧରି ଚାଲିଲା ।

ଫେରିଲାବେଳକୁ ନନ୍ଦିନୀର ମନଟା ବହୁତ ପ୍ରସନ୍ନ ଥାଏ । ମୋ ପିଲା ଦୁଇଟାଙ୍କର ସଂସାର ଛାଡି ଚାଲି ଯିବାଟା ବୋଧହୁଏ ଭଗବାନଙ୍କର ଇଚ୍ଛା । ତାଙ୍କର ଇଚ୍ଛାର ବିରୋଧ କିଏ କରିବ ? ଏଭଳି ଭାବନା

Digitized by srujanika@gmail.com

ମନରେ ଆସିଲା । ବିଶ୍ୱ ମଧ୍ୟ ନଦୀରେ ଭାସି ଯାଉଥିଲା । ତାର ମଧ୍ୟ ଗୋଟିଏ ବିପତ୍ତି ଥିଲା । ସେ ଭାବିଲା ଗାଁରେ ପହଞ୍ଚି ବାପାଙ୍କୁ ତାଙ୍କର ବିଶ୍ୱର ଜାତକଟା ଟିକିଏ ଭଲ କରି ଦେଖାଇ ଦେବ । ଅପର୍ଣ୍ଣା ରାସ୍ତାଟା ଯାକ ଚୁପ ରହିଥାଏ । ଶୁଙ୍ଗେରୀରେ ମଧ୍ୟ ସବୁବେଳେ କ'ଣ ଗୋଟାଏ ଭାବନାରେ ବୁଡି ରହିଥିବାର ଜଣା ପଡୁଥିଲା । ନନ୍ଦିନୀ ଭାବିଥି ସିଏ ତ ସବୁବେଳେ ମା' ପାଖରେ ଥାଏ ଏବଂ ଭିକ୍ଷା ମାଗିବାକୁ ମଧ୍ୟ ମା' ସାଙ୍ଗରେ ଗାଁ ଗଣ୍ଡରେ ବୁଲୁଥାଏ । ମୋ ପାଖରେ କେବେ ରହି ନାହିଁ । ଏଥର ପ୍ରଥମ ଥର । ତେଣୁ ବୋଧେ ଟିକିଏ ସଙ୍କୋଚ ବୋଧ କରୁଛି ।

ଜଙ୍ଗଲ ରାସ୍ତା ପାର ହୋଇ ତିନିହେଁ ନରସିଂହରାଜପୁରରେ ପହଞ୍ଚିଲେ । ସେଠି ଭାତ ରାନ୍ଧି, ହୋଟେଲରୁ ତରକାରୀ ମଗାଇ ଖାଇଲେ । ଖାଇ ସାରିଲା ବେଳକୁ ଚେନ୍ନିଗରାୟ ବସ୍‌ରୁ ଓହ୍ଲାଇଲା । ବାପାଙ୍କୁ ଦେଖି ବିଶ୍ୱ କହିଲା –"ମା' ଯାଙ୍କୁ ଭାତ ଦେବୁ ନାହିଁ । ମତେ ନ ଦେଇ ଏକୁଟିଆ ଦୋସା ଖାଇଗଲେ ।" ନନ୍ଦିନୀକୁ ଲାଜ ଲାଗିଲା, କାଳେ କିଏ ପିଲାଟାର କଥା ଶୁଣି ଦେବ । ରେଳଗାଡି ସମୟ ବହୁତ ଡେରି ଥାଏ । ଚେନ୍ନିଗରାୟ ଏମାନଙ୍କୁ ଭାତ ଖାଇବାପାଇଁ ମାଗିଲା ନାହିଁ । ଷ୍ଟେସନ ପାଖ ହୋଟେଲରେ ଯାଇ ବସିଲା ।

ସେଠାରୁ ରେଳରେ ବସି ସମସ୍ତେ ତିରିକେରେ ଷ୍ଟେସନରେ ଓହ୍ଲାଇଲେ । ପରଦିନ ସକାଳୁ ସେଠାରୁ ବଡଲାଇନ ରେଳ ଗାଡିରେ ବସିବାକୁ ପଡିବ । ରାତିରେ ସେଠାରେ ସମସ୍ତେ ଶୋଇଲେ । ସକାଳୁ ଉଠି ନନ୍ଦିନୀ ଭାତ ରାନ୍ଧି ଦେଲା । ହୋଟେଲରୁ ତରକାରୀ ମଗାଇ ତିନିହେଁ ଖାଇଲେ । ଚେନ୍ନିଗରାୟ କିନ୍ତୁ ଏମାନଙ୍କ ସାଙ୍ଗରେ ଖାଇଲା ନାହିଁ ।

ସେଦିନ ସକାଳୁ ଅପର୍ଣ୍ଣା ଟିକିଏ ବେଶୀ ଅନ୍ୟମନସ୍କ ଦେଖାଯାଉଥିଲା । ଗାଡିରେ ମଧ୍ୟ ଚୁପ ହୋଇ ବସିଥାଏ । ଚେନ୍ନିଗା ଯାଚିଲେ ମଧ୍ୟ ଗୁଣ୍ଡିପତ୍ର ନେଲା ନାହିଁ । ବୀରୁର ଠାରେ ଗାଡି ରହିଲା ବେଳକୁ ଅପର୍ଣ୍ଣାର ଚେହେରାଟା ବହୁତ ଚିନ୍ତିତ ଜଣା ପଡୁଥିଲା । ନନ୍ଦିନୀର ଇଚ୍ଛା ହେଉଥିଲା ପଚାରିବାକୁ, କିନ୍ତୁ ସ୍ୱାମୀଙ୍କର ଆଗରେ ନୁହେଁ । କଡୁର ଷ୍ଟେସନରେ ଗାଡି ଅନେକ ସମୟ ରହିଲା । ଚେନ୍ନିଗରାୟ କ'ଣ ଖାଇବ ବୋଲି ପ୍ଲାଟଫର୍ମରେ ବୁଲିଲା । ଅପର୍ଣ୍ଣା ଭାଉଜଙ୍କୁ ପଚାରିଲା –"ତୁମ ପାଖରେ ତିପଟୁରରୁ ଗାଁକୁ ଯିବାକୁ ବସ୍ ଭଡା ପାଇଁ ପଇସା ହେବ ତ ?" ନନ୍ଦିନୀ ପଚାରିଲା –"କାହିଁକି ?"

"ତୁମେ ବସ୍‌ରେ ଚାଲିଯାଅ । ମୁଁ ନୁଗ୍‌ଗୀକେରେ, ଶଶୁର ଘର ଗାଁ ହୋଇ ଯିବି ।"

ଏଭଳି ଅପ୍ରତ୍ୟାଶିତ କଥା ଅପର୍ଣ୍ଣା ମୁହଁରୁ ଶୁଣି ନନ୍ଦିନୀ ବହୁତ ଖୁସି ହେଲା । ସ୍ୱାମୀକୁ କେତେ ମାତ ନମାରିଛି ସେ ? ମଙ୍ଗଳସୂତ୍ର ଛିଣ୍ଡାଇବା ଘଟଣା ହେବାର ତ ଅନେକ ବର୍ଷ ହୋଇଗଲାଣି । କିନ୍ତୁ, ଏବେ ଗଲେ ସେମାନେ କି ପ୍ରକାର ବ୍ୟବହାର କରିବେ । ମା'ର କଥାରେ ପଡି ଅପର୍ଣ୍ଣା ସେ ସବୁ କାଣ୍ଡ କରିଥିଲା । ଏବେ ପରିବାରର ସମସ୍ତଙ୍କର ମିଳନ ହୋଇଗଲେ କେତେ ଭଲ ହୁଅନ୍ତା । ଅପର୍ଣ୍ଣା ପୁଣି କହିଲା– "ପିଲା ଗୁଡାକୁ ଦେଖିବାକୁ ବହୁତ ଇଚ୍ଛା ହେଉଛି ।" ନନ୍ଦିନୀ ଟଙ୍କା ଗଣି ଦେଖିଲା ଦୁଇଟଙ୍କା

Digitized by srujanika@gmail.com

ଦୁଇଅଣା ଅଛି । ରେଳଗାଡି ଟିକଟ ବାରଅଣା ଲାଗିଥିଲା । ଟଙ୍କାଟାଏ ଅପର୍ଣ୍ଣା ହାତରେ ଦେଇ କହିଲା– "ତୁମେ ଯାଇ ପିଲାକୁ ଦେଖି ଆସ । ତୁମ ଝିଅ ଜୟଲକ୍ଷ୍ମୀ ବିବାହଯୋଗ୍ୟ ହୋଇଯିବଣି । ତୁମେ ବାପ ହୋଇ ପିଲାଙ୍କ କଥା ନ ବୁଝିଲେ ଆଉ କିଏ ବୁଝିବ ? ପୁଅ ରାମକୃଷ୍ଣ ପାଠ ପଢୁଛି କି ପୁରୋହିତ କାମ କରୁଛି କେଜାଣି ? ଯାଅ ତୁମେ ଦେଖି ଆସ ।"

ଗଣ୍ଡିରା ଫିଟାଇ ଅପର୍ଣ୍ଣା ନିଜର ଯୋଚି କୁର୍ତ୍ତା କାଢିଲା ବେଳକୁ ଚେନ୍ନିଗରାୟ୍ ଫେରିଲା । "କୁଆଡେ ଯାଉଛୁ ?" ପଚାରିବାରୁ ଅପର୍ଣ୍ଣା କହିଲା –"ନୁଗ୍ଗୀକେରେ ।" ଚେନ୍ନିଗା କହିଲା –"ଯେଉଁ ସ୍ତ୍ରୀକୁ ଛାଡି ଦେଇଛୁ ତାକୁ ଦେଖିବାକୁ ଯାଉଛୁ ? ରେଳଗାଡି ଗାଡିବାକୁ ଆରମ୍ଭ କରିବାରୁ ଉତ୍ତର ନଦେଇ ଜଲଦି ଓହ୍ଲାଇ ପଡିଲା ।

ନଞ୍ଜମ୍ମା ତିପଟୁରରେ ପହଞ୍ଚିଲା ବେଳକୁ ଦିନ ତିନିଟା ବାଜି ସାରିଥିଲା । ସନ୍ଧ୍ୟା ଛଅଟା ବେଳକୁ ବସ୍‌ରେ ବସି ଗାଁରେ ପହଞ୍ଚିଲେ । ସକାଳେ ରାନ୍ଧିଥିବା ଭାତରୁ କିଛି ବଳି ଥିବାରୁ ନଞ୍ଜମ୍ମା ଆଉ ରନ୍ଧାରନ୍ଧି କଲା ନାହିଁ । ଠାକୁରାଣୀଙ୍କ ପ୍ରସାଦ ଏବଂ ଫଟୋ ଧରି ମାଷ୍ଟ୍ରଙ୍କ ଘରକୁ ଗଲା ।

ଶୃଙ୍ଗେରୀ ଯାତ୍ରାର ମାନସିକ ଶାନ୍ତି କିନ୍ତୁ ବେଶି ଦିନ ରହିଲା ନାହିଁ । ଚେନ୍ନିଗରାୟ୍ ଠାରୁ ଅପର୍ଣ୍ଣାର ଶ୍ୱଶୁର ଘରକୁ ଯିବା କଥା ଶୁଣି ଗଙ୍ଗାମ୍ମା ନଞ୍ଜମ୍ମାର ଘର ଆଗରେ ଠିଆ ହୋଇ ଗାଳି ଆରମ୍ଭ କରିଦେଲା । "ହଇଲୋ କାଳମୁହିଁ, ମୋ ପୁଅକୁ ତୁ ସେ ରାଣ୍ଡ ପାଖକୁ ପଠାଉଛୁ ?" କେତେ କ'ଣ ଅଶ୍ରାବ୍ୟ ଗାଳି ଦୁଇ ଘଣ୍ଟା ଖଣ୍ଡେ ଶୁଣାଇଲା । ନଞ୍ଜମ୍ମା ଚୁପ୍ ରହିଥାଏ । ବିଶ୍ୱ ଜେଜେମା'କୁ ଗାଳି ଦେବାକୁ ଦାଣ୍ଡକୁ ବାହାରିଲା ବେଳକୁ ନଞ୍ଜମ୍ମା ତାକୁ ଅଟକ କରି ଘରେ ରଖିଦେଲା । ଶାସ୍ତ୍ରୀର ରାମାୟଣ ପଢା ବନ୍ଦ ହେବାରୁ ମନେ ମନେ ଭାବିଲା, 'ଭଗବାନ କ'ଣ କେବେ ହେଲେ ଆମକୁ ଶାନ୍ତିରେ ରଖାଇ ଦେବେ ନାହିଁ । ସବୁବେଳେ କ'ଣ ଏପରି ଗାଳି, ଝଗଡା ଲାଗି ରହିଥିବ ।' ତା'ପରେ ଯାଇ ମହାଦେବୟାଙ୍କୁ ପଚାରିବାରୁ ସେ ମଧ୍ୟ କିଛି ସନ୍ତୋଷଜନକ ଉତ୍ତର ଦେଇପାରିଲେ ନାହିଁ । କହିଲେ, "ବୋଧହୁଏ ଭଗବାନ ଆମକୁ ପରୀକ୍ଷା କରୁଛନ୍ତି ।" କିନ୍ତୁ ଏଭଳି ପରୀକ୍ଷା କାହିଁକି ? ଏ ଭଳି ଅନେକ ପ୍ରଶ୍ନ ସବୁ ନଞ୍ଜମ୍ମା ମନରେ ଉଠୁଥିଲା ।

ଚାରି ପାଞ୍ଚଦିନ ପରେ ଦିନେ ରେବଣ ସେଠୀର ସ୍ତ୍ରୀ ସର୍ବକ୍କା ଆସିଲା । "ନଞ୍ଜମ୍ମା ତୁମ ଜେଜେମା' ପାର୍ବତୀର ବିଭାଘରକୁ ଯେଉଁ ସୁନା ହାରଟା ଦେଇଥିଲେ ସେଇଟା କ'ଣ କଲ ?" ନଞ୍ଜମ୍ମାର ଠିକ୍ ମନେ ପଡୁନଥାଏ । ଭାବିଲା ବୋଧହୁଏ ସୂର୍ଯ୍ୟନାରାୟଣଙ୍କୁ ଗହଣା ପେଡ଼ିଲା ବେଳେ ଦେଇଦେଇଛି । କିନ୍ତୁ ସେ ଭଳି ହେଲା ପରି ତ ମନେ ପଡୁ ନାହିଁ । "ଘରେ ଖୋଜିଲେ ହେବ ?" କିନ୍ତୁ ମରିଯାଇଥିବା ପୁଅଝିଅଙ୍କ ଜିନିଷ ପତ୍ର ଦେଖିବାକୁ ତାର ଇଚ୍ଛା ହେଉନଥାଏ । ପଚାରିଲା – "ମୋର ତ ମନେ ପଡୁ ନାହିଁ । କିନ୍ତୁ କ'ଣ ହେଲା ଯେ ପଚାରୁଛ ?"

Digitized by srujanika@gmail.com

"ମୁଁ ଶୁଣିଛି ଯେ ତୁମେ ଶୁଙ୍ଗେରୀ ଯିବା ଆଗରୁ ତୁମ ସ୍ୱାମୀ ସେ ହାରଟିକୁ କାଶୀବନ୍ତୀ ମହାଜନଙ୍କୁ ପଚାଶ ଟଙ୍କାକୁ ବିକି ଦେଇଛନ୍ତି।"

"ତୁମେ କିପରି ଜାଣିଲ ?"

"ଶିବଗୌଡର ଝିଅ କହିଲା। ଭଲ ଜିନିଷ ବୋଲି କହି ବେକରେ ପିନ୍ଧୁଛି।"

ନଞ୍ଜମ୍ମା ଶୁଙ୍ଗେରୀ ଯିବା କଥା ମନେ ପକାଇଲା। ମନରେ ତାର ବହୁତ କ୍ରୋଧ ଆସିଲା। କିନ୍ତୁ ରାଗିଲେ ବା' କ'ଣ ହେବ ଭାବି ସାନ୍ତ୍ୱନା ଦେଲା। ଯାହା ହାତରୁ ଯିବା କଥା ତାହା ଗଲାଣି। ସ୍ୱାମୀଙ୍କର ସ୍ୱଭାବକୁ ତ କେହି ବଦଳାଇ ପାରିବେ ନାହିଁ।

"ଗଲେ ଯାଉ, ଆଉ କ'ଣ କରିବି ? ସେ ଜିନିଷଟା ଦେଖିଲେ ଝିଅ କଥା ମନେ ପଡିଥାନ୍ତା।"

ଏ ଘଟଣାକୁ ଆଉ ଆଗକୁ ନ ବଢାଇବାକୁ ସ୍ଥିର କଲା।

4

କନ୍ଦୁର ଠାରୁ ନଅ ମାଇଲ ଦୂର ନୁଗ୍‌ଗାକେରେ ଯିବା ବାଟରେ ଅପଣ୍ଣାର ମନରେ ଅନେକ ପ୍ରଶ୍ନ ଉଠୁଥାଏ। ପିଲାଗୁଡାକ କିପରି ଥିବେ ? ମୋ ସାଙ୍ଗରେ ସାରୁ କଥାବାର୍ତ୍ତା ହେବ କି ନାହିଁ ? ସେ ଯଦି କହେ ତୁମେ ଏଠି ଆମ ପାଖରେ ରହ ତେବେ କ'ଣ କରିବି ? ଘରୁ ଗଲାବେଳେ ସେ ଗର୍ଭବତୀ ହୋଇଥିଲା। ପୁଅ କି ଝିଅ କ'ଣ ହେଲା କେଜାଣି। ସେ ଯଦି ଘରୁ ତଡିଦିଏ ତେବେ କ'ଣ କରିବି ? ସେ ଯାହାହେଉ ପଛେ ଆସିଛିଣି ଯେତେବେଳେ ପିଲାଙ୍କୁ ଦେଖିକରି ଯିବି। ଏ ଭଳି ଭାବି ନୁଗଗାକେରେ ପହଞ୍ଚିଲା ବେଳକୁ ସନ୍ଧ୍ୟା ଛଅଟା ବାଜିଲାଣି। ଲୋକଙ୍କୁ ପଚାରି ବୁଝିଲା ଯେ ସେମାନେ ତିନିବର୍ଷ ହେଲା ଗାଁ ଛାଡି ଚାଲିଗଲେଣି। ଗାଁରେ ଚଳିବାକୁ ଅଭାବ ହେବାରୁ କନ୍ଦୁରରେ ଯାଇ ରହୁଛନ୍ତି। ତାଙ୍କର ଠିକଣା ମଧ୍ୟ ପଚାରି ବୁଝିଲା। ଜଣକୁ ପଚାରିଲା –"କନ୍ଦୁରରେ କିପରି ଚଳୁଛନ୍ତି ?" "ଆରେ ଆମେ କିପରି ଜାଣିବୁ ? ତୁମେ ତାଙ୍କର କ'ଣ ବନ୍ଧୁ ବାନ୍ଧବ କି ?"

ନିଜର ପରିଚୟ ଦେବାଟା ଉଚିତ ମନେ ନ କରି ଅପଣ୍ଣା ଚୁପ୍‌ଚାପ୍ ସେଠାରୁ ଚାଲିଗଲା। ସେଠାରୁ କନ୍ଦୁର ଫେରିବା ବାଟରେ ଓବୁରନ୍ନହଳ୍ଳୀ ଗାଁରେ ପହଞ୍ଚିଲା। କାହାଘରୁ ମାଗି କିଛି ଅଟା ଆଣି ରୁଟି ତିଆରି କରି ଖାଇଲା। ରାତିରେ ସେଇ ଗାଁରେ ଶୋଇ ସକାଳୁ ବଳିଥିବା ରୁଟି ଦି ଖଣ୍ଡ ଖାଇ କନ୍ଦୁର ଯିବାପାଇଁ ବାହାରି ପଡିଲା।

କନ୍ଦୁର ସହର ତା'ପାଇଁ ଅଚିହ୍ନା ନୁହେଁ। ଆଗରୁ ମଧ୍ୟ ସେ ଏଠାକୁ ଆସିଛି। ଦିନ ଦଶଟା ବେଳକୁ

Digitized by srujanika@gmail.com

ସେଠାରେ ପହଞ୍ଚି, ସେମାନଙ୍କର ଘର ଖୋଜିଲା । ଖୋଜି ଖୋଜି ସେ ଘର ପାଖରେ ପହଞ୍ଚି ଦେଖେତ ଘର ସାମନାରେ ଖୁବ୍ ସୁନ୍ଦର ସଜା ହୋଇଛି ପରି ଲାଗୁଛି । ଏଇ ଘରଟା କି ନୁହେଁ ଏପରି ଭାବୁ ଭାବୁ ଘର ଭିତରୁ ଚଉଦ ପନ୍ଦର ବର୍ଷର ଝିଅଟିଏ ବାହାରି ଆସିଲା । ହାତରେ ବହି ଖଣ୍ଡେ ଧରିଛି । ଦାମିକା ଶାଢୀ ଖଣ୍ଡେ ପିନ୍ଧିଛି । ମୁଣ୍ଡରେ ପାଉଡର ବୋଳା ହୋଇ ସୁନ୍ଦର ଦିଶୁଛି । କିଛି ସମୟ ଦେଖିଲା ପରେ ଅପନ୍ନା ଚିହ୍ନିଲା ଯେ ସେ ତାର ବଡ ଝିଅ ଜୟଲକ୍ଷ୍ମୀ, ତାକୁ ପଚାରିଲା "କ'ଣ ଏଠି ରହୁଛ ତୁମେ ?" ଝିଅ ପଚାରିଲା – "ଆପଣ କିଏ ?"

"ଆଲୋ ଚିହ୍ନି ପାରୁନୁ, ମୁଁ ପରା ତୋ ବାପା ।"

"ଆପଣ କେଉଁଠାରୁ ଆସିଛନ୍ତି ?" କହି ଝିଅଟି ଘର ଭିତରକୁ ଚାଲିଗଲା ।

ଅପନ୍ନା ମଧ୍ୟ ରାଗିଯାଇ ତା' ପଛେ ପଛେ ଘର ଭିତରକୁ ପଶିଗଲା । ଆରେ, ଘର ଭିତରଟା ତ କଣ ଖୁବ୍ ସଜାସଜି ହୋଇଛି । ଚଉକୀ, ଟେବୁଲ, କେତେ ରଙ୍ଗୀନ ଫୋଟୋ କାନ୍ଥରେ ଲଗା ହୋଇଛି । ରେଡିଓ ବାଜୁଛି । ତା' ସ୍ତ୍ରୀ ମଧ୍ୟ ସୁନ୍ଦର ଶାଢୀଟିଏ ପିନ୍ଧି ସୁନା ଅଳଙ୍କାର ଲଗାଇ କୋଳରେ ଛୁଆଟିଏ ଧରି ବସିଛି । ତା' ପାଖରେ ଆଉ ଗୋଟିଏ ଚଉକିରେ ତାଳିଶି ବର୍ଷର ଜଣେ ବ୍ୟକ୍ତି ମଧ୍ୟ ବସି ସିଗାରେଟ୍ ପିଉଛି । ସେ ହାତରେ ଦଶ ଆଙ୍ଗୁଠି ଯାକରେ କେତେ ସୁନ୍ଦର ସୁନା ମୁଦି ପିନ୍ଧିଥାଏ । ବେକରେ ସୁନାର ଚେନ୍ ହାତରେ ସୁନାର ଘଡି ।

ଅପନ୍ନା କହିଲା –"ମୁଁ ନୁଗଗାକେରେ ଯାଇ ଫେରିଲିଣି । ତୁମେ ଆସି ଏଇଠି ରହୁଛ ?" ସାବୁ ଆଶ୍ଚର୍ଯ୍ୟ ହୋଇ କିଛି ସମୟ ଅପନ୍ନାକୁ ଚାହିଁ ରହିଲା । କିନ୍ତୁ ପରେ କହିଲା, "କିଏ ତୁମେ ? ଘର ଭିତରକୁ କ'ଣ ସିଧା ପଶି ଆସୁଛ ?"

"ଆଲୋ ମତେ ପଚାରୁଛୁ ମୁଁ କିଏ ?"

"ଆହେ ଶୁଣୁଛ ? ଏ ଲୋକଟା କିଏ ଗୋଟାଏ ଘରକୁ ପଶି ଆସିଛି । ଯାକୁ ବାହାର କରିଦିଅ ।" ଏହା କହି ସାବୁ ସେଠାରୁ ଉଠି ଭିତର ଘରକୁ ଚାଲିଗଲା । ଚଉକିରେ ବସିଥିବା ବ୍ୟକ୍ତିଟି ତତ୍‌କ୍ଷଣାତ୍ ଉଠି ପଡି ନାଲି ଆଖି କରି ଏ ଭଳି ଢଙ୍ଗରେ ଆସି ଅପନ୍ନାକୁ ପଚାରିଲା, "କିଏ ବେ ତୁ ?" ବାସ୍ ସେତିକି । ସେଇଠୁ ଅପନ୍ନା ଏକା ନିଶ୍ୱାସକେ ଡିଆଁ ମାରିଆସିଲା ଯତେ ଯେପରି ପାଗଳା କୁକୁରଟାଏ ତାକୁ କାମୁଡିବାକୁ ଦୌଡିଛି । କେଉଁଆଡେ ଯାଉଛି ତାର ସେଥିପ୍ରତି ଧ୍ୟାନ ନଥାଏ । ଦୌଡି ଦୌଡି ଅନେକ ଦୂର ଯିବାପରେ ଗୋଟିଏ ଗାଁ ପଡିଲା ସେଠି ପଚାରି ବୁଝିଲା ଗାଁ ନାଁ ବିରୁର୍ । ସେଠୁ ରେଳ ଷ୍ଟେସନକୁ ସିଧା ଯାଇ ତିପଟୁର୍ ଯିବା ପାଇଁ ଗାଡିରେ ବସିପଡିଲା । ତିପଟୁର୍‌ରେ ପହଞ୍ଚିଲା ପର୍ଯ୍ୟନ୍ତ ତା'ମନରୁ ଭୟ ଛାଡି ନଥାଏ । ସେଠୁ ଗାଁକୁ ଚାଲି ଚାଲି ଯାଉ ଯାଉ ତାର ମନରେ ବିଚାର ଉଠିଲା ଯେ ସେ ପୁରୁଷଟା କିଏ ? ତା' ସ୍ତ୍ରୀ କ'ଣ ଯାଇ ଆଉ ଜଣଙ୍କ ପାଖରେ ରହିଛି । ଇଚ୍ଛା ହେଲା ସାବୁକୁ ପାଖରେ ପାଇଲେ ମନଇଚ୍ଛା ପିଟି ପକାନ୍ତା । କିନ୍ତୁ ପରେ ସେ ଲୋକଟାର କଥା ମନେ ପଡିବାରୁ ଭୟ ଆସିଲା ।

Digitized by srujanika@gmail.com

ଗାଁରେ ପହଞ୍ଚିଲା ବେଳକୁ ରାତି ହୋଇଗଲାଣି । ହନୁମାନ ମନ୍ଦିରରେ ଯାଇ ଦୁଆର ବାଡେଇବାରୁ ଗଙ୍ଗାଳା ଦୁଆର ଖୋଲିଲା । ବୁଢ଼ୀ ଦାପ ଜଣାଇ ପଚାରିଲା, "ହଇରେ ସେ ରାଣ୍ଡ ପାଖକୁ ପୁଣି ଯାଇଥିଲୁ ? ସେଠୁ ତଡ଼ା ଖାଇ ଆସିଲୁ ଟି ?"

ଅପନ୍ନା ଚୁପ ରହିଥାଏ । ଗଙ୍ଗାଳା କହିଲା – "ନିର୍ଲଜ ଲୋକାର କେଉଁଠିକାର ଲାଜ ଥିଲେ ଥିଲା ହୁଅନ୍ତା, ଶୃଙ୍ଗେରୀ ଯାଉଛି ବୋଲି ମିଛ କହି ସେ ମାଇକିନା ପାଖକୁ ପଳାଇଲୁ । ଏଠି ଆସି ମନ୍ଦିର ଭିତରେ ଚୁପ ହୋଇ ବସିଲୁ ? ଘରୁ ତଡ଼ିଥିବା ସ୍ତ୍ରୀ ପାଖକୁ ଯାଇ ପାପ କରିଲୁ । ରହିଥା ପୁରୋହିତଙ୍କୁ ଡାକି ତତେ ଏକଘରକିଆ କରିବି ।"

ଅପନ୍ନା ରାଗି ଯାଇ କହିଲା –"ତୁ ପାଟି ବନ୍ଦ କରୁଛୁ ନା ନାହିଁ ?"

"ମୁଁ ପାଟି ବନ୍ଦ କରିବି ନାହିଁ । ତୁ ଗୃହସ୍ଥିଆ ବୁଦ୍ଧି କରି ମତେ ଆଖି ଦେଖାଉଛୁ ?"

"ତୁ ଚୁପ ରହୁଛୁ ନା ନାହିଁ ଯେ ?"

ଗଙ୍ଗାଳା ପୁଣି ଗାଳି ଦେବାରୁ ଅପନ୍ନା ରାଗରେ ଝାଡୁଟାଏ ଉଠାଇ ମା'ର ମୁଣ୍ଡ, ପିଠି, ହାତ, ଗୋଡ ବାଡେଇ ଦେଇଗଲା । ଗଙ୍ଗାଳା ଏତେ ଜୋରରେ ଚିତ୍କାର କଲାଯେ ଗାଁ ଭିତରୁ ଅନେକ ଲୋକ ଉଠି ଧାଇଁ ଆସିଲେ । ଗଙ୍ଗାଳା ଅନ୍ନାଜୋଇସଙ୍କୁ ଡକାଇ ପଠାଇଲା । ଅପ୍ପାଶାସ୍ତ୍ରୀ ମଧ୍ୟ ଖବର ପାଇ ଧାଇଁ ଆସିଲେ । ପୁରୋହିତ କହିଲେ, "ଜନ୍ମକଲା ମା'କୁ ଝାଡୁଣାରେ ମାରିବା ଠାରୁ ବଳି ଆଉ ପାପ କିଛି ନାହିଁ । ତେଣୁ ଶହେ ଏକ ଟଙ୍କା ଜୋରିମାନା ଦେଇ ପ୍ରାୟଶ୍ଚିତ କରିବା କଥା ।"

"କେଉଁ ଶଳା, ବାପର ପୁଅ, ମୋଠୁ ପଇସାଟେ ନେବ ମୁଁ ଦେଖିବି ! ଯାଉଛ ନା ନାହିଁ ଏଠୁ ।" ଅପନ୍ନା ଜବାବ ଦେଲା ।

ଏଭଳି ଲୋକକୁ ଭଗବାନଙ୍କ ମନ୍ଦିରରେ ବା' କିପରି ରଖା ଯାଇପାରେ ତେଣୁ ସଙ୍ଗେ ସଙ୍ଗେ ମନ୍ଦିରରୁ ବାହାରି ଯିବାକୁ ଆଦେଶ ଦିଆଗଲା । ଗାଁ ଛାଡି ଯିବାକୁ ମଧ୍ୟ ଆଦେଶ ଦିଆଗଲା । ଅପନ୍ନା କହିଲା –"ଅବେ ହେ ପୁରୋହିତ, ଏ ଗାଁଟା କ'ଣ ତୋ ବାପାର ଜମିଦାରୀ ?" ଅପନ୍ନାର ଏ ରୂପ ଏ ପର୍ଯ୍ୟନ୍ତ କେହି ଦେଖି ନଥିଲେ । ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଚାହିଁଥାନ୍ତି । ନିଜର ଲୁଗାପଟା ଧରି ସେ ମନ୍ଦିରରୁ ବାହାରି ଗଲା । ପଛରୁ ଗଙ୍ଗାଳା ଅଭିଶାପ ଦେଉଥିଲା । ଭାଉଜ ଘରକୁ ଯିବାକୁ ଇଚ୍ଛା ହେଲା କିନ୍ତୁ ନୂଆଗାଁରେ କଥା କାହିଁକି ପଚାରିବେ ବୋଲି ଗଲା ନାହିଁ । ମହାଦେବଯ୍ୟାଙ୍କ ମନ୍ଦିରକୁ ଯାଇ ରାତିଟା ସେ ବାରଣ୍ଡାରେ ଶୋଇଗଲା । ମାସେ ପର୍ଯ୍ୟନ୍ତ ସେ ଗାଁ ଛାଡି ଅନ୍ୟ କେଉଁଆଡେ ଚାଲିଗଲା ।

ନଞ୍ଜମ୍ମାକୁ ସବୁ ଘଟଣା ଜଣା ପଡିଲା ପରେ ସ୍ୱାମୀ ଉପରେ ତାର ବହୁତ ରାଗ ଆସିଲା । ଗାଁକୁ ଫେରୁ ଫେରୁ ଅପନ୍ନା ଶଶୁର ଘରକୁ ଯିବା କଥା ଯାଇ ମା'କୁ କହି ଦେଇଛନ୍ତି । ତାଙ୍କୁ କହି ମଧ୍ୟ କିଛି ଲାଭ ନାହିଁ । ଗଙ୍ଗାଳା ଅନେକ ଦିନ ପର୍ଯ୍ୟନ୍ତ ଦୁଇ ପୁଅ ଏବଂ ବୋହୂଙ୍କୁ ଗାଳି ଦେଲା । ମାସେ ପରେ

Digitized by srujanika@gmail.com

ଅପନ୍ନା ଦିନେ ଗାଁକୁ ଫେରିଲା । ଭାଉଜ ପାଖକୁ ଆସି କହିଲା – "ମୋ ପାଖରେ କେହି ରହିବା ଦରକାର ନାହିଁ । ମୁଁ କ'ଣ ଏକୁଟିଆ ବଞ୍ଚି ପାରିବି ନାହିଁ ? ଏଇ ମାସେ ଭିତରେ ଚାରି ବସ୍ତା ମାଣ୍ଡିଆ, ବିରି ଆଦି ମାଗି ଆଣିଛି । ତୁମ ପାଖରେ ମୋର ଯେଉଁ କୋଡିଏ ଟଙ୍କା ଅଛି ତାହା ହେଲେ ଗୋଟେ ଦିଟା ବାସନ କିଣିବି ।"

"କେଉଁଠି ରହିବ ?"

"ବୀର ଗଉଡ ଘର ବାରଣ୍ଡାରେ ରହିବାକୁ ଠିକ୍ କରିଛି । ସେ ମଧ୍ୟ ରାଜି ହୋଇଛି ।"

ଦୁଇ ଦିନ ଭିତରେ ନନ୍ଦିନୀ ଟଙ୍କା ଯୋଗାଡ କରି ଅପନ୍ନାକୁ ଦେଲା । ସେ କମ୍ବଳକେରେ ବଜାରକୁ ଯାଇ ଆଲୁମିନିୟମର ଥାଳି, ଗିନା, ହାଣ୍ଡି ଏବଂ ରନ୍ଧାରନ୍ଧି କରିବା ବାସନ କିଛି କିଣି ନେଇ ଆସିଲା । ଯେତେବେଳେ ଯାହା ଭଲ୍ଲା ହୁଏ ରାନ୍ଧିଖାଏ । କେତେବେଳେ କେମିତି ଭାଉଜ ଘରେ ମଧ୍ୟ ଯାଇ ଖାଇ ଦିଏ । ଅପନ୍ନାକୁ ଘରକୁ ପୁରାଉଥିବାରୁ ନନ୍ଦିନୀ ଉପରେ ଜୋରିମାନା କରିବା ପାଇଁ ଗଙ୍ଗାଳା ପୁରୋହିତଙ୍କୁ କହିଲା । କିନ୍ତୁ ପୁରୋହିତ ଦି ଜଣ ଭୟରେ କିଛି କଲେ ନାହିଁ । ଏକେତ ସରକାରୀ ନିୟମ ଅନୁସାରେ ନନ୍ଦିନୀ ପ୍ରତ୍ୟେକ ଲୋକଙ୍କର ଫସଲ ଆମଦାନୀ ହିସାବ ଲେଖୁଛି । ତା' ଛଡା ଶ୍ରୀକ୍ଷେତ୍ର ଯାତ୍ରା କରି ମଧ୍ୟ ଆସି ସାରିଛି । ଏ ଦୁଇ ପୁରୋହିତେ ଏ ପର୍ଯ୍ୟନ୍ତ ଶ୍ରୀକ୍ଷେତ୍ର ଯିବାର ନାଁ ଧରି ନାହାନ୍ତି ।

ଦିନେ ନନ୍ଦିନୀ ଅପନ୍ନାକୁ ପଚାରିଲା, "ନୁଆଗାଁକେରେ ଯାଇଥିଲ ସେଠି କ'ଣ ହେଲା କହିଲ ନାହିଁ ତ ?"

"ସେ ମାଇକିନା କ'ଣ ସେ ଗାଁରେ ଆଉ ରହୁଛି କି ?"

"ତାହାହେଲେ ତା ସାଙ୍ଗରେ ଦେଖା ହେଲା ନାହିଁ ।"

"ଦେଖିଲି, କଟକ ସହରରେ ଜଣେ ବ୍ୟବସାୟୀର ଘରେ ରକ୍ଷିତା ସ୍ତ୍ରୀ ହୋଇ ରହିଛି ।" ତାପରେ ସେଠାକାର ସବୁ ଘଟଣା ବର୍ଣ୍ଣନା କଲା ।

ସବୁ ଶୁଣି ନନ୍ଦିନୀର ମନଟା ମଧ୍ୟ ଟିକିଏ ଦବି ଗଲା । ଆମେ ଦୁଇଜଣ ଏ ଘରର ବୋହୂ ହୋଇ ଆସିଥିଲୁ । ଦୁଇଜଣ ଯାକର ସ୍ୱାମୀ, ସ୍ତ୍ରୀ ମାନଙ୍କ କଥା ବୁଝିଲେ ନାହିଁ । ସେମାନଙ୍କ ନିଜ କଥା ମଧ୍ୟ ନିଜେ ବୁଝିବା ପାଇଁ ବୁଦ୍ଧିର ଅଭାବ । କିନ୍ତୁ ବଡ ଅପେକ୍ଷା ସାନ ଭାଇ ଟିକିଏ ଭଲ । ବୁଝାଇ କହିଲେ ମାନିଯାଏ । ବଡ ପରିଶ୍ରମୀ । ପିଲାଟୁଆ, ସ୍ତ୍ରୀଙ୍କ ଖାଇବା କଥା ମଧ୍ୟ ବୁଝେ । ସାନ୍ତୁ ଯଦି ଧୈର୍ଯ୍ୟ ନହରାଇ ରହିଥାନ୍ତା ତେବେ ଆଜି ଏ କଥା ଦେଖିବାକୁ, ଶୁଣିବାକୁ ମିଳିନଥାନ୍ତା । କିନ୍ତୁ କଷ୍ଟ ସହିବା କ୍ଷମତା ତା'ପାଖରେ ନଥିଲା । ସମସ୍ତେ ବା' ଏଭଳି ଶାଶୁ ଏବଂ ସ୍ୱାମୀର ଗଞ୍ଜଣା କିପରି ସହି ପାରନ୍ତେ ? ମା' କଥାରେ ପଡି ଅପନ୍ନା ନିଜେ ତିଆରି କରିଥିବା କୁଡିଆଟା'ରେ ନିଆଁ ଲଗାଇ ଦେଲା । ସ୍ତ୍ରୀର ବେକରୁ ମଙ୍ଗଳସୂତ୍ର ଛିଣ୍ଡାଇ ଦେଲା । କିନ୍ତୁ ତଥାପି ଏଘରର ବୋହୂ ହୋଇ ଆସି ସାନ୍ତୁ ଏ ଭଳି ଖରାପ କାମ ନ କରିଥିଲେ ଭଲ ହୋଇଥାନ୍ତା । ଏ ସବୁ ଭାବି ସାରି ଅପନ୍ନାକୁ ପଚାରିଲା –"ଏ କଥା ଆଉ କାହାକୁ କହି ନାହିଁ ତ ?"

Digitized by srujanika@gmail.com

"ନାହିଁ ।"

"ତାହାହେଲେ ଆଉ କାହାକୁ କହିବ ନାହିଁ । ନହେଲେ ଆମର ଇଜ୍ଜତ୍ ଯିବ ।"

"ସେମାନଙ୍କର ନାଁ ଧରିଲେ ମତେ ବହୁତ କଷ୍ଟ ହେଉଛି । ମୁଁ ଆଉ କାହା ଆଗରେ କହିବି ?"

"ତୁମେ ବେଳେ ବେଳେ ରାଗିଯାଇ କ'ଣ ସବୁ କହି ପକାଅ । ମୋ ଆଗରେ ନିୟମ କରି କୁହ ଯେ ଏକଥା ଭୁଲରେ ସୁଦ୍ଧା କାହା ଆଗରେ କହିବ ନାହିଁ ।"

"ମୁଁ ଶାରଦା ଠାକୁରାଣୀଙ୍କର ନାଁ ଧରି କହୁଛି ଏକଥା କାହା ଆଗରେ କହିବି ନାହିଁ ।"

Digitized by srujanika@gmail.com

# ପଞ୍ଚଦଶ ଅଧ୍ୟାୟ

## 1

ଏ ଭିତରେ ସରକାରଙ୍କ ତରଫରୁ ଗାଁରେ ପ୍ରାଇମେରୀ ସ୍କୁଲର ନୂଆ ଘର ତିଆରି ହୋଇ ସାରିଥିଲା । ଏ ପର୍ଯ୍ୟନ୍ତ ଶିବଗୌଡର ଘରେ ସ୍କୁଲ ଚାଲୁଥିଲା । ନୂଆ ସ୍କୁଲ ଘର ହୋଇଯିବାରୁ ଶିବଗୌଡଙ୍କୁ ମିଳୁଥିବା ଭଡା ବନ୍ଦ ହୋଇଗଲା । ନୂଆ ସ୍କୁଲଘର ସାମନାରେ ବଡ ଖେଳ ପଡିଆଟିଏ ଥାଏ ଏବଂ ବାକି ତିନି ପଟେ ବିଲ ।

ଦିନେ ନଞ୍ଜମ୍ମା ଘରେ ବସି ସରକାରୀ ହିସାବ କିତାବ ଲେଖୁଥିଲା । ସ୍କୁଲର ନୂଆମାଷ୍ଟ୍ରେ ଆସି କହିଲେ –"ତୁମ ପୁଅ ବିଶ୍ୱ କ'ଣ କରିଛି ଶୁଣିଲଣି ?" ମାଷ୍ଟ୍ରଙ୍କ କଥା ଶୁଣି ନଞ୍ଜମ୍ମା ଡରି ଯାଇ ପଚାରିଲା – "କ'ଣ କରୁଛି ?"

"ସ୍କୁଲ ଖେଳପଡିଆର ପଛକୁ ଉଇ ହୁଙ୍କା ଗୁଡିଏ ଅଛି । ସେଠି ଗୋଟିଏ ବଡ ସାପ ବୋଧେ ରହୁଛି । ସାପଟା ବେଧହୁଏ କାତି ଛଡାଇ ହାଲିଆ ହୋଇ ଶୋଇ ଥିଲା । ବିଶ୍ୱ ନଡିଆ ବାଡ଼ୁଙ୍ଗାଟାଏ ଧରି ଯାଇ ତାକୁ ମାରିଲା । ଭାଗ୍ୟକୁ ସାପ ଦେହରେ ବାଜିଲା ନାହିଁ । ସାପଟା ହୁଙ୍କା ଭିତରେ ପଶିଗଲା । ତା ପଛେ ପଛେ ବିଶ୍ୱ ମଧ୍ୟ ହୁଙ୍କା ଉପରକୁ ଚଢୁଥିଲା । ମୁଁ ତାର କାନ ଧରି ଟାଣି ଟାଣି ନେଇ ଆସିଛି ।"

"ତାକୁ ଟିକିଏ ଭଲ କରି ଶାସନ କରନ୍ତୁ । ମାଡ ଖାଇ ନାହିଁ ଅନେକ ଦିନ ହେଲା ।"

"ବର୍ତ୍ତମାନ ପିଲାଟାକୁ ମାରିଲେ କ'ଣ ହେବ ? ମୁଁ ଶୁଣିଛି ସାପ ଗୁଡାକ ଅନେକ ଦିନ ପର୍ଯ୍ୟନ୍ତ ମନେ ରଖନ୍ତି ଏବଂ ଯେ ମାରିଥିବ ତାକୁ ଆସି କାମୁଡନ୍ତି ।"

ନଞ୍ଜମ୍ମା ଡରିଗଲା । ଏ ପିଲାଟା ଭାରି ଦୁଷ୍ଟ ହେଲାଣି । କହିଲା –"ଏବେ କ'ଣ କରିବା ତାହାହେଲେ ?"

"ସାପଟା ହୁଙ୍କା ଭିତରେ ଥିବ । ଦୁଇ ଚାରିଟା ଲୋକ ଲଗାଇ ହୁଙ୍କାଟା ଭାଙ୍ଗି ସାପଟାକୁ ମାରିବାକୁ ପଡିବ । ଆଉ ବିଳମ୍ବ କରିବା କଥା ନୁହେଁ ।"

Digitized by srujanika@gmail.com

ନଷ୍ଟିଜ୍ଜା ଘରେ ତାଲା ପକାଇ, ଯାଇ ଲୋକ ଡକାଇଲା, ଗାଁର ପ୍ରସିଦ୍ଧ ସାପ ମାରିବା ଲୋକ ସଜ୍ଜୀବ ନାଏକକୁ ଟଙ୍କାଏ ଦେଇ ତାଙ୍କ ସାଙ୍ଗରେ ପଠାଇଲା । ନିଜେ ମଧ୍ୟ ସାଙ୍ଗରେ ଗଲା । ବିଶ୍ୱ ସେତେବେଳକୁ ପଡିଆରେ ଡିଆଁ ମାରୁଛି । ନଷ୍ଟିଜ୍ଜା ପଚାରିଲା -"କିରେ ସାପ ମାରିବାକୁ ଯାଇଥିଲୁ । ତୋର ଏତେ ସାହସ ?"

"ସଜ୍ଜୀବ ନାଏକ ଯେମିତି ସାପ ମାରିଥିଲା, ମୁଁ ମଧ୍ୟ ସେମିତି ମାରିଛି ।"

ଲୋକେ ଉଇହୁଙ୍କା ଭାଙ୍ଗିବା ଆରମ୍ଭ କଲେ । ସଜ୍ଜୀବ ନାଏକ ତେଣ୍ଟାଟା ଧରି ସଜ ହୋଇ ଠିଆ ହୋଇଥାଏ । ସନ୍ଧ୍ୟା ପର୍ଯ୍ୟନ୍ତ ଖୋଳି ଖୋଳି ମଧ୍ୟ ସାପ ବାହାରିଲା ନାହିଁ । ସଜ୍ଜୀବ ନାଏକ କହିଲା "ଆଉ ସେ ସାପକୁ ମାରି ହେବ ନାହିଁ । ସେ ଆଗରୁ ଜାଣି ଖସି ଯାଇଛି । ସେ ନିଶ୍ଚୟ ଦିନେ ନା ଦିନେ ଜଗି ରହି ସେ ପିଲାକୁ ଚୋଟ ମାରିବ ।"

ନଷ୍ଟିଜ୍ଜା ରାଗରେ ଅସମ୍ଭାଳ ହୋଇ ବିଶ୍ୱକୁ ଖୁବ୍ ଜୋରରେ ମାଡ ମାରିଲା । ବିଶ୍ୱ ଠିଆ ହୋଇ କାନ୍ଦୁଥାଏ । ମାଷ୍ଟ୍ରେ ବୁଝାଇଲେ,"ଆଉ, ପିଲାଟାକୁ ମାରିଲେ କ'ଣ ହେବ । ଯାହା ହେବାର ତ ହୋଇ ସାରିଲାଣି ।"

ନଷ୍ଟିଜ୍ଜା ବିଶ୍ୱର ହାତ ଟାଣି ଟାଣି ଘରକୁ ଆଣିଲା । ଦୁଇଟା ପିଲା ମରି ସାରି ଏ ଗୋଟାକ ବଞ୍ଚିଛି । ଏ ପିଲାଟା ଏତିକି ଦୁଷ୍ଟ, ପୋଖରୀ ମଝିରେ ଯାଇ ପହଁରିବା, ଗଛରେ ଚଢିବା, ମହୁଫେଣା ଭାଙ୍ଗିବା, କାହା ବାଡିରୁ ଫଳ ଚୋରାଇବା ଇତ୍ୟାଦି ଯେତେ ଅସାଧ୍ୟ କାମ ସିଏ କରେ । ନଷ୍ଟିଜ୍ଜାର ନିଜ ବାପାଙ୍କ କଥା ମନେ ପଡିଲା । ବିଶ୍ୱଟା ଠିକ୍ ତା ଅଜା ଭଳି । ବଡ ହେଲେ ତାଙ୍କ ଭଳି ନହେଲେ ଭଲ । ସାପଟାକୁ ବାଡେଇ ଯେଉଁ ଅନର୍ଥ ଏବେ କରିଛି ସେଥିପାଇଁ ବର୍ତ୍ତମାନ କ'ଣ କରାହେବ ? ସାପ କୁଆଡେ ବାରବର୍ଷ ପର୍ଯ୍ୟନ୍ତ ମନେରଖି ପ୍ରତିଶୋଧ ନିଏ । ତା'ପର ଦିନ ବିଶ୍ୱକୁ ସ୍କୁଲକୁ ପଠାଇଲା ନାହିଁ । ସେଦିନ ମାଷ୍ଟ୍ରେ ଆସି କହିଲେ,"ଏମିତି କେତେ ଦିନ ପର୍ଯ୍ୟନ୍ତ ପିଲାଟାକୁ ଘରେ ବସାଇ ରଖିବ ।"

ତାହା ମଧ୍ୟ ସତ କଥା । ପ୍ରାଇମେରୀ ସ୍କୁଲରୁ ପାସ୍ କଲେ ସିନା ସେ କମ୍ବନକେରେ ମାଇନର ସ୍କୁଲରେ ପଢିବ । ତାପରେ ଚିପଟୁରର ହାଇସ୍କୁଲକୁ ଯିବ । ତେବେ ଯାଇ ସିନା ଇଲାକାଦାର ଚାକିରି କରିପାରିବ । ନହେଲେ ମାଇନର ସ୍କୁଲରେ ମାଷ୍ଟ୍ରଟିଏ ହୋଇ ରହିଯିବ । ମହାଦେବସ୍ୱାଙ୍କୁ ଯାଇ ପଚାରିବାରୁ ସେ ସାରାଦିନ ଭାବିଚିନ୍ତି କହିଲେ – "ବର୍ତ୍ତମାନ ଇଏ ତୃତୀୟ ଶ୍ରେଣୀରେ ପଢୁଛି । ତୁମେ ତାକୁ ନେଇ ଭାଇ ପାଖରେ ଛାଡିଦିଅ । ଚତୁର୍ଥ ଶ୍ରେଣୀଟା ସେଠି ପାସ୍ କରିଗଲେ ଆଉ ଏଇ ଗାଁ ସ୍କୁଲକୁ ଯିବାକୁ ପଡିବ ନାହିଁ । ତାପରେ ସିଧା କମ୍ବନକେରେ ମାଇନର ସ୍କୁଲରେ ନାଁ ଲେଖାଇ ଦେବ । ଗାଁକୁ ଛୁଟିରେ ଆସିଲେ ମଧ୍ୟ ସ୍କୁଲ ଆଡେ ଯିବାକୁ ତାକୁ ଛାଡିବ ନାହିଁ । ତା'ପରେ ପିଲାଟା ବଡ ହୋଇ ଯିବ । ସାପ ଆଉ ଚିହ୍ନି ପାରିବ ନାହିଁ ।"

Digitized by srujanika@gmail.com

ନକ୍ଷିକା କହିଲା – "କିନ୍ତୁ ଆପଣ ତ ମୋ ଭାଉଜ କଥା ସବୁ ଜାଣିଛନ୍ତି ।"

"ସେ ଯାହା ହେଲେ ସୁଦ୍ଧା ଘରେ ଆଈ ବୁଢ଼ୀ ତ ବସିଛି । ଘରେ ଆଉ ପିଲାପିଲି ମଧ୍ୟ କେହି ନାହାନ୍ତି । ତୁମ ଭାଇ ମଧ୍ୟ ଏ ପିଲାଟାର ଭଲ ଯତ୍ନ ନେବେ ।"

ଏ କଥା ନକ୍ଷିକା ମନକୁ ପାଇଲା । କିନ୍ତୁ ଗୋଟିଏ ବୋଲି ପୁଅକୁ ସେଠି ଛାଡି ଏକୁଟିଆ କିପରି ରହିବ । କିନ୍ତୁ ଏ ଗାଁରେ ରଖିଲେ ସାପ କାମୁଡାରେ ପ୍ରାଣ ଯାଇପାରେ । ତାପରେ ସ୍କୁଲ ଛୁଟି ହେଲେ ମଝିରେ ମଝିରେ ଗାଁକୁ ପିଲାଟା ଆସିବ । ସେ ମଧ୍ୟ ମଝିରେ ମଝିରେ ଯାଇ ତାକୁ ଦେଖି ଆସୁଥିବ । ଏପରି ଭାବି ଠିକ୍ କଲା ଯେ କୌଣସି ପ୍ରକାରେ ବିଶ୍ୱକୁ ଦେଢବର୍ଷ ଖଣ୍ଡେ ମାମୁଁଘରେ ଛାଡି ଦେବ ।

ତା'ପର ଦିନ ବିଶ୍ୱକୁ ଗାଧୋଇ ଦେଇ ନୂଆ ପେଣ୍ଟକୁର୍ତ୍ତା ପିନ୍ଧାଇ ଦେଲା । ଚକୁଳି ପିଠା ତିଆରି କଲା । ବିଶ୍ୱ ସବୁ ଜାଣି ଯାଇ କହୁଥାଏ, "ମା, ମୁଁ ଆଉ ଦୁଷ୍ଟ ହେବି ନାହିଁ । ମତେ ଘରୁ କୁଆଡେ ଛାଡ ନାହିଁ ।"

"ଆରେ ପୁଅ ବର୍ଷ ଗୋଟାଏ ଚାହୁଁ ଚାହୁଁ ଚାଲିଯିବ । ତାପରେ ତୁ କମ୍ବନକେରେ ଯାଇ ମାଇନର ସ୍କୁଲରେ ପଢ଼ିବୁ । ତୁ କହିଲେ ମୁଁ ମଧ୍ୟ ସେଠାରେ ତୋ ପାଖରେ ରହି ରନ୍ଧାରନ୍ଧି କରି ଦେବି । ତୁ ସେ ସାପକୁ ନ ମାରିଥିଲେ ଏବେ ଗାଁ ଛାଡି ଯିବାକୁ ପଡିନଥାନ୍ତା ।"

ବିଶ୍ୱର ଆଖିରୁ ଲୁହ ପୋଛି ନକ୍ଷିକା ବହୁତ ବୁଝାଇଲା । ତାପରେ ମାଣ୍ଡିଆ, ବିରି, ତେଲ ଆଦି ଶଗଡରେ ଲଦାଇଲା । ବିଶ୍ୱର ସ୍କୁଲ ସାର୍ଟିଫିକେଟ୍‌ଟା ସାବଧାନରେ ରଖି ବିଶ୍ୱକୁ ଧରି ଶଗଡରେ ବସିଲା । ଚେନ୍ନିଗରାପ୍ପ କିନ୍ତୁ ଗଲା ନାହିଁ ।

ଭଣଜାକୁ ଘରେ ରଖିବା ପାଇଁ କଲ୍ଲେଶର ଭାରି ଆଗ୍ରହ । ଆଈ ବୁଢ଼ୀ ଅକ୍କମ୍ମା ମଧ୍ୟ ବହୁତ ଖୁସି । ବୁଢ଼ୀ ବହୁତ ଦୁର୍ବଳ ହୋଇ ଯାଇଥାଏ । ତଥାପି କହିଲା – ପିଲାଟାର ଗାଧୁଆ ପାଧୁଆ କଥା ସବୁ ବୁଝିବ । କେବଳ କଲ୍ଲେଶର ସ୍ତ୍ରୀ ଅନିଚ୍ଛା ପ୍ରକାଶ କଲା । କିନ୍ତୁ ତା' କଥାତ ସମସ୍ତେ ଜାଣନ୍ତି । ନକ୍ଷିକା ଆଣିଥିବା ବିରି, ମାଣ୍ଡିଆ ଆଦି ଦେଖି କଲ୍ଲେଶ ପଚାରିଲା – "ଏସବୁ କାହିଁକି ଆଣିଲୁ ? ମୋ ଘରେ ତୋ ପୁଅ କ'ଣ ଉପବାସ ରହିଥାନ୍ତା ? ଫେରାଇ ନେଇ ଯା' ଏସବୁ ।"

"ତୁମକୁ ବିଶ୍ୱ କଥା ଲାଗିଲା । ପିଲାଟା ବଡ ଦୁଷ୍ଟ । କାହାକୁ ଡରିବ ନାହିଁ । ଦରକାର ପଡିଲେ ଗୋଟାଏ ଦିଟା ମାଡ ମାରି ଶାସନ କରିବ । ପାଠ ପଢାରେ କିନ୍ତୁ ଭଲକରେ । ମୁଁ ସେଠି ତାକୁ ପଢାଉଥିଲି । ତୁମେ ଯଦି ପାର ମଝିରେ ମଝିରେ ଦେଖିବ । ନହେଲେ ଟିଉସନ୍‌ଟିଏ ଠିକ୍ କଲେ ମୁଁ ମାସକୁ ଟଙ୍କାଏ ଲେଖାଏଁ ପଠାଇ ଦେବି ।"

Digitized by srujanika@gmail.com

କଳେକ୍ଟର ସବୁ ଶୁଣି କହିଲେ –"ଦୁଇ ତିନିଦିନ ରହିଯା, ତାପରେ ଯିବୁ।" ଅନ୍ନଙ୍କା ମଧ୍ୟ ବହୁତ କହିଲା । କିନ୍ତୁ ତେଣେ ସରକାରୀ ହିସାବ ଲେଖା ବାକି ପଡିଥିଲା । ତେଣୁ ତା' ପରଦିନ ସକାଳୁ ଶଗଡରେ ବସି ଫେରି ଆସିଲା । ଶଗଡରେ ବସିଲା ବେଳେ ବିଶ୍ୱ କାନ୍ଦୁ ଥାଏ । ନଷ୍ଟଙ୍କା ମଧ୍ୟ କାନ୍ଦି ପକାଇଲା ।

ଏଥର ବାପା କଣ୍ଟାକୋଇସଙ୍କ ସାଙ୍ଗରେ ନଷ୍ଟଙ୍କାର ଦେଖା ହେଲା ନାହିଁ । ତିନିମାସ ହେଲା ସେ ଗାଁରେ ନଥିଲେ ।

2

ବିଶ୍ୱକୁ ନାଗଲାପୁରରେ ଛାଡି ଆସିବା ଦିନଠାରୁ ନଷ୍ଟଙ୍କାକୁ ଘରେ ଏକୁଟିଆ ରହିବାକୁ ଆଦୌ ଭଲ ଲାଗିଲା ନାହିଁ । ଘରଟା ଖାଲି ଖାଲି ଲାଗୁଥାଏ । ପାର୍ବତୀ ଏବଂ ରମନ୍ନାଙ୍କର ସ୍ମୃତି ମଧ୍ୟ ଜାଗ୍ରତ ହୋଇ ଉଠିଲା । ସେ ଭାବିଲା ଘରଟା ପ୍ରକୃତରେ ଅମଙ୍ଗଳିଆ ଏବଂ ଏଠି ରହିବା ଉଚିତ ନୁହେଁ । କିନ୍ତୁ ଆଉ ଯିବ ବା କୁଆଡେ ? ମନେ ପକାଇଲା, ଏଇ ଘରକୁ ଆସିବାର ପ୍ରାୟ ତେରବର୍ଷ ହୋଇଗଲାଣି । ଗୁଣ୍ଡଗୌଡଙ୍କର ଏ ଘରଟା ନିଜ ଘର ଭଳି ଲାଗିଲାଣି । ତାଙ୍କର ଏ ଘରଟା ଦରକାର ପଡୁନଥିଲେ ମଧ୍ୟ ମୋର ତ ନିଜର ବୋଲି ଗୋଟିଏ ଘର ହେବା ଦରକାର । ନଷ୍ଟଙ୍କା ମନରେ ଏକ ନୂଆ ଆଶାର ସଂଚାର ହେଲା ।

ନୂଆ ଘରଟିଏ ଦରକାର କାରଣ କାଲି ବିଶ୍ୱ ବଡ ହେଲେ ତା'ପାଇଁ ତ ନିଜର ବୋଲି ଗୋଟିଏ ଘର ଦରକାର ହେବ । ସେତ ନିଶ୍ଚୟ ଇଲାକାଦାର ଚାକିରି କରିବ । କିମ୍ବା ଅତିକମ୍‌ରେ ମାଇନର ସ୍କୁଲରେ ମାଷ୍ଟରଟିଏ ହେବ । ସିଏ କ'ଣ ତା'ପରେ ଏ ଘରେ ରହିବ ? ମା' ମଧ୍ୟ ପୁଅ ପାଖରେ ରହିବାକୁ ବାଧ୍ୟ । କିନ୍ତୁ ଗାଁରେ ନିଜର ବୋଲି କୁଡିଆ ଖଣ୍ଡେ ତ ରହିବ । ଛୁଟିରେ ଆସି ଦୁଇ ଚାରିଦିନ ରହିବାପାଇଁ ଘର ଖଣ୍ଡିଏ ଥିବା ଦରକାର । ସଙ୍ଗେ ସଙ୍ଗେ ଡିହ ଖଣ୍ଡିଏ କିଣିବାକୁ ଭାବିଲା । ସେଇ ଗାଁର ତେଲୀ ଚେଲୁବ ସେଠି ତାର ଜମିବାଡି ଡିହ ସବୁ ବିକି ଅନ୍ୟ ଗାଁରେ ଯାଇ ରହିବ ବୋଲି ଠିକ୍ କରିଥାଏ । ନଷ୍ଟଙ୍କା ତା'ପାଇଁ ବିକ୍ରୀ କାଗଜ ଲେଖି ଦେବା ପାଇଁ ସାହାଯ୍ୟ କରିବ ବୋଲି କହିଲା । ଅର୍ଥାତ ବିକ୍ରୀ ଦଲିଲରେ ଲେଖାଯିବା କଥାସବୁ ନଷ୍ଟଙ୍କା ଡାକିବ ଏବଂ ଚେନ୍ନିଗରାୟ ଖାଲି ସେ ସବୁ ଲେଖିବ । ନଷ୍ଟଙ୍କା ସେଠୀକୁ କହିଲା ଯେ,"ଡିହ ବାବଦକୁ ପଚାଶ ଟଙ୍କା ନେଇ ଜାଗାଟା ଆମ ନାଁରେ କରିଦିଅ ।" ସେ ରାଜି ହୋଇଯିବାରୁ ବାକି ଜମିତକ କିଣୁଥିବା ଲୋକଙ୍କ ଠାରୁ ପଚାଶଟଙ୍କା ଲେଖା ବାବଦକୁ ନେଇ ତାକୁ ଦେଇ ଦେଲା । ସେ ଯାଗାଟିରେ ତିନି ବଖରା ରହିବା ଘର, ଗୁହାଳ ଇତ୍ୟାଦି କରିବାକୁ ପ୍ରାୟ ଦେଢହଜାର ଟଙ୍କା ଲାଗିଯିବ ।

Digitized by srujanika@gmail.com

ଏବେ ମଧ୍ୟ ସରକାର ଚାଷୀମାନଙ୍କ ଠାରୁ ବଳକା ଖାଦ୍ୟ ଶସ୍ୟ ସରକାରୀ ଦରରେ କିଣି ନେଉ ଯାଉଥିଲେ । ସେଥିପାଇଁ ହିସାବ କିତାବ ରଖିବା କାମ ସର୍ବରାକାରଙ୍କର । ତେଣୁ ଏବେ ମଧ୍ୟ କିଛି ଉପୁରି ଟଙ୍କା ମିଳୁଥିଲା । କୁରୁବରଦ୍ଧଳଙ୍କା ଛଡା ରାମଚନ୍ଦ୍ର ଏବଂ ଭିଙ୍ଗାପୁର ଲୋକେ ମଧ୍ୟ ଆସି ହିସାବ ଲେଖାଇ ନେଇ ଯାଆନ୍ତି ଏବଂ ସାଙ୍ଗରେ ଆଣିଥିବା ମାଣ୍ଡିଆ, ଚାଉଳ ଇତ୍ୟାଦି ଦେଇ ଯାଆନ୍ତି । ଏବେ ଘର ଖର୍ଚ୍ଚ ମଧ୍ୟ ବହୁତ କମି ଆସିଲାଣି । ଓଳିଏ ରାନ୍ଧିଦେଲେ ଦିନଯାକ ଖାଆନ୍ତି । ବଳିପଡିଥିବା ମାଣ୍ଡିଆକୁ ବିକା ଯାଇପାରେ । ମାଣ୍ଡିଆର ଦାମ୍ ମଧ୍ୟ ବହୁତ ବଢିଯାଇଥାଏ । ଦୁଇବର୍ଷର ଖଜଣା ଅସୁଲ ବାବଦକୁ ଆୟ ହୁଏ ପାଞ୍ଚଶହ ଟଙ୍କା । କୁରୁବରଦ୍ଧଳଙ୍କାର ଲୋକଙ୍କଠାରୁ ବର୍ଷକର ଆଗୁଆ ଖଜଣା ଆଦାୟ ମଧ୍ୟ କରାଯାଇପାରେ ।

ଦିନେ ଏ ସମୟରେ ମାଷ୍ଟ୍ରେ ଆସି କହିଲେ, "ଦେଖନ୍ତୁ ଏବେ ସରକାର ଗୋଟିଏ ପ୍ରୌଢ଼ ଶିକ୍ଷା କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ସରକାରୀ ଆଦେଶ ଅନୁସାରେ ବୁଢା ବୁଢୀ ଯୁବକ ସମସ୍ତେ ସାକ୍ଷର ହେବା ଦରକାର ଏବଂ ସେମାନଙ୍କୁ ରାତିରେ ଦୁଇଘଣ୍ଟା ପଢାଇବାର ବ୍ୟବସ୍ଥା ମଧ୍ୟ କରାଯିବ । ଏଇ ଗାଁର ପୁରୁଷମାନଙ୍କୁ ପଢାଇବା ପାଇଁ ନୈଶ୍ୟ ବିଦ୍ୟାଳୟରେ ମତେ ନିଯୁକ୍ତି କରାଯାଇଛି । ସ୍କୁଲ ଇନ୍‌ସପେକ୍ଟର ମହିଳାଙ୍କର ପଢିବା କଥା ପଚାରିବାରୁ ମୁଁ ତୁମ ନାଁ କହିଲି । "ମୋ ହାତରେ କ'ଣ ଏ କାମ ହୋଇ ପାରିବ ?"

"କାହିଁକି ହେବ ନାହିଁ । ମାତ୍ର ଆଠମାସର କାମ । ଖାଲି ଅ, ଆ ଅକ୍ଷର ଶିକ୍ଷା ଦେଇ ବହି ପଢିଲା ଭଳି ଉପଯୁକ୍ତ କରାଇବା କଥା । ତାପରେ ମହିଳାମାନେ ନିଜ ଘରେ ଆଗକୁ ପଢିବା ଅଭ୍ୟାସ କରିବେ । ଏଥିପାଇଁ ତୁମକୁ ମାସକୁ ପଚିଶି ଟଙ୍କା ବେତନ ମିଳିବ । ତୁମେ କେବଳ ମହିଳାମାନଙ୍କୁ ପଢାଇବ ।"

"କିନ୍ତୁ ପାଠ ପଢିବାକୁ ଆସିବ କିଏ ? ଏ ଗାଁର ଝିଅ, ବୋହୁ ?"

"ସରକାର ସ୍ଲେଟ୍, ଖଡି, ବହି, ଖାତା ସବୁ ମାଗଣାରେ ଦେବେ । ଲଣ୍ଠନ ଜଳାଇ ପଢିବା ପାଇଁ ମଧ୍ୟ ସରକାର ଖର୍ଚ୍ଚ ଦେବେ । କଳାପଟା, ଚକ୍ ଖଡି ସବୁ ମିଳିବ । ତୁମେ ତୁମର ଘରେ ସ୍କୁଲ କରିପାରିବ । ପ୍ରଥମେ ସାତ ଆଠଜଣଙ୍କୁ ଧରି ଆରମ୍ଭ କଲେ ପରେ ଆହୁରି ଆସିଯିବେ । ମୁଁ ମୋ ସ୍ତ୍ରୀକୁ ମଧ୍ୟ ପଠାଇବି ।"

ନନ୍ଦିମା କିନ୍ତୁ ରାଜି ହେଲା ନାହିଁ । ଦିନେ ତହସିଲଦାର ନିଜେ ଆସି କହିବାରୁ କିନ୍ତୁ ରାଜି ହୋଇଗଲା । କମ୍ପନକେରେ ସ୍କୁଲରେ ହେଡମାଷ୍ଟର ଏ ଅଞ୍ଚଳର ପ୍ରୌଢ଼ ଶିକ୍ଷାର ଭାର ନେଇଥିଲେ । ସେ ଦିନେ ଶଗଡରେ ସିଲଟ, ଖଡି, ବହି, ଖାତା, ଲଣ୍ଠନ ଆଦି ଲଦି ଆସି ପହଞ୍ଚିଗଲେ ଏବଂ ନନ୍ଦିମାକୁ ଦେଇ ଚାଲିଗଲେ । ମାଷ୍ଟ୍ରଙ୍କ ସ୍ତ୍ରୀ ଅ, ଆ ଲେଖି ଜାଣୁଥିଲେ ତଥାପି ମାଷ୍ଟ୍ରେ ତାଙ୍କୁ ପଢିବା ପାଇଁ ପଠାଇଲେ । ରେବଣ ସେଠୀର ସ୍ତ୍ରୀ ନିଜେ ନିଜେ ଆସି ପଢିବାକୁ ରାଜି ହେଲା । ତାର ସ୍ୱାମୀ ମନା

Digitized by srujanika@gmail.com

କଲେ ସୁଦ୍ଧା ମାନିଲା ନାହିଁ । ତା' ପଛକୁ ପଛ ଆଉ କେତେ ଜଣ ମଧ୍ୟ ପହଞ୍ଚିଗଲେ । ଏପରି ଚଉଦ ଜଣ ହୋଇଗଲେ । କଳାପଟାରେ ଅ, ଆ ଲେଖି ପାଠ ପଢାଇବା ନଷ୍ଟିକା ପାଇଁ ଏକ ନୂତନ ଅନୁଭବ ହେଲା ।

ଯିଏ ଶିଖିବା କଥା ସେମାନେ ଶିଖିଗଲେ । ଏବଂ ଯିଏ ନ ଶିଖିବା କଥା ସେମାନେ ରହିଗଲେ । କିନ୍ତୁ ରେବଣ ସେଠୀର ସ୍ତ୍ରୀ ସର୍ବକ୍କା ମୁଣ୍ଡରେ ଯେ ଏତେ ବୁଦ୍ଧି ଅଛି,ନଷ୍ଟିକା ସେ କଥା ଜାଣିନଥିଲା । ଗୋଟିଏ ଦିନରେ ସେ ଆଠ'ଟା ଅକ୍ଷର ଶିଖିଗଲା । ଏବଂ ଆଠଟା ଦିନରେ ସବୁ ଅକ୍ଷର ଶିଖିଯାଇ ବହି ପଢା ଆରମ୍ଭ କରିଦେଲା । ନଷ୍ଟିକାକୁ ସେ କହିଲା,"ମତେ ଆଗରୁ ଏସବୁ ଶିଖେଇ ଦେଇଥିଲେ, ଆଜି ମୁଁ ମଧ୍ୟ ତୁମ ଭଳି ହିସାବ କିତାବ ଲେଖା ଲେଖି କରି ପାରୁଥାନ୍ତି ।"

ଆଜିକାଲି ନଷ୍ଟିକାକୁ ବହୁତ ବ୍ୟସ୍ତ ରହିବାକୁ ପଡୁଥାଏ । ସକାଳୁ ସନ୍ଧ୍ୟା ବେଳ ପର୍ଯ୍ୟନ୍ତ ଘରକାମ ଏବଂ ତା'ସାଙ୍ଗକୁ ସର୍ବରାକାରୀ ଲେଖାପଢା କାମ । ଦିନେ ଦିନେ ମହାଦେବଯ୍ୟା ଆସି ବସିଯାଆନ୍ତି ଗପ କରିବାକୁ । ତାପରେ ରାତି ସାଢେ ଆଠଟା, ନଅଟା ପର୍ଯ୍ୟନ୍ତ କ୍ଲାସ୍ ଚାଲେ । ତାପରେ ଖାଇ ସାରି ଶୋଇ ପଡିଲେ ସାଙ୍ଗେ ସାଙ୍ଗେ ନିଦ ହୋଇଯାଏ । କ୍ଲାସରେ ପଢାଇଲା ବେଳେ ବିଶ୍ୱ କଥା ମନେ ପଡେ । କ'ଣ କରୁଥିବ କେଜାଣି ? ମା'କୁ ମନେ ପକାଇ କାନ୍ଦୁଥିବ । ଯେତେ ହେଲେ ଆଇ ବୁଢୀ ଅକ୍କମା ଅଛି ତେଣୁ ନଷ୍ଟିମାର ଚିନ୍ତା ନଥାଏ ।

କ୍ଲାସ ଦୁଇ ତିନିମାସ ଯାଏଁ ଚାଲିଲା । ଚଉଦଜଣରୁ ଛଅଜଣ ଆଉ ଆସିଲେ ନାହିଁ । ମାଷ୍ଟ୍ରେ କହିଥିଲେ ସେମାନେ ନ ଆସିଲେ ମଧ୍ୟ ତାଙ୍କ ନାଁ ହାଜିରା ଖାତାରୁ କଟାଇ ଦେବ ନାହିଁ । ପୁରୁଷ ଲୋକଙ୍କର କ୍ଲାସ୍ ଠିକ୍ ଚାଲିଥାଏ । ବାଇଶି ଜଣରୁ କୋଡିଏ ଜଣ ନିୟମିତ ଭାବେ ଆସୁଥିଲେ ।

ଦିନେ ମାଷ୍ଟ୍ରେ ଘରକୁ ଆସିଥାନ୍ତି । ଲୋକଙ୍କର ଅକ୍ଷର ଶିକ୍ଷା ବିଷୟରେ କହୁଥିଲେ । "ଏତେ ଏତେ ଲୋକ ଗୁଡାକ ହୋଇଛନ୍ତି ଚାରିଦିନରେ ଗୋଟାଏ ଅକ୍ଷର ଶିଖି ମନେ ରଖି ପାରୁନାହାନ୍ତି । ତାଙ୍କର ମନ ଧ୍ୟାନ ତ ଆଉ କୁଆଡେ । କେମିତି ଏ ଲୋକେ ଶିକ୍ଷିତ ହେବେ କେଜାଣି ?"

"ମାଷ୍ଟ୍ରେ ଆମ ଅପନ୍ନାଯ୍ୟାକୁ ମଧ୍ୟ ଆପଣ କ୍ଲାସରେ ଭର୍ତ୍ତିକରି ଦିଅନ୍ତୁ । ଗାଁରେ ଯେତେ ଦିନ ରହୁଥିବେ ସେତେ ଦିନ ଯାଇ ପଢୁଥିବେ । ବିଦ୍ୟା ଥିଲେ ସେ କ'ଣ ଆଜି ଏପରି ହୋଇ ବୁଲୁଥାନ୍ତେ ? ମୁଁ ମଧ୍ୟ ତାଙ୍କୁ କହିବି ।"

ମାଷ୍ଟ୍ରେ କହିଲେ –"ଅପନ୍ନାକୁ ସମୟ ଥିଲେ ସିନା ସ୍କୁଲକୁ ଆସିବ । ତାର ତ ରାତିରେ କେତେ କାମ ।" ଏହା କହି ସେ ହସି ପକାଇଲେ । ନଷ୍ଟିକା ଏହାର ଅର୍ଥ ବୁଝି ନ ପାରିବାରୁ ମାଷ୍ଟ୍ରେ କହିଲେ –"ସେ ପରା ଆଜିକାଲି ନରସୀ ସାଙ୍ଗରେ ଦୋସ୍ତି ଜମେଇଛି ।" ନଷ୍ଟିକାର ବିଶ୍ୱାସ ହେଲା ନାହିଁ ।

Digitized by srujanika@gmail.com

ଅପର୍ଣ୍ଣା ପାଖରେ ଏତେ ପଇସା କାହିଁ ସେ ବେଶ୍ୟାଟା ପାଖକୁ ନିତି ଯିବା ପାଇଁ । ଗାଁ ଗଣ୍ଡା ବୁଲି ଭିକ୍ଷା ମାଗିଲେ ପେଟ ପୋଷିବ । ପର ସ୍ତ୍ରୀ ଆଡେ ସେ ଦେଖେ ନାହିଁ । କହିଲା –"ମାଷ୍ଟ୍ରେ କିଏ ବୋଧହୁଏ ଏପରି ମିଛରେ ପ୍ରଚାର କରିଛି ।"

"ନାଁ, ନାଁ, ଏହା ସତ କଥା । ନରସୀ ପାଖକୁ ଆଜିକାଲି ଆଉ କେହି ଯାଉ ନାହାନ୍ତି । ତା'ପାଖରେ ଟଙ୍କା ପଇସାର ଅଭାବ ନାହିଁ । ତେଣୁ ଏ ଦୁହିଁଙ୍କ ଭିତରେ ଘନିଷ୍ଠତା କିପରି ହେଲା ଭଗବାନ ଜାଣନ୍ତି ।"

ନଷ୍ଟିଆକୁ ବହୁତ ଲଜ୍ଜା ଲାଗିଲା । ଯେତେ ହେଲେ ଅପର୍ଣ୍ଣା ତାର ଦିଅର । ଭିକ ମାଗିବା ତାଙ୍କ ଭାଗ୍ୟରେ ଥିଲା । କିନ୍ତୁ ଏପରି ଦୁର୍ଭାଗ୍ୟଜନକ କଥା ଶୁଣିବ ବୋଲି ସେ ଆଶା କରି ନଥିଲା । କେତେ ଦିନ ହେଲା ସେ ଭାବୁଥିଲା, ତାଙ୍କୁ ନିଜ ଘରେ ଖାଇବାକୁ ଦେଇ ରଖି ଗାଈ ଦୁଇଟାଙ୍କର କଥା ବୁଝିବାକୁ କହିବ । କିନ୍ତୁ ଏକଥା ଜାଣିଲେ ଶାଶୁ ପୁଣି କଳିଗୋଳ ଆରମ୍ଭ କରିବେ । କେତେ ପ୍ରକାର କଥା ବାହାର କରିବେ । ଅପର୍ଣ୍ଣା ମଧ୍ୟ ବଡ ଆଶ୍ଚର୍ଯ୍ୟ ପ୍ରକାରର ଲୋକ । ଭିକ୍ଷା ମାଗିବା ପାଇଁ ଦୁଇ ଚାରିଦିନ ନଗଲେ ତାଙ୍କର ହାତଗୋଡ ଘୋଳାଇ ହୁଏ । ଯାହାର ଯେପରି ଭାଗ୍ୟ, ଏମିତି ଭାବି ଆଜି ପର୍ଯ୍ୟନ୍ତ ଚୁପ ରହିଥିଲା । କିନ୍ତୁ ଆଜି ମାଷ୍ଟ୍ରଙ୍କ ଠାରୁ ଏପରି କଥା ଶୁଣି ଆଉ ମନ ଧୈର୍ଯ୍ୟ ଧରିଲା ନାହିଁ ।

. ଚାରିଦିନ ପର୍ଯ୍ୟନ୍ତ ଭାବୁଥାଏ ଯେ ଅପର୍ଣ୍ଣାକୁ ଏ ସମ୍ବନ୍ଧରେ କିଛି କହିଲେ ଭଲ ହେବ କି ନାହିଁ । ଶେଷକୁ ଆଉ ଚୁପ ନରହି ପାରି ଦିନେ ଅପର୍ଣ୍ଣା ତା' ଘରକୁ ତରକାରୀ ନେବା ପାଇଁ ଆସିଥିଲା ବେଳେ କହିଦେଲା – "ଅପର୍ଣ୍ଣା ଗୋଟେ କଥା ପଚାରିବି ଯଦି କିଛି ମନେ ନକର ।"

"ପଚାରୁ ନ ?"

"ଲୋକଙ୍କ ମୁହଁରେ କ'ଣ ବାଡ ବତା ଅଛି ? କିଏ କେତେ କଥା କହୁଛନ୍ତି । ତୁମେ ନରସୀର ଦୋକାନକୁ ଗୁଣ୍ଡିପତ୍ର ପାଇଁ ନଯାଇ ଆଉ କେଉଁଠୁ ନେଲେ ଭଲ ହେବ । ଖାଲିଟାରେ କାହିଁକି ବଦନାମ ମୁଣ୍ଡାଇବ ।"

"କେଉଁ ଶଳା ସିଏ, ମୋ ନାଁରେ କହିଛି ।"

"ଯିଏ ହେଲେ କହିଲା । ଆମେ ସାବଧାନ ରହିଲେ ଗଲା ।"

ଅପର୍ଣ୍ଣସ୍ୟା ଆଉ କିଛି କହି ପାରିଲା ନାହିଁ । କିନ୍ତୁ ତା'ପରଦିନ ଆଉ ତରକାରୀ ନେବା ପାଇଁ ଆସିଲା ନାହିଁ । ଆଠଦିନ ପର୍ଯ୍ୟନ୍ତ ନଷ୍ଟିଆ ତା'ପାଇଁ ତରକାରୀ ରଖି ବାସୀ ହୋଇ ଯାଉଥିବାରୁ ଫୋପାଡୁ ଥାଏ । ତା'ପର ଠାରୁ ନଷ୍ଟିଆ ମଧ୍ୟ ଆଉ ଅଧିକା ତରକାରୀ କଲା ନାହିଁ । ଭାବିଲା ବୋଧହୁଏ ମୋ ଉପରେ ରାଗିକରି ଆଉ ଆସୁନାହାନ୍ତି । କିନ୍ତୁ ଖାଉଛନ୍ତି କିପରି ? ନିଜେ ନିଜେ ସବୁ ରାନ୍ଧି ଖାଇଲା ବେଳକୁ କେତେ ପରିଶ୍ରମ । ଯେତେହେଲେ ପୁରୁଷ ଲୋକ । କିନ୍ତୁ ନିଜ କର୍ମଫଳ

Digitized by srujanika@gmail.com

କୁଆଡେ ଯିବ ? ନଷ୍ଟିକା ପରେ ଜାଣିଲା ଯେ ଅପନ୍ନା ଗାଁ ଛାଡି ଭିକ୍ଷା ମାଗିବା ପାଇଁ ଚାଲି ଯାଇଛି । ଏଥର ତିନିମାସ ପରେ ଯାଇ ଫେରିଲା । ସିଆଡୁ ଫେରି ମାଗି ଆଣିଥିବା ଧାନ ଦୁଇବସ୍ତା ଭାଉଜକୁ ଦେଲା । ତା'ପରଦିନ ଠାରୁ ସବୁଦିନ ନିୟମିତ ଭାବେ ତରକାରୀ ନେବାକୁ ଆସିଲା । ଦିନେ ମାଷ୍ଟ୍ରେ ଆସି କହିଲେ, "ଭଲ ହେଲା, ଏବେ ଅପନ୍ନା ନରସାର ଦୋକାନ ପାଖ ମାଡୁ ନାହିଁ ।"

3

ବିଶ୍ୱର କଲ୍ଲେଶ ମାମୁଁ ପ୍ରତି ଡର ଥିଲା । କିନ୍ତୁ କଲ୍ଲେଶ ତା ପ୍ରତି କେବେହେଲେ ହେଳା କରେ ନାହିଁ । ହାଟପାଳି ଦିନ ଚନାବୁର, ମିଠାଇ ଆଦି ଆଣି ଭଣଜାକୁ ଦିଏ । ନିଜ ସାଙ୍ଗରେ ବିଲ ଆଡେ ବୁଲାଇ ନିଏ । କିନ୍ତୁ ବେଶି ଚଗଲାମି କଲେ ଆଖି ଦେଖାଇ ଡରାଏ । ସେତିକିରେ ବିଶ୍ୱର ଅବସ୍ଥା ଖରାପ । ଦିନେ କିଏ ଫେରାଦ କଲା ଯେ ବିଶ୍ୱ କାହା ସାଙ୍ଗରେ ମାଡ ଗୋଳ କରିଛି । ସେଦିନ କଲ୍ଲେଶ ଜୋର୍ କରି ଚାପୁଡାଏ ବିଶ୍ୱକୁ ମାରିଲା । ବିଶ୍ୱ ତଳେ ପଡିଯାଇ ପେଣ୍ଡୁରେ ମୁତି ପକାଇଥିଲା । ଅକ୍କା କଲ୍ଲେଶକୁ ଗାଳି ଦେଇ ବିଶ୍ୱକୁ ଟାଣି ଟାଣି ନେଇଯାଇଥିଲା ।

ବିଶ୍ୱ ପ୍ରତି ମାଇଁ କମଳୁର ଟିକିଏ ହେଲେ ସ୍ନେହ ନଥାଏ । ସିଏ ଗାଳିରେ ବସିଲେ ତାକୁ ସବୁ ଖରାପ ଲାଗେ । କିନ୍ତୁ ସ୍ୱାମୀ ଏବଂ ଗୋସେଇଁ ଶାଶୁଙ୍କ ଡରରେ କିଛି କହି ପାରେ ନାହିଁ । ମନେ ମନେ ଦାନ୍ତ ଚୋବାଇ ଗାଳି ଦିଏ । "ଛତରଖିଆ କେଉଁଠୁ ଆସିଗଲା ଆମର ଖାଇବାକୁ ।" ବିଶ୍ୱ କିନ୍ତୁ ଆଉ ଆଗ ଭଳି ଦୁଷ୍ଟାମୀ କରୁନଥିଲା । କିନ୍ତୁ ପାଠପଢାରେ ଆଉ ବେଶି ଧ୍ୟାନ ଦେଉ ନଥିବାରୁ ସବୁ ଭୁଲି ସାରିଥିଲା । ଗୋଇବସର ହେବାରୁ ଭଲକରି ପଢୁନାହିଁ ଏହା ଭାବି କଲ୍ଲେଶ ଶାସନ କରିବା ଆରମ୍ଭ କଲା । ତଥାପି କିଛି ଫଳ ହେଲା ନାହିଁ । କଲ୍ଲେଶ ପଢେଇ ବସିଲେ ଅନେକ ମାଡ ଦିଏ । କିନ୍ତୁ ବିଶ୍ୱର ମନ ପଢାରେ ମୋଟେ ନଥାଏ । ଖାଲି ଛେଳିକୁ ବାନ୍ଧିଲା ଭଳି ବସି ରହିଥାଏ ।

ନାଗଲାପୁରର ପୋଖରୀଟା ରାମସନ୍ଦ୍ର ଗାଁର ପୋଖରୀ ଠାରୁ ବହୁତ ବଡ । ପୋଖରୀ ମଝିରେ ବଡ ବଡ ପଥର ଥାଏ । ବିଶ୍ୱର ସବୁବେଳେ ଇଚ୍ଛା ଯେ ପହଁରି ପହଁରି ପୋଖରୀ ଭିତରକୁ ଯାଇ ସେ ପଥର ଉପରେ ବସନ୍ତା ଏବଂ ଖରାରେ ଦେହରୁ ପାଣି ଶୁଖିଗଲେ ପୁଣି ପହଁରି ପୋଖରୀ କୂଳକୁ ଫେରି ଆସନ୍ତା । କିନ୍ତୁ ମାମୁଁଙ୍କର କଡା ଆଦେଶ ଯେ ପୋଖରୀ ଭିତରକୁ ପଶିବାକୁ ହେବ ନାହିଁ । ଏଗାଁକୁ ଆସିଲା ଦିନଠାରୁ ନା' ଗଛରେ ଚଢିବାକୁ ସୁବିଧା ମିଳୁଛି ନା ମହୁଫେଣ ଭାଙ୍ଗିବାର ଆନନ୍ଦ ମିଳୁଛି । ଆମ ଗାଁକୁ ପଳାଇଲେ ଭଲ ହୁଅନ୍ତା । କିନ୍ତୁ ମା' ତ ପୁଣି ଆଣି ଏଠି ଛାଡିଦେବ । ଏହା ଭାବି ଭାବି ମା'କୁ ମନେ ମନେ କେତେ ଗାଳି ଦେଲା ।

Digitized by srujanika@gmail.com

ଦିନେ ସକାଳୁ ବସ୍ତାନି ଧରି ସ୍କୁଲକୁ ଗଲାବେଳେ ବିଶ୍ୱ ଦେଖିଲା ବହୁତ ଲୋକ ସ୍କୁଲ ଆଡେ ଯାଉଛନ୍ତି । ସମସ୍ତଙ୍କ ଆଗରେ ଜଣେ ନେତା ଧଳା ଟୋପି ପିନ୍ଧି ଚାଲିଥାନ୍ତି । ତାଙ୍କ ହାତରେ ଗୋଟିଏ ପତାକା ଥାଏ । ଆଉ ଜଣେ ମୁହଁ ପାଖରେ ଗୋଟିଏ କ'ଣ ଧରି କହୁଥାଏ "ଭାରତ ମାତାର ଜୟ" । ଏହା ବହୁତ ଜୋରରେ ଶୁଣା ଯାଉଥାଏ । ସାଙ୍ଗରେ ଯାଉଥିବା ଲୋକମାନେ ମଧ୍ୟ "ଜୟ" ବୋଲି ପାଟି କରୁଥାନ୍ତି । ବିଶ୍ୱକୁ ଏ ଦୃଶ୍ୟ ଦେଖି ଖୁବ୍ ଖୁସି ଲାଗିଲା । ଆଗରେ ଲୋକଟି ଯାହା କହୁଥିଲା ତାରି ପାଞ୍ଚଥର ଶୁଣିବା ପରେ ବିଶ୍ୱର ମନେ ରହିଯିବାରୁ ସେ ମଧ୍ୟ ଜୋରରେ ଚିତ୍କାର କରି କହିଲା– "ବୋଲ ଭାରତମାତା କୀ" ତାପରେ ସମସ୍ତେ "ଜୟ" ବୋଲି କହିଲେ । ଏହିପରି ସାତ ଆଠଥର ସେ କହିବାରୁ ଲୋକ ଜୟ ଜୟକାର କଲେ । ଭିଡ ଆଗରେ ଚାଲୁଥିବା ଲୋକଟି ବିଶ୍ୱର ପିଠି ଥାପୁଡାଇ କହିଲେ – "ଭାରି ବୁଦ୍ଧିଆ ପିଲାଟିଏ । ତୁ ଆସ ଏଇ ପତାକାଟି ଧର । ଯାହା କହୁଥିଲୁ ପୁଣି କହ ।" ଏହା କହି ତା ମୁହଁ ଆଗରେ ସେହି ଯନ୍ତ୍ରଟି ଧରି ରଖିଲେ । ବିଶ୍ୱକୁ ବହୁତ ମଜା ଲାଗୁଥାଏ ।

ସମସ୍ତେ ସ୍କୁଲ ସାମନାରେ ଥିବା ପଡିଆରେ ଜମା ହେଲେ । ସମସ୍ତେ ବସିଯିବା ପରେ ଗୋଟିଏ ଟେବୁଲ ଉପରେ ଡାକବାଜି ଯନ୍ତ୍ରଟି ରଖି ନେତା ଜଣଙ୍କ ବକ୍ତୃତା ଦେବା ଆରମ୍ଭ କଲେ । "ଭାଇ ଓ ଭଉଣୀମାନେ । ଆମ ଦେଶର ଶାସନ ବର୍ତ୍ତମାନ ନାଲିମୁହଁ ମାଙ୍କଡ ମାନଙ୍କ ହାତରେ ଅଛି । ଦେଶରୁ ସବୁ ଧନରତ୍ନ ଲୁଟି ସେମାନେ ଇଂଲଣ୍ଡ ନେଇ ଯାଉଛନ୍ତି । ଭାରତମାତାର ସ୍ୱାଧୀନତା ପାଇଁ ଆମେ ସମସ୍ତେ ଏକଜୁଟ୍ ହେବାକୁ ପଡିବ । ଆମେ ପ୍ରତ୍ୟେକ ଏ ସ୍ୱାଧୀନତା ସଂଗ୍ରାମର ସିପାହୀ ।

ଡାକବାଜି ଯନ୍ତ୍ର ସାହାଯ୍ୟରେ ସେ ବକ୍ତୃତା ବହୁତ ଜୋରରେ ଶୁଣା ଯାଉଥାଏ । ବିଶ୍ୱ ପାଖରେ ଠିଆ ହୋଇଥିବା ଦୁଇ ତିନିଜଣ ଲୋକଙ୍କର କଥାବାର୍ତ୍ତାରୁ ଜାଣିପାରିଲା ଯେ ସେଦିନ ଦିପହରରେ ଚନ୍ଦ୍ରଗୟପଟଣ ହାଟ ପଡିଆରେ ମଧ୍ୟ ଗୋଟିଏ ବଡ ସଭାର ଆୟୋଜନ କରାଯାଇଛି । ସଭା ସରିବା ପରେ ଅନେକ ଲୋକ ଚନ୍ଦ୍ରଗୟପଟଣ ଆଡେ ଚାଲିଲେ । ବିଶ୍ୱର ମଧ୍ୟ ଯିବାକୁ ଇଚ୍ଛା ହେଲା । ସେ ନେତାଙ୍କୁ କହିଲା – "ମୁଁ ମଧ୍ୟ ଯିବି ।"

"ଆଠ ମାଇଲ ଚାଲି କରି ଯାଇ ପାରିବୁ ?"

"ହଁ ମୁଁ ତ ଖୁଣ୍ଟଗାଁ ପର୍ଯ୍ୟନ୍ତ ଚାଲି କରି ଯାଉଛି ।"

ତାପରେ ଲୋକଙ୍କର ଭିଡ ଭିତରେ ସେ ମଧ୍ୟ ଚାଲିଲା । ବାଟଯାକ ବିଶ୍ୱକୁ ଖୁବ୍ ଖୁସି ଲାଗୁଥାଏ । ଦିନ ଗୋଟାଏ ବେଳେ ଯାଇ ସମସ୍ତେ ଚନ୍ଦ୍ରଗୟପଟଣ ପହଞ୍ଚିଲେ, ସେତେବେଳକୁ ବିଶ୍ୱକୁ ଖୁବ୍ ଭୋକ ଲାଗୁଥାଏ । ସେ ଯାଇ ନେତାଙ୍କ ଆଗରେ କହିବାରୁ ସେ ତାକୁ ଗୋଟିଏ ଜାଗାକୁ ନେଇ ଖାଇବା ବ୍ୟବସ୍ଥା କରିଦେଲେ । ହାଟ ପଡିଆରେ ସେତେବେଳକୁ ବହୁତ ଲୋକ ଜମା ହୋଇଥାନ୍ତି । ପଡିଆ ମଝିରେ ଗୋଟିଏ ମଞ୍ଚ ତିଆରି ହୋଇ ଡାକବାଜି ଯନ୍ତ୍ର ଲାଗିଥାଏ । ବିଶ୍ୱକୁ ପତାକାଟା ଧରାଇ ନେତା ଜଣଙ୍କ ପଚାରିଲେ –"ତୁ କ'ଣ ଭାଷଣ ଦେଇ ପାରିବୁ ?"

Digitized by srujanika@gmail.com

"ହଁ ଆଜ୍ଞା।"

"ଆଚ୍ଛା ମୁଁ ତତେ କହିଦେବି କ'ଣ କ'ଣ ବକ୍ତୃତାରେ କହିବାକୁ ହୁଏ।"

"ନାଁ ନାଁ, ଆପଣ ଯାହା ଆମ ଗାଁରେ କହିଥିଲେ ସେ ସବୁ ମୋର ମନେ ଅଛି। ସେୟା କହିବି। କହିବି ଯେ ଗୋରା ମାଙ୍କଡମାନେ ଭାରତ ମାତାକୁ ବନ୍ଦୀ କରି ରଖିଛନ୍ତି।"

"ଠିକ୍ କଥା।" ଏହା ଛଡା ଅନେକ କଥା ବିଶ୍ବକୁ ସେ ନେତା ଜଣକ ବତାଇ ଦେଲେ।

ସଭା ଆରମ୍ଭ ହେବା ପୂର୍ବରୁ ଜଣେ ବ୍ୟକ୍ତି ମଞ୍ଚ ଉପରେ ଠିଆ ହୋଇ "ବନ୍ଦେ ମାତରମ୍" ଗୀତଟିଏ ଗାଇଲା। ତାପରେ ଘୋଷଣା କରାଗଲା ଯେ ସର୍ବ ପ୍ରଥମେ ଭାରତମାତାର ଏକ କୋମଳ ଶିଶୁ ଭାଷଣ ଦେବେ। ଏହା ପରେ ବିଶ୍ବକୁ ମଞ୍ଚ ଉପରକୁ ଚଢାଇ ଦିଆଗଲା। ନେତା ଜଣକ ତାକୁ ମାଇକ୍ ସାମନାରେ ଠିଆ କରାଇଦେଲେ। ବିଶ୍ବ ଚାରିଆଡେ ଚାହିଁ ଦେଖିଲା ଯେ ଚାରିଆଡେ ଜନ ସମୁଦ୍ର। ଡରରେ ତାର ମୁହଁ ଲାଲ ହୋଇଗଲା। ନେତା ଜଣକ ବିଶ୍ବର କାନରେ ଧୀରେ କହିଲେ "ଭାରତମାତା କୀ ଜୟ୍" ବୋଲି କହ। ବିଶ୍ବ ମାଇକ୍ ଆଗରେ ଜୋର୍ କରି "ଭାରତମାତା କୀ ଜୟ୍" ବୋଲି ପାଟିକଲା। ଲୋକଙ୍କର ଜୟ୍ ଜୟ୍କାରରେ ହାଟ ପଡିଆ କମ୍ପିଉଠିଲା। ଅନେକ ଥର ସେପରି ଜୟ୍କାର କରି ସାରିବା ପରେ ବକ୍ତୃତା ଆରମ୍ଭ କଲା।

"ଭାଇ ଓ ଭଉଣୀ ମାନେ ଆପଣମାନେ ଜାଣନ୍ତି ଯେ ଆଜି ଭାରତ ମାତାର ହାତଗୋଡ ପରାଧୀନତାର ଶିକୁଳିରେ ବନ୍ଧା ହୋଇଛି। ଆଜି ଆମେମାନେ ସମସ୍ତେ ବିଦେଶୀ ଶାସକଙ୍କର ଗୋଲାମ। ଏ ଗୋରା ମୁହାଁ ମାଙ୍କଡମାନେ ଆମ ଦେଶରୁ ସବୁ ଧନ ସମ୍ପତ୍ତି ନେଇ ଯାଉଛନ୍ତି। ତେଣୁ ଆପଣମାନଙ୍କୁ ଅନୁରୋଧ ଯେ ଇଂରେଜ ସରକାରକୁ ଖଜଣା ଦିଅନ୍ତୁ ନାହିଁ।" ଏହିପରି ଭାଷଣ ଦେଉ ଦେଉ ମନରୁ ମଧ୍ୟ ଅନେକ କଥା ଯୋଡି କହିଲା ଏବଂ ଇଂରେଜମାନଙ୍କୁ ଅନେକ ଗାଳି ବର୍ଷଣ କଲା। ତାର ଭାଷଣ ସରିବା ପରେ ପାଖରେ ଠିଆ ହୋଇଥିବା ଲୋକ ଜଣକ ବିଶ୍ବର ବେକରେ ଫୁଲ ମାଳଟିଏ ପକାଇ ଦେଲା। ଲୋକଙ୍କର କରତାଳି ଶବ୍ଦରେ ସାରା ପଡିଆ କମ୍ପି ଉଠିଲା। ବିଶ୍ବ ମଞ୍ଚ ଉପରୁ ତଳକୁ ଓହ୍ଲାଇ ସାରିବା ପରେ ଆଉ ଜଣେ ବକ୍ତା ମଞ୍ଚ ଉପରକୁ ଚଢିଲେ। ସେ ଭାଷଣ କ'ଣ ଦେବେ, ବିଶ୍ବର ପ୍ରଶଂସା କରିବାରେ ଲାଗିଲେ। "ଦେଖିଲେ ତ ଏଇ ସାହସୀ ବାଳକଟି ସିଂହ ଶିଶୁ ପରି କେମିତି ବିଦେଶୀ ଶାସକ ବିରୁଦ୍ଧରେ ବିଦ୍ରୋହ ପ୍ରକାଶ କଲା। ସେହିଭଳି ଆପଣମାନେ କେହି ହେଲେ ଖଜଣା ଦିଅନ୍ତୁ ନାହିଁ। ପୁଲିସ ଅତ୍ୟାଚାର କଲେ ସୁଦ୍ଧା ଏଇ ଛୋଟ ବାଳକଟିର କଥା ମନେ ପକାଇଲେ ଆପଣମାନଙ୍କର ସାହସ ଆସିବ।" ହଠାତ୍ ଜମା ହୋଇଥିବା ଲୋକ ଇତସ୍ତତଃ ଧାଇଁବାରେ ଲାଗିଲେ। ଖାକି ପୋଷାକ ପିନ୍ଧା ପୁଲିସ ଲମ୍ବା ଲମ୍ବା ଠେଙ୍ଗା ଧରି ପହଞ୍ଚିଗଲେ। ଧଳା ଟୋପି ପିନ୍ଧିଥିବା ଲୋକମାନଙ୍କୁ ଘେରି ଯାଇ ତାଙ୍କଠାରୁ ଯନ୍ତ୍ର ଆଦି ଛଡାଇ ନେଲେ। ତାପରେ ସମସ୍ତଙ୍କୁ ଥାନାକୁ ନେଇଗଲେ। ସେମାନଙ୍କ ଭିତରେ ବିଶ୍ବ ମଧ୍ୟ ଥିଲା। ସମସ୍ତଙ୍କୁ ଗୋଟିଏ ବଡ କୋଠରୀ ଭିତରେ ପୂରାଇ ଦେଇ ବାହାରୁ ତାଲା ପକାଇ ଦିଆଗଲା। ହାଜତ ଭିତରେ ସମସ୍ତେ "ଭାରତମାତା କୀ ଜୟ୍" ବୋଲି ଚିତ୍କାର କରୁଥାନ୍ତି। ସେମାନଙ୍କ ଭିତରୁ କାହାରିକୁ ହେଲେ ବିଶ୍ବ ଚିହ୍ନି ନଥିଲା। ଯେଉଁ ଧଳା

Digitized by srujanika@gmail.com

ଟୋପି ପିନ୍ଧା ନେତା ଜଣକ ତାଙ୍କୁ ବକ୍ତୃତା ଦେବାକୁ କହିଥିଲେ ସେ ତାଙ୍କ ଭିତରେ ନଥିଲେ । ତେଣୁ ଡରି ଯାଇ ବିଶ୍ୱ କାନ୍ଦ ଆରମ୍ଭ କରିଦେଲା । ଜଣେ ଲୋକ ତାକୁ ବୁଝେଇବାକୁ ସେ କାନ୍ଦ ବନ୍ଦ କଲା, କିନ୍ତୁ ତାକୁ ଡର ଲାଗୁଥାଏ । ସକାଳୁ ଏପର୍ଯ୍ୟନ୍ତ ତାକୁ ମଜା ଲାଗୁଥିଲା । ଏବେ କାହିଁକି କିନ୍ତୁ ଏ ଘର ଭିତରେ ବନ୍ଦ କରି ତାଲା ପକାଇ ଦେଇଛନ୍ତି । ସତରେ କ'ଣ ଏଇଟା ଜେଲ ? ସେ ପଚାରିଲା –"ଆଜ୍ଞା ଏଇଟା କ'ଣ ଜେଲ ?"

"ନାଇଁରେ ପୁଅ, ଏଇଟା ରାଜମହଲ ।" ଜଣେ କହିଲା ।

"ତାହାହେଲେ ସିଂହାସନ କାହିଁ ?"

"ପିଲାଟା ଭାରି ଚାଲାକ୍ ।" ସମସ୍ତେ କହିଲେ । କିନ୍ତୁ କେହି ହେଲେ ତା' ପ୍ରଶ୍ନର ଉତ୍ତର ଦେଲେ ନାହିଁ ।

ତାପରେ କବାଟ ଖୋଲି ଜଣେ ପୁଲିସ ଅଫିସର ଭିତରକୁ ଆସିଲେ ଏବଂ ବିଶ୍ୱର ହାତ ଧରି ବାହାରକୁ ନେଇ ଯିବାକୁ ବସିଲେ । ବାକି ସବୁ ଲୋକ ଠିଆ ହୋଇ ପାଟି କଲେ, "ତୁମେ ଏ ପିଲାକୁ ମାରିବ । ତେଣୁ ଏହାକୁ ଆମେ ବାହାରକୁ ଛାଡିବୁ ନାହିଁ ।" "ଏତେ ଛୋଟ ପିଲାକୁ ଆମେ କାହିଁକି ମାରିବୁ ? ତାର ଅଭିଭାବକ ଆସିଛନ୍ତି ।" ଏହା କହି ବିଶ୍ୱକୁ ବାହାରକୁ ନେଇଗଲେ ଏବଂ ପୁଣି କବାଟରେ ତାଲା ପକାଇ ଦେଲେ । ବାହାରକୁ ଆଣି ବିଶ୍ୱକୁ ଜଣେ ମୋଟା ପୁଲିସ ଅଫିସରଙ୍କ ଆଗରେ ଠିଆ କରାଗଲା । ସେ ପଚାରିଲେ, "ତୁମର କେଉଁ ଗାଁ ?"

"ରାମସନ୍ଦ୍ର ।"

"ରାମସନ୍ଦ୍ର ? ସେଇଟା କେଉଁଠି ?" ପାଖରେ ଥିବା ପୁଲିସକୁ ପଚାରିଲେ । ବିଶ୍ୱ ନିଜେ ଉତ୍ତର ଦେଲା – "ତୁମକୁର ଜିଲ୍ଲା । ତିପଟୁର ତାଲୁକା ଏବଂ ଅମ୍ମାନକେରେ ଇଲାକା ।"

"ସାବାସ ତୁ ସବୁ ଜାଣିଛୁ । କେଉଁ ଶ୍ରେଣୀରେ ପାଠ ପଢୁଛୁ ?"

"ତୃତୀୟ ଶ୍ରେଣୀରେ ।"

"ତୁ କାହାର ପୁଅ ?"

"ମୁଁ ସର୍ବରାକାର ଚେନ୍ନିଗରାୟଙ୍କ ପୁଅ ।"

"ସର୍ବରାକାରର ପୁଅ ହୋଇ ଏପରି କାମ କରୁଛୁ । ତତେ କିଏ ଡାକି ଆଣିଥିଲା ?" ପାଖରେ ଠିଆ ହୋଇଥିବା ଜଣେ ପୁଲିସ କହିଲା – "ଆଜ୍ଞା ରାମସନ୍ଦ୍ର ଗାଁ ଏ ଜିଲ୍ଲାରେ ନୁହେଁ ।" ମୋଟା ଅଫିସର ପୁଣି ପଚାରିଲା – "ତୁ କେଉଁ ଗାଁରୁ ଆସିଛୁ ?"

"ନାଗଲାପୁରରୁ ।"

"ସେଠି କ'ଣ କରୁଥିଲୁ ?"

"ସ୍କୁଲରେ ପାଠ ପଢେ ।"

Digitized by srujanika@gmail.com

"କାହାଘରେ ରହୁ ?"

"କଳେଶଜୋଇସ୍‌ଙ୍କ ଘରେ ।"

"ସେ ତୋର କ'ଣ ହୁଅନ୍ତି ?"

"ମୋ ମା'ଙ୍କ ବଡ ଭାଇ ।"

ପାଖରେ ଠିଆ ହୋଇଥିବା ପୁଲିସଟା ପୁଣି କହିଲା – "ଓହୋ, ଆଜ୍ଞା ମୁଁ ସବୁ ବୁଝିଗଲି । ସେ କଳେଶ ମୋ ସାଙ୍ଗରେ କନେଷ୍ଟବଳ ଥିଲା । ଏଇ ଗାଁର ମସଜିଦ୍ ପଛପଟେ ଗୋଟିଏ ଘରେ ରହି କଣ୍ଠାଜୋଇସ ଗୁଣିଆ କାମ କରନ୍ତି । କଳେଶ ତାଙ୍କ ପୁଅ । ହଉରେ ପିଲା ତୁ, ଏଠାକୁ ଆସିଲୁ କିପରି ?"

ବିଶ୍ୱ ସକାଳୁ ବାହାରିଲା ଠାରୁ ଚନ୍ଦ୍ରରାୟପଟ୍ଟଣ ପହଞ୍ଚିଲା ପର୍ଯ୍ୟନ୍ତ ସାରା ଘଟଣା ବର୍ଣ୍ଣନା କଲା । ପୁଲିସ କନେଷ୍ଟବଳ ଜଣକ କହିଲା – "ଏ ପିଲାକୁ କଣ୍ଠାଜୋଇସ୍‌ଙ୍କ ପାଖରେ ଛାଡି ଦିଅନ୍ତୁ । କାହିଁକି ଏ ବୋଝ ହାତକୁ ନେବେ ।" ତାପରେ ବିଶ୍ୱକୁ ଆଖି ଦେଖାଇ କହିଲା – "ଆଉ କେବେହେଲେ ଏ ଲୋକମାନଙ୍କ ସାଙ୍ଗରେ ମିଶି ଜୟ ଜୟକାର କରିବୁ ଯଦି ମାରି ମାରି ତୋ ପିଠିରୁ ଚମଡା ଉତାରି ଦେବି । ବୁଝିଲୁ ।" ବିଶ୍ୱ ଡରି ଯାଇ କହିଲା – "ନାହିଁ ନାହିଁ ।" ସେ କନେଷ୍ଟବଳ ବିଶ୍ୱର ହାତ ଧରି ବାହାରକୁ ନେଇ ଚାଲିଗଲା । ବଜାର ରାସ୍ତା ଦେଇ ମସଜିଦ୍ ଆସିଲା । "କିଏ ?" ବାହାରୁ ପୁଲିସଟି କହିଲା – "କବାଟ ଖୋଲନ୍ତୁ । ଆପଣଙ୍କ ନାତି ଆସିଛି ।" ଦୀପ ଜଳାଇ କବାଟ ଖୋଲିବା ଲୋକଟିର ଚେହେରା ବେଶ ଉଚ୍ଚା ଏବଂ ମୋଟା ।

"ଆପଣଙ୍କର ଝିଅର ପୁଅ ଅଜାଣତରେ କଂଗ୍ରେସ ଲୋକମାନଙ୍କ ସାଙ୍ଗରେ ଗାଁରୁ ପଳାଇ ଆସିଥିଲା । ଆପଣଙ୍କ ପାଖରେ ଛାଡିବାକୁ ଆସିଛି । ଯାକୁ ବାହାରକୁ ଛାଡିବେ ନାହିଁ ।" ଏହା କହି ପୁଲିସ ଜଣକ ଚାଲିଗଲା ।

ବିଶ୍ୱ ଅଜାଙ୍କୁ ବହୁତ ଦିନ ତଳେ ଦେଖିଥିଲା । ନାନୀର ବିଭାଘର ଆଗରୁ, ଗାଁକୁ ଆସିଥିଲେ । କିନ୍ତୁ ତାର ଅଜାଙ୍କ ଚେହେରା ପୁରା ମନେ ନଥିଲା । ଘର ଭିତରକୁ ଯାଇ ଦେଖି ତାର ମନରେ ଭୟ ଆସିଲା । ଘରେ ବାଘ ଚମଡା ବିଛା ହୋଇଛି । ମଣିଷ ଖପୁରୀ, କଙ୍କାଳ ଆଦି ରଖା ହୋଇଛି । ସେ କହିଲା, "ମତେ ଡର ଲାଗୁଛି ।" "ଆଜିତ ବହୁତ ଜୋରରେ ଭାଷଣ ଦେଉଥିଲୁ । ଏବେ କାହିଁକି ଡର ଲାଗୁଛି ? ସେତେବେଳେ ମୁଁ ତତେ ଚିହ୍ନି ପାରିନଥିଲି । ଯାହା ହେଉ, ମୋ ଝିଅ ତତେ ଜନ୍ମ କରି ବଡ ଭାଗ୍ୟ ପାଇଛି ।" ଏହା କହି ବିଶ୍ୱର ହାତ ଧରି ନେଇ ପାଖରେ ବସାଇଲେ ।

ନଞ୍ଜମ୍ମା ଉପରେ କଣ୍ଠାଜୋଇସ ବହୁତ ରାଗି ଥିଲେ । ତାର ପୁଅ ଝିଅ ମରିବା ଖବର ଶୁଣି ମଧ୍ୟ ତାଙ୍କର ରାଗ ଶାନ୍ତି ହୋଇନଥିଲା । ସେ ଭୁଲି ପାରିନଥିଲେ ଯେ ତାଙ୍କର ଝିଅ ହୋଇ ନଞ୍ଜମ୍ମା, କଳେଶ ସାଙ୍ଗରେ ପାର୍ବତୀକୁ ବିଭା କରିବା ପ୍ରସ୍ତାବ ଅମାନ୍ୟ କରିଥିଲା । ସେଇଦିନ ଠାରୁ ନାତି ନାତୁଣୀଙ୍କ

Digitized by srujanika@gmail.com

ସାଙ୍ଗରେ ତାଙ୍କର ସମ୍ପର୍କ ତୁଟାଇ ଦେଇଥିଲେ । ଅବଶ୍ୟ ବେଳେ ବେଳେ ଭାବୁଥିଲେ ଯେ ପିଲାଦୁଇଟା ମରିଯିବା ପରେ ନନ୍ଦିକାର ମନ ଭାଙ୍ଗିଯାଇଥିବ । କିନ୍ତୁ ରାଗରେ ତା' ପ୍ରତି କୌଣସି ସହାନୁଭୂତି ଦେଖାଇ ପାରୁନଥିଲେ । କିନ୍ତୁ ଏ ପିଲାଟାତ ସତରେ ତାଙ୍କ ମନ ଜିଣି ନେଲା । ପୁଲିସକୁ ନ ଡରି ଦଶ ପନ୍ଦର ହଜାର ଲୋକଙ୍କୁ ଭାଷଣ ଦେଇ ପାରିଲା । କଣ୍ଡାକୋଇସ୍ ନିଜେ ଆଖିରେ ଏକଥା ଦେଖିଛନ୍ତି ଏବଂ ଲୋକେ ତାକୁ ସିଂହ ଶିଶୁ ବୋଲି ପ୍ରଶଂସା କରିବାର ମଧ୍ୟ ଶୁଣିଛନ୍ତି । ସେ ମଧ୍ୟ ବିଶ୍ବର ଭାଷଣ ଶୁଣିଛନ୍ତି । ଏବେ ସେଇ ପିଲାକୁ ନିଜ ନାତିବୋଲି ଚିହ୍ନିପାରି ତାଙ୍କ ମନରେ ବହୁତ ଗର୍ବ ଆସିଲା । ସେ ପଚାରିଲେ –"ତୁ ସେ ସଭାକୁ କିପରି ଆସିଲୁ ? ବିଶ୍ବ ଅଜାଙ୍କୁ ସବୁ ଘଟଣା କହିଲା । କଣ୍ଡାକୋଇସ୍ ଜାଣି ପାରିଲେ ଯେ ବିଶ୍ବ ଏବେ ତାଙ୍କ ଗାଁରେ ରହୁଛି । ବହୁତ ଦିନ ଧରି ସେ ଗାଁକୁ ଯାଇ ନଥିଲେ । ନାତିକୁ ଭୋକ ଲାଗୁଛି କି ବୋଲି ପଚାରିଲେ । ସେ ହଁ କରିବାରୁ ତାକୁ ଚିନି ଏବଂ କଦଳୀ ଦେଲେ ଏବଂ କହିଲେ, "ଏବେ ଖାଇ ଶୋଇ ପଡ, ସକାଳୁ ହୋଟେଲରେ ଯାଇ ଖାଇବା ।" ଖାଇ ସାରିବା ପରେ ନିଜ ପାଖରେ ବିଶ୍ବକୁ ଶୁଆଇ ଦୀପ ଲିଭାଇ ଶୋଇଗଲେ । ବିଶ୍ବ ଶୋଇଗଲା, କିନ୍ତୁ କଣ୍ଡାକୋଇସ୍‌ଙ୍କୁ ନିଦ ଆସିଲା ନାହିଁ । ଇଚ୍ଛା ହେଲା ଝିଅକୁ ଯାଇ ଦେଖି ଆସିବା ପାଇଁ । ତାର ପିଲା ଦୁଇଟା ମରିବାର ପ୍ରାୟ ବର୍ଷେ ହେଲାଣି । ମନ ଦୁଃଖରେ ବହୁତ ଦୁର୍ବଳ ହୋଇ ଯାଇଥିବ । ପାର୍ବତୀର ବିଭାଘରକୁ ମଧ୍ୟ ମୁଁ ଗଲି ନାହିଁ । ମା' କହୁଥିଲା ଯେ ଭଲ ବରପାତ୍ର ଟିଏ ପାଇଥିଲା । କିନ୍ତୁ ନନ୍ଦିକାର ସ୍ୱାମୀ ନିହାତି କର୍ମକୁଣ୍ଠୀ । ମୋ ଝିଅ ପାଇଁ ଉପଯୁକ୍ତ ହେଲା ନାହିଁ । କିନ୍ତୁ ତାର ଏ ଛୁଆଟା ବଡ ମଣିଷ ହେବ । ଏଇ ଭାବନାରେ କଡ ଲେଉଟାଉଥାନ୍ତି ।

କିଛି ସମୟପରେ କିଏ କବାଟ ବାଡେଇଲା ପରି ଶୁଣାଗଲା । କଳ୍ପେଶର ପାଟିପରି ଜଣାଗଲା । କଣ୍ଡାକୋଇସ୍ ଉଠି ଦୀପ ଲଗାଇ ଦ୍ୱାର ଖୋଲିଲେ । ବିଶ୍ବକୁ ସେଠି ଶୋଇଥିବାର ଦେଖି କଳ୍ପେଶର ଛାତିରେ ପ୍ରାଣ ପଶିଲା । ସନ୍ଧ୍ୟା ପର୍ଯ୍ୟନ୍ତ ବିଶ୍ବକୁ ଅପେକ୍ଷା କରି ସାରି ଗାଁର କୂଅ ପୋଖରୀ ସବୁ ଖୋଜିସାରି ଥିଲା । ରାତିରେ କାହାଠାରୁ ଶୁଣିଲା ଯେ ଚନ୍ନରାୟପଟ୍ଟଣ ଆଡେ ଯାଉଥିବା ଲୋକଙ୍କ ସାଙ୍ଗରେ ବିଶ୍ବ ଥିଲା । ସାଙ୍ଗେ ସାଙ୍ଗେ ଖୋଜିବାକୁ ବାହାରି ପଡିଲା । ଏଠି ପହଞ୍ଚିଲା ବେଳକୁ ଅଧରାତି ହୋଇ ସାରିଥିଲା । ଥାନାରେ ତାର ଜଣେ ପୁରୁଣା ସାଙ୍ଗକୁ ପଚାରିବାରୁ ସେ କହିଲା ଯେ, "ଆରେ ମୁଁ ତାକୁ ନିଜେ ତୁମ ବାପାଙ୍କ ପାଖରେ ଛାଡି ଆସିଛି ।" ତାପରେ ସେ ବିଶ୍ବର ସାହସିକ କାର୍ଯ୍ୟକଳାପ ବର୍ଣ୍ଣନା କଲା ।

କଣ୍ଡାକୋଇସ୍ ମଧ୍ୟ ନାତିର ସାହସ ବିଷୟରେ ଦେଖିଥିବା ଘଟଣା ବର୍ଣ୍ଣନା କଲେ । କଳ୍ପେଶ ବାପାଙ୍କୁ ନନ୍ଦିକା ବିଷୟରେ ଆଜି ପର୍ଯ୍ୟନ୍ତ ସବୁ ଘଟଣା ସବିସ୍ତାରେ ବର୍ଣ୍ଣନା କଲା ।

ସକାଳୁ ବିଶ୍ବ ନିଦରୁ ଉଠି ମାମୁଁକୁ ପାଖରେ ଶୋଇଥିବା ଦେଖି ଡରିଗଲା । ହାତମୁହଁ ଧୋଇ, ନିତ୍ୟକର୍ମ ସାରି ତିନିହେଁ ହୋଟେଲକୁ ଗଲେ । ଅଜା ପଚାରିଲେ, "ଦୋସା ଖାଇବୁ ତ ?" ବିଶ୍ବ ଚୁପ ରହିଲା । ପୁଣି ପଚାରିଲାରୁ କହିଲା –"ମୋର କିଛି ଦରକାର ନାହିଁ ।" କଣ୍ଡାକୋଇସ୍ ବୁଝିଗଲେ ଯେ

Digitized by srujanika@gmail.com

ବିଶ୍ୱ କଳେଶଙ୍କୁ ଡରି ମନା କରୁଛି । କଣ୍ଡୀକୋଇସ୍ ଦୋସା ଏବଂ ମିଠାଇ କିଣି ନାତିକୁ ଖୁଆଇଲେ । କଳେଶ ଗାଁକୁ ଫେରିବାକୁ ବାହାରିବାରୁ କହିଲେ, "ପିଲାଟାକୁ ଚଲାଇ ଚଲାଇ ନେ ନାହିଁ । ମୁଁ ଗୋଟିଏ ନୂଆ ଘୋଡା କିଣିଛି । ସେଥିରେ ଜିନ୍ ବାନ୍ଧି ବିଶ୍ୱକୁ ସାଙ୍ଗରେ ବସାଇ ନେଇ ଯା ।" ବିଶ୍ୱ ଘୋଡାରେ ବସି ବହୁତ ଖୁସି ହେଲା । ଗାଁରେ କୁଚି କୁଚି ବାବୁରାଙ୍କ ପିଠିରେ ବସିବା ଅଭ୍ୟାସ ଥିଲା । କିନ୍ତୁ ଏଇକିଆ ବଡ ଘୋଡାରେ କେବେ ବସି ନଥିଲା । ପ୍ରଥମେ ପ୍ରଥମେ ଟିକିଏ ଡର ଲାଗିଲା, କିନ୍ତୁ କହିଲା ନାହିଁ । କଳେଶ ଯିବା ପୂର୍ବରୁ କଣ୍ଡୀକୋଇସ୍ କହିଲେ –"ଘୋଡାଟାକୁ ପନ୍ଦରଦିନ ଖଣ୍ଡେ ଗାଁରେ ରଖ । ବିଶ୍ୱକୁ ଘୋଡା ଚଢା ଶିଖେଇ ଦେବୁ । ଘୋଡ଼ା ଚଢ଼ା ଶିଖିବା ନିହାତି ଦରକାର ।"

ବାଟରେ କଳେଶ ବିଶ୍ୱକୁ ମୋଟେ ଗାଳି ଦେଲା ନାହିଁ । ବିଶ୍ୱର ଇଚ୍ଛା ହେଉଥାଏ ଘୋଡାଟା ଆହୁରି ଜୋରରେ ଦୌଡନ୍ତା । କିନ୍ତୁ ଡରରେ କିଛି କହୁନଥାଏ । ଘୋଡାଟା ତାର ହୋଇଥିଲେ କେତେ ମଜା ହୁଅନ୍ତା । ଅଜାଙ୍କୁ ମାଗିଲେ ନିଶ୍ଚେ ଦେଇ ଦେବେ । ଘୋଡାରେ ବସି ରାତି ଅଧରେ ଗାଁକୁ ଯାଇ ମା'କୁ ଉଠାଇବା ପାଇଁ ତାର ଇଚ୍ଛା ହେଲା । ପୁଣି ଇଚ୍ଛା ହେଲା ମା' ପାଖରେ ଯାଇ ରହନ୍ତା । ଏଠି ମାମୁଁ ଘରେ ମା'କୁ ଛାଡି ରହିବାକୁ ଭଲ ଲାଗୁ ନାହିଁ । ତା'ଛଡା ସବୁବେଳେ ଘୋଡା ଉପରେ ବସି ଯିବା ଆସିବା କଲେ ସାପ କାମୁଡି ପାରିବ ନାହିଁ । ପୁଣି ଗାଁ ସ୍କୁଲରେ ଯାଇ ପଢିବି । ଘୋଡାରେ ବସି ସ୍କୁଲ ଯିବି ଏବଂ ମାଷ୍ଟରଙ୍କୁ କହିବି ଯେ ଦିନଯାକ ଘୋଡା ଉପରେ ବସି ପାଠ ପଢିବି । ତା'ପରେ ମାଇନର ସ୍କୁଲରେ ପଢିବା ପାଇଁ ସବୁଦିନ ବସି କମ୍ପନକେରେ ଯିବା ଆସିବା କରିବି । ଏବେ ଯଦି ମାମୁଁ ସାଙ୍ଗରେ ନଥାନ୍ତେ ତେବେ ଘୋଡା ଛୁଟାଇ ନିଜ ଗାଁକୁ ଚାଲି ଯାଆନ୍ତା । ତାପରେ ମନେ ମନେ ମାମୁଁଙ୍କୁ କେତେ ଗାଳି ଦେଲା ।

ଗାଁରେ ପହଞ୍ଚିବା ପରେ ଅକୁଣା ବିଶ୍ୱକୁ ଦେଖି ପଚାରିଲା – "ମୋ ଧନଟା କୁଆଡେ ପଳାଇ ଥିଲା ।" ଏବଂ ବିଶ୍ୱକୁ କୋଳରେ ପୁରାଇ ନେଲା । କଳେଶ ଘୋଡାରୁ ଓହ୍ଲାଇ ସିଧା ଗୋଡେଇ ଘର ଭିତରେ ପଶିଲା । ବିଶ୍ୱକୁ ଧରି ବୁଢୀ ମଧ୍ୟ ଘର ଭିତରକୁ ଆସିଲା । ଚୁଲିରୁ ନିଆଁ ଖୁଣ୍ଟାଟେ ଧରି କଳେଶ ଆସି ବିଶ୍ୱକୁ ସେଥିରେ ବାଡେଇଲା । ବୁଢୀ ପାଟିକଲା, "ଆରେ ପିଲାଟା ମରିଯିବ । ତୁ ରାକ୍ଷସ ଟେ କିରେ ?" ବିଶ୍ୱକୁ ଧରିବାକୁ ଆସିବାରୁ ବୁଢୀ ଦେହରେ ମଧ୍ୟ ପାହାରେ ବସିଗଲା । ବୁଢୀ ଜୋରରେ ଚିତ୍କାର କରି ଉଠିଲା ।

କଳେଶ ପାଟିକରି ଗାଳି ମଧ୍ୟ ଦେଉଥାଏ, "ଛତରଖିଆ ଭିକାରୀ ଟୋକା, ଯାହାକୁ ଦେଖିଲା ତା ସାଙ୍ଗରେ ପଳାଇବ । ଯଦି କ'ଣ ଭଲ ମନ୍ଦ ହୋଇଥାନ୍ତା ! ତେବେ କାହାର ବଦନାମ ହୋଇଥାନ୍ତା ?" ବିଶ୍ୱର ପିଠି ଫାଟି ରକ୍ତ ବୋହୁଥାଏ । କିଛି ସମୟପରେ ତାର ଚେତା ବୁଡିଗଲା । ପିଲାଟା ମାଡ ଜୋରରେ ପେଣ୍ଡରେ ମୁତି ପକାଇଥାଏ । ବୁଢୀ ଅକୁଣା କାନ୍ଦୁଥାଏ । "ସେଠି ସାପ କାମୁଡିବ ବୋଲି ମା' ଆଣି ମାମୁଁ ପାଖରେ ଛାଡି ଦେଲା ଯେ ଏଠି କଂସ ମାମୁଁ ଜୀବନରେ ମାରିଦେଲା ପିଲାଟାକୁ ।" ଆଖପାଖ ଘରର ଲୋକେ ଧାଇଁ ଆସିଲେ । କଳେଶ ଡରିଯାଇ ବିଶ୍ୱର ହାତ ଦେଖିଲା ଯେ ନାଡି

Digitized by srujanika@gmail.com

ଚାଲୁଛି । ଧାଇଁ ଯାଇ ପାଣି ଢାଳେ ଆଣି ତା ମୁଣ୍ଡରେ ଛିଞ୍ଚିଲା । ବିଶ୍ୱର ଚେତା ଆସିଲା । କଳେଇଶ ନିଜେ ବିଶ୍ୱ ପିଠିରୁ ରକ୍ତ ପୋଛି ସେଥିରେ ଔଷଧ ଲଗାଇ ଦେଲା । ବିଶ୍ୱ ସେତେବେଳକୁ "ପୋଡୁଛି" ବୋଲି କହି କାନ୍ଦୁଥାଏ ।

4

ଏ ମଧ୍ୟରେ ରାମଚନ୍ଦ୍ରର ସ୍କୁଲ ମାଷ୍ଟରଙ୍କର ବଦଳି ହୋଇଗଲା । ଏ ଗାଁରେ ତାଙ୍କର ପାଞ୍ଚବର୍ଷ ପୁରି ଯାଇ ଥିଲା । ନିଜ ଗାଁ ସ୍କୁଲକୁ ବଦଳି ପାଇଁ ସେ ମଧ୍ୟ ଚେଷ୍ଟା କରୁଥିଲେ । ସେ ଚାଲିଯିବାପରେ ନଷ୍ଟିଙ୍କାକୁ ବଡ ଏକୁଟିଆ ଲାଗିଲା । ନିଜ ଭାଇପରି ବହୁତ ସାହାଯ୍ୟ କରୁଥିଲେ ଏବଂ ସୁଖ ଦୁଃଖ ବୁଝୁଥିଲେ । ତାଙ୍କ ସ୍ତ୍ରୀଙ୍କ ସାଙ୍ଗରେ ମଧ୍ୟ ଖୁବ୍ ଘନିଷ୍ଠତା ବଢି ଯାଇଥିଲା । ଗାଁରେ ଚାଲିଥିବା ପ୍ରୌଢ ଶିକ୍ଷା ପାଇଁ ରାତ୍ରୀ ସ୍କୁଲ ବନ୍ଦ ହୋଇଗଲା । ନୂଆ ଆସିଥିବା ମାଷ୍ଟରଙ୍କ ସାଙ୍ଗରେ ପରିଚୟ ହୋଇ ନଥାଏ । ମାଷ୍ଟରଙ୍କ ବଦଳିରେ ମହାଦେବଯ୍ୟାଙ୍କ ମନରେ ମଧ୍ୟ ଦୁଃଖ ହେଲା ।

ଏଭିତରେ, ନଷ୍ଟିଙ୍କା ନୂଆ ଘରଟା ତିଆରି କରିବା ଆରମ୍ଭ କରିଥାଏ । ସେ ଚାହୁଁଥିଲା ଯେ ବର୍ଷା ଆସିବା ଆଗରୁ ଘରର କାମ ସରିଯାଉ । ସବୁ କାମ ନିଜ ତତ୍ତ୍ୱାବଧାନରେ କରିବାକୁ ପଡୁଥିଲା । ନହେଲେ ଟଙ୍କାଏ ଯାଗାରେ ଦୁଇ ଟଙ୍କା ଲାଗିବ । ପାଖରେ ଥିବା ଟଙ୍କାରେ ଛାତ ପର୍ଯ୍ୟନ୍ତ କାମ ଉଠିଯିବ ଏବଂ କାଠ, ବାଉଁଶ କିଣା ହୋଇଯିବ । ତାପରେ ପଇସା ଯୋଗାଡ କରି ଖପର ଛପର କରିବାକୁ ପଡିବ । କାନ୍ଥରେ ମାଟି ଛଟା ଛଟି କାମ ପରେ କରାଯାଇ ପାରିବ । ମହାଦେବଯ୍ୟା ଏ କାମରେ ଅନେକ ସାହାଯ୍ୟ କରୁଛନ୍ତି । ଏଣେ ଘରେ ମଧ୍ୟ କିଛି କାମ ନଥିଲା । ନଷ୍ଟିଙ୍କା ମଧ୍ୟ ଘର କାମରେ ଲାଗି ପଡୁଥିଲା । କାଦୁଅ ମାଟି ବୋହି ନେଇ ମିସ୍ତ୍ରୀମାନଙ୍କୁ ଦିଏ । ମାଠିଆରେ କୂଅରୁ ପାଣି କାଢି ଆଣେ । ସର୍ବରାକାରୀ ହିସାବ ଲେଖୁଥିବା ଏ ସ୍ତ୍ରୀଲୋକକୁ ଏତେ କାମ କରୁଥିବା ଦେଖି କୁଲିମାନେ ମଧ୍ୟ ସଙ୍କୋଚ ବୋଧ କରୁଥିଲେ । କିନ୍ତୁ ନଷ୍ଟିଙ୍କା ଭାବୁ ଥିଲା ଏ ଘରଟା ମୋର । ଏବଂ ବେକାର ବସିବା ଅପେକ୍ଷା ଘରକାମରେ ସାହାଯ୍ୟ କରିବା ଭଲ ।

କାନ୍ଥ ଆଠ, ନଅ ଫୁଟ ଉଠି ସାରିଥାଏ । ଖପର ପାଇଁ ଟଙ୍କା ଯୋଗାଡ କରିବା କଥା । ଦିନେ ମାଟି ଚକଟି ମିସ୍ତ୍ରୀକୁ ବଢାଇଲା ବେଳେ କଣ୍ଟାକ୍ଟର ଆସି ପହଞ୍ଚଗଲେ । ପୂର୍ବଭଳି ଘୋଡାରେ ବସି ଯୋଡା ଟୋପି ପିନ୍ଧି ଆସି ନଥିଲେ । ଏଥର ସେ ପାଦରେ ଚାଲି ଚାଲି ଆସିଥାନ୍ତି । ଆସୁ ଆସୁ କହିଲେ, "ନଷ୍ଟୁ ଘର ତିଆରି କରାଉଛୁ କି ? ଭଲ ହେଲା ।"

Digitized by srujanika@gmail.com

ନଷ୍ଟିକା କୋଡି ତଳେ ରଖି ଦେଇ ମିସ୍ତ୍ରୀ ସାଙ୍ଗରେ କାଲିର କାମ ବିଷୟରେ କଥାବାର୍ତ୍ତା ହୋଇ ସାରି ବାପାଙ୍କ ସାଙ୍ଗରେ ଘରକୁ ଫେରିଲା । ହାତ, ଗୋଡ ଧୋଇ ରୋଷେଇ ଘରକୁ ଯାଇ ଚୁଲି ଜଳାଇଲା । କଣ୍ଡୋଜୋଇସ୍ କହିଲେ – "ମୋ ପାଇଁ ଅଧିକା କିଛି ରାନ୍ଧିବୁ ନାହିଁ ।" ଏହା କହି ସେ ମଧ୍ୟ ରୋଷେଇ ଘର ଭିତରକୁ ଆସି କାନ୍ଥକୁ ଆଉଜି ବସିଲେ । "ତୋ ପୁଅ ନିଶ୍ଚୟ ଜଣେ ବଡ ଲୋକ ହେବ । ପୁଅ ଜନ୍ମ କରିବ ତ ଏପରି । ହଜାର ହଜାର ଲୋକ ତାକୁ ସିଂହ ଛୁଆ ଭଳି ବୀର ବୋଲି କହି ପ୍ରଶଂସା କଲେ ।" ତାପରେ କଣ୍ଡୋଜୋଇସ୍ ବିଶ୍ୱ ବିଷୟରେ ଯାହା ଦେଖିଥିଲେ ଏବଂ ଶୁଣିଥିଲେ ବର୍ଣ୍ଣନା କରିବାକୁ ଲାଗିଲେ । ପୁଅର ପ୍ରଶଂସା ଶୁଣି ନଷ୍ଟିକା ମଧ୍ୟ ଖୁସି ହେଲା, ଚିନ୍ତା ମଧ୍ୟ ହେଲା ଯେ ଏହିଭଳି ବେଶି ନେତାଗିରି କଲେ ପୁଲିସ୍ ବାନ୍ଧି ନେବ ।

ପୁଅ ଝିଅଙ୍କ ମରିବା ବିଷୟରେ କଣ୍ଡୋଜୋଇସ୍ କଥା ଉଠାଇଲେ ନାହିଁ । ନଷ୍ଟିକା ମଧ୍ୟ ସେ ବିଷୟରେ କିଛି କହିଲା ନାହିଁ । କଣ୍ଡୋଜୋଇସ୍ କହିଲେ, "ଘର ତିଆରି କରାଉଛୁ ବୋଲି ଆଗରୁ ଜାଣିଥିଲେ କିଛି ପଇସା ଦେଇଥାନ୍ତି । ମାଙ୍ଗାଲୋରୀ ଟାଇଲ ଛପର କରାଇଥାନ୍ତୁ । ଏବେ ମାସେ ଆଗରୁ ଆଠଶହ ଟଙ୍କାରେ ଗୋଟିଏ ଘୋଡା କିଣି ଦେଇଛି । ଆଉ ଏଇ ଦୁଇଶହ ଟଙ୍କା ଅଛି ନେଇ ଯା, ଘର ତିଆରି ଖର୍ଚ୍ଚରେ ଲଗାଇବୁ ।" ଏହା କହି କୁର୍ତ୍ତା ପକେଟ୍‌ରୁ ନୋଟ୍ ବିଡାଏ ବାହାର କରି ନଷ୍ଟିକାକୁ ଦେଲେ । ନଷ୍ଟିକା କହିଲା –"ଆପଣଙ୍କର ଦରକାର ହେବ । ଅପାଣ ରଖିଥାନ୍ତୁ । ମୁଁ ଘର ତିଆରି ପାଇଁ ପଇସା ଯୋଗାଡ କରି ସାରିଛି ।"

"ନାଁ, ନାଁ, ମୋର ଦରକାର ନାହିଁ । ତୁ ନେଇ ଯା ।"

ସେ ଦିନ ରାତିରେ ବାପ ଝିଅ ବସି କେତେ ଦୁଃଖ ସୁଖ ହେଲେ । ନଷ୍ଟିକା କହିଲା –"ବାପା ଆପଣଙ୍କର ବୟସ ଆସି କେତେ ହେଲାଣି, ଭଗବାନ ସିନା ଆପଣଙ୍କୁ ଶକ୍ତି ଦେଇଛନ୍ତି । କିନ୍ତୁ ଏ ବୟସରେ ଘରେ ଆରାମରେ ବସି ନଖାଇ ଏଗାଁକୁ ସେ ଗାଁ ବୁଲିବା କ'ଣ ଦରକାର । ବୁଢାମା କହୁଥିଲା ଯେ ଆପଣ ଚାରି ଛଅ ମାସ ପର୍ଯ୍ୟନ୍ତ ଗାଁକୁ ଫେରୁ ନାହାନ୍ତି ।"

"ଗାଁରେ ବସି ରହି କ'ଣ କରିବି ?"

"ଆରାମ କରିବା ଦରକାର ।"

"ଆରାମ କରିବି କିପରି ? କିଛିନା କିଛି ତ କାମ କରିବା ଦରକାର । କଲ୍ଲେଶର ସ୍ତ୍ରୀ କଥା ତ ଜାଣିଛୁ । ତାକୁ ଘରୁ ବାହାର ନକଲା ପର୍ଯ୍ୟନ୍ତ ମୋର ଶାନ୍ତି ନାହିଁ । କଲ୍ଲେଶ ମଧ୍ୟ କେତେ ପିଟୁଛି, ମାରୁଛି, କିନ୍ତୁ, ସେ କ'ଣ ଘର ଛାଡି ଯାଉଛି ? ସେ ମାଇକିନାକୁ ଜୀବନରେ ମାରି ବିଲରେ ପୋତି ଦେବାକୁ ବେଶି ସମୟ ଲାଗିବ ନାହିଁ । କିନ୍ତୁ କଲ୍ଲେଶର ଭାଗ୍ୟରେ ଯଦି ଏଇଆ ଲେଖା ଅଛି ତେବେ କିଏ ବା' କ'ଣ କରି ପାରିବ । ମୋ କଥା ତ ହାତ କେଉଁଠି ହେଲେ ମୁଣ୍ଡ ଗୁଞ୍ଜି ରହିଯିବି ।"

ନଷ୍ଟିକା ଭାବିଲା ବାପାଙ୍କୁ କହି ଦେବ ଆମ ଘରେ ଆସି ରହନ୍ତୁ । କିନ୍ତୁ ସେ କ'ଣ ଘରେ ରହିବା

Digitized by srujanika@gmail.com

ଲୋକ । ତାପରେ ଏଠି ରହିଲେ ସ୍ୱାମୀଙ୍କର ଏ ଘରେ ରହିବା ସମ୍ଭବ ହେବ ନାହିଁ । କେତେବେଳେ ରାଗରେ ତାଙ୍କୁ ପିଟି ପକାଇବାଟା ମଧ୍ୟ ଅସମ୍ଭବ ନୁହେଁ । କିଛି ସମୟପରେ କଣ୍ଟାକୋଇସଙ୍କୁ ନିଦ ଆସିଗଲା ।

ନନ୍ଦିକା କିଛି ସମୟ ପର୍ଯ୍ୟନ୍ତ ଭାବିଲା । ବିଶ୍ୱ କଥା ମଧ୍ୟ ମନରେ ଆସିଲା । ନିଦରେ ସେଇ କଥା ସ୍ୱପ୍ନ ଦେଖିଲା । ବିଶ୍ୱକୁ ସିନା ପୁଲିସ ଛାଡି ଦେଲା କିନ୍ତୁ ନନ୍ଦିକାକୁ ଧରି ନେବାକୁ ଆସିଛି । ସେ ଆଗେ ଆଗେ ଦୌଡୁଛି ପଛରେ ପୁଲିସ । ହଠାତ୍ ତାର ନିଦ ଭାଙ୍ଗି ଗଲା । ଭାବିଲା ଏପରି ଖରାପ ସ୍ୱପ୍ନ କାହିଁକି ଦେଖିଲି । ତାପରେ ଅନେକ ସମୟ ପର୍ଯ୍ୟନ୍ତ ତାକୁ ନିଦ ଆସିଲା ନାହିଁ ।

କଣ୍ଟାକୋଇସ ଝିଅ ଘରେ ତିନିଦିନ ରହିଲେ । ଘର ତିଆରି କାମରେ ମଧ୍ୟ କେତେ କଥା ବତାଇଲେ । ତାପରେ ଜରୁରୀ କାମ ଅଛି ବୋଲି କହି ଚାଲିଗଲେ ।

ନନ୍ଦିକା ଖପର କିଣିବା ପାଇଁ ପଇସା କେଉଁଠୁ ଆଣିବ ବୋଲି ଚିନ୍ତା କରୁଥିଲା । ବାପା ପଇସା ଦେବାରୁ ସେ ସମସ୍ୟା ତୁଟିଗଲା । ବାପା ଫେରିଯିବା ଦିନ ସେ ନିଜେ ସନ୍ଧ୍ୟାକୁ ଯାଇ ଖପର ପାଇଁ ବରାଦ କରି ଆସିଲା । ଦୁଇ ଚାରିଦିନପରେ କାନ୍ଥ ଉପରେ ଖପର ଛପର କରିବା ପାଇଁ ପଇସା ଦେଇ ସାରିଲା ପରେ ମଧ୍ୟ ଆହୁରି ପଚାଶ ଟଙ୍କା ବଳିଲା । ରଙ୍ଗମାଟିରେ ଛିପା ପୋଛା କାମ ମଧ୍ୟ କରାଇନେଲେ ଭଲ ହେବ । ଘରଟା ତିଆରି ସରିଲେ ତା'ପରେ ଗୃହ ପ୍ରବେଶ ଖର୍ଚ୍ଚ ପାଇଁ ଟଙ୍କା କେଉଁଠୁ ହେଲେ ଯୋଗାଡ କରି ହେବ । ତା'ଛଡା ମଲ୍ଲିକା ବିଦ୍ୟାଳୟର ଦରମା ମିଳିଗଲେ ଘର ପ୍ରତିଷ୍ଠା ପାଇଁ ଖର୍ଚ୍ଚ ଉଠିଯିବ । ବାପାଙ୍କୁ ସେଥିପାଇଁ ଡାକିବାକୁ ହେବ । ଏଗାଁର ପୁରୋହିତ ନ ଆସିଲେ ଭଲ । ବିଶ୍ୱ ମଧ୍ୟ ଘର ପ୍ରତିଷ୍ଠାକୁ ଆସିବ । ଅକ୍କା ଏବଂ କଳେଶ ନିଶ୍ଚୟ ଆସିବେ । ଭାଉଜ ଆସିବ କି ନାହିଁ ଜଣା ନାହିଁ ।

ସେ ବର୍ଷ ଖରାଦିନ ଆଗରୁ ଆକାଶରେ ମେଘ ଉଠାଇଥାଏ । ଛପର କରିବା ଆଗରୁ ଯଦି ବର୍ଷା ପଡିଯାଏ ତେବେ କାନ୍ଥ ଗୁଡାକ ଭୁଷୁଡି ପଡିବ । ତେଣୁ ଛପର କାମ ଶୀଘ୍ର ସାରିବାକୁ ପଡିବ । ଖପର ଶୀଘ୍ର ମଗାଇ ଆଣିଲା ଏବଂ ମିସ୍ତ୍ରୀକୁ ଲଗାଇ ଛପର କାମ ମଧ୍ୟ ଆରମ୍ଭ କରିଦେଲା । ମୁଲିଆଣୀମାନେ ମୁଣ୍ଡରେ ଖପର ମୁଣ୍ଡାଇ ସିଡିରେ ଚଢି ମିସ୍ତ୍ରୀମାନଙ୍କୁ ଖପର ବଢାଇ ଦେଉଥାନ୍ତି । ସେ ଦିନ ସନ୍ଧ୍ୟା ସୁଦ୍ଧା ବର୍ଷା ହେବାର ସଙ୍କେତ ଦେଖାଯାଉଥାଏ । ନନ୍ଦିକା ମଧ୍ୟ ମୁଲିଆମାନଙ୍କ ସାଙ୍ଗରେ କାମରେ ଲାଗିଥାଏ । ସନ୍ଧ୍ୟା ପୂର୍ବରୁ କାମ ସରିଗଲା । ମିସ୍ତ୍ରୀମାନେ କହିଲେ, "ଆପଣ ଜିତି ଗଲେ । ଆପଣଙ୍କ କାମ ହୋଇଗଲା ।"

ମହାଦେବୟା ସେଠାରେ ଠିଆ ହୋଇ କାମ ଦେଖୁଥିଲେ । ଶେଷରେ କହିଲେ, "ନନ୍ଦିକା, ଅପନ୍ତ୍ର ଆଖୁବାଡିରେ ନିଆଁ ଲଗାଇ ଥିବାରୁ ସିନା ଆଜି ତୁମର ଜମିବାଡି ଘରଦ୍ୱାର ସବୁ ଚାଲିଗଲା । ସେଇଦିନ

Digitized by srujanika@gmail.com

ଅପର୍ଣ୍ଣା, ଚେନ୍ନିଗା ଦୁହେଁ ମିଶି ଘରର ଖପର ଠେଙ୍ଗାରେ ବାଡେଇ ଭାଙ୍ଗିଥିଲେ । ମୁଁ ସେତେବେଳେ ତାଙ୍କୁ କହିଥିଲି ଯେ ଘର ଭାଙ୍ଗିବାଟା ବଡ ସହଜ କିନ୍ତୁ, ଘରଟେ ତିଆରି କରିବା ବଡ କଷ୍ଟ । କିନ୍ତୁ ଆଜି ତୁମେ ଘରଟେ ତିଆରି କରି ଦେଖାଇ ଦେଲ ।''

ଚେନ୍ନିଗରାମ୍ବ ସେଠାରେ ଠିଆ ହୋଇ ଏକଥା ଶୁଣୁଥିଲା ଏବଂ ରାଗରେ ତମତମ ହୋଇ ସେଠାରୁ ଚାଲିଗଲା ।

ମେଘସିନା ଉଠାଇଥିଲା କିନ୍ତୁ ସେଦିନ ବର୍ଷା ହେଲାନାହିଁ । ରାତିକୁ ଆକାଶ ପୁଣି ସଫା ହୋଇଗଲା । ଖପର ଉଠାଇ ଉଠାଇ ନଞ୍ଜମ୍ମା ଥକି ଯାଇଥିଲା । କିନ୍ତୁ ରାନ୍ଧିବାକୁ ତ ପଡିବ । ନହେଲେ ଖାଇବେ କ'ଣ ? ଚୁଲି ଲଗାଇ ଭାତ ରାନ୍ଧିଲା । ଖାଇସାରି ଶୋଇଲା ପରେ ପାର୍ବତୀ ଏବଂ ରମାଣ୍ଣାଙ୍କ କଥା ମନେ ପଡିଲା । ଆଜି ସେମାନେ ଥିଲେ ନୂଆ ଘର ଦେଖି କେତେ ଖୁସି ହୋଇନଥାନ୍ତେ । ବିଶ୍ୱ କଥା ମଧ୍ୟ ମନେ ପଡି ଦୁଃଖ ଲାଗିଲା । ସେ ନାଗଲାପୁର ଯିବାର ଆଜିକି ଛଅ ମାସ ହେଲାଣି । ଆଉ ପନ୍ଦର ଦିନ ଗଲେ ତାର ଗ୍ରୀଷ୍ମ ଛୁଟି ହେବ । ତା'ପରେ ସେ ଏଠାକୁ ଆସିବ । ଗାଁରେ ରହିଲା ଦିନ ତକ ବିଶ୍ୱକୁ ସ୍କୁଲ ଆଡେ ନ ଛାଡିଲେ ଗଲା । ମୁଁ ନିଜେ ଶଗଡ କରି ବିଶ୍ୱକୁ ଆଣିବାକୁ ଯିବି । ପିଲାଟା ମତେ କେତେ ମନେ ପକାଉଥିବ । ତା' ସାଙ୍ଗରେ ବୁଢୀମା' ଅକ୍କାମ୍ମାକୁ ମଧ୍ୟ କିଛିଦିନ ଆଣି ଏଠାରେ ରଖିଲେ ଭଲ ହେବ । ଆଉ ବର୍ଷଟେ ବିଶ୍ୱ ନାଗଲାପୁରରେ ପଢି ସାରିଲା ପରେ କମ୍ବନକେରେ ପଢିବାକୁ ଯିବ । ରମାଣ୍ଣା ପରି କଷ୍ଟରେ ଯିବା ଆସିବା ନକରି ସେଇଠି ଗୋଟିଏ ଛୋଟ ଘର ଭଡାରେ ନେଇ ରହିବାକୁ ପଡିବ । ସେଇଠି ରହି ସର୍ବରାକାରୀ ହିସାବ ମଧ୍ୟ ଲେଖା ଲେଖି କରି ହେବ । ଏଇଭଳି କେତେ କ'ଣ ଭାବୁ ଭାବୁ କେତେବେଳେ ନିଦ ଆସିଗଲା ।

ସକାଳୁ ନିଦ ଭାଙ୍ଗିଲା ବେଳକୁ ଦେହରେ ଜ୍ୱର ଆସିଥାଏ । ଏବଂ ଦେହମୁଣ୍ଡ ଯୋଳାବିନ୍ଧା କରୁଥାଏ । ଦୁଇ ହାତରେ କାଖମୂଳରେ ମଧ୍ୟ ଦରଜ ହୋଇଥାଏ । ସାରାଦିନ କାଲି, ଖରାରେ ଖପର ଉଠାଇ ଥିଲା । ଖରାରେ କାମ କରିବା ତା' ପାଇଁ ନୂଆ ନୁହେଁ । କିନ୍ତୁ କାଲିର ଖରାଟା ଭାରି ଟାଣଥିଲା । ତା'ଛଡା ମଣିଷର ଶରୀର କ'ଣ ସବୁବେଳେ ସମାନ ରହୁଛି । ବୋଧହୁଏ ଖପର ଗୁଡାକ ଉଠାଇବାରୁ ଦୁଇ କାଖମୂଳ ଦରଜ ହୋଇ ଯାଇଛି । ନଞ୍ଜମ୍ମା ଶେଯରୁ ଉଠି ହାତ ମୁହଁ ଧୋଇ, ବାଛୁରୀ ପିଲାଟାକୁ ପିଆଇ ଦେଇ ଗାଈ କ୍ଷୀର ଦୁହିଁଲା । ବିଶ୍ୱ ଯିବା ଦିନଠାରୁ ଘରେ ଦହି ବଳି ପଡୁଥିଲା । ଅପର୍ଣ୍ଣା ମଧ୍ୟ ମାସେ ହେଲା ଗାଁରେ ନଥିଲା । ତେଣୁ ଦୁଧ ଦହି ଖର୍ଚ୍ଚ କମି ଯାଇଥିଲା । ଜ୍ୱର ଲାଗୁଥିଲେ ମଧ୍ୟ ନମାନି ଚୁଲି ଲଗାଇ ରନ୍ଧା ରନ୍ଧି ସାରିଲା । ନିଜେ ଅଳ୍ପ ଖାଇସାରି ବାକି ଚେନ୍ନିଗା ପାଇଁ ରଖିଦେଇ ଚାଦର ଘୋଡାଇ ହୋଇ ଶୋଇଗଲା । ସନ୍ଧ୍ୟା ପର୍ଯ୍ୟନ୍ତ ସେମିତି ଘୁମାଇ ପଡିଥାଏ । ଘରେ ସାହାଯ୍ୟ କରିବାକୁ କେହି ନଥାନ୍ତି । ସ୍ୱାମୀଙ୍କ କଥା ତ ଛାଡ । ସନ୍ଧ୍ୟାବେଳକୁ ଉଠି ଅଦା, ଗୋଲମରିଚ ପକାଇ ପାଚନ ପାଣି କରି ପିଇ ପୁଣି ଶୋଇଗଲା । କେତେବେଳେ ରାତି ହୋଇଗଲା ଏବଂ କେତେବେଳେ ଚେନ୍ନିଗା ଆସି ଖାଇ ଶୋଇଗଲା ନଞ୍ଜମ୍ମା ଜାଣି ପାରିଲା ନାହିଁ ।

Digitized by srujanika@gmail.com

ଅଧରାତି ବେଳକୁ ଚେନ୍ନିଗାର ଘୁଙ୍ଗୁଡ଼ିର ଶବ୍ଦରେ ତାର ନିଦ ଭାଙ୍ଗିଗଲା । ପରିସ୍ରା କରିବାକୁ ଉଠିବାରୁ, ଦୁଇ ଜଙ୍ଘମୂଳ ମଧ୍ୟ ଦରଜ ହୋଇଥିବା ଅନୁଭବ କଲା । ପୁଣି ଶେଯରେ ଶୋଇ ରହିଲା । ମନରେ ତାର ଟିକିଏ ଦକା ଆସିଲା । ପରିଶ୍ରମ କରିଦେଲା ବୋଲି ସିନା କାଖମୂଳ ଦରଜ ହେଲା, କିନ୍ତୁ ଜଙ୍ଘ ମୂଳ ଏବେ କାହିଁକି ଦରଜ ଜଣାପଡ଼ୁଛି । ସକାଳେ ତ କିଛି ଜଣା ପଡ଼ୁନଥିଲା । ସତରେ କ'ଣ ତାକୁ ପ୍ଳେଗ୍ ରୋଗ ହେଲା କି ? କିନ୍ତୁ ଗାଁରେ ମୂଷା ମରିବା ଖବର ତ ଶୁଣା ଯାଉନାହିଁ । ଗତଥର ମଧ୍ୟ ପାର୍ବତୀ ଏବଂ ରମନ୍ନାକୁ ପ୍ଳେଗ୍ ଧରିଲା ବେଳେ ଆଗରୁ କିଛି ସଙ୍କେତ ମିଳିନଥିଲା । ଏଥର ମଧ୍ୟ କ'ଣ ସେପରି ହୋଇଛି କି ? ତାର ମନରେ ଭୟ ଆସିଲା । ମହାଦେବୟାଙ୍କୁ ପଚାରିଦେଲେ ଭଲ ହେବ ।

ତେଣୁ ନଞ୍ଜମ୍ମା ସ୍ୱାମୀକୁ ଡାକିଲା । ଚେନ୍ନିଗା ନିଦରୁ ଉଠି ଗୁଡ଼ାଏ ଗାଳି ବକି ପୁଣି ଶୋଇଗଲା । ନଞ୍ଜମ୍ମା ଭାବିଲା ଏ ଲୋକଟା ସତରେ ରାକ୍ଷସଟାଏ, କାହାର ଭଲରେ ମନ୍ଦରେ କିଛି ବୁଝିବେ ନାହିଁ । କିନ୍ତୁ ତାଙ୍କୁ କହି କିଛି ଲାଭ ନାହିଁ ଭାବି ଚୁପ୍ ରହିଲା, ହେଲେ ସକାଳ ପର୍ଯ୍ୟନ୍ତ ଅପେକ୍ଷା କଲେ ଖରାପ ହୋଇପାରେ ଭାବି କମ୍ବଳ ଘୋଡାଇ ହୋଇ ଥରି ଥରି ଚାଲି ଚାଲି ଯାଇ ମନ୍ଦିର ଦୁଆରେ ପହଞ୍ଚି ଡାକ ପକାଇଲା । ମହାଦେବୟା ମନ୍ଦିର ବାରଣ୍ଡାରେ ଶୋଇଥିଲେ । ଡାକ ଶୁଣି ଉଠିବାରୁ ନଞ୍ଜମ୍ମା କହିଲା– "ମତେ ପ୍ଳେଗ୍ ହେଲାପରି ଲାଗୁଛି । ଆପଣ ଟିକିଏ ଆମ ଘରକୁ ଆସନ୍ତୁ ।" ଏହା କହି ସାରି ଘରକୁ ଫେରିଲା । ପଛେ ପଛେ ମହାଦେବୟା ଆସିଲେ । ଘରେ ପହଞ୍ଚି ଦୀପ ଜଳାଇଲା ଏବଂ ଶେଯରେ ଶୋଇଗଲା । ମହାଦେବୟା ଆଲୁଅରେ ଦେଖିଲେ ଯେ ନଞ୍ଜମ୍ମାର ଦେହଟା ଫୁଲି ଯାଇଥାଏ । ମୁହଁଟା ଜ୍ୱର ଲାଗି ଫଣଫଣିଆ ଦିଶୁଥାଏ ।

"ଜ୍ୱର କେବେ ଆରମ୍ଭ ହେଲା ?"

"କାଲି ରାତିରୁ ହେଲାଣି । କାଲି କାଖମୂଳ ଦରଜ ଲାଗୁଥିଲା । ମୁଁ ଭାବିଲି ଖପର ଉଠାଇ ଦେବାରୁ ସେପରି ହୋଇଥିବ । ଏବେ କିନ୍ତୁ, ଜଙ୍ଘମୂଳ ମଧ୍ୟ ଦରଜ ହୋଇଛି । କିଛି ସମୟ ଚୁପ୍ ରହି ମହାଦେବୟା ପଚାରିଲେ - "ସନ୍ନହଲ୍ଲୀ ଗାଁକୁ ତୁମେ ଯେଉଁ ଖପର କିଣିବା ପାଇଁ ଯାଇଥିଲ, ଗାଁ ଭିତରକୁ ଯାଇଥିଲ କି ଗାଁ ବାହାରେ ରହିଥିଲ ?"

"ଗାଁ ଭିତରକୁ ଯାଇଥିଲି । ଲକ୍କ୍ୟା ସେଠୀ ଘରକୁ ।"

"ହଁ ସେ ଗାଁରେ ଦଶ ବାର ଦିନ ହେଲା ମୂଷା ମରିବାର ଶୁଣାଗଲାଣି । କିନ୍ତୁ ସେ ଗାଁ ଲୋକ ଗାଁ ଘରେ ଛାଡି କୁଡ଼ିଆ କରି ରହି ନାହାନ୍ତି । ଆଜି ମୁଁ ସେ ଗାଁକୁ ଗଲା ବାଟରେ ଏକଥା ଶୁଣିଲି । ତେଣୁ ଆଉ ଗାଁ ଭିତରକୁ ଗଲି ନାହିଁ ।"

"ତାହାହେଲେ ଆପଣ କ'ଣ ଭାବୁଛନ୍ତି ମତେ ପ୍ଳେଗ୍ ହୋଇଛି ?"

"କିଏ କହି ପାରିବ ? କିନ୍ତୁ ଯାହାହେଉ ପଛେ ଶୀଘ୍ର ଔଷଧ ଖାଇବା ଦରକାର ।"

Digitized by srujanika@gmail.com

"ଘରେ ପଚାଶଟଙ୍କା ଅଛି ନେଇ ଯାଆନ୍ତୁ ଏବଂ ଶୀଘ୍ର ଔଷଧ ଆଣି ଦିଅନ୍ତୁ । ଆପଣଙ୍କ ଛଡ଼ା ମତେ ସାହାଯ୍ୟ କରିବା ପାଇଁ ଆଉ କେହି ନାହାନ୍ତି ।"

ମହାଦେବଯ୍ୟା ଭାବିଲା ବର୍ତ୍ତମାନ କି ଔଷଧ ଦେବା ଦରକାର । ଗତଥର ବିଶ୍ୱଙ୍କୁ ଖଗଡ଼ରେ ଧରି କମ୍ବଳକେରେ ନେଇ ଯିବା କଥା ମନେ ପଡ଼ିଲା । ତେଣୁ ଭାବିଲେ ଯେ ଡାକ୍ତର କିଛି କରି ପାରିବ ନାହିଁ । ଏପରି ଅବସ୍ଥାରେ ହେମାଦି ସିରପ ହିଁ କେବଳ କାମ ଦେବ । ସେତେବେଳକୁ ରାତି ଅଧ ହୋଇ ସାରିଥାଏ । ନଞ୍ଜିମ୍ମା ପଇସା ରଖିବା ଜାଗା କହିବାରୁ ପଇସା ଧରି ମହାଦେବଯ୍ୟା ବାହାରିଲେ । ବର୍ତ୍ତମାନ ଚାଲିଚାଲି ତିପଟୁର ଯାଇ ସକାଳ ବସ୍‌ରେ ହେମାଦି ସିରପ ଧରି ଫେରି ହେବ କି ? ତେନ୍ନିଗରାଯ୍ୟତ ଅନ୍ଧାର ରାତିରେ ଯିବାକୁ ଡରିବ । ତା'ଛଡ଼ା ହାତରେ ପଇସା ପଡ଼ିଲେ ହୋଟେଲରେ ବସି ଭୋଜନ କରିବ । ଅପନ୍ନା ଗାଁରେ ନାହିଁ । ନିଜେ ଗଲେ ହେବ କିନ୍ତୁ ଏତେ ଗୁଡ଼ାଏ ବାଟ ଚାଲିଯିବାକୁ ତାଙ୍କ ଦେହରେ ଶକ୍ତି ଆଉ ନାହିଁ । ତାଛଡ଼ା ସେ ଚାଲିଗଲେ ରୋଗୀ ପାଖରେ ଆଉ କିଏ ରହିବ । ବିପଦ ବେଳେ ନରସୀ ବହୁତ ସାହସ କରିଥିଲା । କିନ୍ତୁ ସେ କଣ ଏତେ ରାତିରେ ଏକୁଟିଆ ତିପଟୁର ଯାଇ ପାରିବ ? କିନ୍ତୁ ପଚାରିଲେ ଜଣାପଡ଼ିବ । ତା' ଘରେ ଡାକିବାରୁ ସେ ଉଠି ଦୁଆର ଫିଟାଇଲା । ମହାଦେବଯ୍ୟା ସବୁକଥା କହିବାରୁ ସେ କହିଲା –"ଆପଣ ଚିନ୍ତା କରନ୍ତୁ ନାହିଁ । ଛିଙ୍ଗାପୁରର ସବର୍ଣ୍ଣା ବର୍ତ୍ତମାନ ମୋ ଘରେ ଶୋଇଛନ୍ତି । ମୁଁ କହିଲେ ନିଶ୍ଚୟ ସାହାଯ୍ୟ କରିବେ ।" ନରସୀ ଘର ଭିତରକୁ ଯାଇ ତାଙ୍କୁ ଉଠାଇଲା । ତାଙ୍କୁ ମହାଦେବଯ୍ୟା ଭଲ କରି ଜାଣିଥିଲେ । ତାଙ୍କ ଘରେ ମଧ୍ୟ ଯାଇ ଥରେ ଖାଇଛନ୍ତି । ତେଣୁ ନରସୀ ଘରେ ଆସି ଶୋଇଥିବାର ଜଣା ପଡ଼ିବାରୁ ସବର୍ଣ୍ଣା ଟିକିଏ ଲାଜେଇ ଗଲେ । କିନ୍ତୁ ଏ ପରିସ୍ଥିତିରେ ଯିବାକୁ ପଡ଼ିବ । ବାହାରକୁ ଆସି ମହାଦେବଯ୍ୟାଙ୍କ ଆଗରେ ମୁଣ୍ଡ ପୋତି ଠିଆ ହେଲେ । ମହାଦେବଯ୍ୟା କିଛି ନକହି ଚୁପଚାପ କାଗଜରେ ତିପଟୁରର ଭେଙ୍କଟାଚଳ ସେଠୀର ଦୋକାନ ଠିକଣା ଏବଂ ହେମାଦିସିରପ ଲେଖି କାଗଜ ଏବଂ ଟଙ୍କା ସବର୍ଣ୍ଣାଙ୍କୁ ଦେଲେ । ତାଙ୍କୁ କହିଲେ –"ବର୍ତ୍ତମାନ ଧାଇଁ ଧାଇଁ ଯାଆନ୍ତୁ ଏବଂ ସକାଳୁ ବସ୍‌ରେ ବସି ଫେରି ଆସିବେ ।" ନରସୀ ମଧ୍ୟ ଆଦେଶ ଦେବାରୁ କୁର୍ତ୍ତା ପିନ୍ଧି ଅନ୍ଧାରେ ଅନ୍ଧାରେ ବାହାରିପଡ଼ିଲେ ।

ନରସୀ ମହାଦେବଯ୍ୟାଙ୍କୁ କହିଲା – 'ଏ ସାରା ଗାଁ ଭିତରେ ନଞ୍ଜିମ୍ମା ଭଳି ସ୍ତ୍ରୀ ଲୋକ କେହି ନାହିଁ । ତାଙ୍କ ପରି ଦୁଃଖ ଆଉ କାହାକୁ ମିଳିନି । ଶେଷରେ ତାଙ୍କୁ ହିଁ ପ୍ଲେଗ ହେବାକୁ ଥିଲା । ସଂସାରରେ କ'ଣ ଧର୍ମ ବୋଲି କିଛି ନାହିଁ ?"

ମହାଦେବଯ୍ୟା କ'ଣ ଉତ୍ତର ଦେବେ ଭାବି ପାରିଲେ ନାହିଁ । ଚୁପଚାପ ନଞ୍ଜିମ୍ମାର ଘର ଆଡ଼େ ଚାଲିଲେ । ନରସୀ ପଚାରିଲା "ମୁଁ ଯିବି କି ।" ମହାଦେବଯ୍ୟା ମନା କଲେ । କହିଲେ –"ଔଷଧ ଆସିଲେ ଶୀଘ୍ର ପହଞ୍ଚାଇ ଦେବୁ ।"

ନଞ୍ଜିମ୍ମାର ଘରେ ପହଞ୍ଚିଲା ବେଳକୁ ସେ ଶୋଇଛି । ଦୀପ ଜଳୁଥାଏ । ତାଙ୍କୁ ନ ଉଠାଇ

Digitized by srujanika@gmail.com

ମହାଦେବଯ୍ୟା ଢାଳୁକୁ ଆଉଜି ବସିଗଲେ । ପ୍ରଥମେ ଭାବିଲେ ଚେମ୍ପିଗରାସ୍ୱକୁ ଉଠାଇବେ । ପୁଣି ଚେମ୍ପିଗା ଯଦି ଉଠିଥାନ୍ତା ତେବେ ବିଚାରୀ ନନ୍ଦିମା ମତେ ଆସି କାହିଁକି ଉଠାଇଥାନ୍ତା ? ନନ୍ଦିମା ଏ ଗାଁକୁ ବୋହୂ ହୋଇ ଆସିବା ଦିନଠାରୁ ଆଜି ପର୍ଯ୍ୟନ୍ତ ସବୁ ଘଟଣା ତାଙ୍କ ଆଖି ଆଗରେ ନାଚିଗଲା । ନୂଆ ନୂଆ ବୋହୂ ହୋଇ ଆସିଲା ବେଳେ କାହା ସାଙ୍ଗରେ କଥା ମଧ୍ୟ ହେଉନଥିଲା । ଶାଶୂ କିନ୍ତୁ ଖଣ୍ଡ୍ରାଇ ଏବଂ ତା' ଉପରକୁ ପଡି ଲୋକାଳାଥ । କେତେ ଜମିବାଡି ଥିଲା ସବୁଗଲା । ବିଚାରୀ ନନ୍ଦିମା କେତେ ଚେଷ୍ଟା କରିଥିଲା ଜମିଟିକ ବଞ୍ଚାଇବା ପାଇଁ । ଏକୁଟିଆ ଛୁଆ ପିଲା ଧରି କେତେ କଷ୍ଟରେ ଦିନ ନ କଟାଇଛି । ପୁଅ ରମାନ୍ଥକୁ ପାଠ ପଢାଇଥିଲା । ଝିଅର ବିଭାଘର କଲା । ତାପରେ ପିଲାଦୁଇଟାଙ୍କ ମୃତ୍ୟୁ, ଏବଂ ଶେଷରେ ନିଜେ ମୃତ୍ୟୁ ମୁଖରେ ପଡି ଛଟପଟ ହେଉଛି, ଏତେ ପବିତ୍ର ଜଣେ ସ୍ତ୍ରୀ ଲୋକ ଦେଖିବା ବିରଳ । ତା'ଉପରେ କେତେ ବିପଦ ନଆସିଛି । ସତରେ ଧର୍ମ ବୋଲି କିଛି ଏ ଜଗତରେ ନାହିଁ । ଭଗବାନ ସିନା ଦୁର୍ଜନକୁ ଦଣ୍ଡ ଦିଅନ୍ତି, କିନ୍ତୁ ନନ୍ଦିମାର ଦୋଷ କ'ଣ ? ଶାଶୂର ମୂର୍ଖାମୀ ଏବଂ ସ୍ୱାମୀର ହୀନତା ଲାଗି ସିଏ କାହିଁକି କଷ୍ଟ ସହିବ ? ପ୍ଲେଗ କ'ଣ ଏ ବଂଶକୁ ସମୂଳେ ନିପାତ କରିବାକୁ ପ୍ରତିଜ୍ଞା ବଦ୍ଧ ହୋଇଛି ? ଶାସ୍ତ୍ରରେ ଲେଖାହୋଇଛି ଯେ ଏ ସଂସାରରେ ପ୍ରତ୍ୟେକ ପ୍ରାଣୀ କର୍ମ ଅନୁସାରେ ଫଳ ପାଏ ଏବଂ ପାପକର୍ମର ଫଳ ସ୍ୱରୂପ ଭଗବାନ ଦୁଃଖ, କଷ୍ଟ, ରୋଗ ଇତ୍ୟାଦି ଦିଅନ୍ତି । କିନ୍ତୁ ନନ୍ଦିମାର କଷ୍ଟ ଦେଖି ଶାସ୍ତ୍ରର ବିଧାନ ସବୁ ତାଙ୍କୁ ପ୍ରହେଳିକା ପରି ମନେ ହେଲା ।

କିଛି ସମୟପରେ ଆଃ, ଉଃ କରି ନନ୍ଦିମା ନିଦରୁ ଉଠିଲା । ମହାଦେବଯ୍ୟା "କ'ଣ ହେଲା ?" ବୋଲି ପଚାରିବାରୁ ଆଖି ଖୋଲି କିଛି ସମୟ ପର୍ଯ୍ୟନ୍ତ ତାଙ୍କୁ ଚାହିଁ ରହି କହିଲା – "ଓହୋ, ଆପଣ ଏଠି ସେତେବେଳରୁ ବସିଛନ୍ତି ? ସ୍ୱପ୍ନଟାଏ ଦେଖିଲି । ଆଗରୁ ମଧ୍ୟ ଥରେ ଏ ସ୍ୱପ୍ନ ଦେଖିଥିଲି । କଳା କଳା ପୁଲିସମାନେ ମତେ ବାନ୍ଧିବାକୁ ଦୌଡୁଛନ୍ତି । ମୁଁ ଧାଇଁ ଧାଇଁ ଗୋଟିଏ ପୋଖରୀ ପାଖରେ ପହଞ୍ଚିଛି । କିନ୍ତୁ ସେମାନେ ଆସି ମତେ ବାନ୍ଧି ପକାଉଛନ୍ତି । ସେତିକିବେଳକୁ ମୋର ନିଦ ଭାଙ୍ଗିଗଲା ।"

"ଜ୍ୱର ବେଳେ ଏପରି ଖରାପ ସ୍ୱପ୍ନ ଆସେ ତୁମେ ଶୋଇ ପଡ ।"

"ନାଇଁ ମୋର ମୃତ୍ୟୁ ବୋଧହୁଏ ପାଖେଇ ଗଲାଣି । ମୋ ପାଇଁ ଟିକିଏ ଜାଉ ତିଆରି କରି ଦେଇ ପାରିବେ କି । ଆମର ବ୍ରାହ୍ମଣ ଘର ବୋଲି କିଛି ଚିନ୍ତା କରିବେ ନାହିଁ । ଭାଡି ଉପରେ ଡବାରେ ଖୁଦ ଅଛି । ତା'ପାଖରେ ଘୃତ ହାଣ୍ଡି ମଧ୍ୟ ଅଛି । ଘୃତ ନ ଥିଲେ ଖାଲି ସାଦା ଜାଉ ତିଆରି କରି ଦିଅନ୍ତୁ ।

ମହାଦେବଯ୍ୟା ଦୀପ ନେଇ ରୋଷେଇ ଘରକୁ ଗଲେ । ଖୁଦ ଏବଂ ଘୃତ ଆଣି ଜାଉ ତିଆରି କଲେ । ନଡିଆ ପତରରେ ଚୁଲି ଜଳାଇଲେ । ଗୋଟିଏ ଥାଳିରେ ଜାଉ ଥଣ୍ଡା କରି ଆଣିଲେ ଏବଂ ନନ୍ଦିମାକୁ ଉଠାଇ ଖୁଆଇଲେ । ଖାଇସାରି ନନ୍ଦିମା ମୁହଁ ପୋଛି ପୁଣି ଶୋଇଗଲା ।

କିଛି ସମୟପରେ ନନ୍ଦିମା କହିଲା –"ଖାଇ ସାରିବା ପରେ ଟିକିଏ ଭଲ ଲାଗୁଛି । କାଲେ ଆଉ କହି ପାରିବି ନାହିଁ ତେଣୁ ଏବେ କହୁଛି ଶୁଣନ୍ତୁ ।" ମହାଦେବଯ୍ୟା ଯେତେ ବୁଝାଇଲେ ଯେ ଜ୍ୱର ଥିଲା

Digitized by srujanika@gmail.com

ବେଳେ ବେଶୀ କଥାବାର୍ତ୍ତା କରିବା କଥା ନୁହେଁ । ସେ ଶୁଣିଲା ନାହିଁ । ନନ୍ଦିକା ଆରମ୍ଭ କଲା – "ମୁଁ ଜନ୍ମ ହେବାର ବର୍ଷେ ଭିତରେ ମୋ ମା' ମରିଗଲା । ଘରେ ପିଲାଦିନେ ମୁଁ ଦୋଳିରେ ଶୋଇ ବଡ ପାଟିରେ କାନ୍ଦୁଥିଲି । ବାହାରେ ଜୋରରେ ସେତେବେଳେ ବର୍ଷା ହେଉଥାଏ ଏବଂ ମୋ ମା' ଗାଈ ଗୁହାଳରେ ଥାଏ । ତେଣୁ ତାକୁ ମୋର କାନ୍ଦ ଶୁଣା ଯାଉନଥାଏ । ମୋ ବାପା କ'ଣ ଗୋଟିଏ ସଂସ୍କୃତ ଶ୍ଳୋକ କଣ୍ଠସ୍ଥ କରୁଥିଲେ । ମୁଁ ଜୋରରେ କାନ୍ଦିବାରୁ ତାଙ୍କ କାମରେ ବାଧା ହେଲା । ରାଗରେ ଉଠି ଆସି ମୁଁ ଶୋଇଥିବା ଦୋଳିଟି ନେଇ ଅଗଣାରେ ବର୍ଷାରେ ରଖି ଦେଇ ପୁଣି ବସି ଶ୍ଳୋକ ପଢିବାରେ ଲାଗିଲେ । କିଛି ସମୟପରେ ଜେଜେ ମା' ବାହାରକୁ ଆସି ଦେଖେ ତ ଦୋଳି ନାହିଁକି ମୁଁ ନାହିଁ । 'ଝିଅ କୁଆଡେ ଗଲା' ବୋଲି ପଚାରିବାରୁ ବାପା କହିଲେ ଅଗଣାରେ ବର୍ଷାରେ ଶୋଇଛି । ଜେଜେମା ଧାଇଁ ଆସିଲା ବେଳକୁ ଓଳିତଳେ ମୋର ଦୋଳିଟା ବର୍ଷାରେ ଥୁଆ ହୋଇଛି । ଓଳିରୁ ପାଣି ଜୋରରେ ଦୋଳି ଉପରେ ପଡୁଥାଏ । ମୋର ଭାଗ୍ୟ ଭଲ ଯେ ମୋର ମୁଣ୍ଡ ଉପରେ ଓଳି ପାଣି ପଡୁ ନଥାଏ । ନହେଲେ ଅଣ ନିଶ୍ୱାସୀ ହୋଇ ମରିଯାଇଥାନ୍ତି । ଜେଜେମା' ସଙ୍ଗେ ସଙ୍ଗେ ଉଠାଇ ପୋଛା ପୋଛି କରି ଗରମ ତେଲ ମାଲିସ୍ କରି ଦେଲେ । ମୁଁ ସେତିକିବେଳେ ମରିଯାଇଥିଲେ କେତେ ଭଲ ହୋଇଥାନ୍ତା । ତାହାହେଲେ ଏତେ ଦୁଃଖ ପାଇନଥାନ୍ତି । କେତେ ଗୁଣର ପୁଅଝିଅ ଜନ୍ମ କରିଥିଲି ସେମାନେ ମଧ୍ୟ ମରିଗଲେ । ଏମିତି ସବୁ କାହିଁକି ହେଲା କହି ପାରିବେ ?"

ମହାଦେବସ୍ୱାଙ୍କୁ ମଧ୍ୟ ଏ ପ୍ରଶ୍ନ ଘଣ୍ଟାଏ ହେଲା ଘାରୁଥିଲା । ନରସୀ ମଧ୍ୟ ଏଭଳି ପ୍ରଶ୍ନ ପଚାରି ଥିଲା । ସତରେ ଏଭଳି କାହିଁକି ହୁଏ ? ଭଗବାନଙ୍କର କ'ଣ ଏଇଆ ଇଚ୍ଛା । ସେ ବେଦ, ଉପନିଷଦ ଏବଂ ଶାସ୍ତ୍ର ପୁରାଣ ପଢିଛନ୍ତି ଓ ଶୁଣିଛନ୍ତି । କାଶୀରେ ଥିଲାବେଳେ ଏଭଳି ତର୍କ ଆଲୋଚନାରେ ସେ ଆଗ୍ରହୀ ହୋଇ ଶୁଣିଥିଲେ । କିନ୍ତୁ ନନ୍ଦିକା ଏବଂ ନରସୀଙ୍କର ସାଧାରଣ ପ୍ରଶ୍ନର ଉତ୍ତର ତାଙ୍କ ମନରେ ଫୁଟୁନଥିଲା । ନନ୍ଦିକା ବେଶ୍ ବୁଦ୍ଧିମତୀ ଝିଅ, ପୁରାଣ, ମହାଭାରତ ଆଦି ପଢି, ସୁନ୍ଦର ଭାବେ ବୁଝାଇ ଦିଏ । କିନ୍ତୁ ଆଜି ସେ ଯେଉଁ ସାଧାରଣ ପ୍ରଶ୍ନଟା ପଚାରିଲା ତାର ଉତ୍ତର କ'ଣ ?

ଏ ଭିତରେ ନନ୍ଦିକାକୁ କେତେବେଳେ ଗଭୀର ନିଦ ଆସି ଯାଇଛି । ମହାଦେବସ୍ୱା ନନ୍ଦିକାର ମୁହଁକୁ ଚାହିଁ ରହିଥାନ୍ତି । ତା ସୁପ୍ତ ଚେହେରାରେ କେତେ କେତେ ଅସ୍ପଷ୍ଟ ରେଖା ଉଠି ପୁଣି ମିଳେଇ ଯାଉଥାଏ । କିଛି ସମୟପରେ ଆଖି ଖୋଲି କ'ଣ କହିବାକୁ ଚେଷ୍ଟା କଲା କିନ୍ତୁ ପାରିଲା ନାହିଁ । ପୁଣି ସାରା ଶକ୍ତି ଖଟାଇ ପଚାରିଲା –"ପାର୍ବତୀ, ରମନ୍ନା ମଲାବେଳେ ଆପଣ ମାତା ଯଶୋଦାଙ୍କ କଥା କହିଥିଲେ । ପୁଅ ନଦୀରେ ବୁଡି ମଲାବେଳେ ମା' ନଦୀ କୂଳରେ ଠିଆ ହୋଇ ରହିଲେ । ମୁଁ ମଧ୍ୟ ମନ ଦୁଃଖରେ ମଶାଣୀ ପାଖ ପୋଖରୀରେ ବୁଡି ମରିବାକୁ ଯାଇଥିଲି । ଡେଇଁଲା ବେଳକୁ ବିଶ୍ୱ କଥା ମନେ ପଡିଲା, ତେଣୁ ପଳାଇ ଆସିଲି । ଏବେ ମୁଁ ତ ନିଶ୍ଚୟ ମରିବି । ବିଶ୍ୱର କ'ଣ ହେବ ? ବୁଢୀ ମା' ଅକ୍କାମା କ'ଣ ତାକୁ ପାଳି ପୋଷି ବଡ କରାଇବ ? ସେ ଭାଇ ଉପରେ ମୋର ବିଶ୍ୱାସ ଆସୁନାହିଁ ଯେ ସବୁବେଳେ ବିଶ୍ୱ କଥା ବୁଝିବ । ତାର ପେଟ ପାଇଁ ମୋର ଯେତେ ଚିନ୍ତା ନୁହେଁ, ବେଶୀ ଦୁଃଖ ଲାଗୁଛି ଯେ ବିଶ୍ୱ ପଢି ଲେଖି କିପରି ବଡ ଲୋକ ହେବ ?"

Digitized by srujanika@gmail.com

ଏତେ ଗୁଡାଏ କଥା କହିସାରି ହାଲିଆ ହୋଇ ଆଖି ବନ୍ଦ କରି ପଡି ରହିଲା । କିଛି ସମୟପରେ ନିଦ ଲାଗିଗଲା । ମହାଦେବଯା ସେହିପରି ନିଶ୍ଚଳ ହୋଇ ବସିଥାନ୍ତି । କେଉଁଠ ସାଇ ଆଡେ କୁକୁଡା ଡାକିବା ଶବ୍ଦ ଶୁଭିଲା । ମହାଦେବଯା ଭାବିଲେ ସକାଳ ହେବା ପୂର୍ବରୁ ଯାଇ ଶୀଘ୍ର ନିତ୍ୟକର୍ମ କରି ଆସିବା ଦରକାର । ଭାବିଲେ ଚେନ୍ନିଗାକୁ ଉଠାଇ ନଷ୍ଟିକା ପାଖରେ ଜଗି ବସିବା ପାଇଁ କହିଗଲେ କିଛି ଲାଭ ନାହିଁ । ତେଣୁ ଦୀପଟା ସେମିତି ଜଳା ହୋଇ ଛାଡି କବାଟ ଆଉଜାଇ ଦେଇ ପୋଖରୀ ଆଡକୁ ଚାଲିଲେ ।

ବାଟରେ କେତେ ଜଣ ଲୋକ କଥା ହେବାର ଶୁଣିଲେ ଯେ ଆଖ ପାଖ ଆଉ କେତେ ଗାଁରେ ମଧ୍ୟ ପ୍ଲେଗ୍ ବ୍ୟାପିବା ଖବର ଜଣାପଡିଛି । ରାମସନ୍ଦ୍ର ଗାଁରେ ମଧ୍ୟ ଲୋକେ ଠିକ୍ କରିଛନ୍ତି ଯେ ଶୀଘ୍ର ଘର ଛାଡି କୁଡିଆ କରି ରହିବାକୁ । ଆଜି ଗାଁରେ ଢେଙ୍ଗୁରା ଦିଆଯିବ । ଆହୁରି ଖବର ମିଳିଛି ଯେ ସରକାର ଲୋକ ପଠାଇ ସମସ୍ତଙ୍କୁ ପ୍ରତିଷେଧକ ଇଞ୍ଜେକ୍‌ସନ୍ ଦେଇ ଦେବେ । ସେଥିପାଇଁ ଆଜି ସନ୍ଧ୍ୟାବେଳକୁ ଠାକୁରାଣୀ ମନ୍ଦିର ପାରେ ଗାଁ ଲୋକଙ୍କୁ ଏକାଠି ହେବାକୁ କୁହାଯିବ ।

ମହାଦେବଯାଙ୍କ ମନେ ପଡିଲା ଯେ ଗତବର୍ଷ କମ୍ପନକେରେର ଡାକ୍ତର କହିଥିଲା ଯେ ଯାହାକୁ ପ୍ଲେଗ ହୋଇ ସାରିଲାଣି ତାକୁ ଇଞ୍ଜେକ୍‌ସନ୍ ଦେଇ କିଛି ଲାଭ ନାହିଁ । ଆରବର୍ଷ ମଧ୍ୟ ଏ ରୋଗ ପ୍ରଥମେ ନଷ୍ଟିକାର ଘରୁ ଆରମ୍ଭ ହୋଇଥିଲା । ଏଥର ମଧ୍ୟ ଆଉ କେଉଁଠି ରୋଗର ସଙ୍କେତ ମିଳିବା ପୂର୍ବରୁ ନଷ୍ଟିକାକୁ ଆକ୍ରମଣ କରିଛି । ଏଭଳି ଭାବିଭାବି ନିତ୍ୟକର୍ମ ସାରି ମହାଦେବଯା ନଷ୍ଟିକାର ଘରକୁ ଫେରିଲେ ।

## 5

ଦୁଇଦିନ ଭିତରେ ଗାଁର ସମସ୍ତେ ଘର ଛାଡି କୁଡିଆ ତିଆରି କରି ରହିଲେ । ମହାଦେବଯା ନଷ୍ଟିକା ପାଇଁ କୁଡିଆଟିଏ ତିଆରି କରାଇଦେଲେ । ତାଙ୍କ ରହିବା ପାଇଁ ତ ଗାଁଠାରୁ ଦୂରରେ ମନ୍ଦିରଟିଏ ଥିଲା । ସେ ଏଥର ଆଶ୍ଚର୍ଯ୍ୟ ହେଲେ ଯେ ଗଙ୍ଗାକ୍କା ନଷ୍ଟିକାର ସେବା କରିବା ପାଇଁ ଆସି ତା' ପାଖରେ ରହିଲା । "ଘର ତିଆରି କରିନଥିଲେ ବା' କଣ ହୋଇ ଯାଉଥିଲା । ସନ୍ନହଲ୍ଲୀ ଗାଁକୁ ଯାଇ ସିନା ରୋଗ ଧରି ଆସିଲୁ । ବଡ ଲୋକଙ୍କର କଥା ଶୁଣିଥିଲେ ଆଜି ପୋଡାମୁହିଁର ଏ ଅବସ୍ଥା ହୋଇନଥାନ୍ତା ।" ଏମିତି ସବୁବେଳେ କ'ଣ ନା କ'ଣ ବକବକ ହେଉଥାଏ । ତଥାପି ମହାଦେବଯାଙ୍କ କହିବା ଅନୁସାରେ ବୋହୂକୁ ଘଣ୍ଟାକୁ ଘଣ୍ଟା ଔଷଧ ପିଆଇ ଦିଏ ଏବଂ ଦିନକୁ ଦୁଇ ତାରିଥର ଜାଉ କରି ଖୁଆଏ ।

ଚେନ୍ନିଗରାୟ ପ୍ରତିଷେଧକ ଇଞ୍ଜେକ୍‌ସନ୍ ନେଇ ହାତ ଦରଜ ହେବାରୁ ମହାଦେବଯାଙ୍କ ମନ୍ଦିରରେ

Digitized by srujanika@gmail.com

ଶୋଇ ରହିଥାଏ । ମହାଦେବସ୍ୱାଙ୍କୁ ମଧ୍ୟ ବାଧ୍ୟ କରି ଇଞ୍ଜେକ୍‌ସନ୍ ଦିଆ ଯାଇଥିଲା । ଗଙ୍ଗାମ୍ମା ଇଞ୍ଜେକ୍‌ସନ୍ ନେଲା ନାହିଁ ।

ନଞ୍ଜମ୍ମାକୁ ଲୋକେ ଟେକି ଟେକି ନେଇ କୁଡିଆରେ ଶୁଆଇଦେଲେ । ସେ ଅଚେତ ହେଲା ଭଳି ଶୋଇ ରହିଥାଏ । ଦିନେ ପର୍ଯ୍ୟନ୍ତ ଆଖି ଫିଟାଇଲା ନାହିଁ । କେବଳ ଶାଶୁ ବାଧ୍ୟ କରିବାରୁ ଔଷଧ ଏବଂ ଜାଉ କ୍ଷୀରି ଟିକିଏ ଖାଇ ଦେଉଥାଏ । କୁଡିଆକୁ ଯିବାର ଦୁଇ ତିନିଦିନ ପରେ ନଞ୍ଜମ୍ମାର ଅବସ୍ଥା ଟିକିଏ ଭଲ ହେଲା ପରି ଜଣାଗଲା । ସେ ଟିକିଏ ଆଖି ଖୋଲିଲା ଏବଂ କଥା କହିବାକୁ ଚେଷ୍ଟାକଲା । ମହାଦେବସ୍ୱା ତାର ମୁହଁ ପାଖକୁ କାନ ନେବାରୁ ସେ କହିଲା – "ବି - ଶ୍ୱ ।"

"ଦେଖିବାକୁ ଇଚ୍ଛା ହେଉଛି କି ?"

ନଞ୍ଜମ୍ମାର ମୁହଁରୁ ସମ୍ମତିର ସୂଚନା ପାଇ "ଲୋକ ପଠାଇ ଡକାଇ ଦେଉଛି " ବୋଲି କହି ମହାଦେବସ୍ୱା ବାହାରକୁ ଆସିଲେ ।

ଗାଁଟା ସାରା ନିଜ ନିଜ କୁଡିଆକୁ ଜିନିଷ ପତ୍ର ବୋହିବାରେ ଲାଗିଥାନ୍ତି । କିଏ ବା' ଏସମୟରେ ନାଗଲାପୁର ଯିବ ? ମହାଦେବସ୍ୱା ଚଉକିଦାର ଘରେ ଯାଇ ପହଞ୍ଚିଲେ । ସେ କହିଲା – "ଆଜ୍ଞା ଆପଣ ତ ଦେଖୁଛନ୍ତି ମୋ କୁଡିଆ ଛପର ହୋଇ ନାହିଁ , ମୁଁ କିପରି ଯିବି ?"

"ଆରେ ମଲାବେଳେ ମା' ମୁହଁରେ ପୁଅ ପାଣିଟିକିଏ ନଦେଲେ ନଞ୍ଜମ୍ମାର ଆତ୍ମାକୁ କଷ୍ଟ ହେବ ।" ଚଉକିଦାର ଏକଥା ଶୁଣି ରାଜି ହୋଇଗଲା । ତାକୁ ଶୀଘ୍ର ନାଗଲାପୁର ଯାଇ ଖବର ଦେବାକୁ କହି ମହାଦେବସ୍ୱା ଶୀଘ୍ର ଶୀଘ୍ର ନଞ୍ଜମ୍ମାର ଘରକୁ ଆସିଲେ । ଗଙ୍ଗାମ୍ମା କହିଲା –"ନଞ୍ଜୁ କ'ଣ କହୁଥିଲା ମୁଁ ବୁଝି ପାରିଲି ନାହିଁ , ତୁମେ ପଚାର ।"

ମହାଦେବସ୍ୱା ତା'ମୁହଁ ପାଖକୁ ଲଇଁ ଯାଇ ପଚାରିଲେ, "କ'ଣ କହୁଥିଲ କି ?" କିଛି ସମୟପରେ ନଞ୍ଜମ୍ମା କ'ଣ ଫୁସ ଫୁସ କରି କହିଲା । ଅସ୍ପଷ୍ଟ ହେଲେ ମଧ୍ୟ ବୁଝିଗଲେ ଯେ, ଗାଁରେ ପ୍ଲେଗ ଲାଗିଥିବାରୁ ବିଶ୍ୱକୁ ଡକାଅ ନାହିଁ ।

"ଆଚ୍ଛା ତେବେ ଚଉକିଦାରକୁ କହି ଆସୁଛି ।" କହି ମହାଦେବସ୍ୱା ପୁଣି ବାହାରକୁ ଗଲେ ।

ସେ ମଧ୍ୟ ଭାବିଲେ, ସତକଥା, ବିଶ୍ୱକୁ ଏ ଗାଁକୁ ଆଣିବାଟା ଠିକ୍ ହେବ ନାହିଁ । ନଞ୍ଜମ୍ମା ତ ଆଉ ବଞ୍ଚିବ ନାହିଁ । ମା' ଚାହେଁ, ମଲାବେଳେ ପୁଅ ହାତରୁ ପାଣି ନ ପାଇଲେ ନାହିଁ କିନ୍ତୁ ପୁଅକୁ ଏ ବେମାର ପୁଣି ନ ଲାଗୁ । କିନ୍ତୁ ବିଶ୍ୱର ମାମୁଁ ଘରକୁ ଅନ୍ତତଃ ଏ ଖବରଟାତ ପହଞ୍ଚିବା ଦରକାର । ଚଉକିଦାର ପାଖକୁ ଯାଇ କହିଲେ – "ବିଶ୍ୱକୁ କଦାଚିତ୍ ଆଣିବୁ ନାହିଁ । ବରଂ ନଞ୍ଜମ୍ମାର ଭେଜେମା' ଏବଂ ଭାଇକୁ ଡାକି ଆଣିବୁ ।"

Digitized by srujanika@gmail.com

ଚଉକିଦାର ଧାଇଁ ଧାଇଁ ଗଲା । ଯେତେ ଦୌଡ଼ିଲେ ମଧ୍ୟ ନାଗଲାପୁରରେ ପହଞ୍ଚିଲା ବେଳକୁ ଦିନ ଦୁଇଟା ବାଜିଲାଣି । ସେ ଗାଁରେ ମଧ୍ୟ ଲୋକ ପ୍ଲେଗ ଭୟରେ ଘର ଛାଡ଼ି କୁଡ଼ିଆରେ ଯାଇ ରହୁଥିଲେ । ପଚାରି ପଚାରି କଳେଶ ଜୋଇଦଙ୍କ କୁଡ଼ିଆରେ ଯାଇ ପହଞ୍ଚିଲା । ବିଶ୍ୱ ଶୁଇ ଯାଇଥାଏ । କଳେଶ ମଧ୍ୟ ଗାଁରେ ନଥିଲା । ବୁଢ଼ୀ ଅକ୍କଳା ଖବର ଶୁଣି ଚମକି ଉଠିଲା । କଳେଶକୁ ଅପେକ୍ଷା କରି ବସିଲେ ଡେରି ହୋଇଯିବ । କଳେଶର ସ୍ତ୍ରୀକୁ କହିଦେଲେ ସେ କଳେଶ ଆସିଲେ ଶୀଘ୍ର ପଠାଇଦେବ । କିନ୍ତୁ କାଳେ ସେ ନ କହିବ ସେଥିପାଇଁ ପଡ଼ୋଶୀ ଘରେ ମଧ୍ୟ ଖବର ଦେଇ ଶଗଡ଼ ଗାଡ଼ିରେ ବସି ସାଙ୍ଗେ ସାଙ୍ଗେ ବାହାରି ପଡ଼ିଲା ।

ବାଡ଼ିପଡ଼ା ବେମାରିଟା ଦୁଇଟା ଅଣନାତି, ନାତୁଣୀଙ୍କୁ ଖାଇସାରି ପୁଣି ନାତୁଣୀକୁ ଖାଇବାକୁ ବସିଛି । ବିଶ୍ୱକୁ ମଧ୍ୟ ଧରିଥିଲା । କିନ୍ତୁ ଶୃଙ୍ଗେରୀର ଶାରଦା ଠାକୁରାଣୀଙ୍କ ମାନସିକ କରିଥିବାରୁ ବଞ୍ଚିଗଲା । ବାଟରେ ଗୋଟିଏ ଛୋଟ ପୋଖରୀ ପଡ଼ିଲା । ଅକ୍କମା ଶଗଡ଼ରୁ ଓହ୍ଲାଇ ହାତ ମୁହଁ ଧୋଇ ଅଣ୍ଟାରୁ ଟଙ୍କାଟିଏ କାଢ଼ି ମାନସିକ କଲା ଯେ "ଯଦି ମୋ ନାତୁଣୀ ଭଲ ହୋଇଯିବ ତେବେ ଶାରଦା ଠାକୁରାଣୀଙ୍କର କୁଙ୍କୁମାର୍ଚ୍ଚନା କରାଇବି ।" ତାପରେ ପୁଣି ଗାଡ଼ି ଚାଲିଲା । ରାସ୍ତାଯାକ ଚଉକିଦାରକୁ ନଞ୍ଜିକାର କଥା ପଚାରୁଥାଏ । ବୁଢ଼ୀ ନିଜ ମନକୁ ଦମ୍ଭ ଦେଉଥାଏ ଯେ ନଞ୍ଜିକାର ଦେହ ବେଶି ଖରାପ ହୋଇ ନଥିବ । ରାମସନ୍ଦ୍ର ଗାଁରେ ପହଞ୍ଚିଲା ବେଳକୁ ରାତି ହୋଇ ସାରିଥିଲା ।

## 6

କୁଡ଼ିଆରେ ପହଞ୍ଚି ବୁଢ଼ୀ ଅକ୍କଳା ଦେଖେ ତ ନଞ୍ଜିକା ସେଠାରେ ନାହିଁ । ସମୁଦୁଣୀ ଗଙ୍ଗାକ୍କା ବଡ଼ ପାଟିରେ କାନ୍ଦୁଥାଏ । ମହାଦେବୟ୍ୟା କହିଲେ ଯେ ଦିପହର ବେଳକୁ ନଞ୍ଜିକାର ପ୍ରାଣ ଛାଡ଼ିଗଲା । ମଲା ବେଳକୁ କହିଲା ଯେ ଏ ଗାଁକୁ ବିଶ୍ୱକୁ ଆଣିବ ନାହିଁ । ମଲା ପର୍ଯ୍ୟନ୍ତ ନଞ୍ଜିକାର କାଖରେ ବା ଜଙ୍ଘରେ କୌଣସି ବଥ ପରି ଘା' ହୋଇନଥିଲା । ପାଞ୍ଚ ମିନିଟ ଭିତରେ ନିଶ୍ୱାସ ଉପରକୁ ଉଠି ପ୍ରାଣ ଛାଡ଼ିଗଲା । ଗଙ୍ଗାକ୍କା ମୁହଁରେ ପାଣି ଦେଲା । ନାଗଲାପୁରରୁ କିଏ ଆସିବ ବୋଲି ସନ୍ଧ୍ୟା ପର୍ଯ୍ୟନ୍ତ ଅପେକ୍ଷା କରି, ଶବଦାହ କରିବା ପାଇଁ ନେଇଗଲେ । ଏବେ ଅଧଘଣ୍ଟାଏ ହେଲା ଶବଦାହ ପାଇଁ ଯାଇଛନ୍ତି । ବୁଢ଼ୀ ଅକ୍କଳା ଛାତି ରେ ହାତ ବାଡ଼େଇ କାନ୍ଦିଲା –"ନଞ୍ଜୁର ମୁହଁ ଦେଖି ପାରିଲି ନାହିଁ । ଯାଉଛି ମଶାଣୀରେ ଦେଖି ଆସିବି ।" ସେଇମିତି ରାତି ଅନ୍ଧାରରେ ବୁଢ଼ୀ ମଶାଣୀ ଆଡ଼େ ଧାଇଁଲା । ମହାଦେବୟ୍ୟା ଯେତେ ମନାକଲେ ମଧ୍ୟ ମାନିଲା ନାହିଁ । କାଳେ ବୁଢ଼ୀଟା କେଉଁଠି ପଡ଼ି ଯିବ ସେଥିପାଇଁ ତା' ହାତ ଧରି ମଶାଣୀ ଆଡ଼େ ଚାଲିଲେ । ଅଧବାଟରେ ଅନ୍ଧାରରେ ଅୟ୍ୟାଶାସ୍ତ୍ରୀ ଠିଆ ହୋଇଥାନ୍ତି । ପଚାରିଲେ "କିଏ" ? ମହାଦେବୟ୍ୟା ଉତ୍ତର ଦେଲେ 'ନଞ୍ଜିକାର ଜେଜେମା', ମଶାଣୀ ପାଖରେ ପହଞ୍ଚିଲା

Digitized by srujanika@gmail.com

ବେଳକୁ ଶବକୁ ଚିତା ଉପରେ ରଖି ଦେହରୁ ଲୁଗା କାଢି ଦେଇଥାନ୍ତି । ନାତୁଣୀର ଫୁଙ୍ଗୁଳା ଦେହଟା ବୁଢୀ ଦେଖିଲା । ପିଲାବେଳେ ନଷ୍ଟି କେତେ ଗୋରୀ ଥିଲା ଏବେ ଦେହଟା କଳାକାଠ ପଡି ଯାଇଛି । ଧାଇଁ ଯାଇ ଶବ ଉପରେ ମୁହଁ ମାଡି ପଡିଗଲା । ଲୋକେ ବହୁତ କଷ୍ଟରେ ବୁଢୀକୁ ଉଠାଇ ନେଲେ ଏବଂ ଚିତା ସଜାଡି ଶବରେ ଅଗ୍ନି ସଂଯୋଗ କଲେ । ଶବରେ ନିଆଁ ଲାଗିବା ପରେ ବୁଢୀ ଜୋରରେ ଚିତ୍କାର କଲା "ଚୋର ଚଣ୍ଡାଳ, ଶେଷକୁ ତୁ ଏଇୟା କଲୁ । ରହ ତତେ ଦେଉଛି ।"

ବୁଢୀର କଥାକୁ ସମସ୍ତେ ପ୍ରଳାପ ବୋଲି ଭାବିଲେ । ବୁଢୀ ସେଠାରୁ ଶୀଘ୍ର ଫେରିଆସିଲା । ମହାଦେବସ୍ୱା ହାତ ଧରି ନେବେ ବୋଲି ହାତ ବଢାଇବାରୁ ହାତ ଛିଞ୍ଚାଡି ଦେଲା । ସିଧା ଦୌଡି ଦୌଡି ନଷ୍ଟିଆର ଘରେ ପହଞ୍ଚିଗଲା । ଝାଡୁଣୀଟା ଧରିଲା ଏବଂ ହଳିଆ ଚପଲରୁ ଗୋଟାଏ ଉଠାଇ ଗାଁ ଭିତରକୁ ଧାଇଁଲା । ଗଙ୍ଗାମ୍ମା ବୁଢୀର ଏ ରୂପ ଦେଖି ଡରିଗଲା । ଏତେ ଅନ୍ଧାରରେ ମଧ୍ୟ ଘର ଚିହ୍ନି ବୁଢୀ ଅକ୍କମ୍ମା ନଷ୍ଟିଆର ଘରେ ପହଞ୍ଚିଗଲା । ଘର ଦୁଆରେ ଝାଡୁଣୀ ଏବଂ ଚପଲରେ ବାଡେଇ ପାଟି କରୁଥାଏ । "ଆଲୋ ଚଣ୍ଡାଳୁଣୀ ତତେ ଆଉ କେଉଁ ଘର ଦିଶିଲା ନାହିଁ । ଆଗରୁ ତ ପିଲା ଦୁଇଟାକୁ ଖାଇଥିଲୁ । ଏଥର ଶାରଦା ଠାକୁରାଣୀଙ୍କୁ ମାନସିକ କରିବା ପୂର୍ବରୁ ଆସି ମୋ ନାତୁଣୀକୁ ଖାଇଗଲୁ । ତତେ ଯିଏ ଡରିଲା ତୁ ତାକୁ ବେଶି ଡରାଇଲୁ । ପାପୀ, ଚଣ୍ଡାଳୁଣୀ ଆ' ବାହାରକୁ ଆସ ତତେ ଚପଲରେ ପୂଜା କରିବି । ଭିତରେ ଚୋରଣୀଙ୍କ ଭଳି ଲୁଚି କରି କାହିଁକି ବସିଛୁ । ବାହାରକୁ ଆସ ।" ଏହିପରି ପାଟିକରି କବାଟକୁ ଝାଡୁଣୀରେ ଅନେକ ସମୟ ପର୍ଯ୍ୟନ୍ତ ବାଡେଇଲା । ତାପରେ ହାଲିଆ ହୋଇଯିବାରୁ ସେଇ ବାରଣ୍ଡାରେ ବସିଗଲା । ଅଧ ଘଣ୍ଟାଏ ପରେ ତାର ରାଗ ଶାନ୍ତ ହେଲା । ଆର ବର୍ଷ ଏଇ ଘରେ ନାତୁଣୀର ପୁଅ,ଝିଅ ମରିଥିଲେ ଏବଂ ବୁଢୀ ଆସି ନଷ୍ଟିମ୍ମାକୁ କେତେ ସାନ୍ତ୍ୱନା ଦେଇଥିଲା । ଏଇ ଘରେ ପାର୍ବତୀର ବିଭାଘର କରାହୋଇଥିଲା । ଏ ଘରକୁ ନଷ୍ଟିମ୍ମା ଆସିବାର ଢେର ବର୍ଷ ହୋଇ ଯାଇଥିଲା । ଏ ପ୍ଲେଗ ରୋଗ ଏ ଘରଟାକୁ ଖୋଜି ଖୋଜି କାହିଁକି ଆସେ ? ଅକ୍କମ୍ମା ପୁଣି କାନ୍ଦିଲା । କିଛି ସମୟପରେ ଠିଆ ହେଲା, ଧୀରେ ଧୀରେ ସେଠାରୁ ଚାଲି ଆସିଲା । ମହାଦେବସ୍ୱା ତାଙ୍କୁ ଦେଖି ପଚାରିଲେ – "ତୁମେ କୁଆଡେ ଯାଇଥିଲ, ଆମେ ଇଆଡେ ଖୋଜି ଖୋଜି ହାଲିଆ ହେଲୁଣି ।"

"ପ୍ଲେଗ ଠାକୁରାଣୀଙ୍କୁ ଚପଲରେ ପୂଜା କରିବାକୁ ଯାଇଥିଲି ।"

ମଶାଣୀରୁ ଫେରି ଚେନ୍ନିଗା କାନ୍ଦି କାନ୍ଦି ଘରେ ବସିଥାଏ । ସେ କହିଲା, "ସେ ନୂଆଘରଟା ତିଆରି ନକରିଥିଲେ କ'ଣ ବା' ହୋଇ ଯାଉଥାନ୍ତା ? ନୂଆଘର କରିବାରୁ ସିନା ଠାକୁରାଣୀ ରାଗି ଗଲେ ।" ବୁଢୀ ଅକ୍କମ୍ମା ରାତିସାରା କାନ୍ଦିଲା । ସକାଳୁ ମହାଦେବସ୍ୱା କହିଲେ, "ଆଜି ଆପଣ ନଯାଇ କଲେକ୍ଟର ଆସିଲା ପର୍ଯ୍ୟନ୍ତ ଅପେକ୍ଷା କରନ୍ତୁ ।"

ଦ୍ୱିପହର ବେଳକୁ ଅକ୍କମ୍ମା କୁଡିଆ ଭିତରେ ଶୋଇଥାଏ । ଗଙ୍ଗାମ୍ମା ମୁଣ୍ଡରେ ହାତ ରଖି ବସିଥାଏ । ଚେନ୍ନିଗରାୟ ଗାଁ ଠାକୁରାଣୀଙ୍କ ମଣ୍ଡପରେ ଶୋଇଥାଏ । ସେତିକି ବେଳକୁ ବିଶ୍ୱ ଧାଇଁ ଧାଇଁ ଗାଁ ଭିତରକୁ ଯାଉଥିଲା । ନରସୀ ତାକୁ ଦେଖି ପଚାରିଲା –"କୁଆଡେ ଧାଇଁଛୁରେ ପୁଅ ?" ସେ ନରସୀକୁ

Digitized by srujanika@gmail.com

ପଚାରିଲା –"ସତରେ କ'ଣ ମୋର ମା' ମରିଯାଇଛି ?"

ନରସୀ ବିଶ୍ୱକୁ ଭିଡିଆଣି କୋଳ କରିପକାଇଲା । "ମତେ ଛାଡ ମୁଁ ଘରକୁ ଯିବି ।" କହି ନିଜକୁ ତା' କୋଳରୁ ଛଡାଇଲା । ନରସୀ ପଚାରିଲା –"ଘରକୁ ଯାଇ ଆଉ କ'ଣ କରିବୁ ?"

"ମୋ ମା' ବଞ୍ଚିଛି, ସେ ମରି ନାହିଁ ।"

"ତୁ ଆସ, ମୁଁ କହିବି ।" ଏହା କହି ବିଶ୍ୱର ହାତ ଧରି ନେଇ ପିଣ୍ଡାରେ ବସାଇ ପଚାରିଲା –"ତୁ ଏକୁଟିଆ କିପରି ଆସିଲୁ ? ତତେ କିଏ କହିଲା ଯେ ତୋ ମା' ମରିଯାଇଛି ।"

"ମୋ ମାମୁଁଘର ପାଖର ଲୋକ କହିଲେ ।"

"ତୁ କ'ଣ ରାସ୍ତା ଜାଣିଥିଲୁ ଯେ ଚାଲି ଆସିଲୁ ।'"

"ହଁ ଶଗଡରେ ବସି ଗଲାବେଳେ ଦେଖିଥିଲି ।"

ନରସୀର ଆଖିରୁ ଲୁହ ଗଡିଗଲା । ବିଶ୍ୱ ପଚାରିଲା – "ମାଉସୀ ତୁ କାହିଁକି କାନ୍ଦୁଛୁ ? ମତେ ଛାଡ, ମୁଁ ଘରକୁ ଯିବି ।" ଏହା କହି ପୁଣି ନିଜକୁ ନରସୀ ହାତରୁ ଛଡାଇବାକୁ ଚେଷ୍ଟା କଲା । ନରସୀ କହିଲା – "ଚାଲ, ମୁଁ ତତେ ସାଙ୍ଗରେ ନେଇ ଯିବି ।"

ବିଶ୍ୱକୁ ଦେଖି ତାକୁ ଛାତିରେ ଭିଡିଧରି ବୁଢୀ ଅକ୍ମା କେତେ କାନ୍ଦିଲା । "ମୋ ଧନ ତୁ ଅନାଥ ହୋଇଗଲୁ ।" ବିଶ୍ୱ ମଧ୍ୟ ମା' ମରିଯିବାର ଶୁଣି ଖୁବ୍ ଜୋରରେ କାନ୍ଦିବାରେ ଲାଗିଲା ।

## 7

ସେଦିନ ସଞ୍ଜବେଳକୁ ଅକ୍ମାକୁ ଜ୍ୱର ଆସିଲା । ତାର ଆଖି ଲାଲ ହେବା ଏବଂ ଦେହ ଫୁଲିଯିବା ଲକ୍ଷଣରୁ ମହାଦେବଯ୍ୟା ବୁଝିଲେ ଯେ ବୁଢୀକୁ ପ୍ଲେଗ ହୋଇଛି । ସେ ଭାବିଲେ ବୁଢୀର ମଧ୍ୟ କାଳ ପୁରି ଆସିଲା । ବିଶ୍ୱକୁ ପ୍ଲେଗ ରୋଗୀ ପାଖରେ ଛାଡିବା ଠିକ୍ ନୁହେଁ ଭାବି ସେ ତାକୁ ନେଇ ନରସୀ ପାଖରେ ଛାଡି କହିଲେ – "ଭଉଣୀ ଯ୍ୱାକୁ କୁଆଡେ ଛାଡିବ ନାହିଁ । ତୁମେ ତାକୁ ଖାଇବାକୁ ଦେବ ଜାତି ଭ୍ରଷ୍ଟ ହେବା କଥା ଭାବିବ ନାହିଁ । କୁଡିଆରେ ବୁଢୀ ଆଈ ଅକ୍ମାକୁ ପ୍ଲେଗ ଧରିଛି । ତେଣୁ ବିଶ୍ୱ ସେଠାରେ ରହିବା ଠିକ୍ ହେବ ନାହିଁ ।"

ବିଶ୍ୱ କିନ୍ତୁ କିଛି ଖାଇଲା ନାହିଁ । ମା' କଥା ମନେ ପକାଇ କାନ୍ଦୁଥାଏ । ନରସୀ ତା' ପାଖରେ ଜଗି ବସିଥାଏ ।

Digitized by srujanika@gmail.com

ଏଣେ ମହାଦେବସ୍ୟା ନଷ୍ଟାମା ଲାଗି ଅଣାଇଥିବା ହୋମାଓ୍ୱିପିରପ ନେଇ ଅଙ୍କୁମାକୁ ଦେବା ପାଇଁ ଚେଷ୍ଟା କଲେ । ସେ କିନ୍ତୁ ପିଇଲା ନାହିଁ । ମୁହଁ ବିଲକୁଲ ଖୋଲୁ ନଥାଏ । ସତେ ଯେମିତି ବୁଢ଼ୀ ମରିବାକୁ ଠିକ୍ କରି ନେଇଥିଲା । ସେଦିନ ରାତି ଦଶଟା ବେଳକୁ କଲେଶ ଆସି ପହଞ୍ଚିଲା । ମହାଦେବସ୍ୟାଙ୍କ ଠାରୁ ସବୁ ଶୁଣି ସେ ମଧ୍ୟ କିଛି ସମୟ ପର୍ଯ୍ୟନ୍ତ କାନ୍ଦିଲା । ବର୍ତ୍ତମାନ ଆଗକୁ କ'ଣ କରିବାକୁ ହେବ । ସେ କହିଲା – "ବିଶ୍ୱ ଇଲେକ୍‌ସନ୍ ନେଇ ଯାଉଛି । ସେ ତାର ମା'ର ଶୁଦ୍ଧିକ୍ରିୟା ସରିଲା ପର୍ଯ୍ୟନ୍ତ ଏଗାଁରେ ରହୁ, ତା' ପରେ ମୁଁ ଆସି ନେଇଯିବି । ବୁଢ଼ୀ ମା'କୁ ମୁଁ ସଙ୍ଗରେ ଗାଁକୁ ନେଇଯାଉଛି ।"

କଲେଶକୁ ମନା କରିବା ସ୍ଥିତିରେ କେହି ନଥିଲେ । କିନ୍ତୁ ବୁଢ଼ୀ ମାନିଲେ ସିନା । ସେ ପାଟିକଲା – "ମୁଁ କୁଆଡେ ଯିବି ନାହିଁ । ମୋ ନାତୁଣୀ ଯେଉଁଠି ଜଳା ହୋଇଛି ମୁଁ ମଧ୍ୟ ସେଠି ମରିବି" କିନ୍ତୁ କଲେଶ ମାନିଲା ନାହିଁ । ଶଗଡରେ ଶେଯ ପକାଇ ବୁଢ଼ୀ ମା'କୁ ଟେକି ନେଇ ସେଥିରେ ଶୁଆଇ ଦେଲା । ଏବଂ ସେଇ ରାତି ଶଗଡରେ ବସି ବାହାରି ପଡ଼ିଲା ।

ତା' ପର ଦିନ ସକାଳୁ ଅପନ୍ନା ଗାଁକୁ ଫେରିଲା । ପ୍ଲେଗ ଲାଗିବା କଥା ଏବଂ ଭାଉଜ ମରିବା କଥା ସେ ଶୁଣିଥିଲା । ସବୁକଥା ଶୁଣି ବହୁତ କାନ୍ଦିଲା । ପାର୍ବତୀର ବିବାହର ପରଠାରୁ ଭାଉଜ ପ୍ରତି ତାର ଆତ୍ମୀୟତା ଆସିଯାଇଥିଲା । ତାପରେ ଶୃଙ୍ଗେରୀ ଯାତ୍ରା ପରେ ଭାଉଜ ପ୍ରତି ତାର ବହୁତ ଭକ୍ତି ମଧ୍ୟ ଆସି ଯାଇଥିଲା । ନିଜ ମା' ଘର ଛାଡ଼ିଲା ପରେ ପ୍ରତିଦିନ ଭାଉଜଠାରୁ ଡାଲି ତରକାରୀ ନେଇ ଖାଉଥିଲା । ବର୍ତ୍ତମାନ ତାକୁ ଜଣାଗଲା ସତେ ଯେପରି ସେ ଗାଁରେ ତାର ନିଜର ବୋଲି କେହି ନାହିଁ । ନରସୀ ଘରକୁ ଯାଇ ସେଠୁ ବିଶ୍ୱକୁ ନେଇ ଆସିଲା । ମହାଦେବସ୍ୟାଙ୍କ ଛଡ଼ା ସେ ଗାଁରେ ବିଶ୍ୱପାଇଁ କେବଳ ଅପନ୍ନା ହିଁ ନିଜର ଲୋକ ଥିଲା । ରେବଣ ସେଠୀର ସ୍ତ୍ରୀ ଏବଂ ଆଉ କେତେ ଜଣ ସ୍ତ୍ରୀ ଲୋକ ଆସି ବିଶ୍ୱର ହାତ ମୁଣ୍ଡ ଆଉଁସି ଦେଇ କାନ୍ଦି କାନ୍ଦି ଚାଲିଗଲେ । କିନ୍ତୁ କେହି ହେଲେ ମା'କୁ ଧରି ଆସୁନଥାନ୍ତି । ଭାବିଲା ମା'କୁ ତାର ମଶାଣୀରେ ଜଳାଇ ଦେଇଛନ୍ତି । ଜଳିସାରି ପାଉଁଶ ହୋଇଯିବା ପରେ କିପରି ଆସିବ ? ଜଳାଇଲେ କାହିଁକି ? ସେମିତି ରଖି ଦେଇଥିଲେ କ'ଣ ଆଉ ପ୍ରାଣଟା ଫେରି ନଥାନ୍ତା ?

ଭାଉଜର ଶୁଦ୍ଧିକ୍ରିୟା କରିବାକୁ ପଡ଼ିବ । ଅପନ୍ନା ବଡ ଭାଇକୁ କହିଲା - "ମୋ ପାଖରେ ଷାଠିଏ ଟଙ୍କା ଅଛି । ତୁମ ପାଖରେ ଯାହା ଅଛି ବାହାର କର । ନିୟମ ଅନୁସାରେ କରାଇବା । ଭାଉଜ ବଡ ପୁଣ୍ୟାତ୍ମା ଥିଲେ । ତାଙ୍କ ପାଇଁ ସବୁ କ୍ରିୟାକର୍ମ ନିୟମ ଅନୁସାରେ କରାଇବା କଥା ।"

"ସେ ପୋଡା ମୁହିଁ କ'ଣ ମତେ ଘରର ମୁରବୀ ବୋଲି ଭାବୁଥିଲା ଯେ ପଇସା ମୋ ପାଖରେ ରହିବ । ମନଇଚ୍ଛା ଖର୍ଚ୍ଚ କରି ଘରଟା ତିଆରି କରି ଦେଲା ।"

Digitized by srujanika@gmail.com

ମହାଦେବୟା କହିଲେ –"ଔଷଧ ଖର୍ଚ୍ଚ ପରେ ଆଉ ବତିଶିଟଙ୍କା ମୋ ପାଖରେ ବଳିଛି । ସେତକ ତୁମେ ନେଇ ଯାଅ । କିନ୍ତୁ ଏ ଗାଁର ପୁରୋହିତଙ୍କୁ ଦାନ ଦେଲେ ନନ୍ଦିକାର ଆତ୍ମାକୁ ଶାନ୍ତି ମିଳିବ ନାହିଁ । ନନ୍ଦିକାର ନିଜ ପୁଣ୍ୟ ବଳରେ ତା' ଆତ୍ମା ସ୍ୱର୍ଗକୁ ଯିବ ।"

ସେଦିନ କମ୍ପନକେରେର ହେଡମାଷ୍ଟ୍ରେ ମଧ୍ୟ ଗାଁକୁ ଆସିଲେ । ମହିଳା ପାଠଶାଳା ପାଇଁ ନନ୍ଦିକାର ଦରମା ବାବଦକୁ ଶହେ କୋଡିଏ ଟଙ୍କା ଚେନ୍ନିଗରାୟକୁ ଦେଇ ଚାଲିଗଲେ । ଅପନ୍ନା ବଡଭାଇଙ୍କୁ ସେ ଟଙ୍କା ମାଗିଲା ଶୁଦ୍ଧି କ୍ରିୟା ଖର୍ଚ୍ଚ ପାଇଁ । ମହାଦେବୟା କହିଲେ, "ସବୁ ଟଙ୍କା ଖର୍ଚ୍ଚ କରିଦିଅନାହିଁ । ବିଶ୍ୱର ପାଠପଢା ପାଇଁ ଖର୍ଚ୍ଚ କରିବାକୁ ରଖିଥାଅ ।" କିନ୍ତୁ ଚେନ୍ନିଗରାୟ କାହାକଥା ନଶୁଣି ଟଙ୍କାତକ ଗୋଟିଏ କନାରେ ବାନ୍ଧି, ଅଣ୍ଟାରେ ଖୋସି ବୁଲିଲା ।

କମ ଖର୍ଚ୍ଚରେ ଶ୍ରାଦ୍ଧକ୍ରିୟା କରିବା ସ୍ଥିର ହେଲା । ଅପନ୍ନା ଭୋଜି ପାଇଁ ନଡିଆ ମାଗିବାକୁ କୁରୁବରହଲ୍ଲୀ ଗାଁକୁ ଗଲା । ସେଦିନ ସକାଳୁ ଗୁଣ୍ଡେଗୌଡଙ୍କର ମଧ୍ୟ ମୃତ୍ୟୁ ହୋଇଯାଇଥାଏ । ଅପନ୍ନା ପହଞ୍ଚିଲା ବେଳକୁ ତାଙ୍କ ଶବକୁ ନେଇ ଲୋକେ ମଶାଣୀ ଯାଉଥାନ୍ତି । ଗୁଣ୍ଡେଗୌଡଙ୍କ ସାଙ୍ଗରେ ଅପନ୍ନା ବେଶି ଭଲ ରୂପେ ପରିଚିତ ନହେଲେ ମଧ୍ୟ ପିଲାଦିନୁ ତାଙ୍କୁ ଜାଣିଥିଲା । ତାଙ୍କ ପ୍ରତି ତା'ର ଭୟ ଭାବ ସବୁବେଳେ ଥାଏ । ଅପନ୍ନା ଜାଣିଥିଲା ଯେ ଗୁଣ୍ଡେଗୌଡ ଜଣେ ବହୁତ ଭଲ ଲୋକ ଥିଲେ । ଭାଇଙ୍କୁ ସେ କେତେ ସାହାଯ୍ୟ ନ କରିଛନ୍ତି ? ଭଗବାନ ଏ ଭଳି ଲୋକଙ୍କୁ ଶୀଘ୍ର ଡାକି ନେଉଛନ୍ତି । କିନ୍ତୁ ଆମପରି ପାପୀ ଲୋକଙ୍କୁ ଏଠି ରହିବାକୁ ପଡୁଛି । ଅପନ୍ନା ଫେରି ଆସିଲା ।

ବିଶ୍ୱର ବ୍ରତଘର ହୋଇ ନଥିବାରୁ ଅପନ୍ନାକୁ ଶୁଦ୍ଧିକ୍ରିୟାର ସବୁ କାମ କରିବାକୁ ପଡିଲା । ବିଶ୍ୱକୁ କେବଳ ଗାଧୋଇ ଦେଇ ମୁଣ୍ଡ ଲଣ୍ଡା କରି ଦେଇଥାନ୍ତି ।

## 8

ଦଶଦିନ ପରେ । ଦଶବାର ଖଣ୍ଡ ଗାଁ ବୁଲି ଖୋଜି ସାରିବା ପରେ କଲ୍ଲେଶ ବାପା କଣ୍ଠୀଜୋଇସଙ୍କୁ ପାଇ ଖବର ଦେଲା । ଏବେ ସେ ଆସି ଶୁଦ୍ଧିକ୍ରିୟା କରାଇଲେ । ବର୍ତ୍ତମାନ ବିଶ୍ୱକୁ ନେବାକୁ ଆସିଛି ।

ମା'ର ଶ୍ରାଦ୍ଧକ୍ରିୟା ସରିବା ପରେ ବିଶ୍ୱ ଆଉ କାନ୍ଦୁ ନଥାଏ । ସବୁବେଳେ ମହାଦେବୟାଙ୍କ ପାଖରେ ଚୁପଚାପ ବସିଥାଏ । ଗାଁରେ ରହିବାକୁ ତାର ମନ ଲାଗୁ ନଥାଏ । ମହାଦେବୟା ତାକୁ ବାଧ୍ୟ କରି କ'ଣ

Digitized by srujanika@gmail.com

ଟିକିଏ ଖୁଆନ୍ତି । କେତେବେଳେ କେମିତି ସେ ଯାଇ ନରସୀ ପାଖରେ ବସେ । ନରସୀଙ୍କୁ ପଚାରେ – "ମାଉସୀ ଗାଁ ଭିତରେ ଯାଇ ଖୋଜିଲେ କ'ଣ ମୋ ମା' ମିଳିବ ନାହିଁ ? ସମସ୍ତେ କହୁଛନ୍ତି ଯେ ମୋ ମା' ମରିଯାଇଛି । ଏହା କ'ଣ ମିଛ ନୁହେଁ ?" ନରସୀ କିଛି ନକହି ବିଶ୍ୱର ହାତରେ ବିସ୍କୁଟ୍ ଧରାଏ । ବିଶ୍ୱ ବିସ୍କୁଟ୍ ନଧରି ପୁଣି ପଚାରେ – "ନାଁ, ନାଁ ଆଗ ତୁମେ କହ, ମୋ ମା' ଆମ ପୁରୁଣା ଘରେ ଥିବ କି ନାହିଁ ?" ଦିନେ ସମସ୍ତଙ୍କୁ ଲୁଚି ଗାଁ ଭିତରକୁ ଚାଲିଗଲା । କିନ୍ତୁ ଘରେ ତାଲା ପଡିଥିବା ଦେଖି ଫେରି ଆସିଲା ।

ମାମୁଁ ନେବାକୁ ଆସିବାରୁ ବିଶ୍ୱ ଭାରି ସାହସର ସହିତ କହିଲା "ନାଁ, ମୁଁ ଯିବି ନାହିଁ । ତୁମେ ମତେ ମାରୁଛ । ମୁଁ ଆମ ଗାଁ ସ୍କୁଲରେ ପଢିବି ।" କିନ୍ତୁ ଗାଁରେ ତା କଥା ବୁଝିବ ବା' କିଏ ? ଗଙ୍ଗାମା କହୁଥିଲା ଯେ ସେ ନାତି କଥା ବୁଝିବ । କିନ୍ତୁ ତା' ଉପରେ କ'ଣ ଭରସା କରାଯାଇ ପାରେ । ମହାଦେବସ୍ୱା ଏସବୁ ଚିନ୍ତା କରି କହିଲେ – "ନାଇଁରେ ବାପ ତୁ ମାମୁଁ ସାଙ୍ଗରେ ଯା ।" "ନାଁ ନାଁ, ମୁଁ ଯିବି ନାହିଁ । ସେ ବହୁତ ମାରୁଛନ୍ତି ।"

କଳେଶ ବହୁତ ବୁଝାଇ କହିଲା ଯେ ସେ ଆଉ ମାରିବ ନାହିଁ । ସମସ୍ତେ ବାଧ୍ୟ କରିବାରୁ ନିରୁପାୟ ହୋଇ ବିଶ୍ୱକୁ ମାମୁଁ ଘରକୁ ଯିବାକୁ ପଡିଲା । ମହାଦେବସ୍ୱା ଏବଂ ଅପନ୍ନା ଅନେକ ଦୂର ପର୍ଯ୍ୟନ୍ତ କଳେଶ ଏବଂ ବିଶ୍ୱ ସାଙ୍ଗରେ ଚାଲି ଚାଲି ଗଲେ । ସେମାନେ ଫେରି ଆସିବାର ଦେଖି ବିଶ୍ୱ ପଛକୁ ମହାଦେବସ୍ୱାଙ୍କୁ ପାଟିକରି ଡାକିଲା ଏବଂ କହିଲା, "ସମସ୍ତେ କହୁଛନ୍ତି ଯେ ମୋ ମା' ମରିଯାଇଛି । କିନ୍ତୁ ମୋର ବିଶ୍ୱାସ ହେଉନାହିଁ । କୁଡିଆ ଛାଡି ଗାଁ ଘରକୁ ଫେରିଗଲେ, ମୋ ମା' ନିଶ୍ଚୟ ଫେରି ଆସିବ ।"

"ଆଚ୍ଛା ହେଉ ।" କହି ମହାଦେବସ୍ୱା ସେଠି ଅଟକିଗଲେ । କଳେଶ ବିଶ୍ୱର ହାତ ଟାଣି ଟାଣି ନେଇଗଲା । ବିଶ୍ୱ ପଛକୁ ମୁହଁ କରି ଟାଣି ହୋଇ ଯାଉଥାଏ । ମାମୁଁ ଭଣଜା ଦୁହେଁ ବଡ ମୁଣ୍ଡିଆ ପଛପଟେ ଲୁଚିଗଲା ପର୍ଯ୍ୟନ୍ତ ମହାଦେବସ୍ୱା ଏବଂ ଅପନ୍ନା ଠିଆ ହୋଇ ଦେଖୁଥାନ୍ତି । ମହାଦେବସ୍ୱା କହିଲେ 'ବିଶ୍ୱ କେତେ ଚଞ୍ଚଳିଆ ପିଲା କିନ୍ତୁ ମାମୁଁ ଘର ଯିବା ନାଁ ଶୁଣି ତା' ମୁହଁ ଶୁଖିଗଲା । ସତରେ କ'ଣ ତା' ମାମୁଁ ତାକୁ ମାରେ । ଏ ପର୍ଯ୍ୟନ୍ତ ସିନା ଆଈ ବୁଢୀ ଥିଲା । ଏବେ କିନ୍ତୁ ମାଇଁ କ'ଣ ସେ ଭଳି ଯତ୍ନ କରି ପାରିବ ? ମା' ଛେଉଣ୍ଡ ପିଲାକୁ ବୋଧହୁଏ କଳେଶ ଆଉ ମାରପିଟ କରିବ ନାହିଁ । ଭଗବାନ କେବଳ ସହାୟ ।" ଏପରି ଭାବି ମହାଦେବସ୍ୱା ଗାଁ ଆଡକୁ ଫେରିଲେ । ଅପନ୍ନା ଗାଁକୁ ଫେରିଲା । ଭାବିଲା କେଉଁଠି ରହିବ ? ଅଲଗା ରହିବା ପାଇଁ ଆଉ ଗୋଟିଏ କୁଡିଆ କରିବାକୁ ତାର ଇଚ୍ଛା ହେଲା ନାହିଁ । ଭାବିଲା ଗୋଟାଏ ଦିନ ଚେନ୍ନିଗାର କୁଡିଆରେ ରହି ପୁଣି ଭିକ୍ଷା ପାଇଁ କେଉଁଆଡେ ଚାଲିଗଲେ ଭଲ । ଗଙ୍ଗାମା ମଧ୍ୟ ସେଇ କୁଡିଆରେ ଥାଏ । ରାତିରେ ଖାଇ ସାରି ଗଙ୍ଗାମା କହିଲା, "ନଞ୍ଜମା ବଞ୍ଚିଥିଲା ବେଳେ ସିନା ମିଛସତ କହି ତୋ ମୋ ଭିତରେ କଳି କରାଉଥିଲା । କିନ୍ତୁ ଏବେ ଆଉ ତୁ କାହିଁକି ଏକୁଟିଆ ରହିବୁ । ତୁ ମଧ୍ୟ ଏଠି ରହ ।" ଅପନ୍ନା ରାଗ ହୋଇ କହିଲା, "ଭାଉଜ

Digitized by srujanika@gmail.com

ମତେ କେବେହେଲେ ଏପରି ଶିଖାଇ ନଥିଲେ । ତୁ ହେଉଛୁ ସବୁ କଳିର ମୂଳ ।'' ଗଙ୍ଗାମା କ'ଣ ଛାଡିବା ଲୋକ । ସେ କହିଲା, ''ଆରେ ଚଣ୍ଡାଳ ଜନ୍ମ ଦେଇ ମା'କୁ ଏଭଳି କହୁଛୁ ?''

''ହଁ କହିବିନି, ଆଉ କ'ଣ କରିବି ? ତୋ ସାଙ୍ଗରେ ମୁଁ ଆଉ କେବେ ରହିବିନି । ତୁ ମଲେ ମଧ୍ୟ ତୋର ଶ୍ରାଦ୍ଧ କରିବି ନାହିଁ ।'' ଏହା କହି ନିଜର ଲୁଗାପଟା ଗଣ୍ଠିଳିଟା ଧରି କୁଡିଆରୁ ବାହାରି ପଡିଲା । ବାହାରେ ଜହ୍ନ ପଡିଥାଏ । ଏପର୍ଯ୍ୟନ୍ତ ଠିକ୍ କରିନଥିଲା ସେ କେଉଁଆଡେ ଯିବ । ଭାବିଲା ଏ ମାଣ୍ଡିଆ ରାଜ୍ୟ ଛାଡି ଦୂରକୁ ଚାଲିଯିବା ଭଲ । ଏଇ ରାତିଟା ମନ୍ଦିର ବାରଣ୍ଡାରେ ଶୋଇ ସକାଳୁ ଯିବ ।

ସାନଭାଇ ଗାଁ ଛାଡି ବାହାରକୁ ଯିବା ପାଇଁ ନିଷ୍ପତ୍ତି କଲା ବେଳକୁ ତେଣେ ବଡ ଭାଇ ପୁରୋହିତ ଅନ୍ନାକୋଇଙ୍କ କୁଡିଆରେ ବସି ନିଜର ଭବିଷ୍ୟତ ବିଷୟରେ ତାଙ୍କଠାରୁ ଉପଦେଶ ଶୁଣୁଥିଲା । ଯେଉଁଦିନ ନଞ୍ଜମାର ଶୁଦ୍ଧିକ୍ରିୟା ଶେଷ ହେଲା ସେଇ ଦିନ ପୁରୋହିତେ ଦ୍ୱିତୀୟ ବିବାହ କଥା ଉଠାଇ ଥିଲେ । ତିପଟୁର ଠାରୁ ତିନିମାଇଲ ଦୂରରେ ବେବିନ୍ନହଲ୍ଲୀ ଗାଁରେ ଗୋଟିଏ କନ୍ୟା ପ୍ରସ୍ତାବ ଅଛି । କନ୍ୟାର ବାପା ମରି ଯାଇଛି । ପରିବାର ବଡ କଷ୍ଟରେ ଚଳୁଛି । ପୁରୋହିତେ କହିଲେ –''ଆରେ ତୋର କ'ଣ ଗୁଡାଏ ବେଶୀ ବୟସ ହୋଇଯାଇଛି କି ? ତୁ ପରା ଏବେ ପିଲା ଲୋକ । ଆଉ ଥରେ ବିବାହ ହୋଇ ପଡ ଏବଂ ନୂଆ ଘରସଂସାର କର । ତା' ଛଡା ତୁମର ତ ବଂଶପରମ୍ପରାଗତ ସର୍ବରାକାରୀ ଅଛି । ଆଉ କ'ଣ ଅଧିକ ଦରକାର । କନ୍ୟାଟି ମଧ୍ୟ ସୁନ୍ଦର । ଏପରି ଏକୁଟିଆ କେତେ ଦିନ ରହିବୁ ?''

ପୁରୋହିତଙ୍କ କଥା ଶୁଣି ଚେନ୍ନିଗା ମନରେ ଲାଳସା ଜାଗ୍ରତ ହେଲା । ସିଏ କହିଲା, ''ଆପଣ କନ୍ୟା ଠିକ୍ କରି ଦେଲେ ମୁଁ କ'ଣ ବିବାହ କରିବାକୁ ମନା କରୁଛି ?'' ''ଆରେ ଏ ବିଷୟରେ ଯାଇ କନ୍ୟାର ମା' ସାଙ୍ଗରେ କଥାବାର୍ତ୍ତା କରିବାକୁ ପଡିବ । ତା' ଛଡା ଖାଲି ହାତରେ କ'ଣ ଯାଇ ହେବ । ଅତିକମ୍‌ରେ କନ୍ୟା ପାଇଁ ଗୋଟିଏ ନୂଆ ଶାଢୀ ତ ନେବା । ତା' ଛଡା ସର୍ବରାକାରୀ ମର୍ଯ୍ୟାଦା ଦେଖାଇବାକୁ ହେଲେ ମୁଁ ମଧ୍ୟ ଗୋଟିଏ ନୂଆ ସାଲ କାନ୍ଧରେ ପକାଇ ଯିବାକୁ ପଡିବ । ଅତିକମ୍‌ରେ ପଞ୍ଚସ୍ତରୀ ଟଙ୍କା ଖଣ୍ଡେ ଖର୍ଚ୍ଚ ହୋଇଯିବ,'' ପୁରୋହିତ କହିଲେ, ''ସ୍ତ୍ରୀଟିଏ ପାଇବାକୁ ହେଲେ ଟଙ୍କା ହାତରୁ ଛାଡିବାକୁ ପଡିବ ।'' ନଞ୍ଜମାର ମହିଳା ସ୍କୁଲ ଚଳାଇବା ବାବଦକୁ ଶହେ କୋଡିଏ ଟଙ୍କା ମିଳିଥିଲା, ସେତକ ଚେନ୍ନିଗା ଅଣ୍ଟାରେ ଖୋସିଥିଲା । ସେ ଖବର ନ ରଖିଥିଲେ ପୁରୋହିତ ଆଉ କ'ଣ ଏଭଳି ପ୍ରସ୍ତାବ ଦେଇଥାନ୍ତେ ? ଚେନ୍ନିଗା ସାଙ୍ଗେ ସାଙ୍ଗେ ଅଣ୍ଟାରୁ ପଇସା କାଢି ପଞ୍ଚସ୍ତରୀ ଟଙ୍କା ଗଣିଦେଲା । ତା' ପାଖରେ ଆଉ କେତେ ଟଙ୍କା ବଳି ପଡିଲା ତାର ହିସାବ ମଧ୍ୟ ପୁରୋହିତଙ୍କ ପାଖରେ ଥିଲା ।

ତା'ପର ଦିନ ପୁରୋହିତେ ବସରେ ବସି ତିପଟୁର ଗଲେ । କୋଡିଏ ଟଙ୍କାରେ ଗୋଟିଏ ନୂଆ ଶାଲ କିଣି କାନ୍ଧରେ ପକାଇ ଫେରିବାର ଚେନ୍ନିଗରାୟ ଦେଖିଲା । ବୋଧହୁଏ ବାକି ପଚାଶ ଟଙ୍କାର

Digitized by srujanika@gmail.com

ଶାଢ଼ୀଟିଏ କିଣି କନ୍ୟାକୁ ଦେଇ ଆସିଛନ୍ତି ବୋଲି ଚେନ୍ନିଗରାୟ୍ ଭାବିଲା । ଦୁଇ ଦିନ ପରେ ଶୁଭ ମୁହୂର୍ତ୍ତ ଦେଖି ପୁରୋହିତେ ଏବଂ ଯଜମାନେ ବସ୍‌ରେ ବସି ତିପଟୁର ଗଲେ । ରାତିରେ ହୋଟେଲରେ ଖାଇ ଧର୍ମଶାଳାରେ ଶୋଇଗଲେ । ପୁରୋହିତଙ୍କ କହିବା ମୁତାବକ ଚେନ୍ନିଗରାୟ୍ ନିଜର ଧୋତି, କୋଟ୍ ଟୋପି ଇତ୍ୟାଦି ସଫାକରି ଆଣିଥିଲା । ସକାଳୁ ଉଠି ସେ ସବୁ ଇସ୍ତ୍ରୀ କରାଗଲା । ତାପରେ ପୁରୋହିତେ ଗୋଟିଏ ଭଣ୍ଡାରୀ ଡକାଇ ଚେନ୍ନିଗରାୟ୍‌ର ଅଧା ପାଚିଲା ଦାଢ଼ି ଏବଂ ମୁଣ୍ଡର ଦରପାଚିଲା ବାଳ ସବୁ ସଫା କରାଇଲେ । ଭଣ୍ଡାରୀକୁ ପୁରୋହିତେ ଆଦେଶ ଦେଲେ ଯେ କ୍ଷୁରଟା ଓଲଟା ମାର ଯେପରି ଧଳା ଦାଢ଼ିର ଚିହ୍ନ ମଧ୍ୟ ନରହେ । ତା'ପରେ ଗାଧୋଇ, ଇସ୍ତ୍ରୀ ଲୁଗା ପିନ୍ଧି, ଯିବା ପାଇଁ ବାହାରିଲା । ପୁରୋହିତ କହିଲେ ଏବେ ଚାଲ, ହୋଟେଲରେ ବଡ ଦର୍ପଣରେ ନିଜ ଚେହେରା ଦେଖିବୁ । ସତକୁ ସତ ଦର୍ପଣରେ ନିଜ ରୂପ ଦେଖି ଚେନ୍ନିଗରାୟ୍ ମଧ୍ୟ ଆଶ୍ଚର୍ଯ୍ୟ ହେଲା । ନିଜର ଏତେ ସୁନ୍ଦର ଚେହେରା ସେ କେବେ ଆଗରୁ ଦେଖି ନଥିଲା । ମନେ ମନେ ଭାବିଲା ସେ କଳିମୁହିଁ ସ୍ତ୍ରୀଟା ଦିନେ ହେଲେ ତାକୁ ଇସ୍ତ୍ରୀକରା ଧୋତି ଏବଂ କୋଟ୍ ପିନ୍ଧିବାକୁ ଦେଇ ନଥିଲା । ହୋଟେଲରେ ପେଟ ପୁରା ଭୋଜନ ଖାଇସାରି ଘୋଡା ଗାଡ଼ିଟିଏ କରି ସେମାନେ କନ୍ୟା ଦେଖି ଯିବାପାଇଁ ବାହାରି ପଡ଼ିଲେ ।

ବେବିନ୍ନହଲ୍ଲୀ ଗାଁ ଟା'ରେ ପନ୍ଦର ଟା' ପରିବାର । ଗୋଟିଏ ମାତ୍ର ବ୍ରାହ୍ମଣ ଘର ଯେଉଁ ଘରେ ସେମାନେ କନ୍ୟା ଦେଖିବାକୁ ଯାଉଛନ୍ତି । ତାଙ୍କର ଜମିବାଡି କମ୍ ଥିଲା । କିନ୍ତୁ କନ୍ୟାର ମା' ସେତକ ବୁଝିବାକୁ ମଧ୍ୟ ଅସମର୍ଥ । ଜମିତକ ଭାଗ ଚାଷରେ ଲଗାଇ ଯାହା ମିଳୁଥିଲା ସେଥିରେ ବର୍ଷକର ଖର୍ଚ୍ଚ ନ ଚଳିବାରୁ ଭିକ୍ଷା କରି ଚଳୁଥିଲେ । ତାଙ୍କ ଘର ଆଗରେ ଆସି ଘୋଡାଗାଡ଼ି ପହଞ୍ଚିବାରୁ ସେମାନେ ବହୁତ ଖୁସି ହୋଇଗଲେ । କନ୍ୟାକୁ ଚଉଦ ବର୍ଷ । ମା' କହିବା ଅନୁସାରେ କନ୍ୟା ଏବେ ମଧ୍ୟ ଋତୁମତୀ ହୋଇ ନଥାଏ । ଝିଅକୁ ନ ଦେଖି ମଧ୍ୟ ଚେନ୍ନିଗରାୟ୍ ବିବାହ ପାଇଁ ରାଜି ହୋଇଥାନ୍ତା । ତେଣୁ କନ୍ୟାକୁ ଦେଖିଲା ପରେ ନାହିଁ କରିବା ପ୍ରଶ୍ନ ଉଠୁ ନାହିଁ ।

ପୁରୋହିତେ କହିଲେ, "ସବୁବେଳେ ସର୍କାରୀ କାମ କରି କରି ଚେନ୍ନିଗରାୟ୍ ଏପରି-ସୁନ୍ଦର ଚେହେରା ରଖି ପାରିଛନ୍ତି । ଯାଙ୍କୁ ବତିଶିବର୍ଷରୁ ଅଧିକ ହେବ ନାହିଁ । ନିଜର ଘରଦ୍ୱାର ସବୁ ଅଛି । ଆଜିକାଲି ଯୁଗରେ ସର୍କାରୀ ଆୟରେ ଚାରିପାଞ୍ଚ ପରିବାର ଖୁସିରେ ଚଳିବେ । ଆପଣଙ୍କ ଝିଅ ରାଣୀ ଭଳି ରହିବ । କିଛି ଚିନ୍ତା କରନ୍ତୁ ନାହିଁ ।"

କିଛି ସମୟ ପରେ ପୁରୋହିତ ପୁଣି କହିଲେ –"ଆଜ୍ଞା ବିବାହ ତ ସ୍ଥିର ହେଲା, ଆଉ ଡେରି କାହିଁକି କରିବ ?" ଏହା କହି ପକେଟରୁ କାଗଜ କାଢ଼ି ବିବାହ ଲଗ୍ନ ତିଥି ଆଦି ସ୍ଥିର କରି ଲେଖିଦେଲେ ଏବଂ କହିଲେ, "ବିବାହ ଯୋଗଟା ଖୁବ୍ ଭଲ ଅଛି । ବୈଶାଖ ମାସରେ ଶୁଭ ଦିନ ଅଛି । ଯଦି ଚାହେଁ, ତେବେ ବିବାହ ସେଇ ତିଥିରେ କରିଦେବା ।" କନ୍ୟା ମା'ଙ୍କର ଏତେ ଖୁସି ଯେ କହିଲେ ନ ସରେ । ସତେ ଯେପରି ତାଙ୍କ କାନ୍ଧରୁ କିଏ ଭାରି ବୋଝଟା ଉଠାଇ ନେଲା । ବଡ ଖୁସିରେ ଅତିଥିଙ୍କ ପାଇଁ ଦୁଇ ଚାରି ପ୍ରକାର ତରକାରୀ ରାନ୍ଧି ଖାଇବାକୁ ଦେଲା । ଖାଇ ସାରି ଦୁହେଁ ଘୋଡା

Digitized by srujanika@gmail.com

ଗାଡିରେ ବସି ଡିପବୁର ଫେରିଲା ବେଳକୁ ଗାଁ ପଟକୁ ଯିବାକୁ ବସ ଥୁଆ ହୋଇଥାଏ । କିନ୍ତୁ ଗାଁକୁ ଏତେ ଶୀଘ୍ର ଫେରିଯିବା ପାଇଁ କାହାରି ହେଲେ ଟିକିଏ ଇଚ୍ଛା ନଥାଏ । ରାତିରେ ସେଠି ରହି ହୋଟେଲରେ ପେଟ ପୂରା ଭୋଜନ କଲେ । ପୁରୋହିତ ହଳେ ଧୋତି ଏବଂ ଗୋଟିଏ ଶାଢୀ କିଣିଲେ । ସେ ଘରୁ ଟଙ୍କା ଆଣିନଥିବାରୁ ଚେନ୍ନିଗରାୟ ଦୋକାନୀକୁ ପଚିଶି ଟଙ୍କା ଗଣି ଦେଲା ।

ଚେନ୍ନିଗରାୟର ବିବାହ ଖବର ଗାଁଟା ସାରା ଜାଣିଗଲେ । ଯିଏ ଶୁଣିଲା ସିଏ ନଞ୍ଜମ୍ମା କଥା ମନେ ପକାଇ କହିଲା —"ଏତେ ଭଲ ସ୍ତ୍ରୀ ସାଙ୍ଗରେ ତ ଚଳିପାରିଲା ନାହିଁ, ବୁଢାକାଳେ ପୁଣି ସଉକ କରୁଛି । ଗଙ୍ଗାମ୍ମା କିନ୍ତୁ ଏଥିରେ ବିଶେଷ ଆଗ୍ରହ ଦେଖାଉ ନଥାଏ । ଖାଲି କହୁଥାଏ "ଯିଏ ପୋଡାମୁହିଁ ଆସିଲେ ମଧ୍ୟ ମୋର କ'ଣ କିଏ ସେବା କରିବ ?"

ଚୈତ୍ର ଯାଇ ବୈଶାଖ ହେଲା । ଏଇ ମାସରେ ବିଭାଘର । ନଞ୍ଜମ୍ମା ଆଣିଥିବା ସୁନାଚୁଡି ଓ ନୋଥ ଥିଲା । କେବଳ ଆଉ ଶହେଟା ଟଙ୍କା ହୋଇଗଲେ ଖର୍ଚ୍ଚ ଉଠିଯିବ । ଚେନ୍ନିଗା ଘରେ ଥିବା ଗାଈଟାକୁ ଶହେ ଟଙ୍କାକୁ ବିକି ଦେଲା । କିନ୍ତୁ ଏ ପର୍ଯ୍ୟନ୍ତ କନ୍ୟା ପକ୍ଷର କେହି ହେଲେ କଥାବାର୍ତ୍ତା କରିବାକୁ ଆସି ନଥାନ୍ତି । କନ୍ୟାର ମା' ସେତେବେଳେ କହିଥିଲେ ଯେ ଦିନ ଦଶଟା ଭିତରେ ସବୁ ନିଷ୍ପତ୍ତି କରି କାହା ହାତରେ ହେଲେ କହି ପଠାଇବେ । ବିବାହ ତିଥିର ଛଅଦିନ ପୂର୍ବରୁ ଚେନ୍ନିଗରାୟ ବ୍ୟସ୍ତ ହୋଇ ଯାଇ ପୁରୋହିତଙ୍କୁ ପଚାରିବାରୁ ସେ କହିଲେ —"କ'ଣ ହେଲା କେଜାଣି, କିଛି ଖବର ତ ଆସିଲା ନାହିଁ । ମୋ ହାତରେ ସମୟ ନାହିଁ ତୁ ନିଜେ ବୁଝିଆସ । ତେଣୁ, ଦିନେ ଚେନ୍ନିଗା ତିପବୁର ଯାଇ ଆଗଭଳି ମୁଣ୍ଡବାଳ କଟାଇ, ଇସ୍ତ୍ରୀ କରା ପୋଷାକ ପିନ୍ଧି ବେବିନ୍ନହଳ୍ଳୀ ଗାଁରେ ପହଞ୍ଚିଗଲା । କନ୍ୟା ଘରେ ପହଞ୍ଚି କିଛି କହିବା ପୂର୍ବରୁ କନ୍ୟାର ମା' ଖୁବ୍ ଜୋରରେ ରାଗି କହିଲେ —"ମୋ ଝିଅକୁ ଦେଇ ପାରିବି ନାହିଁ ।" ସର୍ବରାକାର ମହାଶୟ କିଛି ନ ବୁଝିଲା ପରି ନିରାହ ଆଖିରେ ଚାହିଁ ରହିଥାନ୍ତି । କନ୍ୟାର ମା' ପୁଣି କହିଲେ, "ସେ ପୁରୋହିତଟାକୁ ଦୂରସମ୍ପର୍କୀୟ ବୋଲି ବିଶ୍ୱାସ କରି ବରପାତ୍ର ବୁଝିବା ପାଇଁ କୋଡିଏ ଟଙ୍କା ଦେଇଥିଲି ଯେ ଶେଷକୁ ସେ ମଧ୍ୟ ତୁମ ଭଳିଆ ବୁଢାକୁ ଆଣି ମୋ ପାଖରେ ପହଞ୍ଚାଇଲା । ମୋର କିନ୍ତୁ ଭାଗ୍ୟ ଭଲ ଯେ ବିବାହ ପୂର୍ବରୁ ଜଣେ ସାଧୁ ପୁରୁଷ ଆସି ସବୁ ତୁମ ବିଷୟରେ କହିଗଲେ । ଚେନ୍ନିଗରାୟ ଥରଥର ଗଳାରେ କହିଲା, 'ମୋର କ'ଣ ଭୁଲ ହେଲା କି ଆମ୍ମା ?'

"ତୁମର ଭୁଲ ? ପ୍ରଥମ ସ୍ତ୍ରୀକୁ ତୁମେ କେତେ କଷ୍ଟ ଦେଇଛ କ'ଣ ତୁମେ ଜାଣିନ ? ବିଚାରୀ ଖାଲି ସିଏଁ ସିଏଁ ପରିବାରର ଖର୍ଚ୍ଚ ଚଳାଉଥିଲା । ତୁମର ସର୍ବରାକାରୀ ହିସାବ ଲେଖିବା କାମ ମଧ୍ୟ ସବୁ ସେ କରୁଥିଲା । ମୋ ଝିଅକୁ ଏତେ କାମ ଆସିବ ନାହିଁ । ଆଚ୍ଛା, ଆପଣଙ୍କର ଜମିବାଡିତକ ସବୁ କୁଆଡେ ଗଲା ? ସେ ନୂଆ ଘରଟା ମଧ୍ୟ ତ ତୁମର ପ୍ରଥମ ସ୍ତ୍ରୀ କରାଇଥିଲା । ସେ ଘରଟା ତ ତା ନାଁରେ ଅଛି, ତେଣୁ ତା ପିଲାକୁ ମିଳିବ । ତାପରେ ତୁମେ କହିଥିଲ ଯେ ମୋର ଗୋଟିଏ ବୋଲି ପୁଅ । କିନ୍ତୁ ଆଗରୁ ଯେଉଁ ବଡ ପୁଅ ଏବଂ ବିବାହିତା ଝିଅ ମରି ଯାଇଛନ୍ତି ତାହା କ'ଣ ମିଛ ?"

Digitized by srujanika@gmail.com

"ଆପଣଙ୍କୁ କିଏ ଏ ସବୁ କଥା କହିଲା ?"

"ତୁମ ଗାଁର ଜଣେ ବୁଢା ଯୋଗୀ ଆସି ଏ ସବୁ କହିଗଲେ । ଏବେ ତୁମେ କୁହ, ଏ ସବୁ ସତ ନା ମିଛ ? ଆଚ୍ଛା ତୁମକୁ କ'ଣ ମାତ୍ର ବତିଶି ବର୍ଷ ହୋଇଛି ?"

ଚେଲ୍ଲିଗରାୟ୍ ମୁହଁରୁ ମହାଦେବୟ୍ୟାଙ୍କ ପ୍ରତି ଅନେକ ଗୁଡ଼ିଏ ଗାଳି ବାହାରି ଆସୁ ଆସୁ ଅଟକିଗଲା । କନ୍ୟାର ମା' କହିଲେ, "ହେଇ ଦେଖ, ତୁମର ମୁହଁରୁ କେତେ ଅଭଦ୍ର କଥା ବାହାରୁଛି । ତୁମର ପ୍ରଥମ ସ୍ତ୍ରୀକୁ ସବୁବେଳେ ତୁମେ ଅଭଦ୍ର ଭାଷାରେ ଗାଳି ଦେଉଥିଲ ବୋଲି ସମସ୍ତେ କହୁଛନ୍ତି । ତୁମ ଭଳିଆ ଅଭଦ୍ର ଲୋକଙ୍କୁ ଘରେ ପୁରାଇବା କଥା ନୁହେଁ । ମୋ ଘରୁ ଶୀଘ୍ର ବାହାରି ଯାଅ ।"

ଚେଲ୍ଲିଗରାୟ୍ ଭୟରେ ଘରୁ ବାହାରି ଆସି ସିଧା ଚିତ୍ତୁର୍‌ରେ ଯାଇ ପହଞ୍ଚିଲା । ବାଟଯାକ ମହାଦେବୟ୍ୟାର ବଂଶନାଶ ହେବା ପାଇଁ ଅଭିଶାପ ଦେଇ ଚାଲିଥାଏ । ଚିତ୍ତୁର୍‌ରେ ପହଞ୍ଚି ଶୀଘ୍ର ଗାଁକୁ ଫେରିଯିବା ପାଇଁ ଇଚ୍ଛା ହେଲା ନାହିଁ । ଗାଈ ବିକି ଶହେ ଟଙ୍କା ପାଖରେ ଥାଏ । ସେଥିରେ କୋଡ଼ିଏ ଦିନ ଆରାମରେ ହୋଟେଲରେ ଖାଇ ରହିଲା । ଟଙ୍କା ସରିଗଲା ପରେ ଗାଁକୁ ଫେରିଲା । ଅସରାଏ ଲେଖାଏଁ ବର୍ଷା ପଡ଼ିସାରିଥାଏ । ଲୋକେ ସବୁ କୁଡ଼ିଆ ଛାଡି ଗାଁ ଘରକୁ ଫେରୁଥାନ୍ତି । ଚେଲ୍ଲିଗରାୟ୍ ସିଧାଯାଇ ହନୁମାନ ମନ୍ଦିରରେ ମା' ପାଖରେ ପହଞ୍ଚିଲା । ଗଙ୍ଗାମ୍ମା କହିଲା "ଆରେ ମୂର୍ଖ, ତୋର ସର୍ବରାକାରୀ କାମ ହାତରୁ ଚାଲିଗଲା ।"

"କୁଆଡେ ଚାଲିଗଲା ମା' ?"

"ନଞ୍ଜମ୍ମା ମଲା ଦିନଠାରୁ ହିସାବ କିତାବ ଲେଖା ହୋଇନଥିଲା । ଖଜଣା ମଧ୍ୟ ଆଦାୟ୍ ହୋଇନାହିଁ । ତେଣୁ ଇଲାକାଦାର ଚତେ ଖୋଜି ଆସିଥିଲେ । କିନ୍ତୁ ତୁ ତ ଗାଁରେ ନଥିଲୁ । ତେଣେ ଶିବ ଲିଙ୍ଗା ଓ ଶିବ ଗୌଡ ଦୁଇ ଶହ ଭିଣେଇ ଅମଲଦାର ସାହେବ ସାଙ୍ଗରେ କଥାବାର୍ତ୍ତା କରି ଆସିଥିଲେ । ତେଣୁ ଦିନେ ଇଲାକାଦାର ପୋଲିସ ଆଣି ତୁମ ପୁରୁଣା ଘରର ତାଲା ଭାଙ୍ଗି ହିସାବ କିତାବ ବହି ସବୁ ଶିବଲିଙ୍ଗାକୁ ଦେଇ ଦେଲେ । ସିଏ ବର୍ତ୍ତମାନ ସର୍ବରାକାର ।"

ଚେଲ୍ଲିଗରାୟ୍ ଥକ୍କାମାରି ବସି ପଡ଼ିଲା । ଗଙ୍ଗାମ୍ମା କହିଲା, "ଶୀଘ୍ର ଯା' ସାହେବଙ୍କୁ ଦେଖା କରି କହିବୁ ଯେ ମୁଁ ଫେରିଆସିଲିଣି । ତେଣୁ ସର୍ବରାକାରୀ ମତେ ଫେରାଇ ଦିଆଯାଉ ।"

"କାହାକୁ ଯାଇ କହିବି ? ସିଏ ଯଦି ପଚାରିବେ ଏତେ ଦିନ ଯାଏ କୁଆଡେ ଥିଲୁ ତେବେ କ'ଣ କହିବି ? ହଁ ସେ ହିସାବ କିତାବ କିଏ ଲେଖିବ ? ତା'ଉପରକୁ ଆଜିକାଲି ଯେଉଁ ଫସଲ ହିସାବ ଲେଖାଯାଉଛି ସେଇଟା ଶହ ବଡ କଷ୍ଟ କାମ ।" କିଛି ସମୟ ପରେ ତାକୁ ଗୋଟିଏ ଉପାୟ ଦିଶିଲା । ସିଧା ଯାଇ ଶିବଲିଙ୍ଗା ଘରେ ପହଞ୍ଚିଲା । ଶିବଲିଙ୍ଗା ସର୍ବରାକାର ହିସାବରେ ଗର୍ବ କରି ପଚାରିଲା– "ଏବେ କାହିଁକି ଆଉ ଆସିଛ ?"

Digitized by srujanika@gmail.com

"ଆଜ୍ଞା ପ୍ରଥମେ ମଧ୍ୟ ତୁମେ ସର୍ବରାକାରୀ କାମ ବୁଝୁଥିଲ ତେଣୁ ଏବେ ମଧ୍ୟ ତୁମେ ବୁଝ । କିନ୍ତୁ ଗୋଟେ କଥା ନିଷ୍ପତ୍ତି କରି ଦେବା ଠିକ୍ ହେବ । ତୁମେ ମତେ ବର୍ଷକୁ ଏଥିପାଇଁ କେତେ ଟଙ୍କା ଦବ କହି ଦିଅ ।"

"ଆରେ ମୁଁ କ'ଣ ଏ କାମ ତୋଠୁ ମାଗି ଆଣିଛି ? ଏହା ମତେ ସରକାରଙ୍କ ତରଫରୁ ଦିଆଯାଇଛି ।"

"ତା' ମାନେ ମତେ କିଛି ଦେବ ନାହିଁ ।"

"ଫଟା ପାହୁଲାଟାଏ ସୁଦ୍ଧା ଦେବି ନାହିଁ ।" ଯଦି ଭଲ ଗତି ଅଛି ଏଠୁ ଶୀଘ୍ର ଉଠି ଚାଲିଯା । ନହେଲେ ଚଉକିଦାରକୁ ଡକାଇ ଧକ୍କା ଦେଇ ବାହାର କରି ଦେବି ।"

ଚେନ୍ନିଗାକୁ ଭାରି ଅପମାନ ଲାଗିଲା । ଗାଳି ଦେବାକୁ ବହୁତ ଇଚ୍ଛା ହେଲା । କିନ୍ତୁ ଚଉକିଦାରର ଡରରେ ଚୁପ ହୋଇ ବାହାରି ଆସିଲା । ରାଗରେ ସାରା ଦେହ ଥରୁ ଥାଏ । ସିଧାଯାଇ ମହାଦେବଯ୍ୟା ରହୁଥିବା ମନ୍ଦିରରେ ପହଞ୍ଚିଲା । ମହାଦେବଯ୍ୟାଙ୍କୁ ଦେଖି ମନରେ ଆହୁରି ରାଗ ଉଠିଲା । ତାଙ୍କ ପାଖରେ ଯାଇ ବସି କହିଲା, "ଆଜ୍ଞା ମୁଁ ଏ ପର୍ଯ୍ୟନ୍ତ ଭାବିଥିଲି ଆପଣ ଜଣେ ସାଧୁପୁରୁଷ । କିନ୍ତୁ, ପଛରେ ଚୁଗୁଲି କରିବା ଅଭ୍ୟାସ ଆପଣଙ୍କର କେବେଠୁ ହେଲା ?" ମହାଦେବଯ୍ୟା କହିଲେ, "ତୁମ ବାହାଘରଟା ବନ୍ଦ ହୋଇଗଲା ବୋଲି ରାଗୁଛ ତ ? ନିଜେ ତ ହିସାବ ଲେଖି ଜାଣୁନ ବୋଲି ସରକାର ସର୍ବରାକାରୀ ଛଡାଇ ନେଲେ । ଜମିବୋଲି ବାଡି ଗୋବରରେ ଗୋବେ ନାହିଁ । ନୂଆ ଘରଟାତ ନଞ୍ଜମ୍ମା ନାଁରେ ଅଛି । ତେଣୁ ସେଇଟା ବିଶ୍ୱକୁ ମିଳିବ । ତୁମେ ନିଜର ବୟସକୁ ଦେଖ, ସେ ଝିଅଟାକୁ ବିବାହ ହୋଇ ତାକୁ ଭାତ ମୁଠେ ଦେବା ପାଇଁ ତୁମର ଶକ୍ତି ଅଛି ?"

"ଦି ଘରୁ ଭିକ୍ଷା ମାଗିଲେ କ'ଣ ପେଟ ପୋଷି ପାରନ୍ତୁ ନାହିଁ ?"

"ଆମେ ସମସ୍ତେ ଦେଖିଛୁ ନଞ୍ଜମ୍ମାକୁ ତୁମେ କିପରି ଚଳାଉ ଥିଲ । ସବୁ ସ୍ତ୍ରୀ ନଞ୍ଜମ୍ମା ଭଳି ହୋଇ ପାରିବେ ନାହିଁ । ପେଟ ବିକଳରେ ତୁମର ସ୍ତ୍ରୀ ଯଦି ନରସୀ ଭଳି ବେଶ୍ୟା କାମ କରିଥାନ୍ତା ତାହାହେଲେ ତୁମେ କ'ଣ କରି ପାରିଥାନ୍ତ ?"

ଚେନ୍ନିଗରାୟ୍ ପାଖରେ ଏହାର ଉତ୍ତର ନଥିଲା । କିନ୍ତୁ ରାଗ ଶାନ୍ତ ହୋଇ ନଥାଏ । ମହାଦେବଯ୍ୟା ପୁଣି କହିଲେ –"ତୁମେ ନିଜର ସ୍ୱଭାବକୁ ଦେଖି ତୁମ ହାତରେ ଯେଉଁ କାମ ହୋଇ ପାରିବ ନାହିଁ ସେଥିରେ ଗୋଡ କାହିଁକି ପୁରାଉଛ ? ଚୁପ୍ ହୋଇ ସନ୍ନ୍ୟାସୀଙ୍କ ଭଳି ବାକି ଜୀବନ କାଟି ନିଅ । ଯଦି କିଛି କରିବା କଥା ତେବେ ବିଶ୍ୱ ପାଇଁ ଚିନ୍ତା କର । ଆଚ୍ଛା ବର୍ତ୍ତମାନ ତୁମେ ପରା ଶିବଲିଙ୍ଗାର ଘରକୁ ଯାଇଥିଲ, ସେ କ'ଣ କହିଲା ?"

"ସେ ଶଳା ବାର୍ଷିକ ପ୍ରାପ୍ୟରୁ ମଧ୍ୟ କିଛି ଦେବା ପାଇଁ ମନା କରିଦେଲା ।"

Digitized by srujanika@gmail.com

ଏ ମଧ୍ୟରେ ଚେନ୍ନିଗରାୟ୍ ମହାଦେବୟ୍ୟାଙ୍କ ବଟୁଆରୁ ଗୁଣ୍ଡି ନେଇ ପାଟିରେ ପକାଇଲା । ଆଠିଦିନ ଭିତରେ ଚେନ୍ନିଗରାୟ୍ ଘରେ ବଳିଥିବା କଂସାବାସନ ଏବଂ ନଷ୍ଟକାର ଅଳଙ୍କାର ପତ୍ର ବିକାବିକି କରିଦେଲା ଏବଂ ତା'ପରେ ଗାଁରୁ ଗଲା ଯେ ଦୁଇତିନି ମାସ ପର୍ଯ୍ୟନ୍ତ ତାର ପତ୍ତା ମିଳିଲା ନାହିଁ ।

ଜୀବନଟା ନିରର୍ଥକ ବୋଲି ଉପଲବ୍ଧି କରି ମହାଦେବୟ୍ୟାଙ୍କ ଭଳି ବାବାଜୀ ହୋଇ ଜୀବନ କାଟିବା ପାଇଁ ନିଷ୍ପତ୍ତି କଲା । ଅନେକ ଗାଁ ଏବଂ ସହର ବୁଲି ବୁଲି ଯାଇ ତିରୁପତି ଠାରେ ପହଞ୍ଚିଲା । ସେଠାରେ ଗେରୁଆ ଧୋତି ଏବଂ ଗେରୁଆ କୁରୁତା ପିନ୍ଧି ଠାକୁରଙ୍କ ସାମନାରେ ସନ୍ନ୍ୟାସ ନେବାର ପ୍ରତିଜ୍ଞା କଲା ।

ତା' ପର ଠାରୁ ଗାଁ ଗାଁ ଲକ୍ଷ୍ୟହୀନ ଭାବରେ ବୁଲୁଥାଏ । ଯେଉଁଠି ଭୋକ ଲାଗିଲେ ଭିକ୍ଷା କରି ଖାଏ । ଅନେକ ଦିନ ପର୍ଯ୍ୟନ୍ତ ସେ ଅନୁଭବ କଲା ଯେ ଏଭଳି ଜୀବନଟା ବେଶ୍ ଆରାମରେ କଟିଯିବ । କିନ୍ତୁ ଦୁଇଟା ମାସରେ ବିରକ୍ତ ହୋଇ ଉଠିଲା । ପ୍ରତିଦିନ ନୂଆ ନୂଆ ଗାଁକୁ ଯାଅ ଏବଂ ଭିକ୍ଷା ମାଗି ଖାଅ । କେହି କେହି ମଧ୍ୟ କହି ଦିଅନ୍ତି, "ମୂଲଲାଗି ପେଟ ପୋଷି ପାରୁନାହିଁ ?" ସେତେବେଳକୁ ତାକୁ ଚାପୁଡା ମାରିଲା ପରି ଲାଗେ । ଭାବିଲା ଗାଁକୁ ଫେରିଗଲେ ଭଲ ହେବ । କିନ୍ତୁ ଗାଁରେ ବା' ନିଜର ବୋଲି ଆଉ କିଏ ଅଛି ? ସ୍ତ୍ରୀଟା ହେଲେ ବଞ୍ଚିଥାନ୍ତା । କିନ୍ତୁ ପୁଣି ଭାବିଲା ମା'ତ ବଞ୍ଚିଥିବ । ସେ କଣ ହତାଦର କରିବ । ତାପରେ ରାସ୍ତା ପଚାରି ପଚାରି ଅନେକ ଦିନ ପରେ ଗାଁକୁ ଫେରିଲା ।

ଗଙ୍ଗାଙ୍କା ହନୁମାନ ମନ୍ଦିରରେ ଥାଏ । ସେ ମଧ୍ୟ ସେହିପରି ଭିକ୍ଷା ମାଗି ଚଳୁଥାଏ । ଆଜିକାଲି ବୁଢୀ ବେଶି ଜିନିଷ ମୁଣ୍ଡାଇ ଆଣି ପାରୁନଥାଏ । ଅପନ୍ନା ପାଖରେ ଥିଲା ବେଳେ ସିନା ବସ୍ତା ବସ୍ତା ମାଣ୍ଡିଆ ମାଗି ଆଣି ଘରେ ଗଦା ମାରି ରଖୁଥିଲା । ଏବେ କିଏ ଅଛି ଯେ ସାହାଯ୍ୟ କରିବ ? ଦିନେ ଗେରୁଆ ବସ୍ତ୍ରଧାରୀ, ଜଟାଧାରୀ ବ୍ୟକ୍ତିଟିକୁ ଦେଖି ପ୍ରଥମେ ବୁଢୀ ଚିହ୍ନିପାରିଲା ନାହିଁ । କିନ୍ତୁ କିଛି ସମୟ ପରେ ବଡ ପୁଅକୁ ଯୋଗୀ ବେଶରେ ଚିହ୍ନିପାରି କାନ୍ଦି କାନ୍ଦି କହିଲା, "ହଇରେ ଶେଷକୁ ଏ ବେଶ ଧରିବାକୁ ଥିଲା ।"

"ମା' ଆଉ ମୋ ଜୀବନରେ କ'ଣ ଅଛି ? ତେଣୁ ଏ ସଂସାର ଛାଡି ସନ୍ନ୍ୟାସୀ ହୋଇ ଯାଇଛି ।"

"ଧୁ ! ନିର୍ଲଜ କେଉଁଠିକାର, ମୁଁ କ'ଣ ମରିଯାଇଛି ? ଶୀଘ୍ର ଘର ଭିତରକୁ ପଳେଇ ଆସ । ନହେଲେ କିଏ ଦେଖି ଦେବ । ଗେରୁଆ ଲୁଗା ପିନ୍ଧି ଅନ୍ୟ ଲୁଗା ପିନ୍ଧି ପକା । କାଲି ଭଣ୍ଡାରୀକୁ ଡକାଇ ଦାଢୀ ଜଟା ସଫା କରି ଦେ ।"

ଚେନ୍ନିଗରାୟ୍ର ସନ୍ନ୍ୟାସୀ ଜୀବନ ସମାପ୍ତ ହେଲା ।

ମା'ପୁଅ ପୁଣି ଏକାଠି ରହିଲେ । ଅପନ୍ନା ଭଳି ଭାରେ ମାଣ୍ଡିଆ ବସ୍ତା ଉଠାଇ ନ ପାରିଲେ ମଧ୍ୟ ବୁଢୀ ମା'କୁ ସାହାଯ୍ୟ ତ ହେବ । ଏବେ ବୁଢୀ ଭିକ୍ଷା ମାଗି ଗଲେ ଚେନ୍ନିଗା କେଉଁଠି ଗୋଟେ ବସି ଗୁଣ୍ଡି ପତ୍ର ପାଟିରେ ପକାଇ ରସ ଆସ୍ୱାଦନ କରୁଥାଏ । ଏବଂ ଶେଷକୁ ମାଣ୍ଡିଆ ବୋହି ଗାଁକୁ ଫେରେ ।

Digitized by srujanika@gmail.com

ମନ୍ଦିରରେ ରହିଲେ ପ୍ରତିଦିନ ପୂଜା କରିବାକୁ ପଡେ ଏବଂ ଓଳାଇବାକୁ ପଡେ । ତେଣୁ ମା' ପୁଅ ଠିକ୍ କଲେ ନନ୍ଦିଆ ତିଆରି କରାଇଥିବା ଘରଟାରେ ମାଟି ଲିପା ପୋଛା କରି ସେଇଠି ରହିବେ । ଲିପା ପୋଛା ସରିବା ପରେ ଦିନେ ଶୁଭ ମୁହୂର୍ତ୍ତ ଦେଖି ପୁରୋହିତଙ୍କୁ ଭୋଜନ କରାଇ ନୂତନ ଗୃହ ପ୍ରବେଶ କଲେ ।

Digitized by srujanika@gmail.com

# ଷୋଡ଼ଶ ଅଧ୍ୟାୟ

1

ମହାଦେବୟା ରାମଚନ୍ଦ୍ର ଗାଁକୁ ଆସିବାର ପ୍ରାୟ ଚାଳିଶ ବର୍ଷ ହେଲାଣି । ତାଙ୍କର ପ୍ରଥମେ ପ୍ରଥମେ କାହା ସାଙ୍ଗରେ ଚିହ୍ନା ପରିଚୟ ନଥିଲା । କିନ୍ତୁ ଏବେ ଆଖପାଖ ଗାଁରେ ସମସ୍ତେ ତାଙ୍କୁ ଚିହ୍ନନ୍ତି । ତେଣୁ ନ୍ୟାୟ ନିଷ୍ପତ୍ତି, ଭଲ ମନ୍ଦରେ ସବୁବେଳେ ଲୋକେ ତାଙ୍କୁ ପଚାରନ୍ତି ଏବଂ ତାଙ୍କ କଥା ଶୁଣନ୍ତି । ବଡ ଅମାୟିକ ଲୋକ ଏଇ ମହାଦେବୟା । ଆଜି ପର୍ଯ୍ୟନ୍ତ ରାଗରେ କାହାକୁ ପଦେ କହିବା କେହି ଶୁଣି ନାହାନ୍ତି । ଥରେ ଏଇ ଗାଁର ଲୋକଙ୍କର ବ୍ୟବହାରରେ କ୍ଷୁବ୍ଧ ହୋଇ ଗାଁ ଛାଡି ଚାଲି ଯାଇଥିଲେ । କିନ୍ତୁ କାଶୀ ଭଳି ପୁଣ୍ୟ ନଗରୀରେ ମଧ୍ୟ ବେଶି ଦିନ ରହି ନପାରି ପୁଣି ଏଇ ଗାଁକୁ ଫେରିଆସିଲେ । ଏଇ ଗାଁରେ ଏପରି କ'ଣ ଆକର୍ଷଣ ଥିଲା କେଜାଣି, କାଶୀ ନଗରୀରେ ତ ସବୁ ପ୍ରକାର ସୁବିଧା ଥିଲା ଏବଂ ଚାହିଁଥିଲେ ସେଠି ଜୀବନ ସାରା ଭଜନ ଏବଂ ଧର୍ମକର୍ମରେ କଟାଇ ପାରିଥାନ୍ତେ । କିନ୍ତୁ ରାମଚନ୍ଦ୍ର ଗାଁର ମନ୍ଦିର, ରାସ୍ତା, ଘାଟ, ପୋଖରୀ, ପାହାଡ ଏବଂ ଆଖପାଖ ଗାଁର ଲୋକେ ତାଙ୍କ ହୃଦୟରେ ଏକ ଆକର୍ଷଣ ବଢାଇ ରଖିଥିଲେ । ଏକଥା ବୋଧହୁଏ ସିଏ ନିଜେ ପୁରା ବୁଝି ପାରିନଥିଲେ ।

କାଶୀରୁ ଫେରିବା ପରେ ସେ ପୁଣି ଏଇ ଗାଁର ଲୋକ ହୋଇଗଲେ । ଆଖପାଖ ଗାଁକୁ ଭିକ୍ଷା ମାଗି ଯାଆନ୍ତି । ଶକ୍ତି ଅନୁସାରେ ଗରୀବ ଲୋକଙ୍କୁ ସାହାଯ୍ୟ କରନ୍ତି ଏବଂ ବାକି ସମୟରେ ଭଜନ କରି ଦିନ କାଟନ୍ତି । କିନ୍ତୁ ଏବେ ସମୟ କାଟିବା ତାଙ୍କ ପକ୍ଷରେ କଷ୍ଟକର ବୋଧ ହେଉଥିଲା । ତାଙ୍କୁ ଜଣା ପଡୁଥିଲା ସତେ ଯେପରି ସେଇ ଗାଁରେ ତାଙ୍କର ନିଜର ହୋଇ ଆଉ କେହି ନାହିଁ । ମନେ ମନେ ଭାବନ୍ତି ମୁଁ ତ ଯୋଗୀ ଲୋକ, ପ୍ରଥମରୁ ତ ମଧ୍ୟ ଏଇ ଗାଁରେ ନିଜର କେହି ନଥିଲେ । କିନ୍ତୁ ଏବେ କାହିଁକି ଏପରି ଅନୁଭବ କରୁଛି । ମନକୁ ଯେତେ ବୁଝାଇଲେ ସୁଦ୍ଧା ନିଃସଙ୍ଗତା ବୋଧ କମିଲା ନାହିଁ । ଆଉ ଏଗାଁରେ ରହି କ'ଣ ବା' ଲାଭ ? ଏପରି ଭାବନା ଅନେକ ଥର ମନକୁ ଆସିଲା । ଧୀରେ ଧୀରେ ସେ ନିଷ୍ପତ୍ତି କଲେ ଯେ ଏ ଗାଁରେ ଆଉ ରହିବେ ନାହିଁ ।

ଅନେକ ଦିନ ପରେ ଅପନ୍ନା ଦିନେ ଗାଁକୁ ଫେରିଲା । ଭାଉଜ ମଲାପରେ ତାକୁ ମଧ୍ୟ ଏଗାଁଟା ଖାଇ ଗୋଡାଉ ଥିଲା । ସେଥିପାଇଁ ବହୁତ ଦିନ ପର୍ଯ୍ୟନ୍ତ ଗାଁକୁ ଆସୁନଥିଲା । ଏଥର ବସ୍ତେ ଚାଉଳ, ଡାଲି ଏବଂ ଅନ୍ୟାନ୍ୟ କେତେ ଜିନିଷ ଧରି ଆସିଥାଏ । ଗାଁରେ ଜଣକ ବାରଣ୍ଡାରେ ରୋଷେଇ କରି ଖାଏ ।

Digitized by srujanika@gmail.com

ମହାଦେବଯ୍ୟାଙ୍କ ଛଡ଼ା ଆଉ କେହି ସାଙ୍ଗ ତାର ନଥିଲେ । କିନ୍ତୁ ଦୁଇଜଣ ବସି କଥାହେଲା ମାତ୍ରେ ସବୁବେଳେ ନଷ୍ଟିଙ୍କ କଥା ଉଠେ । ଅପନ୍ନା କହେ, "ଟେନ୍ନିଗା ଭାଉଜଙ୍କୁ ବହୁତ କଷ୍ଟ ଦେଇଥିଲା ।"

ଦିନେ ମହାଦେବଯ୍ୟା କହିଲେ, "ଯାହା ହେବାର ତ ହେଲାଣି ତୁମେ ଏବେ ଦୁଇଭାଇ ଏବଂ ମା' ଏକାଠି କାହିଁକି ରହୁନ ।" ଅପନ୍ନା କହିଲା, "ସେ କଳିମୁହିଁ ସାଙ୍ଗରେ ରହିବି ? ମୁଁ ମରଦ ପିଲା । ତାଙ୍କୁ ଦେଖିବେ କେତେ ଚାଉଳ ଡାଲି ମାଗି ଆଣି ରଖିଛି ।" ମହାଦେବଯ୍ୟା ଚୁପ ରହିଲେ । ସେଥର ଅପନ୍ନା କୋଡ଼ିଏ ଦିନ ଗାଁରେ ରହିଲା । କିନ୍ତୁ ଦିନେ ହେଲେ ମା' କିମ୍ବା ଭାଇ ପାଖକୁ ଗଲା ନାହିଁ । ତାଙ୍କ ନାଁ' ପଡ଼ିଲେ ତାର ନାହିଁ ଚିଡ଼ି । କିଛି ଦିନ ପରେ ଅପନ୍ନା ପୁଣି ଗାଁ ଛାଡ଼ି ପଳାଇଲା । ସେଦିନ ରାତିରେ ମହାଦେବଯ୍ୟା ବସି ବସି ଗଙ୍ଗାଙ୍କାର ପରିବାର ବିଷୟରେ ଆଜି ପର୍ଯ୍ୟନ୍ତ ସବୁ ଘଟଣା ମନେପକାଇଲେ । ସତରେ ସେ ଏଇ ପରିବାରର କେତେ ଆପଣାର ହୋଇଯାଇଛନ୍ତି । ତାଙ୍କର ଗୋଟିଏ ଦୀର୍ଘଶ୍ୱାସ ବାହାରି ଗଲା । ସେଇ ପରିବାରର କୋମଳ ଶିଶୁ ବିଶ୍ୱ କଥା ତାଙ୍କର ମନେ ପଡ଼ିଲା । କେତେ ଚାଲାଖ ପିଲାଟା । ପାଠ ପଢ଼ିଲେ ବହୁତ ବଡ଼ ଲୋକ ହୋଇପାରନ୍ତା । ନଷ୍ଟିଙ୍କର କେତେ ଇଚ୍ଛା ଥିଲା ବିଶ୍ୱକୁ ପାଠ ପଢ଼ାଇବା ପାଇଁ । ସେଇଥି ପାଇଁତ ତାକୁ ମାମୁଁ ଘରକୁ ଛାଡ଼ିଥିଲା । ସେ କିନ୍ତୁ ପାଠ ପଢ଼ାପଢ଼ି କରୁଛି କି ନାହିଁ କିଏ ଜାଣେ ? ମାମୁଁ ମାଇଁ ତା'କଥା ଭଲକରି ବୁଝୁଛନ୍ତି ନା ନାହିଁ ? ବିଶ୍ୱ କଥା ମନେ ପଡ଼ିବାରୁ ତାଙ୍କ ମନଟା ବିଚଳିତ ହୋଇ ଉଠିଲା ଏବଂ ଭାବିଲେ ରାମସନ୍ଦ୍ର ଗାଁ ସବୁଦିନ ପାଇଁ ଛାଡ଼ିବା ପୂର୍ବରୁ ବିଶ୍ୱକୁ ଅନ୍ତତଃ ଥରେ ଦେଖି ଆସିବା ଦରକାର ।

## 2

ଦୁଇଦିନପରେ ଦିନେ ମନ୍ଦିର ବାରଣ୍ଡାରେ ମହାଦେବଯ୍ୟା ବସିଥିଲେ, ସେତିକିବେଳକୁ ନରସୀ ମୁହଁ ଶୁଖାଇ ଆସି ପାଖରେ ବସିଲା । ମହାଦେବଯ୍ୟା ପଚାରିଲେ, "କୁଆଡ଼େ ଯାଇଥିଲୁ କି ଭଉଣୀ, ସାତ ଆଠ ଦିନ ହେଲା ଗାଁରେ ନଥିଲୁ ।"

"ହଁ ମୋର ଜଣେ ବନ୍ଧୁଘର ଗାଁକୁ ଯାଇଥିଲି । ସେଠାରୁ ଫେରିଲା ବେଳେ ନାଗଲାପୁର ବାଟ ଦେଇ ଆସୁଥିଲି । ଗ୍ରାମ ମୁଣ୍ଡରେ ବିଶ୍ୱକୁ ଦେଖି ମୋ ଆଖିରୁ ଲୁହ ବୋହିଗଲା ।" ବ୍ୟାକୁଳ ହୋଇ ମହାଦେବଯ୍ୟା ପଚାରି ଉଠିଲେ, "ବିଶ୍ୱ ଭଲ ଅଛି ତ ?"

"ଭଲ ? ପିଲାଟା ଶୁଖି କଣ୍ଟା ହୋଇଯାଇଛି । ମାଠିଆଟେ ଧରି ପୋଖରୀକୁ ପାଣି ଆଣିବାକୁ ଯାଉଥିଲା । ମୁଁ ତ ପ୍ରଥମେ ତାକୁ ଚିହ୍ନି ପାରିଲି ନାହିଁ । କେମିତି ଅଛୁ ବୋଲି ପଚାରିବାରୁ ସେ ଭୋ

Digitized by srujanika@gmail.com

ଭୋ ହୋଇ କାନ୍ଦି ଉଠିଲା । ବହୁତ ବୁଝେଇ ଚୁପ୍‌ କରାଇବାରୁ କହିଲା – 'ମତେ ତୁମ ସାଙ୍ଗରେ ଗାଁକୁ ନେଇ ଯାଅ ମାଉସୀ', ମୁଁ ବା, କିପରି ନେଇ ଆସନ୍ତି ? ଡେରି ହେଲେ ମାଈଁ ମାରିବ ବୋଲି କହି ଧାଇଁ ଧାଇଁ ଚାଲିଗଲା ।''

''ତୁ ଗାଁ ଭିତରକୁ ଯାଇ କଲେଶକୁ ପଚାରିଲୁନି କାହିଁକି ?''

''ମୁଁ ସେଠି ଶଗଡ଼ରୁ ଓହ୍ଲାଇ ପୋଖରୀ କୂଳରେ ଗୋଟିଏ ସ୍ତ୍ରୀ ଲୋକକୁ ପଚାରିଲି, ସେ କହିଲା ଯେ ବିଶ୍ୱକୁ ତା' ମାମୁଁ ମାଈଁ ଘରର ଚାକର ଭଳି ଖଟାଉଛନ୍ତି । ଦିଓଳି ପେଟପୁରା ଖାଇବାକୁ ଦେଉ ନାହାନ୍ତି । ତା' ଉପରେ ଗାଈ ଗୋରୁଙ୍କୁ ବାଡ଼େଇଲା ପରି ମାଡ଼ ।''

''କଲେଶ କ'ଣ ସତରେ ଏପରି କରୁଛି ?''

''ହଁ ସେ ମଧ୍ୟ ପାଗଳା ଲୋକ । ମନ ପାଇଥିଲେ ଭଣଜାକୁ ବଜାରକୁ ନେଇ ମିଠେଇ ଆଦି କିଣି ଖୁଆଇ ଦେବେ, କିନ୍ତୁ ରାଗି ଗଲେ ନିଆଁ ଖୁଣ୍ଟାରେ ମାଡ଼ ମାରିବେ । ତା' ମାଈଟା କିନ୍ତୁ ଗୋଟେ ଡାହାଣୀ ।''

ମହାଦେବଯ୍ୟା ଆଉ କିଛି ପଚାରିଲେ ନାହିଁ । ସେ ଆଗରୁ ଜାଣିଥିଲେ ଯେ ମା' ଛେଉଣ୍ଡ ପିଲାଟା କେବେହେଲେ ସୁଖରେ ନଥିବ । କିନ୍ତୁ ତାକୁ ଯେ ଏତେ କଷ୍ଟ ଦିଆଯାଉଥିବ ଏକଥା ତାଙ୍କ କଳ୍ପନା ବାହାରେ ଥିଲା । ତା ମାଈଁର ପ୍ରକୃତି ବିଷୟରେ ସେ ଜାଣିଥିଲେ, କିନ୍ତୁ ମାମୁଁଟା ଅନ୍ତତଃ ପିଲାଟା କଥା ବୁଝନ୍ତା । କିଛି ସମୟ ପରେ ନରସୀ କହିଲା ''କିଛି ନ ଭାବିବେ ଯଦି ମୁଁ ଗୋଟେ କଥା କହିବି ।''

''କହ ।''

''ମୋର ତ କେହି ପିଲା ଛୁଆ ନାହିଁ । ବିଶ୍ୱକୁ ମୋ ପାଖରେ ଛାଡ଼ି ଦିଅନ୍ତୁ । ମୋର ଦୋକାନ, ଘର, ସମ୍ପତ୍ତି ସବୁ ତାର ହେବ । ତାକୁ ପ୍ଲେଗ୍‌ ହେବା ସମୟରେ ମୁଁ ତାର କେତେ ସେବା କରିଥିଲି । ନଞ୍ଜମ୍ମା ସେତେବେଳେ କହିଥିଲା, 'ଇଏ ତୋର ପୁଅ ଲୋ ନରସୀ । ତୁ ତାକୁ ବଞ୍ଚା ।' ଆପଣ ନାଗଲାପୁରରୁ ବିଶ୍ୱକୁ ନେଇ ଆସନ୍ତୁ ।'' ମହାଦେବଯ୍ୟାଙ୍କୁ ଚିନ୍ତାମଗ୍ନ ଦେଖି ଆଉ କିଛି ନକହି ନରସୀ ଚାଲିଗଲା ।

ସେ ରାତିରେ ମହାଦେବଯ୍ୟାଙ୍କୁ ନିଦ ହେଲା ନାହିଁ । ନଞ୍ଜମ୍ମା କଥା ବହୁତ ମନେ ପଡ଼ିଲା । ''ପାର୍ବତୀ, ରମନ୍ନା ମରିଯିବା ପରେ ଆପଣ ମାତା ଯଶୋଦାଙ୍କ କାହାଣୀ ଶୁଣାଇ କହିଥିଲେ ଯେ ପୁଅ ନଦୀରେ ବୁଡ଼ି ଯାଉଥିଲେ ସୁଦ୍ଧା ଯଶୋଦା ନଦୀ କୂଳରେ ଠିଆ ହୋଇ କେବଳ ପାଟି କରୁଥାନ୍ତି କିନ୍ତୁ ନଦୀକୁ ଡେଇଁନଥାନ୍ତି । ମୁଁ ମଧ୍ୟ ମଶାଣୀ ପୋଖରୀରେ ଆତ୍ମହତ୍ୟା କରିବାକୁ ଯାଇଥିଲି ବିଶ୍ୱ କଥା ମନେ ପଡ଼ିବାରୁ ଫେରି ଆସିଲି । ଏବେ ମୁଁ ମୃତ୍ୟୁ ଶଯ୍ୟାରେ ପଡ଼ିଛି । ବିଶ୍ୱ କଥା କିଏ ବୁଝିବ ? ହେଲେ ବୁଢ଼ୀ ଅକ୍କମ୍ମା ଥିଲା ପର୍ଯ୍ୟନ୍ତ ବିଶ୍ୱର ପେଟ ଖାଲି ରହିବ ନାହିଁ । କିନ୍ତୁ ଅସଲ କଥା ହେଲା ମୋ ପୁଅକୁ ପାଠ ପଢ଼ାଇ ମଣିଷ କିଏ କରିବ ?''

Digitized by srujanika@gmail.com

ପ୍ରକୃତରେ କେବେ ବୁଢ଼ୀ ଥିଲେ ବିଶ୍ୱର ଖାଇବା ପିଇବା ଅଭାବ ରହନ୍ତା ନାହିଁ । ମାଇଁ ମଧ୍ୟ ଏ କଷ୍ଟ ଦେଇ ପାରନ୍ତା ନାହିଁ । କିନ୍ତୁ ବୁଢ଼ୀତ ନାତୁଣୀ ପଛେ ପଛେ ଚାଲିଗଲା । ଏସବୁ କଥା ଭାବିଲା ପରେ ମହାଦେବୟା ନିଜକୁ ଦୋଷୀ ମନେକଲେ । ପିଲାଟାକୁ ମାମୁଁ ସାଙ୍ଗରେ ଛାଡ଼ିଲେ । ପୂର୍ବରୁ ଏକଥା କାହିଁକି ମୋ ମୁଣ୍ଡରେ ପଶିଲା ନାହିଁ । ବର୍ତ୍ତମାନ କ'ଣ କରିବି ? ବିଶ୍ୱକୁ ଆଣି ନରସାକୁ ଦେଇ ଦେବି ? ନରସା ପାଖରେ ପନ୍ଦର କୋଡ଼ିଏ ହଜାର ଟଙ୍କା ଅଛି । ଦୋକାନରୁ ବି ଭଲ ଆଦାୟ ହେଉଛି । ବଡ଼ ସ୍ନେହ କରନ୍ତା । ମାମୁଁ ଘରଠାରୁ ତ ଭଲରେ ରହନ୍ତା । କିନ୍ତୁ ନଞ୍ଜମ୍ମା ବଞ୍ଚିଥିଲେ କ'ଣ ଏଥିରେ ରାଜି ହୁଅନ୍ତା । ନରସା ତ ବେଶ୍ୟା କାମ କରେ । ତେବେ ପିଲାଟାକୁ କାହା ପାଖରେ ଛାଡ଼ିବି ?

ସାତ ଆଠ ଦିନ ପର୍ଯ୍ୟନ୍ତ ଏଇ ଚିନ୍ତାରେ ମହାଦେବୟା ବହୁତ ମାନସିକ କଷ୍ଟ ଅନୁଭବ କଲେ । ଦିନେ ହଠାତ୍ ଭାବିଲେ, ''ମୁଁ ତ ଏ ଗାଁ ଛାଡ଼ି ଚାଲିଯିବି, ବିଶ୍ୱକୁ ମଧ୍ୟ ମୋ ସାଙ୍ଗରେ ନେଇ ଯିବି । ମୁଁ ଭିକ୍ଷା ମାଗି ଯାହା ଆଣିବି ସେଥିରେ ତାର ପେଟ ପୁରିଯିବ । ମୁଁ ତାକୁ ପାଠ ପଢ଼ାଇବି । ଯେତେ ପର୍ଯ୍ୟନ୍ତ ପାରିବି ସେ ପର୍ଯ୍ୟନ୍ତ ପଢ଼ାଇବି ।'' ଏ ଭଳି ଭାବି ଭାବି ମହାଦେବୟା ଆନନ୍ଦରେ ଅଧୀର ହୋଇ ଉଠିଲେ । କିନ୍ତୁ କିଛି ସମୟରେ ପୁଣି ଭାବିଲେ, ''ମୁଁ ତ ଆସି ଏତେ ବୁଢ଼ା ହେଲିଣି, ଯଦି ମରିଯାଏ ତାହାହେଲେ ପିଲାଟା କଥା କିଏ ବୁଝିବ ? ପୁଣି ଚିନ୍ତାକରି ନିଶ୍ଚିନ୍ତି କଲେ, ପିଲାଟା ଭାରି ଚାଲାକ୍, ମୁଁ ମରିଗଲା ପରେ ମଧ୍ୟ ତାର ପେଟ ଅପୋଷା ରହିବ ନାହିଁ । ତା' ଛଡ଼ା କିଏ ଜାଣିଛି କିଏ କେତେବେଳେ ମରିଯିବ । ମୋରି ସାମନାରେ ମୋ ନାତୁଣି ବୟସର ନଞ୍ଜମ୍ମା ତ ମରିଗଲା । ମୁଁ କିନ୍ତୁ ଯେମିତି ସେମିତି ରହିଛି । ବିଶ୍ୱ ବଡ଼ ହେଲା ପର୍ଯ୍ୟନ୍ତ ମୁଁ ମରିବି ନାହିଁ ।''

ଆହୁରି ମଧ୍ୟ ଭାବିଲେ ଯଦି ବିଶ୍ୱକୁ ଛାଡ଼ିବାକୁ କଲେଶ ନାରାଜ ହୁଏ ? ମତେ ଦେଖିଲେ ଅବଶ୍ୟ ବିଶ୍ୱ ଦୌଡ଼ି ଆସିବ । ମୁଁ ତାକୁ ଚୋରାଇ ଆଣିବି । ଏହା ଠିକ୍ କରି ତା ପରଦିନ ସକାଳୁ ନାଗଲାପୁର ବାହାରି ପଡ଼ିଲେ ।

## 3

ନାଗଲାପୁର ରାସ୍ତାରେ ଗୋଟିଏ ଗାଁରେ ରାତି କଟାଇ ତା'ପର ଦିନ ସିଧା ନାଗଲାପୁର ସ୍କୁଲରେ ପହଞ୍ଚିଲେ । ସ୍କୁଲରୁ ବିଶ୍ୱକୁ ଡାକି ପାଖରେ ଥିବା ଗୋଟିଏ ଗଛ ମୂଳରେ ବସିଲେ । ପ୍ରକୃତରେ ବିଶ୍ୱ ବହୁତ ଦୁର୍ବଳ ଦିଶୁଥିଲା । ତା ପିଠି ଆଉଁସି ମହାଦେବୟା ପଚାରିଲେ, ''ମୋ ସାଙ୍ଗରେ ଯିବୁ ବାପା ?'' ''କ'ଣ ଆମ ଗାଁକୁ ଯିବା ?''

Digitized by srujanika@gmail.com

"ଆମ ଗାଁ ହେଉ କିମ୍ବା ଆଉ କେଉଁ ଗାଁ ହେଉ । ତତେ ମୁଁ ମୋ ସାଙ୍ଗରେ ନେଇ ଯିବି । ତୁ ମୋ ପାଖରେ ରହି ପାଠ ପଢି ବଡ ଲୋକ ହେବୁ । ମୋ ସାଙ୍ଗରେ ଯିବୁ ନା ?"

"ନାଇଁ ତୁମେ ମିଛ କହୁଛ । ଦେଖି, ଭଗବାନଙ୍କ ରାଣ ପକାଇ କହିଲ ।"

ମହାଦେବସ୍ୱାମୀ ଭଗବାନଙ୍କ ରାଣ ପକାଇବା ପରେ ବିଶ୍ୱ କହିଲା –"ତେବେ ଚାଲ ଏଇଠୁ ଛୁଟି ପଳାଇବା ।"

"ନାଁ, ନାଁ, ଗାଁକୁ ଯାଇ ମାମୁଁଙ୍କୁ ପଚାରି ଯିବା ।"

ମାମୁଁଙ୍କ ନାଁ ଶୁଣି ବିଶ୍ୱ କାନ୍ଦିବାକୁ ଆରମ୍ଭ କଲା, "ମାମୁଁ ମତେ ଛାଡିବେ ନାହିଁ ।"

"ମାମୁଁ ଯଦି ନ ଛାଡିବେ ତେବେ ମୁଁ କାଲି ଏଠାକୁ ଆସି ତତେ ନେଇଯିବି ।" ତିନି ଚାରିଥର ରାଣ ପକାଇ ମହାଦେବସ୍ୱାମୀ କହିବା ପରେ ବିଶ୍ୱର ବିଶ୍ୱାସ ଆସିଲା । ସ୍କୁଲ ଛୁଟିପରେ ବିଶ୍ୱ ଆଗେ ଆଗେ ଘରକୁ ଗଲା, ପଛେ ପଛେ ମହାଦେବସ୍ୱାମୀ । ମହାଦେବସ୍ୱାମୀ ଘରେ ପହଞ୍ଚିଲା ବେଳକୁ କଳେଶର ପାଟି ଶୁଭୁଥାଏ, "କିରେ ଛଟରା ଟୋକା ଏତେ ଡେରି କାହିଁକି ହେଲା - - - -।" ଆଉ କ'ଣ ଗାଳି ଦେଇଥାନ୍ତା କିନ୍ତୁ ମହାଦେବସ୍ୱାମୀଙ୍କୁ ଦେଖି ଚୁପ ରହିଗଲା ।

ଆଉ କିଛି ସମୟପରେ କଣ୍ଡୋଜୋଇସ ମଧ୍ୟ ଆସି ପହଞ୍ଚିଗଲେ । ମା'ର ଶୁଦ୍ଧିକ୍ରିୟା ପରେ ଯାଇଥିଲେ ଯେ ଆଜି ଫେରୁଛନ୍ତି । ତାଙ୍କର ମଧ୍ୟ ନାତିକୁ ଟିକିଏ ଦେଖିବାକୁ ମନ ହୋଇଥିଲା । ଘର ଭିତରକୁ ଯାଇ କଣ୍ଡୋଜୋଇସ ନାତିକୁ ଡାକି ତା' ହାତରେ ମିଠେଇ ପୁଡିଆଟେ ଧରାଇ ଦେଲେ । ତାପରେ ମହାଦେବସ୍ୱାମୀଙ୍କ ସାଙ୍ଗରେ ରାମସନ୍ଦ୍ର ଗାଁର ଭଲମନ୍ଦ ବିଷୟରେ କଥା ହେଲେ । ସେଦିନ ରାତିରେ ମହାଦେବସ୍ୱାମୀଙ୍କ ପାଇଁ ଖାଇବା ବ୍ୟବସ୍ଥା କଳେଶ ତାଙ୍କ ଜାତିର ଲୋକ ମଲ୍ଲ ସେଠୀର ଘରେ କରି ଦେଇଥିଲା । ତାଙ୍କ ବାରଣ୍ଡାରେ ବସି ମହାଦେବସ୍ୱାମୀ ମଲ୍ଲ ସେଠୀ ସାଙ୍ଗରେ କଥା ହେଉଥାନ୍ତି । ବିଶ୍ୱ କଥା ପଚାରିବାରୁ ମଲ୍ଲସେଠୀ କହିଲା, "ବିଶ୍ୱ ଯେପରି ସହୁଛି, ଭଗବାନ ସେପରି କଷ୍ଟ ଆଉ କୌଣସି ପିଲାକୁ ନ ଦିଅନ୍ତୁ । ଭଗବାନ, ଏପରି ବଞ୍ଚିବା ଅପେକ୍ଷା ମରିଯିବା ଭଲ ।" ସେଠୀଙ୍କ ସ୍ତ୍ରୀ ମଧ୍ୟ ସେହିକଥା କହିଲେ । ମହାଦେବସ୍ୱାମୀ ସେସବୁ ଶୁଣି ସେଠୀଙ୍କୁ କହିଲେ, "ଟିକିଏ କଣ୍ଡୋଜୋଇସଙ୍କୁ ଡକାଇ ପାରିବ କି ?" ଦଶ ମିନିଟ୍ ଭିତରେ କଣ୍ଡୋଜୋଇସ ଆସିଗଲେ । ମହାଦେବସ୍ୱାମୀ ତାଙ୍କୁ ସବୁ ଘଟଣା ବର୍ଣ୍ଣନା କରି କହିସାରିଲା ପରେ କହିଲେ, "ଆପଣ ଏ ଗାଁର ଯେ କୌଣସି ଲୋକକୁ ବିଶ୍ୱ ଉପରେ କରାଯାଉଥିବା ଅତ୍ୟାଚାର ବିଷୟରେ ପଚାରି ପାରନ୍ତି । ଆପଣ ନିଜେ ପିଲାଟାକୁ ଦେଖି ବୁଝି ପାରୁଥିବେ ଯେ କେତେ ସୁସ୍ଥ ପିଲାଟା କ'ଣ ହୋଇଯାଇଛି । ଆପଣ ତ ନିଜ ବୋହୂର ସ୍ୱଭାବ ଜାଣନ୍ତି । ଏ ସବୁ ଦୃଷ୍ଟିରୁ ମୁଁ ଭାବୁଛି ବିଶ୍ୱକୁ ମୁଁ ସାଥିରେ ନେଇଯିବି ଏବଂ ପାଳିପୋଷି ବଡ କରିବି ।"

କଣ୍ଡୋଜୋଇସ ରାଗରେ ତମତମ ହୋଇ ଉଠିଲେ, ସତେ ଯେପରି ସାଙ୍ଗେ ସାଙ୍ଗେ ଯାଇ ବୋହୂର ମୁଣ୍ଡ ଫଟାଇ ଦେବେ । କିନ୍ତୁ ମହାଦେବସ୍ୱାମୀ ବୁଝାଇ କହିଲେ, ସେ ତ ଆପଣଙ୍କର ଭାଗ୍ୟ ଦୋଷ କିନ୍ତୁ, ମୋ ମତରେ କଳେଶ ମଧ୍ୟ ପିଲାଟିର ଯତ୍ନ ନେଉ ନାହାନ୍ତି ।"

କଣ୍ଡୋଜୋଇସ କେତେ ସମୟ ପର୍ଯ୍ୟନ୍ତ ଚିନ୍ତା କରି ପଚାରିଲେ, "ଆପଣ ତାଙ୍କୁ ନେଇ କିପରି ଚଳାଇବେ ?"

Digitized by srujanika@gmail.com

"ମୁଁ କିପରି ଚଳାଇବି ତାହା ଭଗବାନଙ୍କ ଉପରେ ନିର୍ଭର କରେ । ଆପଣଙ୍କର ଯଦି ମୋ ଉପରେ ବିଶ୍ୱାସ ଥାଏ, ତେବେ ନିଃସଙ୍କୋଚରେ ବିଶ୍ୱକୁ ମୋ ସାଙ୍ଗରେ ଛାଡି ଦିଅନ୍ତୁ ।"

କଣ୍ଡୀକୋଇସ ଚୁପ ହୋଇ ବସିଥାନ୍ତି । ମନ ଭିତରେ ରାଗ ଚଢୁଥାଏ । ପିଲାର ଅଜା, ମାମୁଁ ଥାଉ ଥାଉ ଇଏ ଯୋଗୀବୁଢା ଚାର କିଏ ଯେ ଆମକୁ ଉପଦେଶ ଦେବାକୁ ଆସିଛି ଏବଂ ବିଶ୍ୱକୁ ସାଙ୍ଗରେ ନେଇଯିବାକୁ କହୁଛି । ଏ ବାବାଜୀର କେତେ ସାହସ । ତାଙ୍କର ଇଚ୍ଛା ହେଲା ଭଲ କରି ଶୁଣାଇ ଦେବେ । କିନ୍ତୁ ପୁଣି କଣ ଭାବି ଚୁପ୍ ରହିଲେ । ସତରେ ପିଲାଟା ବହୁତ ଦୁର୍ବଳ ହୋଇଯାଇଛି । ବୋହୁଟା ତ ଭାରି କଳିହୁଡୀ । ଠିକ୍ ଭାବରେ ଖାଇବାକୁ ପିଇବାକୁ ଦେଉନଥିବ । କଳେଶ ମଧ୍ୟ ମାରୁଛି ବୋଲି ଗାଁ ଲୋକଙ୍କ ଠାରୁ ଶୁଣିଛି । ମୁଁ ନିଜେ ନେଇ ପାଖରେ ରଖିଲେ ହୁଅନ୍ତାନି କି ? କିନ୍ତୁ ମୋର ଯେଉଁ ଭଳି ଯାଯାବର ଜୀବନ, ସେଥିରେ କ'ଣ ପିଲାଟା ମଣିଷ ହୋଇପାରିବ ? କେବଳ ଏଇ ବାବାଜୀ ହିଁ ସେ ପିଲାଟାକୁ ମଣିଷ କରି ପାରିବ । ନଷ୍ଟିଳା ମଧ୍ୟ କହୁଥିଲା ମହାଦେବଯ୍ୱା ବଡ ସାଧୁ ଲୋକ । ପଚାରିଲେ, "ମୁଁ ଯଦି ଆସି ନଥାନ୍ତି ତାହାହେଲେ ଆପଣ କ'ଣ କରିଥାନ୍ତେ ? କଳେଶ ତ କେବେ ହେଲେ ବିଶ୍ୱକୁ ଛାଡିବାକୁ ରାଜି ହୋଇନଥାନ୍ତା ।" "ଆପଣ ତ ବର୍ତ୍ତମାନ ଅଛନ୍ତି, ଆପଣ ହିଁ ନିଷ୍ପତ୍ତି କରନ୍ତୁ । ଆପଣ ଯଦି ନଥାନ୍ତେ ତେବେ ମୁଁ ବିଶ୍ୱକୁ ସ୍କୁଲରୁ ସିଧା ନେଇ ଯାଇଥାନ୍ତି । ମତେ ଯଦି କିଏ ବାଧା ଦେଇଥାନ୍ତା, ମୁଁ ଦେଖିଥାନ୍ତି ।"

କଣ୍ଡୀକୋଇସ କିଛି କ୍ଷଣ ପର୍ଯ୍ୟନ୍ତ ଅପଲକ ଦୃଷ୍ଟିରେ ମହାଦେବଯ୍ୱାଙ୍କ ଦିବ୍ୟ ଚେହେରାକୁ ଚାହିଁ ରହିଲେ । ତାପରେ ଉଠି ହାତ ଉପରେ ହାତ ରଖି କହିଲେ, "ଆପଣ ହିଁ ପ୍ରକୃତରେ ବୀର ପୁରୁଷ । ସାବାସ ! ତାକୁ ନେଇ ଯାଆନ୍ତୁ । ମୁଁ କଳେଶକୁ ବୁଝାଇ ଦେବି ।" ଏହା କହି ଦ୍ରୁତ ଗତିରେ ନିଜ ଘର ଆଡେ ଚାଲିଗଲେ ।

ରାତିରେ ଖାଇସାରି ମହାଦେବଯ୍ୱା କଣ୍ଡୀକୋଇସଙ୍କ ଘରକୁ ଗଲେ । ସେତେବେଳକୁ କଳେଶକୁ ବୁଝାଇ କଣ୍ଡୀକୋଇସ ରାଜି କରାଇ ସାରିଥିଲେ ।

ତା'ପର ଦିନ ଗାଁ ସ୍କୁଲରୁ ବିଶ୍ୱ ନାଁ କଟାଇ ସାର୍ଟିଫିକେଟ ଅଣାଗଲା । ବିଶ୍ୱର ଲୁଗାପଟା ଗଣ୍ଠିଲି କରି ମହାଦେବଯ୍ୱା ନିଜ କାନ୍ଧରେ ପକାଇଲେ ଏବଂ ବିଶ୍ୱକୁ କହିଲେ, "ବାପା, ଅଜା, ମାମୁଁ, ମାଇଁଙ୍କ ପାଦ ଛୁଇଁ ମୁଣ୍ଡିଆ ମାର ।" ବିଶ୍ୱ ମୁଣ୍ଡିଆ ମାରିଲା ବେଳକୁ କଳେଶ ଆଖିରୁ ଲୁହ ଝରି ପଡିଲା । କଣ୍ଡୀକୋଇସ ବହୁତ ଉଦାସ ଥାନ୍ତି । ମହାଦେବଯ୍ୱା ଏବଂ ବିଶ୍ୱ ସାଙ୍ଗରେ ଗାଁ ମୁଣ୍ଡରୁ ଅନେକ ଦୂର ପର୍ଯ୍ୟନ୍ତ ସାଙ୍ଗରେ ଗଲେ । କଳେଶ ମଧ୍ୟ ସାଙ୍ଗରେ ଆସିଥାଏ । କଳେଶକୁ ଘରକୁ ଫେରିଯିବାକୁ କଣ୍ଡୀକୋଇସ କହିଲେ । ଫେରିବା ପୂର୍ବରୁ କଳେଶ ମହାଦେବଯ୍ୱାଙ୍କୁ କହିଲା, "ବିଶ୍ୱଟା ବହୁତ ଚଗଲା । ମୁଁ ବଡ କଷ୍ଟରେ ତାକୁ ଆକଟ କରି ରଖିଥିଲି । ଆପଣ ମଧ୍ୟ ମଝିରେ ମଝିରେ ଆଖି ଦେଖାଉଥିବେ ।"

Digitized by srujanika@gmail.com

"ଆଚ୍ଛା, ଆଚ୍ଛା । ଶିଳ୍ପୀର ନିହଣ ମାଡ ଖାଇ ସିନା ପଥର ଖଣ୍ଡେ ଭଗବାନଙ୍କ ମୂର୍ତ୍ତି ହୁଏ, କିନ୍ତୁ ସେଥିପାଇଁ ସୀମା ଭିତରେ ଥାଇ ପଥରକୁ ହାଣିବା ଦରକାର । ଆଜି ପର୍ଯ୍ୟନ୍ତ ତୁମେ ଯାହା କରିଛ, ବିଶ୍ୱର ଭଲ ପାଇଁ କରିଛ ।" ମହାଦେବଯ୍ୟାଙ୍କ ଉତ୍ତର ଶୁଣି କଳେଶର ମୁହଁ ତଳକୁ ହୋଇଗଲା । ଆଉ କିଛି ନ କହି ଫେରିଗଲା ।

କଣ୍ଡୀକୋଇସ୍ ସାଙ୍ଗରେ ଘୋଡାଟିକୁ ମଧ୍ୟ ଚଲାଇ ଚଲାଇ ଆଣିଥାନ୍ତି । ମହାଦେବଯ୍ୟା ତାଙ୍କୁ କହିଲେ – "ଆପଣ ମଧ୍ୟ ଏଥର ଫେରିଯାଆନ୍ତୁ ଆଉ କେତେ ବାଟ ଚାଲିବେ ।" କଣ୍ଡୀକୋଇସ୍ କ'ଣ କହିବେ ବୋଲି ଭାବୁଥାନ୍ତି, କିନ୍ତୁ କହି ପାରୁନଥାନ୍ତି । ଘୋଡାର ଲଗାମ୍ଟା'କୁ ଧରି ପଥର ଭଳି ସେଠାରେ ଠିଆ ହୋଇ ରହିଲେ । ସମସ୍ତେ କିଛି ସମୟ ମଉନ ହୋଇ ରହିବା ପରେ, ମହାଦେବଯ୍ୟା କହିଲେ, "ଆଚ୍ଛା ଆମେ ଯାଉଛୁ ।" କଣ୍ଡୀକୋଇସ୍ କହିଲେ, "ଆପଣ ହିଁ ପ୍ରକୃତରେ ମରଦ ପୁଅ ।" ମହାଦେବଯ୍ୟା କିଛି ବୁଝିପାରିଲେ ନାହିଁ । କଣ୍ଡୀକୋଇସ୍ ନିଜ ସାର୍ଟ ପକେଟରୁ ବିଡାଏ ନୋଟ୍ ବାହାର କରି ମହାଦେବଯ୍ୟାଙ୍କ ଗେରୁଆ ସାର୍ଟ ପକେଟରେ ପୁରାଇ ଦେଇ କହିଲେ, "ଏଥିରେ ଦେଢଶହ ଟଙ୍କା ଅଛି । ଆପଣ ବିଶ୍ୱକୁ ନେଇ ଯେଉଁଠି ରହିବେ ମତେ ନିଶ୍ଚୟ ଚିଠି ଲେଖି ଜଣାଇବେ । ମୋ ଠିକଣା ହେଲା ଚିନ୍ନିରାପଟ୍ଟଣ, ମସ୍ଜିଦ୍‌ର ପଛଗଳି, ଗୁଣିଆ ଘର ।" ତାପରେ ନାଚିର ମୁଣ୍ଡ ଆଉଁସି ଦେଇ ଘୋଡାରେ ଚଢି ଚାଲିଗଲେ । ତାଙ୍କ ଆଖି କୋଣରେ ଦୁଇ ବୁନ୍ଦା ଲୁହ କିନ୍ତୁ ମହାଦେବଯ୍ୟାଙ୍କ ଦୃଷ୍ଟିରୁ ଲୁଚି ପାରିଲାନାହିଁ । ମହାଦେବଯ୍ୟା ବିଶ୍ୱକୁ ଧରି ଆଗକୁ ଚାଲିଲେ । ବିଶ୍ୱକୁ ଚିନ୍ତିତ ଥିବା ଦେଖି ମହାଦେବଯ୍ୟା ପଚାରିଲେ, "କ'ଣ ଭାବୁଛୁ ବାପା ?"

"ଅଜାଙ୍କୁ ଘୋଡାରେ ଚଢିବା ଦେଖି ମୋର ମଧ୍ୟ ଇଚ୍ଛା ହେଉଛି ତାଙ୍କ ଠାରୁ ଆହୁରି ଜୋରରେ ଘୋଡା ଦୌଡାଇବା ପାଇଁ ।"

"ଆଉ କ'ଣ ଇଚ୍ଛା ହେଉଛି ?"

"ବହୁତ ଦୂର ପର୍ଯ୍ୟନ୍ତ ପାଣିରେ ପହଁରିବା ପାଇଁ ଇଚ୍ଛା ହେଉଛି ।"

"ପାଠ ପଢିବା ପାଇଁ ଇଚ୍ଛା ହେଉ ନାହିଁ ।"

"ହଁ, ମୁଁ ତ ଆମ କ୍ଲାସରେ ଫାଷ୍ଟ ହୁଏ । ମାମୁଁ ଘରେ ପାଠ ପଢିବାକୁ ସମୟ ମିଳୁନଥିଲା ନହେଲେ ଆହୁରି ଭଲ ପଢି ପାରିଥାନ୍ତି ।"

"ମୁଁ ତୋ ପାଇଁ ନୂଆ ନୂଆ ବହି ଆଉ ସିଲଟ ଖଡି ଦେବି, ତୁ ଖୁବ୍ ମନଦେଇ ପାଠ ପଢା ପଢି କରିବୁ ।"

Digitized by srujanika@gmail.com

ରାମଚନ୍ଦ୍ର ଗାଁରେ ପହଞ୍ଚିଲା ବେଳକୁ ଗଙ୍ଗାମ୍ମା ଗାଁରେ ନଥାଏ । ମହାଦେବୟ୍ୟା ପାଖରେ ରଖିଥିବା ସବୁ ମାଣ୍ଡିଆ, ଚାଉଳ ଇତ୍ୟାଦି ବିକି ଦେଲେ । ସେଥିରୁ ଶହେ କୋଡିଏ ଟଙ୍କା ମିଳିଲା । ଆଗରୁ ଚାଳିଶି ଟଙ୍କା ମଧ୍ୟ ପାଖରେ ଥିଲା । ତା ଛଡା କଣ୍ଟାକୋଇସ୍ ଦେଇଥିବା ଦେଢଶହ ଟଙ୍କା ସାର୍ଟ ପକେଟରେ ଥାଏ । ସବୁ ଟଙ୍କା ଏକାଠି କରି ଅଣ୍ଟାରେ ବାନ୍ଧିଲେ । ବାସନ କୁସନ ଏବଂ କମ୍ବଳ ଲୁଗା ମୁଣ୍ଡାଇବା ପାଇଁ ଗୋଟିଏ କୁଲି କରିଦେଲେ । ତାପର ଦିନ ସକାଳୁ ଗାଁ ଛାଡିବା ପୂର୍ବରୁ ବିଶ୍ୱ କହିଲା, "ସତରେ କ'ଣ ମୋ ମା' ମରି ଯାଇଛି ।"

"ହଁରେ ବାପ ।"

"ମୁଁ ଟିକିଏ ଆମ ଘରକୁ ଯାଇ ଦେଖିବା ପାଇଁ ଚାହୁଁଛି ।"

"ସେଠି କ'ଣ ଅଛି ଦେଖିବା ପାଇଁ ?"

ବିଶ୍ୱ ଜିଦ୍ କଲା ଯିବା ପାଇଁ । ବିଶ୍ୱ ଜିଦ୍ କରିବାରୁ ମହାଦେବୟ୍ୟା ସେ ଘରର ଚାବି ମଗାଇ ଖୋଲିଲେ । ଘରଯାକ ଧୂଳିରେ ଭର୍ତ୍ତି ହୋଇଥାଏ ଏବଂ ଘର ଭିତରୁ ଗନ୍ଧ ବାହାରୁଥାଏ । ବିଶ୍ୱ ଧୋଷେଇ ଘର ଭିତରକୁ ଧାଇଁ ଧାଇଁ ଗଲା । ସେଠାରୁ ଆସି ଧାନଘର ଭିତରେ କ'ଣ ଖୋଜିଲା ପରି ଦେଖୁଥାଏ । ତାପରେ ଆଟୁ ଉପରକୁ ଚଢି ଦେଖିଲା, ଏବଂ ଜୋରରେ ପାଟି କରି ଡାକିଲା, "ମା' ତୁ କେଉଁଠି ଅଛୁ ?" କିନ୍ତୁ, କିଛି ଉତ୍ତର ମିଳିଲା ନାହିଁ । ତଳକୁ ଓହ୍ଲାଇ ବିଶ୍ୱ ମହାଦେବୟ୍ୟାଙ୍କୁ ପଚାରିଲା– "ମୋ, ମା' କ'ଣ ସତରେ ତାହାହେଲେ ମରିଯାଇଛି ?" ମହାଦେବୟ୍ୟା ବିଶ୍ୱର ମୁଣ୍ଡ ଆଉଁସି ଦେଇ କହିଲେ, "ହଁରେ ବାପା ତୋ ମା' ମରିଯାଇଛି ।" ବିଶ୍ୱ ଖୁବ୍ ଜୋରରେ କାନ୍ଦିବାକୁ ଲାଗିଲା । ମହାଦେବୟ୍ୟା ତାକୁ କୋଳ କରି ବହୁତ ବୁଝାଇଲେ ଏବଂ କହିଲେ, " ଚାଲ ଏଥର ଯିବା ।"

ବିଶ୍ୱ ଚୁପଚାପ ମହାଦେବୟ୍ୟାଙ୍କ ପଛରେ ଚାଲିଥାଏ । କୁଲି ମହାଦେବୟ୍ୟାଙ୍କ ଜିନିଷ ପତ୍ର ମୁଣ୍ଡାଇ ଆଗରେ ଚାଲିଥାଏ । ମହାଦେବୟ୍ୟା ଏକତାରାଟା ହାତରେ ଧରିଥାନ୍ତି । ଗାଁରେ କେହି ଜାଣିନଥାନ୍ତି ଯେ ମହାଦେବୟ୍ୟା ଗାଁ ଛାଡି ସବୁଦିନ ପାଇଁ ଚାଲିଯାଉଛନ୍ତି । ସେ ମଧ୍ୟ କାହାକୁ କହିନଥିଲେ, କାରଣ ସମସ୍ତେ କେତେ ପ୍ରକାର ପ୍ରଶ୍ନ ପଚାରିବେ ଏବଂ ସେ ସବୁର ଉତ୍ତର ସେ କ'ଣ ବା' ଦେଇଥାନ୍ତେ !

କମ୍ବନକେରେ ବାଟ ଦେଇ ମହାଦେବୟ୍ୟା ଏବଂ ବିଶ୍ୱ ଚାଲିଥାନ୍ତି । ବିଶ୍ୱ ରାସ୍ତାଯାକ ମୁହଁ ତଳକୁ ପୋତି ଉଦାସ ମନରେ ଚାଲିଥାଏ ।

କମ୍ବନକେରେ ଠାରୁ ମାଇଲିଏ ଆଗକୁ ରାସ୍ତା କଡରେ ଗୋଟିଏ ଗଛ ମୂଳେ ଚେନ୍ନିଗରାୟ୍ୟ ଶୋଇଥାଏ । ମୁଣ୍ଡତଳେ ମାଣ୍ଡିଆର ଗୋଟିଏ ଛୋଟିଆ ଗଣ୍ଠିଲା ରଖା ହୋଇଥାଏ । ମୁହଁରୁ ଗୁଣ୍ଡିପତ୍ରର

Digitized by srujanika@gmail.com

ପିକ ଧାର ହୋଇ ବୋହି ଯାଉଥାଏ । ପାଦଶବ୍ଦ ଶୁଣି ଚେନ୍ନିଗରାୟୁ ଉଠି ବସିଲା । ମହାଦେବୟ୍ୟା ଜାଣି-ଶୁଣି ତାକୁ କିଛି ପଚାରିଲେ ନାହିଁ । ଗଙ୍ଗାକ୍କା ମଧ୍ୟ ସେ ପାଖକୁ କେଉଁଠିକୁ ଯାଇଥିବ । ସେ ଯଦି ବିଶ୍ୱକୁ ଦେଖିବ ତେବେ ପାଟି କରିବ, ମୋ ନାତିକୁ କୁଆଡେ ନେଇଯାଉଛ । ସେଥିପାଇଁ ମହାଦେବୟ୍ୟା ଜଲଦି ଆଗକୁ ପାଦ ବଢାଇ ଚାଲିଗଲେ । ଚେନ୍ନିଗା ସେମାନଙ୍କୁ ଚିହ୍ନି ପାରିଲା । କିନ୍ତୁ କିଛି କହିବା ପାଇଁ ସେ ଅସମର୍ଥ ଥିଲା । କାରଣ ତାର ମୁହଁରେ ଗୁଣ୍ଡିପତ୍ରର ପିକ ଭର୍ତ୍ତି ହୋଇଥିଲା ଏବଂ ସେଗୁଡିକ ପକାଇ ଦେବାକୁ ତାର ଇଚ୍ଛା ନଥିଲା ।

ବିଶ୍ୱ ମହାଦେବୟ୍ୟାକୁ ପଚାରିଲା, "ସେଇ ଲୋକ ଜଣକ ମୋ ବାପା ନା ?" ଚେନ୍ନିଗରାୟୁ ଏକଥା ଶୁଣି ପାରିଲା ଏବଂ କିଛି କହିବ ବୋଲି ତାର ଜିଭ ଛଟ ପଟ ହେଲା । ହେଲେ ଗୁଣ୍ଡିପତ୍ରର ରସ ଗୁଡିକ ପକାଇ ଦେଲେ ଆଉ ଗୁଣ୍ଡି କେଉଁଠୁ ଆଣିବ ? ସେ ଏପରି ଭାବୁ ଭାବୁ ମହାଦେବୟ୍ୟା ଏବଂ ବିଶ୍ୱ ବହୁତ ଦୂରକୁ ଚାଲିଗଲେ । ବିଶ୍ୱ ବାରମ୍ବାର ପଛକୁ ବୁଲି ଦେଖୁଥାଏ । ମହାଦେବୟ୍ୟା କହୁଥାନ୍ତି, "ବେଗେ ବେଗେ ଚାଲ ବାପ, ପଛକୁ ଦେଖନା ।"

ଏଣେ ଚେନ୍ନିଗରାୟୁ ଗଛକୁ ଆଉଜି ବସି ପାଟିରେ ଗୁଣ୍ଡିପତ୍ର ରସର ସ୍ୱାଦ ଅନୁଭବ କରି କରି ଭାବୁଥାଏ । 'ଏ ଶଳା ବାବାଜୀଟା ମତେ ଦେଖି କିଛି ନ କହି ଚାଲିଗଲା ? ହଉ ପୁଣି ଥରେ କେବେ ଦେଖା ହେଲେ ତାକୁ ଭଲ କରି ପଚାରିବି ।' ସେତେବେଳକୁ ମହାଦେବୟ୍ୟା ଏବଂ ବିଶ୍ୱ ଚେନ୍ନିଗରାୟୁର ବୁଜି ହୋଇ ଆସୁଥିବା ଆଖିର ଦୃଷ୍ଟି ସୀମାରୁ ପାର ହୋଇସାରିଥାନ୍ତି ।

—

Digitized by srujanika@gmail.com

ପ୍ରସିଦ୍ଧ କନ୍ନଡ ଉପନ୍ୟାସକାର ଏସ୍.ଏଲ୍. ଭୈରପ୍ପାଙ୍କର ଏ ବହିଟିରେ ପ୍ରଥମ ବିଶ୍ୱ ଯୁଦ୍ଧ କାଳୀନ କର୍ଣ୍ଣାଟକ ପ୍ରଦେଶର ଗ୍ରାମ୍ୟଜୀବନର ଏକ ନିଖୁଣ ଚିତ୍ରଣ କରାଯାଇଛି । ଉପନ୍ୟାସର ମୁଖ୍ୟ ଚରିତ୍ର, ଗ୍ରାମ୍ୟ ଯୁବତୀ ନଞ୍ଜମ୍ମାର ଅନ୍ତର୍ହିନ ଦୁର୍ଦ୍ଦଶାର କାହାଣୀ ଯେ ପାଠକମାନଙ୍କୁ ସ୍ତମ୍ଭୀଭୂତ କରିବ, ଏଥିରେ ସନ୍ଦେହ ନାହିଁ । ସ୍ୱାମୀ ତାର ଆପାଠୁଆ, ବିବେକହୀନ, ସ୍ୱାର୍ଥପର ଏବଂ ଶାଶୁ ନିର୍ଦ୍ଦୟ, ଚଣ୍ଡୀ ପାରିବାରିକ ଅଭାବ, ଅନାଟନ, ସାମାଜିକ ଅବ୍ୟବସ୍ଥା ଏବଂ ଦୈବୀଦୁର୍ବିପାକର ସାମନାକରି ଅଣ୍ଟାଭିଡି ଠିଆ ହୋଇଛି ନଞ୍ଜମ୍ମା; ପଣ କରିଛି ସ୍ୱାମୀର ଘରକୁ ସ୍ୱର୍ଗରେ ପରିଣତ କରିବ, କିନ୍ତୁ ପାରି ନାହିଁ । ପ୍ରତିଟି ପଦକ୍ଷେପରେ ସେ ଅନୁଭବ କରିଛି ଅସହାୟତା ଏବଂ କାଳର କ୍ରୁର ଚକ୍ରାନ୍ତ, ବିବାହିତା ଝିଅ ଏବଂ ବଡ ପୁଅ ତାର ପ୍ଲେଗ ରୋଗର ଶିକାର ହୁଅନ୍ତି । ପରିବାରଟା ଦାରିଦ୍ର୍ୟ ଏବଂ ରୋଗ ଶୋକରେ ଚଳିଚଳାନ୍ତ ହୋଇଯାଇଛି । ମନେହେବ, ସତେ ଯେପରି ଉପନ୍ୟାସର ଚରିତ୍ରମାନେ ଘଟଣା ପ୍ରବାହ, ଦୈବୀ ଅଭିଶାପ ଗ୍ରସ୍ତ ହୋଇ ଏକ ଅନିର୍ବାର୍ଯ୍ୟ ବିଷମୟ ପରିଣତି ଆଡକୁ ମାଡି ଚାଲିଛନ୍ତି ।

ଏହି ଲେଖକଙ୍କର ଅନ୍ୟ ପ୍ରକାଶିତ ଉପନ୍ୟାସଗୁଡିକ ମଧ୍ୟରୁ 'ଦାଟୁ' ଏବଂ 'ବଂଶବୃକ୍ଷ' ଅଧିକ ଲୋକପ୍ରିୟ ହୋଇ ପାରିଛି ।



ଟ 54.00

ନ୍ୟାସନାଲ୍ ବୁକ୍ ଟ୍ରଷ୍ଟ, ଇଣ୍ଡିଆ

*Digitized by srujanika@gmail.com*